# ବେଦ ଓ ବାଇବଲ୍

ଲେଖକ :

ଡକ୍ଟର ଉମେଶ ପତ୍ରୀ

ପ୍ରକାଶକ :

ଜଗନ୍ନାଥ ରଥ

ବିନୋଦବିହାରୀ, କଟକ- ୨

ପ୍ରଥମ ସଂସ୍କରଣ : ୧୯୯୦

ମୁଦ୍ରଣ :

ଶ୍ରୀ ଅରବିନ୍ଦ ଆର୍ଟ ପ୍ରେସ

ଆଲିଶାବଜାର, କଟକ ୨

ମୂଲ୍ୟ : ଟ ୪୦-୦୦

# ସୂଚୀପତ୍ର

# ଭୂମିକା

ଡକ୍ଟର ରମେଶ ପଣ୍ଡାଙ୍କ ସଂକଳିତ "ବେଦ ଓ ବାଇବଲ" ଓଡ଼ିଆ ସାହିତ୍ୟର ଏକ ଅନବଦ୍ୟ ସୃଷ୍ଟି । ବିଭିନ୍ନ ପତ୍ରପତ୍ରିକାରେ ପ୍ରବନ୍ଧ ଗୁଡ଼ିକ ପ୍ରକାଶିତ ହୋଇଥିବା କାରଣରୁ ପୁସ୍ତକ ଆକାରରେ ଏହାର ଧାରାବାହିକତା କେତେକାଂଶରେ ବ୍ୟାହତ ହୋଇଛି ସତ୍ୟ ମାତ୍ର ପ୍ରତ୍ୟେକ ପ୍ରବନ୍ଧ ସ୍ୱ ବିଷୟବସ୍ତୁରେ ସ୍ୱୟଂ ସମ୍ପୂର୍ଣ୍ଣ ହୋଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ପ୍ରାଚ୍ୟ ଓ ପାଶ୍ଚାତ୍ୟର ଧର୍ମତତ୍ତ୍ୱ ଓ ସିଦ୍ଧାନ୍ତ ଗୁଡ଼ିକୁ ଗଭୀର ଭାବରେ ଅଧ୍ୟୟନ କରି ସେହି ଭିତରେ ଥିବା ଅନେକ ଅବହେଳିତ ବିଷୟବସ୍ତୁକୁ ପାଠକଙ୍କ ନିକଟକୁ ସେ ବିନା ଦ୍ୱିଧାରେ ଏବଂ ନିର୍ଭିକ ଭାବରେ ଆଣିଛନ୍ତି । ଅନ୍ଧ ପରମ୍ପରାରେ ବିଶ୍ୱାସ କରୁଥିବା କୌଣସି ପାଠକ ଏ ପ୍ରବନ୍ଧଗୁଡ଼ିକ ସହଜରେ ହଜମ କରିପାରିବେ ବୋଲି ଆଶା କରାଯାଇ ନ ପାରେ । ଏଥିପାଇଁ ଏକ ମୁକ୍ତ ମନ ଓ ମାନସିକତାର ଆବଶ୍ୟକତା ରହିଛି ।

ଗତାନୁଗତିକ ଓ ପାରମ୍ପାରିକ ଧର୍ମଧାରା ଠାରୁ ସମ୍ପୂର୍ଣ୍ଣ ଭିନ୍ନଭାବରେ ଚିନ୍ତା କରୁଥିବା କାରଣରୁ ଲେଖକଙ୍କୁ ହୁଏତ ଅନେକ ଭୁଲ୍ ବୁଝିପାରନ୍ତି । କେତୋଟି ପ୍ରବନ୍ଧରେ ଲେଖକ ରୂଢ଼ିବାଦୀ ଧର୍ମସିଦ୍ଧାନ୍ତକୁ ଯେଉଁପ୍ରକାର ଶ୍ଳେଷାତ୍ମକ ଭାଷାରେ ପ୍ରୟୋଗ କରିଛନ୍ତି ବ୍ୟକ୍ତିଗତ ଭାବରେ ସମ୍ପର୍କରେ ଆସି ନ ଥିବା କୌଣସି ବ୍ୟକ୍ତି ତାଙ୍କୁ ନାସ୍ତିକ କହିବା ପାଇଁ ପଛେଇବ ନାହିଁ । ଏଠାରେ ଗୋଟିଏ କଥା ଜାଣିରଖିବା ଉଚିତ ଯେ ନାସ୍ତିକୋ ବେଦନିନ୍ଦକଃ ବା ସେହି ନାସ୍ତିକ ଯେ ବେଦକୁ ନିନ୍ଦା କରେ । ବେଦର ଅନ୍ୟନାମ ଜ୍ଞାନ ଅଟେ । ଜ୍ଞାନ ବା ବେଦକୁ ନିନ୍ଦା କରୁଥିବା ବ୍ୟକ୍ତି ହିଁ ପ୍ରକୃତ ନାସ୍ତିକ ଅଟେ । ପ୍ରାଚୀନକାଳରୁ ଭାରତରେ ଚିନ୍ତନର ସ୍ୱତନ୍ତ୍ରତା ଥିଲା । ଏ ଦେଶରେ ଚାର୍ବାକ ଓ ବୁଦ୍ଧଙ୍କ ପରି ନାସ୍ତିକ ମଧ୍ୟ ସ୍ୱ-ସ୍ୱ ଗୁରୁକୁଳ ଓ ବୁଦ୍ଧ ବିହାର ସ୍ଥାପନ କରିବାର ସୁଯୋଗ ପାଇଥିଲେ । ଏଥିପାଇଁ ଭାରତୀୟ ସମାଜ ଅନୁଦାର ନ ଥିଲା । ନ୍ୟାୟ ଓ ବୈଶେଷିକ ଦର୍ଶନକାର ଈଶ୍ୱରଙ୍କ ନାମ ଉଲ୍ଲେଖ ନ କରି ମଧ୍ୟ ଆସ୍ତିକ ଦାର୍ଶନିକ ହିସାବରେ ଗଣ୍ୟ ହୋଇଥିଲେ । ମହାଭାରତ ଯୁଦ୍ଧର ପରବର୍ତ୍ତୀ ସମୟରେ ଦର୍ଶନ ଓ ଧର୍ମକ୍ଷେତ୍ରରେ ସ୍ଥାଣୁତା ଦେଖାଗଲା । ଲୋକେ ବୈଦିକ ଧର୍ମଧାରାରୁ ବିଚ୍ଛିନ୍ନ ହୋଇ ସଂକ୍ଷିପ୍ତ ଭାବରେ ଚିନ୍ତାକରି ବସିଲେ ।

ନିବନ୍ଧ ଅଧ୍ୟୟନ କଲେ ଜଣାପଡ଼େ ବେଦକୁ ଲେଖକ ଯେଉଁପରି ପଢ଼ିଛନ୍ତି, ବାଇବଲକୁ ମଧ୍ୟ ସେହିପରି ପଢ଼ିଛନ୍ତି । ବେଦକୁ ବେଦ ଜାଗାରେ ଏବଂ ବାଇବଲକୁ ବାଇବଲ ଜାଗାରେ ରଖିସାରିବା ପରେ ମଧ୍ୟ ବେଦ ଓ ବାଇବଲର ଏକ ତୁଳନାତ୍ମକ ସମୀକ୍ଷାର ସଫଳ ରୂପାୟନ ପୁସ୍ତକଟିରେ ହୋଇଛି । ଇତିହାସ ପଢ଼ିଲେ ଜଣାପଡ଼େ ଯେତେବେଳେ କୋରାନ ନ ଥିଲା ସେତେବେଳେ ବାଇବଲ ଥିଲା । ଯେତେବେଳେ ବାଇବଲ ନ ଥିଲା ସେତେବେଳେ ମୋଶାଙ୍କ ଶରଅତ ଇହୁଦୀ ଶାସ୍ତ୍ର ପଞ୍ଚଗ୍ରନ୍ଥ ଥିଲା । ଯେତେବେଳେ ପଞ୍ଚଗ୍ରନ୍ଥ ନ ଥିଲା ସେତେବେଳେ ପାରସୀ ଧର୍ମଶାସ୍ତ୍ର ଜେନ୍ଦାବସ୍ତା ଥିଲା । ଯେତେବେଳେ ଜେନ୍ଦାବସ୍ତା ନ ଥିଲା ସେତେବେଳେ ଆର୍ଯ୍ୟମାନଙ୍କ ବେଦ ହିଁ ବିଦ୍ୟମାନ ଥିଲା । ଏଣୁ ବେଦ ହିଁ ବିଶ୍ୱର ଆଦିଗ୍ରନ୍ଥ ଅଟେ । ଏହି ଗ୍ରନ୍ଥର ପ୍ରଭାବ ବିଶ୍ୱର ବିଭିନ୍ନ ଧର୍ମଶାସ୍ତ୍ରଗୁଡ଼ିକ ଉପରେ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ପଡ଼ିଛି । ପ୍ରବନ୍ଧଗୁଡ଼ିକରେ ଏହି ସତ୍ୟ ହିଁ ସର୍ବତ୍ର ବ୍ୟାପ୍ତ ।

ବିରୋଧୀ ମତ ସମ୍ପର୍କରେ ଲେଖକ ସୁସ୍ପଷ୍ଟ । କୌଣସି ବିରୋଧୀ ମତକୁ ଚପାଇ ଦେବାର ପକ୍ଷପାତୀ ସେ ନୁହନ୍ତି । ଅନ୍ୟମାନଙ୍କ ମତକୁ ସେ ଯଥାଯୋଗ୍ୟ ସମ୍ମାନ ଦିଅନ୍ତି । ଏଣୁ ତାଙ୍କ ପାଖକୁ ଆସିଥିବା କେତୋଟି ପତ୍ର ଅବିକଳ ସେ ପ୍ରକାଶ କରିଛନ୍ତି । ସେ ଯେପରି ସମାଲୋଚନା କରନ୍ତି ତାଙ୍କ ପ୍ରତି କରିଥିବା ସମାଲୋଚନାକୁ ମଧ୍ୟ ସେ ସହାନୁଭୂତି ସହ ଶୁଣନ୍ତି ଓ ଗ୍ରହଣ କରନ୍ତି । ବର୍ତ୍ତମାନ ଯୁଗରେ ଧର୍ମ ଏକ ସମସ୍ୟା ନୁହେଁ । ଧାର୍ମିକ ମନୁଷ୍ୟତାର ଏକାନ୍ତ ଅଭାବ ହିଁ ଏକ ସମସ୍ୟା ବୋଲି ସେ ଚିନ୍ତା କରନ୍ତି ।

ମୁଁ ଲେଖକଙ୍କୁ ଆଶୀର୍ବାଦ କରୁଛି ସେ ଧର୍ମ କ୍ଷେତ୍ରରେ ଉପୁଜିଥିବା ବିଭିନ୍ନ ସମସ୍ୟାଗୁଡ଼ିକ ସମାଧାନ କରିବା ଦିଗରେ ଏ ପ୍ରକାର ଏକ ପୁସ୍ତକ ରଚନା କରି ଓଡ଼ିଶାର ପାଠକମାନଙ୍କର ବହୁ ଉପକାର କରିଛନ୍ତି ।

ଇତ୍ୟୋମ୍ ॥

ଅକ୍ଷୟ ତୃତୀୟା
୧୯୮୯

ସ୍ୱାମୀ ବ୍ରହ୍ମାନନ୍ଦ ସରସ୍ୱତୀ

# ନୈବେଦ୍ୟ...

ବାପା :

ଏ ପୁସ୍ତକଟି ପ୍ରକାଶିତ ହେବା ପୂର୍ବରୁ ତୁମ କଥା ହିଁ ମୋର ଖୁବ୍ ମନେ ପଡ଼ୁଛି । ତୁମେ ଆଜି ଥିଲେ ଖୁସି ହୋଇ ଥା'ନ୍ତ ଯେ ତୁମ ପରି ଆଜି ମଧ୍ୟ ମୁଁ ଖୋଜୁଛି । ଭଣ୍ଡ ଭବବାଦୀଙ୍କ ପରି ମୁଁ ପାଇଗଲି ବୋଲି କହୁନାହିଁ । ଖୋଜି ଖୋଜି....ପାଇବା, ନ ପାଇବା ଦୃଷ୍ଟିରୁ ମୁଁ ଭୁଲି ଗଲିଣି, ଯେଉଁଠି ପାଇବାରେ ଆନନ୍ଦ ବା ନ ପାଇବାରେ ଦୁଃଖ ନାହିଁ ।

ତୁମେ କହୁଥିଲ ଈଶ୍ୱର ଏକ ଓ ସବୁଧର୍ମ ସମାନ । ଆଜି କିନ୍ତୁ ମୁଁ ଜାଣିପାରୁନାହିଁ ତୁମେ କେଉଁ ଈଶ୍ୱର ଓ କେଉଁ ଧର୍ମଗୁଡ଼ିକ ସମ୍ପର୍କରେ କହୁଥିଲ । ତୁଳନାତ୍ମକ ଧର୍ମ ଏହା ହିଁ ପ୍ରମାଣ କରି ଚାଲିଛି ଯେ ଗୁଣ, କର୍ମ ଓ ସ୍ୱଭାବରେ ତତ୍ତ୍ୱତଃ ଈଶ୍ୱରଗଣ ଭିନ୍ନ ଭିନ୍ନ ଓ ଧର୍ମଗୁଡ଼ିକ ପରସ୍ପରର ବିରୋଧୀ ଅଟନ୍ତି । ଅନେକ ପ୍ରକାର ଈଶ୍ୱର ଓ ଅନେକ ପ୍ରକାର ଧର୍ମଗୁଡ଼ିକ ମଧ୍ୟରୁ ମତେ ଗୋଟିଏ ଈଶ୍ୱର ଓ ଧର୍ମ ମନୋନୀତ କରିବାକୁ ହିଁ ପଡ଼ିବ, ତାହା ମୋ ପାଇଁ ଶଲୋମନଙ୍କ ଐଶ୍ୱର୍ଯ୍ୟ ହେଉ ବା ଆୟୁବଙ୍କ ଯନ୍ତ୍ରଣା ହେଉ ।

ସନ୍ଦେହ ହିଁ ଜ୍ଞାନ, ବିଶ୍ୱାସ ହିଁ ଅଜ୍ଞାନ ଏହି ପଥଦେଇ କର୍ମ, ଜ୍ଞାନ ଓ ଭକ୍ତି ସହିତ ଏ କ୍ଷୁଦ୍ର ନୈବେଦ୍ୟ ଆପଣଙ୍କ ପାଖରେ ଶ୍ରଦ୍ଧାର ସହିତ ସମର୍ପଣ କଲି ।

ଉମେଶ

# ବେଦୋଖିଲୋ ଧର୍ମମୂଳମ୍

ବିଶ୍ୱରେ ପ୍ରଚଳିତ ନାନା ପଥ, ନାନା ମତ ଦେଖି ସାଧାରଣ ମନୁଷ୍ୟ ବିଚଳିତ ହୋଇପଡ଼େ । କେଉଁଟା ଧର୍ମ, କେଉଁଟା ଅଧର୍ମ ତାହା ସେ ଚିନ୍ତା କରି ପାରେନା । କାରଣ ଗୋଟିଏ ଧର୍ମ ଅହିଂସା ମନ୍ତ୍ର ପ୍ରଚାର କଲେ ଅନ୍ୟଧର୍ମ ତାକୁ କୁହେ ଆଖି ପରିବର୍ତ୍ତେ ଆଖି ଓ ଦାନ୍ତ ପରିବର୍ତ୍ତେ ଦାନ୍ତର ପ୍ରତିଶୋଧ ଭାବନା ରଖ । ଜଣେ ଉତ୍ତିଷ୍ଠିତ ଜାଗ୍ରତର ଉଦ୍‌ବୋଧନ ଦେଲେ, ଆଉ ଜଣେ ଆମକୁ ସାବଧାନ କରାଇଦିଏ ଉଠ ନାହିଁ, ରାତି ଅଛି ।

ସବୁଧର୍ମ ପ୍ରତି ସମାନ ଶ୍ରଦ୍ଧା ରଖିଥିବା ମନୁଷ୍ୟ, ଏ ପ୍ରକାର ପରସ୍ପର ବିପରୀତମୁଖୀ ସିଦ୍ଧାନ୍ତ ପଢ଼ି ନାସ୍ତିକ ହୋଇଯାନ୍ତି ବା ଧର୍ମ ମନୁଷ୍ୟ ମନର ମାଦକତା ବୋଲି କହି ଏହାପ୍ରତି ବେଖାତିର ଭାବ ପ୍ରଦର୍ଶନ କରିଥାନ୍ତି ।

ସେମାନଙ୍କ ତର୍କ ହେଲା, ଯଦି ଈଶ୍ୱର ଏକ ତେବେ ତାଙ୍କ ପ୍ରଦର୍ଶିତ ପନ୍ଥା ଓ ଧର୍ମଶାସ୍ତ୍ର ଏକ ହେବା ଉଚିତ । ବିଭିନ୍ନ ଧର୍ମ ଓ ଧର୍ମଶାସ୍ତ୍ରଗୁଡ଼ିକ ଈଶ୍ୱରଙ୍କ ଅଦ୍ୱିତୀୟତାକୁ ଖଣ୍ଡନ କରୁଛନ୍ତି । ପ୍ରକୃତରେ ଦେଖିବାକୁ ଗଲେ ବିଶ୍ୱର ଲୋକସଂଖ୍ୟା ବୃଦ୍ଧି ସଙ୍ଗେ ସଙ୍ଗେ ଧର୍ମ. ଉପଧର୍ମ, ସଂସ୍ଥା ଓ ସମ୍ପ୍ରଦାୟଗୁଡ଼ିକର ସଂଖ୍ୟା ମଧ୍ୟ ବୃଦ୍ଧି ପାଇଛି । "ଯହିଁ ଅନେକ ସଙ୍ଗମିଳି, ସେଠି ହିଁ ଉପୁଜଇ କଳି", ପରି ସାଧାରଣ ସାଧାରଣ ମତପାର୍ଥକ୍ୟ ନେଇ ଆମେ ନୂଆ ନୂଆ ଧର୍ମ ସଂସ୍ଥାପନ କରି ଚାଲିଛୁ । ଧର୍ମ ନାମରେ କ୍ରୁସେଡ୍ ହୋଇଛି, ଇନ୍‌କ୍ୱିଜିସନ୍ ବସୁଛି ପୁଣି ସାମ୍ପ୍ରଦାୟିକ ଦଙ୍ଗା ମହାମାରୀପରି ଦେଶରୁ ଦେଶକୁ ବ୍ୟାପି ଚାଲିଛି । ଏ ସବୁ ଦେଖି "ସନ୍ଦେହ" ମନୁଷ୍ୟର ଆଦିମ ବିଶ୍ୱାସକୁ ନଷ୍ଟ କରି ସାରିଲାଣି । ନୈତିକବଳ ଧୀରେ ଧୀରେ ହ୍ରାସ ପାଇ ଆସୁଛି ।

ଧର୍ମ ନାମରେ ଯେଉଁ ତ୍ରୁଟି ଆମର ପୂର୍ବାଗ୍ରଣୀଗଣ କରିଗଲେ ସେ ତ୍ରୁଟିର ପୁନରାବୃତ୍ତି ଆମେ ଆଜି କରିବାକୁ ଚାହୁଁ ନା । କାରଣ ସେମାନେ ଜାଣି ନ ଥିଲେ ପ୍ରକୃତରେ ଧର୍ମ କ'ଣ ? ଏହାର ସୃଷ୍ଟି କାହିଁକି ଓ କିପରି ହେଲା ? ପ୍ରଥମରେ ମନୁଷ୍ୟ ଧାର୍ମିକ ଥିଲା ନା ଏହା ତା'ର ପରବର୍ତ୍ତୀ ବିକାଶ ? ଯଦି ସେ ଧାର୍ମିକ ଥିଲା ତେବେ

ସେ କେଉଁ ଧର୍ମରେ ବିଶ୍ୱାସ କରୁଥିଲେ ? ପ୍ରଥମେ ଗୋଟିଏ ଧର୍ମ ଥିଲା ନା ଅନେକ ଧର୍ମ ଥିଲା ? ଏ ସବୁ ପ୍ରଶ୍ନ ଯଦି ଆମ ନୂତନ ନୂତନ ଧର୍ମର ଧ୍ୱଜାଧାରୀ ନିଜକୁ ପଚାରିଥାନ୍ତେ ତା' ହେଲେ ଧର୍ମ ନାମରେ ଓ ପ୍ରେମ ନାମରେ ପ୍ରତିବେଶୀଙ୍କ ରକ୍ତରେ ଏ ଧରା ରଞ୍ଜିତ ହୋଇ ନ ଥାନ୍ତା । ବରଂ ସମସ୍ତେ ନିଜକୁ ଏକ ପରମେଶ୍ୱରଙ୍କ ସନ୍ତାନ ମନେକରି ସହାବସ୍ଥାନ ପୂର୍ବକ ଭାଇଭାଇ ଭାବରେ ଏକ କୁଟୁମ୍ବରେ ରହି ପାରିବାରିକ ଆନନ୍ଦରେ ଚଳିପାରିଥାନ୍ତେ ।

ଆଜି ଆସନ୍ତୁ, ଇତିହାସସିଦ୍ଧ ସମ୍ମତ ହୋଇ ବିଭିନ୍ନ ଧର୍ମର ଆମୂଳ ଓ ଆଦର୍ଶର ପୃଷ୍ଠଭୂମିପରେ ବସି ପ୍ରଚଳିତ ବିଭିନ୍ନ ଧର୍ମର ଆଦିସ୍ରୋତର ଅନ୍ୱେଷଣ କରିବା । ସେହି ଗଙ୍ଗୋତ୍ରୀର ଗୋମୁଖରେ ପହଞ୍ଚିବା ଏତେ ସହଜ ନୁହେଁ । ଏହା ଅନୁଭବ କରି ମହର୍ଷି ବ୍ୟାସ କହିଛନ୍ତି—"ଧର୍ମସ୍ୟ ତତ୍ତ୍ୱମ୍ ନିହିତ ଗୁହାୟାମ୍", ଧର୍ମର ତତ୍ତ୍ୱ ଅନ୍ଧକାର ଗୁମ୍ଫା ମଧ୍ୟରେ ଲୁକ୍କାୟିତ । ଏହି ଅନ୍ଧକାରକୁ ଭେଦକଲେ ଯାଇ ସତ୍ୟର ସାକ୍ଷାତକାର ହେବ । ଏଣୁ ସତ୍ୟକୁ ଗ୍ରହଣ କରିବା ଓ ଅସତ୍ୟକୁ ତ୍ୟାଗ କରିବାର ସାହସ ଥିବା ଦରକାର ।

ସମସ୍ତେ ଜାଣନ୍ତି ଯେ ବିଶ୍ୱରେ ଯେତେ ଉପଧର୍ମ ରହିଛି, ସେ ସବୁ ପ୍ରଚଳିତ ମୁସଲମାନ, ଖ୍ରୀଷ୍ଟିୟାନ, ଇହୁଦୀ, ଯୋରାଷ୍ଟର ଓ ହିନ୍ଦୁଧର୍ମର ବିଭିନ୍ନ ଶାଖା ପ୍ରଶାଖା ମାତ୍ର । ସଂଖ୍ୟା ଗରିଷ୍ଠ ଦୃଷ୍ଟିରୁ ଖ୍ରୀଷ୍ଟଧର୍ମ ଓ ସଂଖ୍ୟାଲଘୁ ଭାବରେ ଯୋରାଷ୍ଟ୍ରିଅ ବିଶ୍ୱରେ ସ୍ୱ ସ୍ୱ ଆସ୍ତିକବାଦକୁ ବଞ୍ଚାଇ ରଖନ୍ତି । ଏ ସମସ୍ତ ଧର୍ମ ବ୍ୟତୀତ ଅନେକ ଜରେଶ୍ୱରବାଦୀ ଧର୍ମୀ ମଧ୍ୟ ଅଛନ୍ତି, ଯେଉଁମାନଙ୍କର ଆଦିସ୍ରୋତ ଧାର୍ମିକ ପରମ୍ପରାର ପ୍ରତିକ୍ରିୟା ସ୍ୱରୂପ ହୋଇଥିବାରୁ ସେମାନଙ୍କୁ ଏ ପ୍ରବନ୍ଧରେ ବାଦ୍ ଦେଲେ ମଧ୍ୟ ଧର୍ମଗୁଡ଼ିକର ଆଦିସ୍ରୋତରେ ପହଞ୍ଚିବାରେ ଅସୁବିଧା ହେବନାହିଁ ।

ଇତିହାସ ଅନୁଶୀଳନ କଲେ ଜଣାଯାଏ ଯେ ୧୪୦୯ ବର୍ଷ ପୂର୍ବରୁ ମହାତ୍ମା ମହମ୍ମଦ ଜନ୍ମ ହୋଇ ନ ଥିଲେ କିମ୍ବା ମୁସଲମାନ ଧର୍ମର ସୃଷ୍ଟି ହୋଇ ନ ଥିଲା । ତଦ୍ରୂପ ୧୯୭୫ ବର୍ଷ ପୂର୍ବେ ପ୍ରଭୁ ଯୀଶୁଖ୍ରୀଷ୍ଟ ଜନ୍ମ ଗ୍ରହଣ କରି ନ ଥିଲେ ବା ଖ୍ରୀଷ୍ଟଧର୍ମ ନାମକ ଶବ୍ଦ ବିଶ୍ୱକୋଷରେ ସ୍ଥାନ ପାଇ ନ ଥିଲା । ମହମ୍ମଦ ଓ ଖ୍ରୀଷ୍ଟଙ୍କ ଜନ୍ମ ପୂର୍ବରୁ ଅବଶ୍ୟ ପୈଗମ୍ବର ମୋଶାଙ୍କ ପ୍ରବର୍ତ୍ତିତ ଇହୁଦୀ ଧର୍ମ ପ୍ରବର୍ତ୍ତିତ ହୋଇସାରିଥିଲା । ଯିଏ ଆଜିକୁ ୩୫୦୯ ବର୍ଷ ପୂର୍ବେ ଜନ୍ମ ଲାଭ କରିଥିଲେ ବୋଲି ଇହୁଦୀ ଐତିହାସିକଗଣ ମତ ଦିଅନ୍ତି । ସ୍ୱଭାବତଃ ଆମ ମନରେ ପ୍ରଶ୍ନଉଠେ, ମୋଶାଙ୍କ ପୂର୍ବରୁ କୌଣସି ଧର୍ମ ଥିଲା ନା ଲୋକେ ଧର୍ମ ବିହୀନ ଜୀବନ ଯାପନ କରୁଥିଲେ ?

ସେହି ସମୟର ଶୂନ୍ୟସ୍ଥାନ ପୂରଣ କରିଥିଲା ଯୋରଆଷ୍ଟର ଧର୍ମ ଯାର ପ୍ରବର୍ତ୍ତକ ଥିଲେ ମହାତ୍ମା ଜରଥୃସ୍ତ୍ର ଓ ଧର୍ମଶାସ୍ତ୍ର ଥିଲା "ଜେନ୍ଦାବସ୍ତା" । ମହାତ୍ମା ଜରଥୃସ୍ତ୍ର ଆଜକୁ ୪୧୦୯ ବର୍ଷପୂର୍ବେ ଜନ୍ମ ହୋଇ ଧର୍ମ ପ୍ରଚାର କରିଥିଲେ । ଡା. ସ୍ପିଗେଲଙ୍କ ମତରେ ଜରଥୃସ୍ତ୍ର ଅବ୍ରାହମଙ୍କ ସମକାଳୀନ ବା ଖ୍ରୀ·ପୂ. ୨୦୦୦ ବର୍ଷ ପୂର୍ବେ ଥିଲେ ଓ ତାଙ୍କ ସମୟ ମୋଶାଙ୍କ ୪୦୦ ବର୍ଷ ପୂର୍ବେ ଅଟଇ ହୁଏ । ତେବେ ହୋଗ ସାହେବ ତାଙ୍କ "ଏସେଜ୍"ରେ ଉଲ୍ଲେଖ କରନ୍ତି ଯେ ଜରଥୃସ୍ତ୍ର ସାହିତ୍ୟ ଖ୍ରୀ. ପୂ. ୨୦୦୦ରେ ରଚିତ ହୋଇଥିଲା, ଯେଉଁଥିରେ ଗ୍ରୀକ୍‌ମାନେ ପାରସୀଧର୍ମ ପ୍ରବର୍ତ୍ତକଙ୍କ ସମ୍ପର୍କରେ ବର୍ଣ୍ଣନା କରିଛନ୍ତି । ପ୍ଲିନିଙ୍କ "ହିଷ୍ଟୋରିଆ ନେଚୁରାଲିକ୍" [୩୦, ୧-୩]ରେ ଏକଥା ଲୁହାଯାଇଛି ଯେ ପ୍ରାଚୀନ ଗ୍ରୀକ୍ ଗ୍ରନ୍ଥାକାରମାନଙ୍କର ସମ୍ମତି ମଧ୍ୟ ଅନୁରୂପ । ଏରିଷ୍ଟୋଟଲ ଓ ୟୁଡୋକ୍‌ସ, ଜରଥୃସ୍ତ୍ରଙ୍କ ସମୟ ପ୍ଲେଟୋଙ୍କ ୬୦୦୦ ବର୍ଷ ପୂର୍ବ ବୋଲି କୁହନ୍ତି ତ ଅନ୍ୟମାନେ ଟ୍ରୋଜନ ଯୁଦ୍ଧଠାରୁ ୫୦୦୦ ବର୍ଷ ପୂର୍ବର ବୋଲି ମତ ଦେଇଥାନ୍ତି ।

ଯାହା ହେଉନା କାହିଁକି, ପାଶ୍ଚାତ୍ୟ ବିଦ୍ୱାନମାନେ ସମସ୍ୱରରେ ଏକଥା ସ୍ୱୀକାର କରନ୍ତି ଯେ ବିଶ୍ୱର ପ୍ରାଚୀନତମ ବିଶ୍ୱାସ ହେଉଛି ଜରଥୃସ୍ତ୍ର ବା ଜୋର-ଆଷ୍ଟରଙ୍କ ପ୍ରଚାରିତ ପାରସୀ ଧର୍ମ, ଯାହାର ଅକ୍ଷୁଣ୍ଣ ପ୍ରଭାବ ଇହୁଦୀ, ଖ୍ରୀଷ୍ଟିୟାନ ଓ ଇସ୍‌ଲାମ୍ ଧର୍ମରେ ପଡ଼ିଛି । "ବାଇବେଲ୍ ଇନ୍ ଇଣ୍ଡିଆ" ନାମକ ପ୍ରସିଦ୍ଧ ଗ୍ରନ୍ଥରେ ଜେକୋଲେଟ ସାହେବ ଜରଥୃସ୍ତ୍ରଙ୍କ ପରିଚୟ ଦେବାକୁ ଯାଇ ଲେଖନ୍ତି, ସେ ଭାରତବର୍ଷରେ ଜନ୍ମ ଗ୍ରହଣ କରିଥିଲେ ଓ ହିନ୍ଦୁଧର୍ମର ସଂସ୍କାର କରିବାକୁ ଚାହୁଁଥିଲେ । ମାତ୍ର ବ୍ରାହ୍ମଣମାନେ ତାଙ୍କ ଉପରେ ଘୋର ଅତ୍ୟାଚାର କରିବାରୁ ସେ ବାଧ୍ୟହୋଇ ପାରସ୍ୟକୁ ପଳାଇଗଲେ ଓ ସେଠି ସ୍ୱ ଧର୍ମ ପ୍ରଚାର କଲେ । ସେ ଯେଉଁ ଧର୍ମଶାସ୍ତ୍ର ଲେଖିଛନ୍ତି ତାକୁ ବେଦ ଓ ହିନ୍ଦୁଶାସ୍ତ୍ରର ସଙ୍କଳନ ବୋଲି କହିଲେ କିଛି ଭୁଲ ହେବନାହିଁ । ତାଙ୍କପରି ପ୍ରଫେସର ମେକ୍‌ସମୂଲର "ସାଇନ୍‌ସ ଅଫ୍ ଲେଙ୍ଗୁଏଜ୍"ରେ କହନ୍ତି ଯେ ଜରଥୃସ୍ତ୍ର ଧର୍ମାବଲମ୍ବୀଗଣ ଉତ୍ତର ଭାରତରୁ ଯାଇ ପ୍ରାଚୀନ ପାରସ୍ୟ ଦେଶରେ ବାସକରୁଥିଲେ ।' ଏହା ସତ୍ୟ ନା ମିଥ୍ୟା ତାହା ହିନ୍ଦୁଧର୍ମ ସହ ଜରଥୃସ୍ତ୍ରଙ୍କ ପ୍ରଚାରିତ ଧର୍ମର ଏକ ତୁଳନାତ୍ମକ ଅଧ୍ୟୟନରୁ ନିର୍ଣ୍ଣୟ କରିଯାଇ ପାରେ । ଏତଦ୍‌ବ୍ୟତୀତ ଜରଥୃସ୍ତ୍ରଙ୍କ ଧର୍ମ କି ପ୍ରକାର ଇହୁଦୀ, ଖ୍ରୀଷ୍ଟିୟାନ ଓ ମୁସଲମାନ ଧର୍ମ ଶାସ୍ତ୍ରକୁ ପୁଷ୍ଟ କରିଥିଲା ତାହାର ଅନୁଶୀଳନ ମଧ୍ୟ ଏକ କ୍ଷୁଦ୍ର ପରିସର ମଧ୍ୟରେ କରିଯାଇପାରେ ।

ଏକଥା କହିବା ନିଷ୍ପ୍ରୟୋଜନ ଯେ ପୈଗମ୍ବର ମହମ୍ମଦ ଓ ପ୍ରଭୁ ଯୀଶୁ-ଖ୍ରୀଷ୍ଟ ତାଙ୍କ ଧାର୍ମିକ ସିଦ୍ଧାନ୍ତ ପାଇଁ ଇହୁଦୀମାନଙ୍କ ପାଖରେ କୃତଜ୍ଞ ଥିଲେ ।

ଡା. ହେଗ୍, ତାଙ୍କ ଲିଖିତ "ହେଲମଜ୍ ହିସ୍ଟ୍ରି ଏଣ୍ଡ୍ ସ୍ୱଧର୍ମାନ୍" ପୁସ୍ତକରେ କହନ୍ତି ମହମ୍ମଦ ହିନ୍ଦୁମାନଙ୍କଠାରୁ ସମସ୍ତ ବିଷୟ ଗ୍ରହଣ କରିଥିଲେ।" ଖ୍ରୀଷ୍ଟ ସ୍ୱୟଂ ଇହୁଦୀ ଥିଲେ ଏବଂ ଦାବୀ କରୁଥିଲେ—ମୁଁ କୌଣସି ବ୍ୟବସ୍ଥା କି ଭାବବାଦୀଙ୍କ ଧର୍ମଶାସ୍ତ୍ର ଲୋପ କରିବାକୁ ଆସିନାହିଁ. ଏପରି ଭାବ ନାହିଁ; ଲୋପ କରିବାକୁ ନ ଆସି ବରଂ ସଫଳ କରିବାକୁ ଆସିଅଛି [ ସନ୍ଥ ମାଥିଉ ୫-୧୭ ] ଏ ଦୃଷ୍ଟିରୁ ଇହୁଦୀଙ୍କ ପୁରାତନ ନିୟମକୁ ଖ୍ରୀଷ୍ଟଙ୍କ ସମ୍ପର୍କରେ ଲିଖିତ ନୂତନ ନିୟମମାନ ଯୋଡ଼ି ହୋଇଗଲା। ଈଶ୍ୱର ସିଦ୍ଧାନ୍ତ, ସୃଷ୍ଟିତତ୍ତ୍ୱ ଓ ଇତିହାସ ପାଇଁ ଖ୍ରୀଷ୍ଟ ଓ ମହମ୍ମଦ ପ୍ରାଚୀନ ଧର୍ମଶାସ୍ତ୍ର ପୁରାତନ ନିୟମକୁ ନିର୍ବିକାରରେ ସ୍ୱୀକାର କଲେ।

ତଦ୍ରୂପ ଇହୁଦୀ ଧର୍ମ ପ୍ରବର୍ତ୍ତକ ମୋଶା ତାଙ୍କ ଲିଖିତ ପ୍ରଥମ ପୁସ୍ତକ ବା ଆଦି ପୁସ୍ତକର ତୃତୀୟ ପର୍ବରେ ଥିବା ଶୟତାନ ବା ପାପକୁ ସର୍ପ ରୂପରେ ଅବତାରଣା କରିବା "ଜେନ୍ଦାବେସ୍ତା" ରୁ ପ୍ରତ୍ୟକ୍ଷ ଭାବରେ ନେଇଛନ୍ତି। ଜେନ୍ଦାବେସ୍ତାର "ଅଜିଦହକ" ଶବ୍ଦ ପାରସୀ "ଅଜଦହା" ରୁ ଆନୀତ, ଯା'ର ଅର୍ଥ ବିକଟାଳ ସର୍ପ। କରଦୃଷ୍ଟ ପାପକୁ ବିକଟାଳ ସର୍ପ ଭାବରେ ବର୍ଣ୍ଣନା କରିବା ଏକ ମୌଳିକ ଚିନ୍ତା ନୁହେଁ। ଏହା ଋଗବେଦ [୩।୩୦।୮] ର ଇନ୍ଦ୍ରବୃତ୍ର ଆଖ୍ୟାନରୁ ନିଆ ଯାଇଛି। ଯେଉଁଥିରେ ବୃତ୍ରକୁ ସର୍ପବତ୍ ବର୍ଣ୍ଣନା କରାଯାଇଛି।

ଜେନ୍ଦାବେସ୍ତାରେ ଈଶ୍ୱରଙ୍କ ମୁଖ୍ୟନାମ ଭାବରେ "ଆହୁରମଜଦା" ଶବ୍ଦ ଉଲ୍ଲେଖ ଅଛି। ଯାହା ବେଦର "ଅସୁରମେଧା" ଶବ୍ଦର ଅର୍ଥର ମଧ୍ୟ ସମାନତା ରକ୍ଷା କରେ। ଏପରିକି ବୈଦିକ ଅଗ୍ନିପୂଜା ବା ଯଜ୍ଞକୁ ପାରସୀ ଧର୍ମରେ ଈଶ୍ୱର ବା ତାଙ୍କ ଶକ୍ତିର ସର୍ବୋଚ୍ଚ ପ୍ରାଦୁର୍ଭାବ ବା ପ୍ରକାଶ ଭାବରେ ପୂଜା କରାଯାଏ। ଏଣୁ ଅଗ୍ନିକୁ ସେମାନେ ଆହୁର ମଜଦାଙ୍କ ଚିହ୍ନ, ଯେ ତାଙ୍କ ପ୍ରଜ୍ଜ୍ୱଳିତ ଶିଖାରେ ପ୍ରକଟ କରନ୍ତି ବୋଲି କହୁଥାନ୍ତି। ସେହି ଅଗ୍ନିରୂପୀ ପରମେଶ୍ୱରଙ୍କ ଦର୍ଶନ ମୋଶା ଏକ ବୁଦା ମଧ୍ୟରେ କରିଥିଲେ। ସେ ଦେଖିଲେ ବୁଦା ଅଗ୍ନିରେ ପ୍ରଜ୍ଜ୍ୱଳିତ ହେଉଅଛି, ତଥାପି ନଷ୍ଟ ହେଉନାହିଁ। [ଯାତ୍ରା ପୁସ୍ତକ ୩।୨—୩] ମୋଶା ସାକ୍ଷ୍ୟ ଦିଅନ୍ତି ଯେ ସେତେବେଳେ ସୀନୟ ପର୍ବତ ଧୂମମୟ ଥିଲା, କାରଣ ସଦାପ୍ରଭୁ ଅଗ୍ନି ବାହନରେ ତହିଁ ଉପରେ ଅବତରଣ କଲେ; ଚୁଲିର ଧୂଆଁ ପରି ତହିଁରୁ ଧୂମ ଉଠିଲା। [୧୯-୧୮] ତହିଁରେ ଇସ୍ରାଏଲ ସନ୍ତାନଗଣଙ୍କ ଦୃଷ୍ଟିରେ ପର୍ବତ ଶୃଙ୍ଗରେ ଗ୍ରାସକାରୀ ଅଗ୍ନି ତୁଲ୍ୟ ସଦାପ୍ରଭୁଙ୍କର ପ୍ରତାପ ପ୍ରକାଶିତ ହେଲା। [୨୪-୧୭] ମୋଶାଙ୍କ ଲିଖିତ ପଞ୍ଚମ ପୁସ୍ତକ ବା ଦ୍ୱିତୀୟ ବିବରଣ [୪।୨୪] ରେ ସେହି ଯଜ୍ଞରୂପୀ ପରମେଶ୍ୱରଙ୍କ ସମ୍ପର୍କରେ ସେ କହନ୍ତି ସଦାପ୍ରଭୁ ତୁମ୍ଭ ପରମେଶ୍ୱର ଗ୍ରାସକାରୀ ଅଗ୍ନି, ସ୍ୱ ଗୌରବ ବିଷୟରେ ଉଦ୍‌ଯୋଗୀ ପରମେଶ୍ୱର ଅଟନ୍ତି।

ବାଇବେଲର ମାଥିଉ ଲିଖିତ ସୁସମାଚାର [୩ । ୧୧] ରେ ଅଛି ସାଧୁ ଯୋହନ ଜଳ ଦ୍ୱାରା ଲୋକଙ୍କୁ ସଂସ୍କାର ବା ସ୍ନାନ କରାଉଥିଲେ ବା ଡୁବନ ଦେଉ-ଥିଲେ ଏବଂ କହୁଥିଲେ—ମୁଁ ସିନା ତୁମ୍ଭମାନଙ୍କୁ ମନ ପରିବର୍ତ୍ତନ ନିମନ୍ତେ ଜଳରେ ବାପ୍ତିସ୍ମ [ଡୁବନ] ଦେଉଅଛି, ମାତ୍ର ମୋ ପଛରେ ଯେ ଆସୁଛନ୍ତି, ସେ ମୋଠାରୁ ଅଧିକ ଶକ୍ତିମାନ, ତାହାଙ୍କ ପାଦୁକା ବହନ କରିବାକୁ ମୁଁ ଯୋଗ୍ୟ ନୁହେଁ, ସେ ତୁମ୍ଭ-ମାନଙ୍କୁ ପବିତ୍ର ଆତ୍ମା ଓ ଅଗ୍ନିରେ ବାପ୍ତିସ୍ମ ଦେବେ । ଆର୍ଯ୍ୟଙ୍କ ଏହି ଅଗ୍ନି ସଂସ୍କାର ବା ଯଜ୍ଞ ସଂସ୍କାର ଇହୁଦୀ ଓ ଖ୍ରୀଷ୍ଟଧର୍ମକୁ ପାରସୀଧର୍ମ ମାଧ୍ୟମରେ ପହଞ୍ଚିଥିଲା ।

ସବୁଠାରୁ ଆଶ୍ଚର୍ଯ୍ୟ ବିଷୟ ହେଲା, ସଂସ୍କୃତ ଓ ଜେନ୍ଦର ଭାଷାଗତ ଐକ୍ୟ । ଏ ଦୁଇଟି ଭାଷା ମଧ୍ୟରେ ଖୁବ୍ ଘନିଷ୍ଠ ସମ୍ପର୍କ ବିଦ୍ୟମାନ । ଡା: ହଗ୍ "ଜେନ୍ଦ" ଶବ୍ଦକୁ "ଜନ" ଧାତୁରୁ "ଜ୍ଞା" ବା ଜାଣିବା ଅର୍ଥରେ ବେଦପର ଅର୍ଥ କରନ୍ତି । ସଂସ୍କୃତର ଛନ୍ଦ ରୂପାନ୍ତରିତ ହୋଇ "ଜେନ୍ଦ" ହୋଇଯାଇଛି । ଯା ଅର୍ଥ ପଦ୍ୟାତ୍ମକ ଭାଷା ବା ଐଶ୍ୱରୀୟ ଜ୍ଞାନ ଅଟେ । "ଗୀତା" ଓ "ଗାଥା" ମଧ୍ୟରେ ପାର୍ଥକ୍ୟଟା ଖୁବ୍ କମ୍ । ଜେନ୍ଦାବସ୍ତା ପଢ଼ିବା ସମୟରେ ମନେହୁଏ ସତେ ଯେପରି ଆମେ ଉପନିଷଦ ଆବୃତ୍ତି କରୁଛୁ । ବୈଦିକ ସଂସ୍କୃତ, "ବିଶ୍ୱ ଦୁରକ୍ଷେ ଜ-ନ୍ଦ୍ୱିତ" ଜେନ୍ଦ ଭାଷାରେ "ବିଷ୍ପଦ୍ରୁକ୍ଷ ଜନୈତି" ହୋଇଯାଏ । ବୈଦିକ ସାହିତ୍ୟ କି ପ୍ରକାର ଭାବରେ "ଜେନ୍ଦାବସ୍ତା" କୁ ପ୍ରଭାବିତ କରିଛି ତା'ର ଆଉ ଏକ ଉଦାହରଣ ଦେଖନ୍ତୁ—

ବେଦରେ ଅଛି—

"ତମ୍ ଅମବନ୍ତଂ ଯଜତମ୍ ଶୁରଂ ଧାମସୁ ଶବିଷ୍ଟମ୍ । ମିତ୍ରଂ ଯଜୈହୋତ୍ରାଭ୍ୟଃ ।"

ଜେନ୍ଦାବସ୍ତାରେ ଅଛି—

"ତମ୍ ଅମବନ୍ତ ଏମ୍ସ୍ୱରମ୍ ଦାମୋହୁ ।" ଶବିସ୍ତମ୍ । ମିତ୍ରମ୍ ଯନେ କୋଥ୍ରାଭେ୍ୟା ।"

ଜେନ୍ଦାବସ୍ତାର ଅନେକ ସ୍ଥଳରେ 'ଆର୍ଯ୍ୟ' ଶବ୍ଦ ଦେଖି ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ଏପ୍ରକାର ବେଦ ଓ ଜେନ୍ଦାବସ୍ତାର ଅଜସ୍ର ଉଦାହରଣ ଅବତାରଣା କରା-ଯାଇପାରେ । ଜେନ୍ଦାବସ୍ତାର ବିଜ୍ଞ ଅନୁବାଦକ, ପାଦ୍ରୀ ଏଲ୍.ଏଚ୍. ମିଲ୍ସ ଜେନ୍ଦାବସ୍ତାର ତୃତୀୟ ଭାଗର ଭୂମିକା ପ୍ରସ୍ତୁତ କରିବାକୁ ଯାଇ ଲେଖନ୍ତି—ମୁଁ ମଧ୍ୟ ଗାଥାଗୁଡ଼ିକ [ଜେନ୍ଦାବସ୍ତାର ପ୍ରାଚୀନ ଭାଗର ନାମ] ର ଭାଷାର ବହୁଭାଗ ବୈଦିକ ସଂସ୍କୃତରେ ପରିବର୍ତ୍ତନ କରିଛି । ବସ୍ତୁତଃ ଏହା ଏକ ସାର୍ବଭୌମିକ ପ୍ରଥା ଯେ ଏ ଗାଥା ଓ

ଋଗ୍ବେଦ ମଧ୍ଯ ଏପରି ସମାନତା ରକ୍ଷା କରୁଛନ୍ତି ଯେ ସମସ୍ତ ଶବ୍ଦର ତୁଳନା ବୈଦିକ ଭାଷା ସହ ମଧ୍ଯ କରାଯାଇପାରେ ।

ଏସିଏଟିକ୍ ସୋସାଇଟିର ପ୍ରବର୍ତ୍ତକ ସାର୍ ଉଇଲିୟମ୍ ଜୋନ୍ସ "ଏସିଏଟିକ୍ ରିସାର୍ଚ୍ଚେସ୍" [୧୧-୩] ରେ ଉଲ୍ଲେଖ କରନ୍ତି—ଯେବେ ମୁଁ ଜନ୍ଦାବସ୍ତାର ଶବ୍ଦ-କୋଷ ଅଧ୍ଯୟନ କଲି, ଦେଖିଲି ଦଶଟି ଶବ୍ଦରୁ ଛ ସାତଟି ଶବ୍ଦ ଶୁଦ୍ଧ ସଂସ୍କୃତ ଅଟେ । ଅକଥନୀୟ ଆଶ୍ଚର୍ଯ୍ୟ ହେଲି ଯେ ଏହାର କେତେ ବାକ୍ଯ ମଧ୍ଯ ସଂସ୍କୃତ ବ୍ୟାକରଣର ନିୟମାନୁସାରେ ତିଆରି ହୋଇଛି, ଯେପରି "ଯୁଷ୍ମଦ୍"ର ଷଷ୍ଠୀବହୁବଚନ "ଯୁଷ୍ମାକମ୍" । ଅନ୍ୟ ଏକ ସ୍ଥାନରେ ସେ ଏହା ପୂର୍ଣ୍ଣତଃ ସମର୍ଥନ କରନ୍ତି ଯେ ଅତି କମ୍‌ରେ ଜନ୍ଦ ଭାଷା ସଂସ୍କୃତର ଏକ ଶାଖା ଥିଲା । ଏହା ସହିତ ଏହାର ଏତେ ନିକଟତମ ଥିଲା, ଯେତିକି ପ୍ରାକୃତ ବା ଅନ୍ୟ ପ୍ରଚଳିତ ଭାରତୀୟ ଭାଷା ।

ଏଠି ପ୍ରଶ୍ନ ଉଠିପାରେ ବୈଦିକ ସାହିତ୍ୟ ଦ୍ୱାରା ଜନ୍ଦାବସ୍ତା ପ୍ରଭାବିତ ନ ହୋଇ, ବୈଦିକ ସାହିତ୍ୟ ଜନ୍ଦାବସ୍ତା ଦ୍ୱାରା ପ୍ରଭାବିତ ହୋଇଥାଇପାରେ । ମାତ୍ର ୩୫୦୯ ବର୍ଷ ପ୍ରାଚୀନ ଜନ୍ଦାବସ୍ତା ତା'ଠାରୁ ସହସ୍ର ପ୍ରାଚୀନ ବେଦକୁ କିପରି ପ୍ରଭାବିତ କରି ପାରିବ ? ମେକସମୁଲର କୁହନ୍ତି ବିଶ୍ୱ ଗ୍ରନ୍ଥାଗାରରେ ବେଦ ସର୍ବ-ପ୍ରାଚୀନ ଗ୍ରନ୍ଥ ଅଟେ । "ବେଦର କାଳ ନିରୂପଣ ପାଇଁ କିଛି ପୂର୍ବାପର ଐତିହାସିକ ସାମଗ୍ରୀ" ଶୀର୍ଷକ ପ୍ରବନ୍ଧରେ ଏହାର ପ୍ରାଚୀନତା ପରେ ବିଶଦ ଆଲୋଚନା କରିବା ପରେ ମଧ୍ଯ ଏଠି ସେସବୁ ଉଦ୍ଧାର କରିବା ପୁନୋରୁକ୍ତ ହୋଇଯିବ । ତେବେ ଏତିକି ଏଠି କୁହାଯାଇପାରେ ଯେ ପ୍ରାଚ୍ୟ ପଣ୍ଡିତମାନଙ୍କ ପାଇଁ ବେଦ ଅପୌରୁଷେୟ ହୋଇପାରେ ମାତ୍ର ପାଶ୍ଚାତ୍ୟ ଗବେଷକଗଣ ବେଦର ଆନୁମାନିକ କାଳ ୬୦୦୦ ବର୍ଷ ପୂର୍ବ ବୋଲି ନିର୍ଦ୍ଧାରିତ କରିଛନ୍ତି ।

ଧର୍ମଶାସ୍ତ୍ରଗୁଡ଼ିକରୁ ଇତିହାସ ସହ ବିଶ୍ୱସଭ୍ୟତାର ବିକାଶ ଲକ୍ଷ୍ୟକଲେ ଆମେ ଦେଖୁ ଯେ ମୁସଲମାନ ଧର୍ମ, ଖ୍ରୀଷ୍ଟିୟାନ ଧର୍ମ, ଇହୁଦୀ ଧର୍ମ, ଓ ପାରସୀ ଧର୍ମ ବୈଦିକ ଧର୍ମ ଦ୍ୱାରା ପ୍ରଭାବିତ । ପ୍ରସିଦ୍ଧ ପୁରାତତ୍ତ୍ୱବିଦ୍ ଡକ୍ଟ୍ର ଏଚ୍ ସିଦ୍ଦିକ୍ଵୀ "ଆରବ ଦେଶରେ ଭାରତୀୟ ସଂସ୍କୃତି" ନାମକ ପ୍ରବନ୍ଧ [କାଦମ୍ବିନୀ ଜୁନ ୬୨] ରେ ଲେଖନ୍ତି ଲୋକଙ୍କ ବିଶ୍ୱାସ ଯେ ପବିତ୍ର ଗ୍ରନ୍ଥ କୁରାନ କେବଳ ଆରବୀ ଭାଷାରେ ଲେଖାଯାଇଛି । ବସ୍ତୁତଃ ଏଥିରେ ଫାରସୀ, ସିରିୟାଇ, ପ୍ରାଚୀନ ମିଶ୍ରର ଖ୍ରୀଷ୍ଟିୟାନଙ୍କ ଭାଷା କାପ୍ଟୀ ଏବଂ ଅନ୍ୟ ଭାଷାର ଶବ୍ଦ ସହ ସଂସ୍କୃତ ଶବ୍ଦର ମଧ୍ଯ ପ୍ରୟୋଗ ହୋଇଛି । ସୁଲେମାନ ନଦବୀଙ୍କ ଅନୁସାରେ ସଂସ୍କୃତ ଓ ହିନ୍ଦୀ ଭାଷାର ଅତ୍ୟନ୍ତ ଏପରି ଗୁଡ଼ିଏ ଶବ୍ଦ ରହିଛି,

ଯାହା କୋରାନରେ ବାରମ୍ୱାର ପ୍ରୟୋଗ କରାଯାଇଛି; ଯେପରି ଅମ୍ବର, ମୁଷ୍କ କୈଁଜା-ବାଲ (ଅଦା) ଓ କାପୁର ।

କେତେକ ବିଦ୍ୱାନଙ୍କ ମତରେ କୁରାନରେ ବୁଦ୍ଧ ଶବ୍ଦର ମଧ୍ୟ ପ୍ରୟୋଗ ରହିଛି । ଫିଲକଫ (କପିଲ) ଶବ୍ଦର ଅର୍ଥ କପିଳବାସ୍ତୁ ଅଟେ । ବାଗଦାଦ ନାମ ମଧ୍ୟ ମୂଳତଃ ଭାରତୀୟ ମନେ ହୁଏ । ସଂସ୍କୃତରେ "ଭଗ" ଶବ୍ଦର ଅର୍ଥ "ଈଶ୍ୱର", ଏବଂ "ଦା" ଶବ୍ଦର ଅର୍ଥ ଦେବା ବା ଦାନକରିବା । ଭଗଦାଦ ଅର୍ଥ ଈଶ୍ୱରଙ୍କ ଉପହାର । ଏହି ବାଗଦାଦ ସହରର ନିର୍ମାଣ ୭୬୧-୭୬୩ ଖ୍ରୀଷ୍ଟାବ୍ଦରେ ଭାରତୀୟ ଯନ୍ତ୍ରୀମାନଙ୍କ ଦ୍ୱାରା ହୋଇଥିଲା ବୋଲି ସିଦ୍ଦିକ ମହାଶୟ ମତ ଦିଅନ୍ତି ଓ କୁହନ୍ତି ମୁସଲମାନମାନେ ଏହା ମାନନ୍ତି ଯେ ଆଦମ ପ୍ରଥମ ପୈଗମ୍ବର ଥିଲେ ଯେ ସ୍ୱର୍ଗରୁ ଭାରତୀୟ ମାଟିକୁ ଅବତରଣ କରିଥିଲେ ଏବଂ ସେ ସଂସାରକୁ ପ୍ରଥମେ ଆଲ୍ଲାହଙ୍କ ପ୍ରଥମ ପୈଗମ୍ବ ଶୁଣାଇଥିଲେ । ମୁସଲମ ମାନ୍ୟତା ଅନୁସାରେ ତାଙ୍କ ଜ୍ୟେଷ୍ଠପୁତ୍ରଙ୍କୁ ଅଯୋଧ୍ୟାରେ କବର ଦିଆଯାଇ-ଥିଲା । ସୁଫି ମସ୍ତରଙ୍କ ଅମର ସନ୍ଦେଶ "ଅନଅଲହକ" ଉପନିଷଦର "ସୋହଂମ" ଠାରୁ ହିଁ ନିଆ ହୋଇଛି ।

ତଦ୍ରୂପ ଐତିହାସିକ ଓକ୍ "ଭେଟିକାନ ସିଟିରେ ଶିବଲିଙ୍ଗ" ପ୍ରବନ୍ଧରେ ସପ୍ରମାଣ ଏହା ସାବ୍ୟସ୍ତ କରନ୍ତି ଯେ ଭେଟିକାନ୍ ହିନ୍ଦୁଧର୍ମର ପୀଠ ଥିଲା । "ବାଟିକା ଶବ୍ଦ କୁଞ୍ଜ, ନିକୁଞ୍ଜ, ଲତାମଣ୍ଡପ ଆଦିର ଦ୍ୟୋତକ । ଯଥା—ଆଶ୍ରମ ବାଟିକା, ଉଦ୍ୟାନ ବାଟିକା ଇତ୍ୟାଦି । ଅନ୍ତିମ ଅକ୍ଷର "ନ" ମଧ୍ୟ ସଂସ୍କୃତ ଅଟେ । ଯଥା—କେଶବନ୍, ରାଘବନ୍, ବାଟିକାନ୍ ବା ଆଶ୍ରମ ଆଦି । "ଫାଦର" ଦ୍ୟୋତକ "ପୋପ" ଶବ୍ଦ ମଧ୍ୟ ସଂରକ୍ଷଣ ଅର୍ଥରେ ସଂସ୍କୃତ "ପା" ଧାତୁରୁ ଆସିଛି । ନିଜ ସନ୍ତାନଗଣଙ୍କୁ ସଂରକ୍ଷଣ କରୁଥିବା ପିତା ସଦୃଶ "ପୋପ" ଖ୍ରୀଷ୍ଟଧର୍ମ ସଂଘ ଓ ସମ୍ପ୍ରଦାୟର ଆଧ୍ୟାତ୍ମିକ ପିତା ଅଟନ୍ତି ।

ଭେଟିକାନ୍‌ର ଏଟ୍ରୁସ୍କନ ସଂଗ୍ରହାଳୟରେ ସଂଗୃହୀତ ଏକ ଶିବଲିଙ୍ଗ ଦେଖି ଆମ ବିଶ୍ୱାସ ଦୃଢ଼ୀଭୂତ ହୋଇଯାଏ ଯେ ସେଠି ଶୈବ ଧର୍ମର ପ୍ରଚାର ହୋଇ-ଥିଲା । ଏନସାଇକ୍ଲୋପିଡ଼ିଆ ବ୍ରିଟାନିକାର ଅଷ୍ଟମ ଖଣ୍ଡ ୭୯୦ ପୃଷ୍ଠାରୁ ଆମେ ଜାଣି-ବାକୁ ପାଉଁ ଯେ—ଲିଭୀଙ୍କ ଅନୁସାରେ କୌଣସି ମଧ୍ୟ ଗୋଷ୍ଠୀ ଅପେକ୍ଷା ଏଟ୍ରୁସ୍କନର ଲୋକେ ଧାର୍ମିକ ପରମ୍ପରାରେ ଅଧିକ ଲିପ୍ତ ରହୁଥିଲେ ।...... ସ୍ଥାନ, ବୃକ୍ଷ ଓ ପ୍ରସ୍ତର ଗୁଡ଼ିକର ସମ୍ଭବତଃ ବୈୟକ୍ତିକ ଆତ୍ମା ଥିଲା ଓ ଉତ୍କୃଷ୍ଟ ଚୌକି ପରେ ସ୍ଥିତ ଅନେକ ପାବନ କ୍ଷଣପ୍ରଭ ପ୍ରସ୍ତର ମଧ୍ୟ ପ୍ରାପ୍ତ ହୋଇଛି । ଯାହାର ଆକାର ପ୍ରକାର ଠିକ୍

ଶିବଲିଙ୍ଗ ପଶ । ସେହି ଖଣ୍ଡର ୭୮୪ ପୃଷ୍ଠାରେ ଉଲ୍ଲେଖ କରାଯାଇଛି ଏଟ୍ରୁସ୍କନ ଲୋକେ ଦେବତା ଦ୍ୱୈତକ "ଇଶ" ଶବ୍ଦ ଏକବଚନ ଓ "ଇଶ୍ୱର ଶବ୍ଦ ବହୁବଚନ ଭାବରେ ବ୍ୟବହାର କରିଥିଲେ । ଯାହା ସଂସ୍କୃତ ସଙ୍ଗେ ସମ୍ବନ୍ଧ ରକ୍ଷା କରେ । ବଳି-ଦାନ ଅର୍ଥରେ "ଅଲ୍ପନ" ଓ ପତ୍ନୀ ଅର୍ଥରେ "ପ୍ରିସ୍ଥା" ଶବ୍ଦ ଅର୍ପଣ ଓ ପ୍ରିସ୍ଥା ଶବ୍ଦର ଅପଭ୍ରଂଶ ନୁହେଁ ତ ?

ସନ୍ଦେହ ହୁଏ, ଆଦିପୁରୁଷ ଆଦମ ମାନବ ଜାତିର ଉତ୍ପନ୍ନକର୍ତ୍ତା ବ୍ରହ୍ମା ନୁହଁନ୍ତି ତ ? ଇହୁଦୀ ନାମ "ଆବ୍ରହ୍ମ"ରୁ ଆସି ନାହିଁ ତ, ଯାହା ବ୍ରହ୍ମାଙ୍କର ଏକ ଉପାଧି ? ବ୍ରହ୍ମା ସୃଷ୍ଟି ପ୍ରାରମ୍ଭରେ ସମସ୍ତ ପଦାର୍ଥ ଓ ଜୀବଙ୍କର ନାମକରଣ ସଂସ୍କାର କରିଥିଲେ । [ମନୁ ୧।୨୧] ଇହୁଦୀ ପରମ୍ପରାରେ ଆଦମ୍ ମଧ୍ୟ ସେହିପରି କରିଛନ୍ତି । ତଦ୍ରୂପ "ଇଡ଼ା" ଆଲ୍ଲାହ ଶବ୍ଦର ମୂଳ ଶବ୍ଦ ନୁହେଁ ତ ? ଗ୍ରୀକ୍‌ଙ୍କ ହବରେ ତର୍ପଣ, ସେମାନଙ୍କ ୧୮ ଫେବୃୟାରୀରେ ପରିବାରରୁ ଚଲି ଯାଇଥିବା ବ୍ୟକ୍ତିର ପୂଜା, ଖ୍ରୀଷ୍ଟିୟାନମାନଙ୍କର "ଅଲ୍ ସୋଲସ୍ ଡେ" ହିନ୍ଦୁ ଧର୍ମର ପ୍ରାଚୀନ କାଳରୁ ଚଳି ଆସୁଥିବା ଶ୍ରାଦ୍ଧ ପଦ୍ଧତି ନୁହେଁ ତ ?

କୁରାନ୍‌ର "ଲାଇଲାହ ଇଲ୍ଲାହ ମହମ୍ମଦ ରସୁଲିଲ୍ଲାହ", ସର୍ବଂଖଲ୍ୱିଦଂ ବ୍ରହ୍ମ ନେହ ନାନାସ୍ତି କିଞ୍ଚନ"ର ପଦାନ୍ତିକ ଅନୁବାଦ ନୁହେଁ ତ ? ଯାର ଅର୍ଥ— କେବଳ ଏକ ଈଶ୍ୱର ଅଛନ୍ତି ଆଉ କେହି ନାହିଁ । ମୌଲବୀମାନେ ଯଦି କୁହନ୍ତି ଯେ ଏ ତତ୍ତ୍ୱ ସେମାନେ ହିନ୍ଦୁମାନଙ୍କ ପାଖରୁ ନେଇ ନାହାନ୍ତି, ତେବେ ଜରଦସ୍ତିଙ୍କ "ନେସ୍ତେଜ ଦ ମଗରସୁଜଦା"ରୁ ନେଇଛନ୍ତି ବୋଲି କୁହାଯିବ । କେବଳ ନବେ ଅଧ୍ୟାୟ ଗୁଡ଼ିଦେଲେ କୋରାନ୍‌ର ଶେଷ ସମସ୍ତ ଅଧ୍ୟାୟ ବିସ୍ମିଲ୍ଲାହ ଅର୍ରହ୍ମ ମାନେ ରହିମ୍" ଶବ୍ଦ ଦ୍ୱାରା ଆରମ୍ଭ ହୁଏ । ଏହା ଜରଥୁସ୍ତିଙ୍କର ଏକ ସୂତ୍ରର ସାଧାରଣ ରୂପାନ୍ତର ଅଟେ ଯାହା ସେମାନେ ତାଙ୍କ ପୁସ୍ତକ ଆଗରେ ଲେଖନ୍ତି :—ସାଥନାମ ସୁଜଦାଂ ବକ୍ଷାଶିଷଗର ଦାଦାର ।"

କୁରାନ୍ ଶରୀଫ ପାରା ୨୦ ସୂରେ ଅନକବୁତ୍ ଆୟତ ୮ରେ ଲେଖା ଅଛି ଯେ:—"ଆଲ୍ଲାହଙ୍କ ନାମରେ ଯେ ଦୟାମୟ କରୁଣା ସାଗର ଅଟନ୍ତି । ଅଲଫ, ଲାମ, ମିମ୍" ମୌଲବୀ, ଶେଖ, ମନସୁର ଏହାର ଭାଷ୍ୟରେ ଲେଖନ୍ତି ଯେ ଅଧିକାଂଶ ଟିକାକାରମାନଙ୍କ ମତରେ ଏହି ସାଙ୍କେତିକ ବର୍ଣ୍ଣମାନଙ୍କର ପ୍ରକୃତ ଅର୍ଥ ପରମେଶ୍ୱର ଓ ପ୍ରେରିତ ପୁରୁଷଙ୍କ ଛଡ଼ା ଆଉ କେହି ଜାଣନ୍ତି ନାହିଁ । ହଜରତ ଇବ୍‌ନୋ ଆବାସ୍ ଆଦି କେତେକ ଟିକାକାରଙ୍କ ମତ ଅନୁଯାୟୀ ଏହି ବର୍ଣ୍ଣମାନଙ୍କର ସମ୍ପୂର୍ଣ୍ଣ ଶ୍ଳୋକ "ଅନା ଅଲ୍ଲାହୋ ଆଲେମୋ "ବା ଆମ୍ଭେ ପରମେଶ୍ୱର ସର୍ବଜ୍ଞ

ଅଟୁଁ ଅଟେ । ଅରବୀ ବ୍ୟାକରଣ ଅନୁସାରେ "ବାଉ" ଅକ୍ଷର "ଲମ"ର ସ୍ଥାନ ଗ୍ରହଣ କରନ୍ତି । ଏହା ଯଦି ଠିକ୍ ତେବେ ଅଲଫ + ବାଉ + ମୀମ ମିଶି ଓମ୍ ଶବ୍ଦର ଉତ୍ପତ୍ତି ହୋଇଯାଏ, ଯାହା ପରମେଶ୍ୱରଙ୍କର ମୁଖ୍ୟନାମ ଅଟେ ? ଏବଂ ଅ + ଉ + ମର ମିଶ୍ରିତ ଏକ ଶବ୍ଦ ଅଟେ । ହିନ୍ଦୁ ଓମ୍ ଶବ୍ଦଟି ଯେ ବାଇବେଲରେ "ଆମେନ୍" ଓ କୋରାନ୍‌ର "ଅଲଫ, ଲମ, ମୀମ" ନୁହେଁ ତାହା କିପରି କୁହାଯାଇ ପାରିବ ?

ହେବ୍ରୁ, ଲାଟିନ୍ ଓ ଗ୍ରୀକ୍‌ପରି ବିଶ୍ୱର ବିଭିନ୍ନ ଭାଷାରେ ପ୍ରକାଶିତ ବାଇବେଲରେ "ଆମେନ୍" ଅପରିବର୍ତ୍ତନୀୟ । ପୁରାତନ ନିୟମର ଦ୍ୱିତୀୟ ବିବରଣ [୨୭, ୧୫-୨୬] ରେ ବାରଥର ଆମେନ ଶବ୍ଦ ତଥାସ୍ତୁ ବା ଏମନ୍ତ ହେଉ ଅର୍ଥରେ ଉଲ୍ଲେଖ ହୋଇଛି । ପୁନଶ୍ଚ ଯିରିମିୟ [୨୮-୬]ରେ ମଧ୍ୟ ସେହି ଅର୍ଥରେ ତାହା କୁହାଯାଇଛି । ଏହାସତ୍ତ୍ୱେ ଖ୍ରୀଷ୍ଟିୟାନମାନେ ପ୍ରାର୍ଥନା ଶେଷରେ "ତାହା ହିଁ ହେଉ" ବା "ତଥାସ୍ତୁ" ନ କହି "ଆମେନ୍" କାହିଁକି କହୁଛନ୍ତି ? କହିବାର ଏକ ଗମ୍ଭୀର ତାତ୍ପର୍ଯ୍ୟ ରହିଛି । କାରଣ ଆମେନ୍ ଶବ୍ଦ ଓମ୍ ଶବ୍ଦର ହେବ୍ରୁ ରୂପ ଅଟେ । ପିତା, ପୁତ୍ର ଓ ପବିତ୍ର ଆତ୍ମା ଯଦି ତ୍ରିବିଧ ଈଶ୍ୱର ଅଟନ୍ତି, ତେବେ ଆମେନ୍ ଅର୍ଥ ପରମେଶ୍ୱର ବା ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କୁ ହିଁ ବୁଝାଏ । ପ୍ରକାଶିତ ବାକ୍ୟର ତୃତୀୟ ପର୍ବ ଚଉଦ ପଦରେ ଲେଖାଅଛି, ସେ ଆମେନ୍, ଯେ ବିଶ୍ୱସ୍ତ ଓ ସତ୍ୟସାକ୍ଷୀ, ଯେ ଈଶ୍ୱରଙ୍କ ସୃଷ୍ଟିର ଆଦିକର୍ତ୍ତା ।" ହିନ୍ଦୁମାନେ ପ୍ରାର୍ଥନା ଶେଷରେ ଓଁ ଶାନ୍ତି ଶାନ୍ତି ଶାନ୍ତି କହିବା ପରି ଆମେନ୍ ଶବ୍ଦ ପ୍ରାର୍ଥନା ଶେଷରେ ଉଚ୍ଚାରଣ କରାଯାଇ ଥାଏ । ଏପରିକି ଇଜିପ୍ଟର ପୁରାଣରେ ସୃଷ୍ଟି ଓ ଜୀବନର ଦେବତା ଭାବରେ ମଧ୍ୟ ଓମ୍ ବା ଆମେନ୍ ଐଶ୍ୱର୍ଯ୍ୟ ନାମର ଶୃଙ୍ଖଳାରକ୍ଷା କରନ୍ତି ।

ଏତିକି ପର୍ଯ୍ୟାପ୍ତ ନୁହେଁ । ଉଦାହରଣ ଅନେକ ଅଛି । ଯାହାଦ୍ୱାରା ଏହା ପ୍ରମାଣିତ ହୋଇଯାଏ ଯେ ଆଦି ମାନବ ଗୋଟିଏ ଈଶ୍ୱର, ଗୋଟିଏ ଧର୍ମ ଓ ଗୋଟିଏ ସଂସ୍କୃତି ପରେ ଆସ୍ଥା ରଖିଥିଲା । ଆଦି ପୁସ୍ତକ [୧୧-୧]ରେ ମହାତ୍ମା ମୋଶା ମଧ୍ୟ ଏ କଥା ସ୍ୱୀକାର କରିଛନ୍ତି ଯେ—"ପୂର୍ବେ ସମୁଦାୟ ପୃଥିବୀରେ ଏକଭାଷା ଓ ଏକରୂପ ଉଚ୍ଚାରଣ ଥିଲା ।" ମାତ୍ର ମୂଳଧର୍ମ ଓ ଭାଷାଠାରୁ ବିଚ୍ଛିନ୍ନ ହୋଇଯିବା ଫଳରେ ଅନେକ ଧର୍ମ ଓ ଭାଷାର ସୃଷ୍ଟି ହେଲା । ଶେଷରେ ଆମେ ଏପରି ଏକ ସ୍ଥିତିରେ ପହଞ୍ଚିଲୁ, ଯେଉଁ ସ୍ଥିତିରେ ପରସ୍ପର ସହ ପରିଚୟ ଓ ସମ୍ପର୍କ ହେବା ସତ୍ତ୍ୱେ ଆମେ ନିଜକୁ ନିଜ ଧର୍ମକୁ, ସ୍ୱତନ୍ତ୍ର ଓ ଶ୍ରେଷ୍ଠ ମନେକରି ସବୁଧର୍ମର ଆଦିସ୍ରୋତକୁ ଭୁଲିଗଲୁ ।



# ବେଦର କାଳ ନିରୂପଣ ପାଇଁ କିଛି ପୂର୍ବାପର ଐତିହାସିକ ସାମଗ୍ରୀ

ବିଜ୍ଞାନର ବହୁଳ ପ୍ରସାର ଓ ପ୍ରଚାର ଫଳରେ ଅନେକ ପୁରାତନ ଅନ୍ଧବିଶ୍ୱାସ ଦୂର ହେବା ସଙ୍ଗେ ସଙ୍ଗେ ବିଶ୍ୱମଣ୍ଡଳ ସମ୍ପର୍କରେ ଆମର ଧାରଣା ବଦଳିଛି । ପୂର୍ବପରି ସବୁକଥାକୁ ସ୍ୱୀକାର କରିନେବାର ଦାୟିତ୍ୱ ଆଉ ନାହିଁ । ପ୍ରତ୍ୟେକ ସାଧାରଣ କଥାକୁ ମଧ୍ୟ ପରୀକ୍ଷା ନିରୀକ୍ଷା କରି ସତ୍ୟତା ପ୍ରତିପାଦନ କରିବାରେ ଆମେ ସ୍ୱତନ୍ତ୍ର ଓ ସ୍ୱାଧୀନ । ଏ ପରିପ୍ରେକ୍ଷୀରେ ବେଦର କାଳ ନିରୂପଣ ଉପରେ ଆମ ଗବେଷକଗଣ କେତେଦୂର ସକ୍ଷମ ଓ ଅକ୍ଷମ ହୋଇଛନ୍ତି ତାହା ବିଚାରଯୋଗ୍ୟ ।

ଯୁଗ ଯୁଗରୁ ଆମେ ପାରମ୍ପରିକ ଭାବେ ଶୁଣିଆସିଛୁ ଯେ ବେଦ ସୃଷ୍ଟି ପୂର୍ବରୁ ଅଛି । ଏହା ପରମେଶ୍ୱରଙ୍କ ଦ୍ୱାରା ମନୁଷ୍ୟ ସମାଜ ପ୍ରତି ଉପଦେଶ । ବଂଶାନୁକ୍ରମେ ଆମର ଏ ଧାରଣା ରକ୍ତଗତ ହୋଇସାରିଲାଣି । ତେବେ ଆଜି ସେହି ବିଶ୍ୱାସ ଓ ଅବିଶ୍ୱାସର ଊର୍ଦ୍ଧ୍ୱକୁ ଉଠି ସେ ସବୁ କଥାକୁ ପରୀକ୍ଷା କରିବାକୁ ହେବ । ମନୁଷ୍ୟ ମସ୍ତିଷ୍କର ମହାନ୍ କୃତିକୁ ଉଡ଼ାଇଦେଇ ଏକ ଅଦୃଷ୍ଟ ଈଶ୍ୱରଙ୍କୁ ସେହି ଗୌରବ ଦେବା ଯେପରି କି କାଳିଦାସ ସରସ୍ୱତୀଙ୍କ ବରପୁତ୍ର ବା ସାରଳା ଦାସଙ୍କ ରଚନାରେ ଶାରଳା ମହାଭାରତ ରଚନା କରିବା ପରି ମନେହୁଏ ।

ଏ ପ୍ରକାର ସମର୍ପଣ ଭାବ ଯେ କେବଳ ହିନ୍ଦୁଧର୍ମରେ ପ୍ରଚଳିତ ତା' କହିବା ଉଚିତ ହେବନାହିଁ । ସ୍ୱ ପକ୍ଷ ଓ ମତକୁ ଉତ୍କୃଷ୍ଟ ପ୍ରତିପାଦନ କରିବା ପାଇଁ ପ୍ରତ୍ୟେକ ଧର୍ମ ଯେତେ ଅର୍ବାଚୀନ ହେଉ ନା କାହିଁକି ତାହା ଈଶ୍ୱରକୃତ ବୋଲି ମାନି ନିଆଯାଏ ଏବଂ ଧର୍ମଶାସ୍ତ୍ରର ଭାଷା ଈଶ୍ୱରଙ୍କ କଥିତ ବା ବ୍ୟବହୃତ ଭାଷା ବୋଲି କୁହାଯାଏ । ଯେପରି ଇହୁଦୀମାନେ ତାଙ୍କ ଧର୍ମଗ୍ରନ୍ଥକୁ ଐଶ୍ୱରୀୟ ବାଣୀ ଏବଂ ହିବ୍ରୁ ଭାଷାକୁ ଈଶ୍ୱରଙ୍କ ଭାଷା ମନେ କରନ୍ତି । ତଦ୍ରୂପ ଜୈନମାନେ ଏ କଥା ବିଶ୍ୱାସ କରନ୍ତି ଯେ ତୀର୍ଥଙ୍କରଙ୍କର ଭାଷା କେବଳ ମାଗଧୀ ଥିଲା ।

ସମଗ୍ର ବିଶ୍ୱର ଐତିହାସିକଗଣ ଏ କଥାରେ ଏକମତ ଯେ ୧୪୧୦ ପୂର୍ବରୁ ମହାତ୍ମା ମହମ୍ମଦ ଜନ୍ମ ହୋଇ ନ ଥିଲେ ଏବଂ ତାହା ପୂର୍ବରୁ କୋରାନ ଶରୀଫ ସୃଷ୍ଟି ହୋଇ ନ ଥିଲା । ୧୯୭୭ ବର୍ଷ ପୂର୍ବେ ନୂତନ ନିୟମ ଓ ଖ୍ରୀଷ୍ଟଧର୍ମ ନାମକ

କୌଣସି ଶବ୍ଦ ବିଶ୍ୱ ଭାଷାକୋଷରେ ଆସି ନ ଥିଲା । ତାହା ପୂର୍ବରୁ ଦୁଇଟି ଧର୍ମର ସାମ୍ରାଜ୍ୟ ଅବଶ୍ୟ ବିଶ୍ୱର କେତେକ ଅଂଶରେ ଅସ୍ତିତ୍ୱବାଦର ସୁରକ୍ଷା କରି ଆସିଥିଲା । ତାହା ହେଲା ଇହୁଦୀ ଧର୍ମ ଓ ପାରସିକ ଧର୍ମ । ଇହୁଦୀ ଧର୍ମ ପ୍ରବର୍ତ୍ତକ ପୈଗମ୍ବର ମୋଶା ଆଜକୁ ୩୫୧୦ ବର୍ଷ ପୂର୍ବେ ଜନ୍ମ ହୋଇ ଧର୍ମପ୍ରଚାର କରିଥିଲେ । କେତେକ ଗବେଷକଙ୍କ ମତରେ ପୈଗମ୍ବର ମୋଶାଙ୍କ ସମସାମୟିକ ଥିଲେ ମହାପୁରୁଷ ଜରଥୁଷ୍ଟ୍ର, ଯେ ପାରସି ଧର୍ମର ପ୍ରାଣପ୍ରତିଷ୍ଠା କରିଥିଲେ । ଦୁହେଁ ସାକ୍ଷାତ ହେବା, ଖବର ଆଦାନ ପ୍ରଦାନ କରିବା ଓ ଗୋଟିଏ ସମୟରେ କିଛିକାଳ ଅବସ୍ଥାନ କରିବାର ଐତିହାସିକ ତଥ୍ୟ ପ୍ରାପ୍ତ ହେବା ସତ୍ତ୍ୱେ "ଜେନ୍ଦାବସ୍ତା"ର ସୃଷ୍ଟି ୪୧୧୦ ବର୍ଷ ପୁରାତନ ବୋଲି ପାରସିକ ପଣ୍ଡିତ ମତ ଦିଅନ୍ତି । ସବୁଠାରୁ ଆଶ୍ଚର୍ଯ୍ୟ ବିଷୟ ହେଲା, ସମସ୍ତ ଧର୍ମଗ୍ରନ୍ଥ ଓ ଧର୍ମପ୍ରବର୍ତ୍ତକଙ୍କର ନିର୍ଦ୍ଦିଷ୍ଟ କାଳ ଜାଣିବା ପରେ ସମସ୍ତେ ଦାବୀ କରି ବସନ୍ତି ତାଙ୍କ ଧର୍ମଗ୍ରନ୍ଥ ସ୍ୱୟଂ ପରମେଶ୍ୱରଙ୍କ ଦତ୍ତ ଓ ଏକମାତ୍ର ଶାଶ୍ୱତ ଐଶ୍ୱରୀୟ ଶାସ୍ତ୍ର ।

ଏ ସବୁ ଐତିହାସିକ ତଥ୍ୟ ଆମକୁ ସାବଧାନ କରିଦିଅନ୍ତି ଯେ ବେଦକୁ ମଧ୍ୟ ଈଶ୍ୱର ସୃଷ୍ଟି କହି ଆମେ ସେହି ତ୍ରୁଟିର ପୁନରାବୃତ୍ତି କରୁନାହିଁ ତ ? ଯଦି ବେଦ ଈଶ୍ୱର କୃତ, ତେବେ ସେଥିରେ ଆସୁଥିବା ଐତିହାସିକ ପୁରୁଷଗଣ କିଏ ? ଐତିହାସିକ ଆଖ୍ୟାୟିକା ଓ ଭୌଗୋଳିକ ଅବସ୍ଥାନ କ'ଣ ବେଦର "ଶାଶ୍ୱତ" ପଦବୀକୁ ଖଣ୍ଡନ କରୁନାହାନ୍ତି ? ସେଥିରେ ବର୍ଣ୍ଣିତ ନକ୍ଷତ୍ରର ସ୍ଥିତି ଓ ଭାଷାକୁ ପରୀକ୍ଷା କରି କଣ ଏହାର କାଳ ନିରୂପଣ କରାଯାଇ ପାରିବ ନାହିଁ ? ଯଦି ଏହାର କାଳ ନିରୂପଣ କରାଯିବ ତେବେ ଏହାକୁ ନିତ୍ୟ ଶାଶ୍ୱତ ବୋଲି ମନାଯିବ କିପରି ? ବେଦର ଆୟୁଷ କେତେ, ସେ ଉପରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଗବେଷକ ଓ ପଣ୍ଡିତଗଣ ଯେଉଁ ମତ ଦେଇଛନ୍ତି ସେ ସବୁ ଏ ତତ୍ତ୍ୱର ସହାୟକ ହେବ ବୋଲି ଭାବି ଉଦ୍ଧାର କରୁଛି :—

| ଗବେଷକ | ବେଦର ଅନୁମାନିକ ଖ୍ରୀଷ୍ଟପୂର୍ବ |
|---|---|
| ମେକ୍ସମୂଲର | ୧,୫୦୦ |
| ମେକ୍‌ଡୋନଲ୍‌ଡ୍ | ୨,୦୦୦ |
| ହୌଗ | ୨,୦୦୦ |
| ଉଇଲ୍‌ସନ୍ | ୨,୦୦୦ |
| ଗ୍ରୀଫ୍‌ଥ୍ | ୨,୦ ୦ |

| | |
|---|---|
| ହ୍ୱିଟନୀ | ୨,୦୦୦ |
| ଶଙ୍କର ବାଳକୃଷ୍ଣ ଦୀକ୍ଷିତ | ୩,୦୦୦ |
| ଜୈକୋବୀ | ୪,୦୦୦ |
| ତିଲକ | ୧୦,୦୦୦ |
| ଅବିନାଶ ଚନ୍ଦ୍ର ଦାସ | ୨୦,୦୦୦ |
| ଡ଼. ଏ. ମୁଖୋପାଧ୍ୟାୟ | ୨୫,୦୦୦ |

ଏତଦ୍‌ବ୍ୟତୀତ ଡା. ଦୀନାନାଥ ଶାସ୍ତ୍ରୀ ସ୍ୱ "ବେଦକାଳ ନିର୍ଣ୍ଣୟ" ଗ୍ରନ୍ଥରେ ଜ୍ୟୋତିଷ ପ୍ରମାଣର ଆଧାର ଉପରେ ବେଦର ରଚନାକାଳ ଆଜିଠାରୁ ୩୦୦୦୦୦ ବର୍ଷ ପୂର୍ବ ମାନନ୍ତି । ଅନେକ ପାଶ୍ଚାତ୍ୟ ବିଦ୍ୱାନ୍ ବେଦକୁ ୬,୦୦୦ ବର୍ଷ ପୂର୍ବ ନ ମାନିବାର ଯଥେଷ୍ଟ କାରଣ ରହିଛି । ସେମାନଙ୍କ ମତରେ ଆଦମ୍ ପୃଥିବୀର ପ୍ରଥମ ପୁରୁଷ ଥିଲେ ଯେ ୯୩୦ ବର୍ଷ ଜୀବିତ ଥିଲେ । ତାଙ୍କ ମୃତ୍ୟୁର ୩୦୭୫ ବର୍ଷ ପରେ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ ଜନ୍ମ ହେଲା । ୧୬୫୪ ଖ୍ରୀଷ୍ଟାବ୍ଦରେ ଆୟାରଲଣ୍ଡର ଆର୍ଚ୍ଚବିଶପ୍ ଉଷାର ଦୃଢ଼ତା ସହ ଘୋଷଣା କଲେ ଯେ, ସେ ବାଇବେଲ୍ ଉପରେ ଗବେଷଣା କରି ଏହି ପ୍ରମାଣରେ ଉପନୀତ ହୋଇଛନ୍ତି ଯେ ସୃଷ୍ଟିର ନିର୍ମାଣ ଖ୍ରୀଷ୍ଟଙ୍କ ୪୦୦୪ ବର୍ଷ ପୂର୍ବେ ହୋଇଥିଲା । ସପ୍ତଦଶ, ଶତାବ୍ଦୀର ଶେଷ ଭାଗକୁ ତାଙ୍କର କାଳନିର୍ଣ୍ଣୟ ସମଗ୍ର ୟୁରୋପବାସୀ ସ୍ୱୀକାର କଲେ ।

ଏ ପ୍ରକାର କାଳଗଣନାରେ ଅନେକ ଅସୁବିଧା ରହି ଯାଉଛି । କାରଣ ଦାଉଦଙ୍କ ଠାରୁ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ୨୮ ବଂଶାବଳୀ ଥିବା କଥା ମାଥିଉ [୧, ୧-୧୭] ଲେଖନ୍ତି । ସେହି କ୍ଷେତ୍ରରେ ଲୂକ [୩, ୨୩-୩ ] ୪୩ ବଂଶାବଳୀ ଥିବା ଉଲ୍ଲେଖ କରନ୍ତି । ଦୁହେଁ ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କ ଭକ୍ତ ଓ ସାଧୁ । କାହାକଥା ବିଶ୍ୱାସ କରାଯିବ କାହାକଥା କରା ନ ଯିବ, ଏହି ସମସ୍ୟା ମଧ୍ୟରେ ସେମାନେ ସୃଷ୍ଟି ଯେ ୬୦୦୦ ବର୍ଷ ପୂର୍ବରୁ ହୋଇ ନଥିଲା ତାହା ମାନି ନଅନ୍ତି ଓ ଏହା ଆଗକୁ ଚିନ୍ତା କରିବାକୁ ଅବସର ଦିଅନ୍ତି ନାହିଁ ।

କିନ୍ତୁ ବିଶ୍ୱ ୬୦୦୦ ବର୍ଷ ପୁରାତନ ଏହା କିପରି ସ୍ୱୀକୃତ ହେବ ? ଦିଲ୍ଲୀରୁ ପ୍ରକାଶିତ ଦୈନିକ "ବୀର ଅର୍ଜ୍ଜୁନ" [ ୧୭ । ୧ । ୬୭ ] ରେ ପ୍ରକାଶ ପାଇଥିଲା କେନିଆଁ ରେ ୨୫ ଲକ୍ଷ ବର୍ଷ ପୁରାତନ ମାନବ ଅସ୍ଥି ପ୍ରାପ୍ତ ହୋଇଛି । କେନିଆଁ ରେ ପ୍ରଫେସର ପେଟରସନ୍‌ଙ୍କ ନେତୃତ୍ୱରେ ପଶ୍ଚିମ କେନିଆଁରୁ ଏ ସମ୍ପର୍କରେ ଅନେକ ତଥ୍ୟ ମିଳିଲାଣି ।

ଗବେଷକ ପାବଗୀ "ବୈଦିକ ଫାଦର୍ସ ଅଫ୍ ଜିଓଲୋଜି" ନାମକ ଗ୍ରନ୍ଥରେ ଭୂଗର୍ଭ ଶାସ୍ତ୍ର ପ୍ରମାଣ ନେଇ ସିଦ୍ଧ କରନ୍ତି ଯେ ଭୂଗର୍ଭ ଶାସ୍ତ୍ର ପରୀକ୍ଷାରେ ତୃତୀୟ ଯୁଗ [ ଟର୍ସିଆରି ଇପକ୍ ] ହିଁ ବେଦ ସୃଷ୍ଟି ସମୟ । ଭୂଗର୍ଭବିତ୍ ଡା: କୋଲଙ୍କ ମତ ହେଲା—ଆଜିଠାରୁ ୨୪୦୦୦୦ ବର୍ଷ ପୂର୍ବରେ ଏହି ତୃତୀୟ ଯୁଗ ସମାପ୍ତ ହୋଇ ହିମଯୁଗ । ଗ୍ଲେସିଏଲ୍ ପିରିୟଡ୍ ] ଆରମ୍ଭ ହୋଇ ସାରିଥିଲା । ଯାହା ଆଜିଠାରୁ ପ୍ରାୟତଃ ୮୦,୦୦୦ ବର୍ଷ ପୂର୍ବେ ସମାପ୍ତ ହୋଇଯାଇଛି । ହିମଯୁଗର ପୂର୍ବ ତୃତୀୟ ଯୁଗର ଅବଧି ଲକ୍ଷ ଲକ୍ଷ ବର୍ଷ ଥିଲା । ଏ ଦୃଷ୍ଟିରୁ ବେଦ ଅନ୍ତତଃରେ ୨୪,୦୦୦ ବର୍ଷ ପୁରାତନ, ଏଥିରେ ସନ୍ଦେହ ନାହିଁ । ଏଣୁ ଏହାକୁ ଏଥିରୁ ଅଧିକ ପ୍ରାଚୀନ ମଧ୍ୟ କୁହାଯାଇ ପାରିବ ।

ଅନେକ ଗବେଷକ ଜ୍ୟୋତିଷ ଶାସ୍ତ୍ର ଅନୁସାରେ ଋଗ୍‌ବେଦ (୧୦।୮୬) ସୂକ୍ତରେ ବର୍ଣ୍ଣିତ ବସନ୍ତ ସମ୍ପାତ ମୃଗଶୀର୍ଷ ନକ୍ଷତ୍ରକୁ ଲକ୍ଷ୍ୟ କରି ବେଦର କାଳ ନିରୂପଣ କରିବାକୁ ଚେଷ୍ଟା କରନ୍ତି । ଗୁରୁକୁଳ କାଙ୍ଗଡ଼ୀ ବିଶ୍ୱବିଦ୍ୟାଳୟର ଆଚାର୍ଯ୍ୟ ପ୍ରିୟବ୍ରତ ନକ୍ଷତ୍ର ସ୍ଥିତିର ଆଧାର ଉପରେ କାଳ ନିର୍ଣ୍ଣୟର ପ୍ରକ୍ରିୟା ଓ ସମୀକ୍ଷାକୁ ବୁଝାଇବା ପାଇଁ ପ୍ରାରମ୍ଭିକ କେତୋଟି ବିଷୟରେ ଆମକୁ ମାର୍ଗ ଦର୍ଶନ କରାନ୍ତି । ତାଙ୍କ ମତରେ ପୃଥିବୀ ଗୋଟିଏ ବର୍ଷରେ ସୂର୍ଯ୍ୟଙ୍କ ଚାରି ପାଖରେ ଥରେ ଘୂରିଆସେ । ପୃଥିବୀର ଏହି ଘୂର୍ଣ୍ଣନ ମାର୍ଗକୁ କ୍ରାନ୍ତିବୃତ୍ତ କୁହାଯାଏ । କ୍ରାନ୍ତିବୃତ୍ତର ଚାରିପାଖରେ ୨୭ଟି ନକ୍ଷତ୍ର ବିଦ୍ୟମାନ । ସେମାନେ ପୃଥିବୀର କ୍ରାନ୍ତିବୃତ୍ତର ଚାରି ପାଖରେ ଏକ ବୃତ୍ତରେ ହିଁ ରହିଛନ୍ତି । ମୋଟାମୋଟି ଭାବରେ ଏକ ନକ୍ଷତ୍ର ଅନ୍ୟ ନକ୍ଷତ୍ରର ୧୬ ଅଂଶ ଦୂରରେ ଅବସ୍ଥିତ ।

ପୃଥିବୀର ଭୂମଧ୍ୟ ରେଖାକୁ ବିଷୁବ ରେଖା କହନ୍ତି । ବୃତ୍ତାକାର ହୋଇଥିବାରୁ ଏହାକୁ ବିଷୁବ ବୃତ୍ତ ମଧ୍ୟ କୁହାଯାଏ । ଯଦି ଏହା କଳ୍ପନା କରି ନିଆଯାଏ କି ବିଷୁବ ବୃତ୍ତ ବିସ୍ତୃତ ହୋଇ କ୍ରାନ୍ତିବୃତ୍ତ ପର୍ଯ୍ୟନ୍ତ ଚାଲିଗଲା, ତେବେ ଏହି ଦୁଇବୃତ୍ତ ପରସ୍ପରକୁ ୨୩½ ଅଂଶ କୋଣରେ ଦୁଇଟି ସ୍ଥାନରେ ସ୍ପର୍ଶ କରିବେ । ଏହି ଦୁଇ ସ୍ପର୍ଶ ବିନ୍ଦୁକୁ ବସନ୍ତ ସମ୍ପାତ [ଭରନାଲ୍ ଇକ୍ୱିନକସ୍] ଓ ଶରତ ସମ୍ପାତ [ଅଟମନାଲ୍ ଇକ୍ୱିନକସ୍] ବୋଲି କୁହାଯାଏ । ବିଷୁବ ବୃତ୍ତର ସ୍ପର୍ଶ ବିନ୍ଦୁର ଏ ନାମ ରଖାଯିବାର କାରଣ ହେଲା. ଯେବେ ସୂର୍ଯ୍ୟ ବସନ୍ତ ସମ୍ପାତ ଉପରେ ରୁହନ୍ତି ସେତେବେଳେ ବସନ୍ତ ଋତୁର ପ୍ରାରମ୍ଭ ହୁଏ ଏବଂ ଯେବେ ଶରତ ସମ୍ପାତ ଉପରେ ରୁହନ୍ତି ସେ ସମୟରେ ଶରତ ଋତୁ ପ୍ରାରମ୍ଭ ହୋଇଯାଏ । ଦେଖିବାକୁ ଗଲେ ପୃଥିବୀ ସୂର୍ଯ୍ୟଙ୍କ ଚାରିପାଖରେ ଘୂରେ କିନ୍ତୁ ଆମକୁ ସୂର୍ଯ୍ୟ ଘୂରିବା ପରି ମନେହୁଏ । ଏଣୁ ଭ୍ରମବଶତଃ ପୃଥିବୀର କ୍ରାନ୍ତିବୃତ୍ତକୁ ସୂର୍ଯ୍ୟଙ୍କ କ୍ରାନ୍ତିବୃତ୍ତ ମଧ୍ୟ କହି ଦିଆଯାଏ ।

ଯେବେ ସୂର୍ଯ୍ୟ ଦକ୍ଷିଣାୟନରୁ ଉତ୍ତରାୟଣ ଯାତ୍ରା କରନ୍ତି ତାଙ୍କୁ ବସନ୍ତ ସମ୍ପାତ ବିନ୍ଦୁ ଦେଇ ଯିବାକୁ ପଡ଼େ । ସୂର୍ଯ୍ୟ ଯେବେ ବସନ୍ତ ସମ୍ପାତ ପାଖରେ ପହଞ୍ଚନ୍ତି ସେତେବେଳେ ଦିନରାତି ସମାନ ହୁଏ, ଯାହା ୨୧ ମାର୍ଚ୍ଚରେ ପଡ଼େ । ଯେବେ ସୂର୍ଯ୍ୟ ଉତ୍ତରାୟଣରୁ ଦକ୍ଷିଣାୟନକୁ ଯାତ୍ରା କରନ୍ତି ତାଙ୍କୁ ଶରତ ସମ୍ପାତ ବିନ୍ଦୁ ଦେଇ ଯିବାକୁ ପଡ଼େ ଏବଂ ସେହି ସମୟରେ ଅର୍ଥାତ୍ ସେପ୍ଟେମ୍ବର ୨୩ରେ ମଧ୍ୟ ଦିନ ରାତି ସମାନ ହୁଏ ।

ବସନ୍ତ ସମ୍ପାତ ବିନ୍ଦୁ ୭୨ ବର୍ଷରେ ୧ ଅଂଶ ହିସାବରେ ବହୁତ ଧୀର ଗତିରେ କ୍ରାନ୍ତିବୃତ୍ତ ପରେ ପୂର୍ବଠାରୁ ପଶ୍ଚିମଦିଗ ଆଡ଼କୁ ଖସିଥାଏ । ଶରତ ସମ୍ପାତ ମଧ୍ୟ ସେହିପରି ଖସେ । ଏହି ବସନ୍ତ ସମ୍ପାତ କ୍ରାନ୍ତିବୃତ୍ତ ପରେ ଗତି କରିବା ମଧ୍ୟରେ ୨୭ ନକ୍ଷତ୍ରଙ୍କ କୌଣସି ନା କୌଣସି ଆଗରେ ରହନ୍ତି । ପ୍ରକାରାନ୍ତରେ କ୍ରାନ୍ତିବୃତ୍ତ ପରେ ଚାଲୁଥିବା ସୂର୍ଯ୍ୟ ବସନ୍ତ ସମ୍ପାତ ସମୟରେ କୌଣସି ନକ୍ଷତ୍ର ସମ୍ମୁଖରେ ରହିବେ । ଏଥିରେ ସୂର୍ଯ୍ୟଙ୍କୁ ସେହି ନକ୍ଷତ୍ରରେ ଥିବା କୁହାଯାଏ । ବସନ୍ତ ସମ୍ପାତ ଏକ ନକ୍ଷତ୍ରରୁ ଅନ୍ୟ ନକ୍ଷତ୍ରକୁ ଯିବାକୁ ୯୬୦ ବର୍ଷ ଲାଗେ ।

ଯଦି ବସନ୍ତ ସମ୍ପାତ ସମୟରେ ସୂର୍ଯ୍ୟଙ୍କୁ କୌଣସି ବିଶେଷ ନକ୍ଷତ୍ରରେ ଥିବା ବର୍ଣ୍ଣନା କେଉଁଠି ମିଳିଯାଏ ତେବେ ଆମେ ଗଣନା କରି ଏହା କହିପାରିବୁ ଯେ ଏ ସ୍ଥିତି କେବେ ହୋଇଥିଲା । ଆଜିକାଲି ବସନ୍ତ ସମ୍ପାତରେ ସୂର୍ଯ୍ୟ ଉତ୍ତରାଭାଦ୍ର ନକ୍ଷତ୍ରରେ ରହୁଛନ୍ତି । ବସନ୍ତ ସମ୍ପାତରେ ଏକ ନକ୍ଷତ୍ରରୁ ଅନ୍ୟ ନକ୍ଷତ୍ରକୁ ଯିବାକୁ ପ୍ରାୟ ୧୦୦୦ ବର୍ଷ ଲାଗେ । ଏ ଦୃଷ୍ଟିରୁ ଋଗ୍‌ବେଦର ବସନ୍ତ ସମ୍ପାତର ମୃଗଶୀର୍ଷ ନକ୍ଷତ୍ରର ବର୍ଣ୍ଣନା ବିଚାରଣୀୟ । ମୃଗଶୀର୍ଷ ନକ୍ଷତ୍ର ଉତ୍ତରାଭାଦ୍ର ପଦାଠାରୁ ୬ ନକ୍ଷତ୍ର ପୂର୍ବରୁ ବିଦ୍ୟମାନ । ଏଣୁ ମୃଗଶୀର୍ଷ ନକ୍ଷତ୍ରରେ ବସନ୍ତ ସମ୍ପାତ ଆଜିଠାରୁ ପ୍ରାୟ ୬୦୦୦ ବର୍ଷ ପୂର୍ବେ ରହିଥିବ । କାହିଁକି ନା ବେଦର ଏହି ସୂକ୍ତରେ ନକ୍ଷତ୍ରଗୁଡ଼ିକ ଏହି ସ୍ଥିତିରେ ବର୍ଣ୍ଣିତ ହୋଇଛନ୍ତି । ଏଣୁ ସେହି ସୂକ୍ତ ଆଜିଠାରୁ ପ୍ରାୟ ୬୦୦୦ ବର୍ଷ ପୂର୍ବେ ଲିଖିତ ହୋଇଥିବ ।

ନକ୍ଷତ୍ର ଗୁଡ଼ିକର ସ୍ଥିତିର ଆଧାର ଉପରେ ବେଦର କାଳନିରୂପଣ କରାଯାଇ ପାରିବ ନାହିଁ । ଆଚାର୍ଯ୍ୟ ପ୍ରିୟବ୍ରତଙ୍କ ଉପରୋକ୍ତ ବସନ୍ତ ସମ୍ପାତ ବିନ୍ଦୁ ୭୨ ବର୍ଷରେ ୧ ଅଂଶ ହିସାବରେ ଖସିବା କଥା ଅନୁସାରେ ୩୬୦ × ୭୨ = ୨୫୯୨୦ ବର୍ଷରେ ବସନ୍ତ ସମ୍ପାତ କ୍ରାନ୍ତିବୃତ୍ତ ଉପରେ ଘୂରି ଘୂରି ସ୍ୱସ୍ଥାନକୁ ଚାଲିଆସେ । ଯଦି ଆଜିଠାରୁ ପ୍ରାୟ ୬୦୦୦ ବର୍ଷ ପୂର୍ବେ ବସନ୍ତ ସମ୍ପାତ ମୃଗଶୀର୍ଷ ନକ୍ଷତ୍ରରେ ଥିଲା ତେବେ

୩୨୦୦୦ ବର୍ଷ ପୂର୍ବେ ଅଥବା ତାହା ପୂର୍ବେ ଅର୍ଥାତ୍ ଆଜଠାରୁ ପ୍ରାୟ ୫୮୦୦୦ ବର୍ଷ ପୂର୍ବରୁ ମଧ୍ୟ ଏହା ଏହି ନକ୍ଷତ୍ରରେ ଥିବ । ଏ ପ୍ରକାର ଯେତେ ପଛକୁ ମଧ୍ୟ ସେହି ଗଣନା ଘୁଞ୍ଚାଇ ନିଆଯାଇ ପାରିବ । ଏଣୁ ବେଦର ଏହି ମନ୍ତ୍ରଗୁଡ଼ିକ ଆଜିଠାରୁ ୬୦୦୦ ବର୍ଷ ପୁରାତନ ନ ମାନି ୩୨ ହଜାର ବା ୫୮ ହଜାର କମ୍ବା ସେଥିରୁ ଅଧିକ ପୁରାତନ ବୋଲି କାହିଁକି କୁହାଯିବ ନାହିଁ ?

## ଚତୁର୍ଯୁଗୀୟ ଗଣନାରେ ବେଦର ଆୟୁଷ

ନକ୍ଷତ୍ରଗୁଡ଼ିକର ସ୍ଥିତିର ଆଧାର ଉପରେ ଯେତେବେଳେ ଆମେ ବେଦର କାଳନିରୂପଣ କରିବାରେ କ୍ଲାନ୍ତ ହୋଇପଡୁ, ସେତେବେଳେ ଆମ ଆଗରେ ଆଉ ଗୋଟିଏ କଥା ବାକି ରହିଯାଏ, ତାହା ଚତୁର୍ଯୁଗୀୟ ଗଣନା । ସତ୍ୟ, ତ୍ରେତା, ଦ୍ୱାପର ଓ କଳି ଏହି ଯୁଗ ମାନଙ୍କର ଆଧାର ଉପରେ ବେଦର ପ୍ରାଚୀନତା ଅନୁମାନ କରାଯାଇପାରେ । ଏହି ଯୁଗ ଗୁଡ଼ିକର କଳ୍ପନା ବା ସୃଷ୍ଟିର ଏକ ସୁଦୀର୍ଘ ପାରମ୍ପରିକ ଶୃଙ୍ଖଳା ଦେଖି ଆମେ ଆଶ୍ଚର୍ଯ୍ୟ ନହୋଇ ରହିପାରୁ ନା । ପ୍ରତ୍ୟେକ ହିନ୍ଦୁ ସଂକଳ୍ପ ନେବା ସମୟରେ ସୃଷ୍ଟିର ପ୍ରାରମ୍ଭରୁ ବର୍ତ୍ତମାନ ସମୟ ପର୍ଯ୍ୟନ୍ତ ସଂକ୍ଷିପ୍ତ ଇତିହାସ ବଖାନ କରିଥାନ୍ତି—

"ଓଁ ତତ୍ ସତ୍ । ଅଦ୍ୟ ବ୍ରହ୍ମଣୋ ଦ୍ୱିତୀୟେ—ପରାର୍ଦ୍ଧେ ଶ୍ରୀ ଶ୍ୱେତବାରାହ କଳ୍ପେ ଜମ୍ବୁଦ୍ୱୀପେ ଭରତଖଣ୍ଡେ ଆର୍ଯ୍ୟାବର୍ତ୍ତୈକ-ଦେଶାନ୍ତର୍ଗତେ କୁମାରିକା ନାମ କ୍ଷେତ୍ରେ ବୈବସ୍ୱତ ମନ୍ୱନ୍ତରେ ଅଷ୍ଟାବିଂଶତିତମେ କଳିଯୁଗେ କଳି ପ୍ରଥମ ଚରଣେ ବୌଦ୍ଧାବତାରେ ..... ।"

ବ୍ରହ୍ମାଙ୍କର ଆୟୁ ଶତବର୍ଷ ବୋଲି ପୁରାଣରେ ମତ । ଅର୍ଥାତ୍ ବ୍ରହ୍ମାଣ୍ଡ ସୃଷ୍ଟିଠାରୁ ନେଇ ପ୍ରଳୟ ପର୍ଯ୍ୟନ୍ତ ବ୍ରହ୍ମାଙ୍କର ଆୟୁ ଅଟେ । ବ୍ରହ୍ମାଙ୍କ ପୂର୍ବ ପରାର୍ଦ୍ଧ ଅର୍ଥାତ୍ ଅଧା ଜୀବନ ବିତି ଗଲାଣି । ନିଜ ଆୟୁର ପଚାଶ ବର୍ଷ ବ୍ୟୟ କରି ସେ ଏକାବନ ବର୍ଷରେ ପହଞ୍ଚିଛନ୍ତି । ଦ୍ୱିତୀୟ ପରାର୍ଦ୍ଧର ପ୍ରଥମ କଳ୍ପ (ଦିନ) ଚାଲିଛି । ଯାହାକୁ "ଶ୍ୱେତବାରାହ-କଳ୍ପ" କୁହାଯାଇଛି । ଏହି ପ୍ରଥମ ଦିନର ମଧ୍ୟ ୧୩ ଘଡ଼ି, ୪୨ ପଳ, ୬ ବିପଳ, ୪୩ ପ୍ରତିବିପଳ ବିତିସାରିଛି । ଯୁଗଯୁଗର ବର୍ଷ ସଂଖ୍ୟା ମନୁଷ୍ୟ ପାଇଁ ଯାହା ଦେବତାମାନଙ୍କ ପାଇଁ ତାହା ନୁହେଁ । ଆମର ଏକବର୍ଷ ହେଲେ ତାହା ଦେବତାମାନଙ୍କ ପାଇଁ ଏକ ଅହୋରାତ୍ର । ମନୁସ୍ମୃତି [୧।୬୮-୭୪ ଏବଂ ୭୯-୮୦], ମହାଭାରତର ବନପର୍ବ (ଅ ୧୮୮।୨୨-୨୪, ୨୬) ରେ ଚତୁର୍ଯୁଗର ମାନ ଦିବ୍ୟ-ବର୍ଷରେ ଦିଆଯାଇଛି । ଯେଉଁ ଦିବ୍ୟବର୍ଷକୁ ୩୬୦ ଅଙ୍କ ଦ୍ୱାରା ଗୁଣନ କଲେ ମନୁଷ୍ୟ ବର୍ଷ ବାହାରିବ ।

ଯେପରି କଳିଯୁଗ ଦେବତା ମାନଙ୍କ ପାଇଁ ୧୨୦୦ ବର୍ଷ ହେଲେ ମନୁଷ୍ୟ ପାଇଁ ୪,୩୨,୦୦୦ ବର୍ଷ । ଦ୍ୱାପର ଦେବତାମାନଙ୍କ ପାଇଁ ୨୪୦୦ ବର୍ଷ ହେଲେ ମନୁଷ୍ୟଙ୍କ ପାଇଁ ୮,୬୪,୦୦୦ ବର୍ଷ । ଯେପରି ତ୍ରେତା ୩୬୦୦ ବର୍ଷ ହେଲେ ମନୁଷ୍ୟଙ୍କ ପାଇଁ ୧୨,୯୬,୦୦୦ ବର୍ଷ ତଥା ସତ୍ୟ ୪୮୦୦ ବର୍ଷ ହେବା ସତ୍ତ୍ୱେ ମନୁଷ୍ୟ-ପାଇଁ ୧୭,୨୮,୦୦୦ ବର୍ଷ ଅଟେ । ଦେବତାମାନଙ୍କ ପାଇଁ ସର୍ବମୋଟ ବାରହଜାର ବର୍ଷ ହେଲେ ମନୁଷ୍ୟଙ୍କ ପାଇଁ ତେୟାଳିଶ ଲକ୍ଷ କୋଡ଼ିଏ ହଜାର ବର୍ଷ ହୁଏ ।

ବେଦାଦିଶାସ୍ତ୍ର ଅନୁସାରେ ବ୍ରହ୍ମଦିନ ୧୦୦୦ ଚତୁର୍ଯୁଗୀୟ ଅଟେ ଯାହା ୪ଅର୍ବ ୩୨ କୋଟି ବର୍ଷ ରୂପେ ସର୍ବସମ୍ମତ କ୍ରମେ ଗଣନା କରାଯାଏ । ମହାରାଜା ମନୁଙ୍କ ପ୍ରମାଣ ଅନୁସାରେ ମନ୍ୱନ୍ତର କାଳ ୧୪ ମନ୍ୱନ୍ତର ହୁଏ ଯେଉଁଥିରେ ୯୯୪ ଚତୁର୍ଯୁଗ ଆସନ୍ତି । ପ୍ରତ୍ୟେକ ମନ୍ୱନ୍ତରରେ ୭୧ ଚତୁର୍ଯୁଗୀୟ ଥାଏ ଏବଂ ପ୍ରତ୍ୟେକ ଚତୁର୍ଯୁଗୀୟରେ—

| | |
|---|---|
| ସତ୍ୟଯୁଗ | ୧୭, ୨୮, ୦୦୦ ବର୍ଷ |
| ତ୍ରେତାଯୁଗ | ୧୨, ୯୬, ୦୦୦ ବର୍ଷ |
| ଦ୍ୱାପରଯୁଗ | ୮, ୬୪, ୦୦୦ ବର୍ଷ |
| କଳିଯୁଗ | ୪, ୩୨, ୦୦୦ ବର୍ଷ |
| ସର୍ବମୋଟ | ୪୩, ୨୦, ୦୦୦ ବର୍ଷ |

ଭାରତୀୟ ଜ୍ୟୋତିଷ ଶାସ୍ତ୍ର ଅନୁସାରେ ଉପରୋକ୍ତ ଗଣନା କଲୁ । ମାତ୍ର ୧୦୦୦ — ୯୯୪ = ଚତୁର୍ଯୁଗୀୟର ଯଥେଷ୍ଟ ଗଣନା ପାଇଁ ମତଭେଦ ରହେ । କେତେକ ମନ୍ୱନ୍ତରୀୟ କାଳକୁ ବେଦୋତ୍ପତ୍ତିର ପୂର୍ବ ମନେ କରନ୍ତି ତ କେତେକ ସନ୍ଧିକାଳର ପକ୍ଷପାତି ବିଦ୍ୱାନ ମାୟାସୁର ରଚିତ ସୂର୍ଯ୍ୟସିଦ୍ଧାନ୍ତର ଆଧାର ପରେ ୧୫ ଏକକରେ ବିଭକ୍ତ କରି ପ୍ରତ୍ୟେକ ଏକକକୁ ପ୍ରତ୍ୟେକ ମନ୍ୱନ୍ତର ମଧ୍ୟରେ ଅବାନ୍ତର ପ୍ରଳୟକାଳ ରୂପରେ ଏବଂ ପ୍ରଥମ ଓ ଅନ୍ତିମ ମନ୍ୱନ୍ତରକୁ କ୍ରମଶଃ ପୂର୍ବରେ ବା ଶେଷରେ ଯୋଡ଼ିଥାନ୍ତି । ଯେପରି :— ୧୭,୨୮, ୦୦୦ × ୧୫ = ୨, ୫୯,୨୦, ୦୦୦ ବର୍ଷ ଯାହା ୬ ଚତୁର୍ଯୁଗୀୟରେ ହୁଏ, ସେ ସବୁ ସନ୍ଧିକାଳ ରୂପେ ଗଣନା କରନ୍ତି ।

ଏ ସମ୍ପର୍କରେ ମହର୍ଷି ଦୟାନନ୍ଦଙ୍କ ଗଣନାରେ ସ୍ୱାତନ୍ତ୍ର୍ୟ ଦେଖାଯାଏ । ତାଙ୍କ ରଚିତ "ଋଗବେଦାଦି ଭାଷ୍ୟ ଭୂମିକା"ରେ ବେଦୋତ୍ପତ୍ତି କାଳ ନିର୍ଣ୍ଣୟ କରିବାକୁ ଯାଇ ସେ କଳ୍ପ [ସୃଷ୍ଟିକାଳ-ବ୍ରହ୍ମଦିନ] ବିକଳ୍ପ [ପ୍ରଳୟକାଳ] ମନ୍ୱନ୍ତରୀୟ କାଳ-

ଆଉର ମହତ୍ତ୍ୱପୂର୍ଣ୍ଣ ବିଗ୍ରହ କରିଛନ୍ତି । ବ୍ରହ୍ମଦିନକୁ ସେ ବେଦୋକ୍ତ ଆଧାର ଉପରେ ୧୦୦୦ ଚତୁର୍ଯୁଗୀୟ କହନ୍ତି ଏବଂ ସେତିକି କାଳ ପ୍ରଳୟ ପାଇଁ ମଧ୍ୟ ରଖନ୍ତି । କଳ୍ପକାଳକୁ ୧୪ ମନ୍ୱନ୍ତରୀୟ କାଳ ବା ମାନବ ସୃଷ୍ଟି କାଳ କହି ଏହାକୁ ମୁକ୍ତିଭୋଗ କାଳର ସଂଜ୍ଞା ଦିଅନ୍ତି । ତାଙ୍କ ମତରେ ମନ୍ୱନ୍ତରୀୟ କାଳ ମାନବର ମୁକ୍ତିଭୋଗର କାଳ ଏବଂ ଶେଷ ୬ ଚତୁର୍ଯୁଗୀୟ କାଳ ମାନବୋତ୍ପତ୍ତି ପୂର୍ବର ସୃଷ୍ଟି ରଚନାକାଳ ଅଟେ ।

ମନ୍ୱନ୍ତର କାଳଠାରୁ ଏ ପର୍ଯ୍ୟନ୍ତ ୬ ମନ୍ୱନ୍ତର, ୭ମ ମନ୍ୱନ୍ତରର ୨୭ ଚତୁର୍ଯୁଗୀୟ ଏବଂ ୨୮ ତମ ଚତୁର୍ଯୁଗୀୟର ସତ୍ୟଯୁଗ, ତ୍ରେତା, ଦ୍ୱାପର ଏବଂ କଳିର ୫୦୭୫ ବର୍ଷ ବ୍ୟତୀତ ହୋଇ ସାରିଛି । ଅର୍ଥାତ୍ :—

୬ × ୭୧ × ୪,୩୨,୦୦୦ = ୧,୮୪,୦୩,[illegible]୦,୦୦୦

୨୭ × ୪,୩୨,୦୦୦ = ୧୧,୬୬,୪୦,୦୦୦

୨୮ ତମ ଚତୁର୍ଯୁଗର

ସତ୍ୟ—୧୭,୨୮,୦୦୦

ତ୍ରେତା—୧୨,୯୬,୦୦୦

ଦ୍ୱାପର—୮,୬୪,୦୦୦

କଳି— ୫,୦୭୫

---

ମୋଟ ୩୮,୯୬,୦୭୫

---

ସର୍ବମୋଟ— ୧,୯୬,୦୮,୫୬,୦୭୫

ଏଥିରେ ୬ ଚତୁର୍ଯୁଗୀର ୨, ୫୯, ୨୦, ୦୦୦ ବର୍ଷ ଯୋଗ କଲେ ସୃଷ୍ଟିସମ୍ବତ ୧, ୯୮, ୬୭, ୭୩,୦୭୫ ବର୍ଷ ବାହାରେ । ମାତ୍ର ଅନେକ ବିଦ୍ୱାନ୍ ସୂର୍ଯ୍ୟସିଦ୍ଧାନ୍ତ ଆଧାରରେ ସନ୍ଧିକାଳର ପକ୍ଷ ନେଇ ବଢ଼ିଥିବା ୬ ମନ୍ୱନ୍ତର ୬ ଏକକ ଏବଂ ପ୍ରଥମ ମନ୍ୱନ୍ତର ପୂର୍ବରେ ୧ ଏକକ ଅର୍ଥାତ୍ ୭ ଏକକ ଯୋଗକରି ସୃଷ୍ଟିସମ୍ବତ ନିମ୍ନ ପ୍ରକାରେ ବାହାର କରନ୍ତି ।

ମହର୍ଷି ଦୟାନନ୍ଦଙ୍କ ବେଦୋତ୍ପତ୍ତି ସଂବତ୍ :—

୧, ୯୬,୦୮, ୫୩, ୦୭୫ ବର୍ଷ

୭ × ୧୭,୨୮,୦୦୦ = ୧,୨୦,୯୬,୦୦୦ ବର୍ଷ

---

ମୋଟ ୧,୯୭, ୨୯,୪୯,୦୭୫ ବର୍ଷ

ଯଦିଓ ମାୟାସୁରଙ୍କ ଲିଖିତ ସୂର୍ଯ୍ୟସିଦ୍ଧାନ୍ତ ୯୦୦ ବର୍ଷ ପୂର୍ବରୁ ଲିଖିତ ତଥାପି ଏଥିରେ ଥିବା ପରସ୍ପର ବିରୋଧାଭାସ ସେ ଗ୍ରନ୍ଥଟିକୁ ବିବାଦାସ୍ପଦ କରି ରଖିଛି ।

ଗ୍ରନ୍ଥଟିରେ ସନ୍ନିବେଶିତ ଅନେକ ଅବୈଜ୍ଞାନିକ ତଥ୍ୟରୁ ମନେହୁଏ ଯେ, ଏହାର ଆଧାର ଉପରେ ବେଦର କାଳ ଗଣନା କରିବା ଆଦୌ ନିରାପଦ ନୁହେଁ । ମାୟାସୁର ପୃଥିବୀକୁ ଆକାଶରେ ସ୍ଥିର ଥିବା ନକ୍ଷତ୍ର ତ ବେଦ କୁହେ ପୃଥିବୀ ସୂର୍ଯ୍ୟଙ୍କ ଚାରିପାଖରେ ଅବିଶ୍ରାନ୍ତ ଘୂରୁଛି । "ଆୟଂଗୌଃ ପୃଶ୍ନିର କ୍ରମୀଦସଦନ୍... [ଯଜୁଃ ୩।୬] । ମୟାସୁରଙ୍କ ସନ୍ଧିକାଳର କଳ୍ପନା ବେଦର କୌଣସି ସ୍ଥାନରେ ଉଲ୍ଲେଖ ହୋଇନାହିଁ । ଅବାନ୍ତର ପ୍ରଳୟ କାଳ ସୃଷ୍ଟି କରି ମାୟାସୁର ଆମ ଗଣନାରେ ଅନେକ ସନ୍ଦେହ ରଖି ଯାଇଛନ୍ତି । ତାଙ୍କ ମତରେ ପ୍ରତ୍ୟେକ ମନ୍ୱନ୍ତର ପରେ ଅନ୍ତଃ ମନ୍ୱନ୍ତରୀୟ ୧୭,୨୮,୦୦୦ ବର୍ଷ ପ୍ରଳୟ ହୁଏ । ଏହି ସୁପ୍ତ ସମୟ ମଧ୍ୟରେ ବିସ୍ମରଣର ଯଥେଷ୍ଟ ସମ୍ଭାବନା ରହିଛି । ଯେଉଁଠି ମନୁଷ୍ୟ ସକାଳେ ଭୋଜନ କରିଥିବା ଆହାର ସନ୍ଧ୍ୟାକୁ ମନେ ରଖି ପାରୁନାହିଁ ସେଠି ଏତେଗୁଡ଼ିଏ ନିରବଚ୍ଛିନ୍ନ ସମୟ ଅବାନ୍ତର ପ୍ରଳୟ ସୃଷ୍ଟି କରିବା ଅସଙ୍ଗତ ମନେହୁଏ । ଏ ସବୁ ବାଦ୍ ଦେବା ସତ୍ତ୍ୱେ ଯଦି ବେଦର କାଳ ନିରୂପଣ କରାଯାଏ, ତା'ହେଲେ ତାହା ୧,୯୬,୦୮,୫୩,୦୭୫ ବର୍ଷରୁ କମ୍ ମନେହୁଏ ନାହିଁ । ଯଦି ଗବେଷଣା କରାଯାଏ ଜଣାଯିବ ସେତିକ ବର୍ଷର ଏକ ଶୃଙ୍ଖଳିତ ଇତିହାସ ଭାରତରେ ରହିଛି, ଯାହା ଯଥେଷ୍ଟ ଆଲୋକକୁ ଆସିପାରି ନ ଥିବାରୁ ତାକୁ ପାଶ୍ଚାତ୍ୟ ଐତିହାସିକମାନେ "ଅନ୍ଧକାର ଯୁଗ" ବୋଲି ନାମିତ କରିଥାନ୍ତି । ଆଧୁନିକ ବିଜ୍ଞାନର ଆଧାର ପରେ ମଧ୍ୟ ଜଡ଼ ସୃଷ୍ଟି ଓ ମନୁଷ୍ୟ ସୃଷ୍ଟି କାଳ ଉପରୋକ୍ତ ବର୍ଷ ସହିତ ସମତା ରକ୍ଷା କରନ୍ତି ।

## ବେଦରେ ଐତିହାସିକ ପୁରୁଷ

ବେଦର କାଳ ନିରୂପଣ କରିବାର ଆଉ ଏକ ଦିଗ ହେଲା, ସେଥିରେ ଉଲ୍ଲିଖିତ ନାମ ଓ ଭୌଗୋଳିକ ସ୍ଥାନର ଆଧାର ଉପରେ ଏହାର କାଳ ନିର୍ଦ୍ଧାରଣ କରିବା । ଉଦାହରଣ ସ୍ୱରୂପ ବେଦରେ ଆସୁଥିବା ପରୀକ୍ଷିତ, ଭରତା; ଈଶା, ମହିନା, ଆଦି ଶବ୍ଦ ନିଆଯାଇପାରେ ।

ପ୍ରଶ୍ନ ହୋଇପାରେ, ବେଦ କେଉଁ ପରୀକ୍ଷିତଙ୍କ ସମକାଳୀନ ? ଏହି ନାମରେ ମହାଭାରତରେ ଦୁଇଜଣ କୁରୁବଂଶୀୟ ଓ ଜଣେ ଇକ୍ଷ୍ୱାକୁ ବଂଶୀୟ ରାଜାଙ୍କ ନାମ ଆସେ । ମହାଭାରତର ଆଦିପର୍ବ [ ୧ । ୪୫ - ୪୬]ରେ କୁରୁ ଆବିକ୍ଷିତଙ୍କ ଜ୍ୟେଷ୍ଠ ପୁତ୍ରଙ୍କ ନାମ ପରୀକ୍ଷିତ ଥିଲା । ସେହି ପର୍ବ [୯୦ । ୪୩ ୪୮]ରେ ଉଲ୍ଲେଖ ଅଛି ଯେ କୁରୁବଂଶୀୟ ରାଜା ଅରୁଗ୍ୱତ [ଅନଶ୍ୱତ] ଏବଂ ମାଗଧୀ ଅମୃତାଙ୍କ ପୁତ୍ର ଥିଲେ ପରୀକ୍ଷିତ । ଶାନ୍ତିପର୍ବ [୧୪୭- ୪୮]ରେ ଏହି ନାମରେ ଆଉଜଣେ ରାଜାଙ୍କ ନାମ ଆସେ ଯାହାଙ୍କ ପୁତ୍ର ଜନମେଜୟ ବ୍ରହ୍ମହତ୍ୟାର ନିବାରଣ ଇନ୍ଦ୍ରୋତ ମୁନି କରନ୍ତି ।

ତତ୍‌ପ ମହାଭାରତରେ ଅର୍ଜୁନଙ୍କ ପୌତ୍ର ତଥା ଅଭିମନ୍ୟୁ ଏବଂ ଉତ୍ତରାଙ୍କ ପୁତ୍ରଙ୍କ ନାମ ମଧ୍ୟ ପରୀକ୍ଷିତ ଥିଲା । ବନପର୍ବ (୧୯୦)ରେ ପରୀକ୍ଷିତ ନାମରେ ଅଯୋଧ୍ୟା ନିବାସୀ ଇକ୍ଷ୍ୱାକୁ ବଂଶୀୟ ରାଜା ମଣ୍ଡୁକର ରାଜା ଆୟୁଙ୍କ କନ୍ୟା ସୁଶୋଭନାଙ୍କ ସହ ଶୁଭପରିଣୟ ହେବା କଥା ଦେଖି ଆମେ ଦ୍ୱନ୍ଦ୍ୱରେ ପଡ଼ିଯାଉ ଯେ ବେଦରେ କେଉଁ ପରୀକ୍ଷିତଙ୍କ କଥା ଉଲ୍ଲେଖ ଅଛି ?

ପରୀକ୍ଷିତ ପରି "ଭରତା" ଶବ୍ଦ ଋଗ୍‌ବେଦର ବିଭିନ୍ନ ମନ୍ତ୍ରରେ ଆବିଷ୍କାର କରି ଠିକ୍ ରୂପେ ତାଙ୍କ ପରିଚୟ ଆମେ ପାଉନା । କାରଣ ଅଯୋଧ୍ୟାର ରାଜା ଦଶରଥଙ୍କ ପୁତ୍ରଙ୍କ ନାମ ଭରତ ଏବଂ ଦୁଷ୍ମନ୍ତ ଓ ଶକୁନ୍ତଳାଙ୍କ ପୁତ୍ରଙ୍କ ନାମ ମଧ୍ୟ ଥିଲା ଭରତ । ପୁନଶ୍ଚ ମହାଯୋଗୀ ରାଜର୍ଷି ଜଡ଼ଭରତ ଯେ ଋଷଭ ରାଜାଙ୍କ ପୁତ୍ର ଥିଲେ । ଏମାନଙ୍କ ମଧ୍ୟରୁ ବେଦର ଭରତଙ୍କୁ ବାଛିବା କଷ୍ଟକର ହୋଇପଡ଼େ । ଯେପରି "ଈଶାବାସ୍ୟମିଦଂ ସର୍ବଂ" ମନ୍ତ୍ରଟିରେ "ଈଶା" ଶବ୍ଦ ଦେଖି ଅନେକ ଖ୍ରୀଷ୍ଟିୟାନ ବିଦ୍ୱାନ୍ ଏହା ଖ୍ରୀଷ୍ଟଙ୍କ ଉପରେ ଭବିଷ୍ୟବାଣୀ ବା ପ୍ରଫେସୀ ଦିଆଯାଇଛି ବୋଲି ମନେ କରନ୍ତି ତ "ପଶ୍ୟେମ ଶରଦଃ ଶତ ମଦୀନାଃ ସ୍ୟାମ ଶରଦଃ ଶତମ୍" ମନ୍ତ୍ରରେ ଇସଲାମୀ ବିଦ୍ୱାନ୍ ଆମକୁ ମକ୍କା "ମଦୀନା" ସ୍ଥାନକୁ ନାଃ ଉଠାଇ ନିଅନ୍ତି । କିନ୍ତୁ ଇତିହାସ ବା ଭୂଗୋଳ ସହ ଏ ଶବ୍ଦଗୁଡ଼ିକର କି ସମ୍ପର୍କ କିଛି ଜଣାପଡ଼େ ନାହିଁ ।

ଋଗ୍‌ବେଦ [୧ । ୨୪ । ୧୨-୧୩] ଏବଂ [୫ । ୨ । ୭] ମନ୍ତ୍ରରେ ଶୁନଃଶେପ ଋଷି ତଥା ରାଜା ହରିଶ୍ଚନ୍ଦ୍ରଙ୍କ କାହାଣୀ ସହ ପୁରାଣବର୍ଣ୍ଣିତ ହରିଶ୍ଚନ୍ଦ୍ରଙ୍କର କି ସମ୍ପର୍କ ? ଯେପରି ମୁସଲମାନ ମାନଙ୍କର କୋରାନରେ "ଆକବର" ଆଲ୍ଲାହ ବା ପରମେଶ୍ୱରଙ୍କୁ କୁହାଯାଇଛି ଯା' ଅର୍ଥ ମହାନ । ଦିଲ୍ଲୀର ମହାନ୍ ମୋଗଲ ସମ୍ରାଟଙ୍କ ନାମ ମଧ୍ୟ ଆକବର ଥିଲା । ଏହି ଆଧାର ଉପରେ ଯଦି କୌଣସି ଗବେଷକ କୋରାନକୁ ସମ୍ରାଟ ଆକବରଙ୍କ ସମକାଳୀନ ବା ତାଙ୍କ ପରେ ସୃଷ୍ଟି ହୋଇଛି ବୋଲି ପ୍ରତିପାଦନ କରନ୍ତି ସେଥିରୁ ବଳି ହାସ୍ୟାସ୍ପଦ କଥା ଆଉ କଣ ହୋଇପାରେ ? ଏଣୁ ବେଦର "ତ୍ରିଧା ବଦ୍ଧୋ ବୃଷଭୋ ରୋରବୀତି" ଓ "ଧନାଧନଃ କ୍ଷୋଭଣଶ୍ଚର୍ଷଣୀ-ନାମ" ଆଦି ମନ୍ତ୍ର ଗୁଡ଼ିକରେ ଭଗବାନ ଋଷଭଦେବଙ୍କୁ ଆବିଷ୍କାର କରିବାରେ ଧାର୍ମିକ ଦୃଢ଼ତା ଅଣାଯାଇପାରେ ମାତ୍ର ସତ୍ୟତା ପ୍ରତିପାଦନ କରାଯାଇ ନ ପାରେ । ବସ୍ତୁତଃ ଦେଖିବାକୁ ଗଲେ ବେଦର ଶବ୍ଦ ଭଣ୍ଡାରରୁ ଋଣ କରି ଋଷିଗଣ ଓ ବିଦ୍ୱାନମାନେ ବିଭିନ୍ନ ବସ୍ତୁ ଓ ମନୁଷ୍ୟମାନଙ୍କର ନାମକରଣ ସଂସ୍କାର କରିଥିଲେ । ଏ କଥାକୁ ପ୍ରକାଶକୁ ନ ଆଣି ଏହା ମଧ୍ୟରେ ଇତିହାସ ଖୋଜିବା ଅର୍ଥ, ଏକ ଅନ୍ଧକାର ପ୍ରକୋଷ୍ଠରେ ଏକ କଳା ବିରାଡ଼ିକୁ ଖୋଜିବା ଯେ ସେ ଭିତରେ ନାହିଁ କିମ୍ବା

"ମିବଲଲିଭ"ରେ ବର୍ଣ୍ଣିତ ଘଟଣାମାନଙ୍କୁ ଐତିହାସିକ ବୋଲି ପ୍ରମାଣ କରିବା ସହିତ ଏହା ସମାନ ।

ମହର୍ଷି ଜୈମିନି ମୀମାଂସା ଦର୍ଶନରେ ବେଦର ଐତିହାସିକବାଦର ଖଣ୍ଡନ କରିଛନ୍ତି । କାରଣ ବେଦର ପ୍ରତ୍ୟେକ ମନ୍ତ୍ର ଆଧିଭୌତିକ, ଆଧିଦୈବିକ ଓ ଆଧ୍ୟାତ୍ମିକ ଅର୍ଥରେ ବ୍ୟାଖ୍ୟା କରାଯାଇପାରେ । ଯାସ୍କ, ଆଗ୍ନେୟ ସ୍କନ୍ଦସ୍ୱାମୀ, ଦୁର୍ଗାଚାର୍ଯ୍ୟ ତଥା କୁମାରିଲ ଭଟ୍ଟ ଆଦି ମନୀଷୀ ମଧ୍ୟ ବେଦରେ ଇତିହାସ ନଥିବା କଥାକୁ ଦୃଢ଼ତା ସହ ସମର୍ଥନ କରନ୍ତି । "ବୈଦିକ ଗଡ଼ସ୍" ନାମକ ଗ୍ରନ୍ଥରେ ଗ୍ରନ୍ଥକାର ମି. ରେଲେ ଙ୍କ୍ ସାବଧାନତା ସହକାରେ ବେଦରେ ଥିବା ଅଣ୍ଟିନୋମିରୁତ ଆଦି ଶବ୍ଦକୁ ଶରୀର ସମ୍ବନ୍ଧୀ ବିଭିନ୍ନ ଶକ୍ତି ଓ ନାଡ଼ି ରୂପେ ପ୍ରମାଣ କରି ଏହାର ଆଉ ଏକ ଦିଗ ଦର୍ଶାଇ-ଛନ୍ତି । ଏସବୁ ବେଦର ଅନୈତିହାସିକ ପକ୍ଷକୁ ଶକ୍ତିଶାଳୀ କରିଛି ବୋଲି ଠିକ୍ ରୂପେ କୁହାଯାଇପାରିବ ।

## ଋଷୟୋ ମନ୍ତ୍ର ଦ୍ରଷ୍ଟାରଃ

ବେଦରେ ଅନେକ ଋଷିଙ୍କ ନାମ ଆସେ । ବେଦମନ୍ତ୍ର ପୂର୍ବରେ ଏହି ଋଷି ମାନଙ୍କର ନାମ ଦେଖି କେତେକ ପାଶ୍ଚାତ୍ୟ ବିଦ୍ୱାନ୍ ମତ ଦିଅନ୍ତି ଯେ ସେହି ଋଷିଗଣ ସେ ମନ୍ତ୍ରଗୁଡ଼ିକର ସ୍ରଷ୍ଟା ଅଟନ୍ତି ଏବଂ ସେମାନେ ବେଦର ନିଶ୍ଚୟ ସମକାଳୀନ । ସେମାନଙ୍କ ସମୟହିଁ ବେଦର ସମୟ । ପ୍ରକୃତରେ ଋଷିଗଣ କଣ ମନ୍ତ୍ରଗୁଡ଼ିକର ସ୍ରଷ୍ଟା ଥିଲେ ? ଆର୍ଯ୍ୟ ଭାଷ୍ୟକାରଗଣ ଏହାର ନିରାକରଣ ନିରୁକ୍ତ ତଥା ଅନ୍ୟାନ୍ୟ ଗ୍ରନ୍ଥ-ଗୁଡ଼ିକରେ କରିସାରିଛନ୍ତି । ସେମାନଙ୍କ ମତ ଅନୁସାରେ ଋଷି ମନ୍ତ୍ରସ୍ରଷ୍ଟା ନୁହନ୍ତି, ମନ୍ତ୍ରଦ୍ରଷ୍ଟା ଅଟନ୍ତି । ନିରୁକ୍ତ ପ୍ରମାଣ ଅନୁସାରେ—

> ଋଷୟୋ ମନ୍ତ୍ର ଦ୍ରଷ୍ଟାରଃ ।
> ଋଷି ଦର୍ଶନାତ୍ ସ୍ତୋମାନ ଦଦର୍ଶେ ତ୍ୟୌପମନ୍ୟବଃ ।
> ତଦପଦେନାଂସ୍ତପ ସ୍ୟମାନାଦ ବ୍ରହ୍ମଂ
> ସ୍ୱୟଂମ୍ଭ୍ୱବଭ୍ୟାନର୍ଷ-ତ୍ ତଦ୍ରଷୋଣାମ୍ ଋଷିତ୍ୱ
> ମିତ ବିଜ୍ଞାୟତେ ॥ [୨।୧୧]

ଋଷି ମନ୍ତ୍ରଦ୍ରଷ୍ଟା । ଔପମନ୍ୟ ଓ ଆଗ୍ନେୟ ମଧ୍ୟ କୁହନ୍ତି କି ବେଦରେ ପ୍ରଯୁକ୍ତ ସ୍ତୁତି ଆଦି ମନ୍ତ୍ରର ବାସ୍ତବିକ ଅର୍ଥର ସାକ୍ଷାତ୍କାର କରିଥିବା ପୁରୁଷଙ୍କୁ ଋଷି କୁହାଯାଏ । ତପସ୍ୟା ବା ଧ୍ୟାନ ଦ୍ୱାରା ବେଦର ଅର୍ଥ ସହ ରହସ୍ୟଦର୍ଶନ ହିଁ ଋଷିତ୍ୱ ଅଟେ ।

“ଋଷି” ଦୃଶଧାତୁରୁ “ଇ”କାର ଲୋପରେ ଗଠିତ “ଋ” ଅର୍ଥ ଗତି ବା ପ୍ରାପ୍ତି ଅର୍ଥରେ “ଷ” ଅର୍ଥଜ୍ଞାନ ଓ “ଇ” ଅଧିକାରୀ ଅର୍ଥରେ ଉତ୍ପତ୍ତି ହୋଇଛି । ଏଣୁ ଋଷିଜ୍ଞାନ ପ୍ରାପ୍ତିର ଅଧିକାରୀ, ସେ ଜ୍ଞାନର ସ୍ରଷ୍ଟା ନୁହଁନ୍ତି । ଏଣୁ ଋଷିଙ୍କ ପୂର୍ବରୁ ବେଦର ଅସ୍ତିତ୍ୱ ସ୍ୱୀକାରଯୋଗ୍ୟ ହୋଇଥାଏ ।

ମହାରାଜ ମନୁ [୧।୨୩] କହନ୍ତି—ସୃଷ୍ଟିର ପ୍ରାରମ୍ଭରେ ପରମେଶ୍ୱର ଅଗ୍ନି ଋଷିଙ୍କ ହୃଦୟରେ ଋକ୍‌ବେଦ, ବାୟୁଋଷିଙ୍କ ହୃଦୟରେ ଯଜୁର୍ବେଦ, ସୂର୍ଯ୍ୟଋଷିଙ୍କ ହୃଦୟରେ ସାମବେଦ ଏବଂ ଅଙ୍ଗିରା ଋଷିଙ୍କ ହୃଦୟରେ ଅଥର୍ବ ବେଦ ପ୍ରକାଶ କଲେ ଏବଂ ସେମାନଙ୍କ ଦ୍ୱାରା ବ୍ରହ୍ମାଙ୍କୁ ଚାରିବେଦ ଶିକ୍ଷା ଦେଇଥିଲେ । ଶ୍ୱେତା-ଶ୍ୱେତର ଉପନିଷଦ [୬।୧୮] ଏବଂ ଶତପଥ ବ୍ରାହ୍ମଣ [୧୧।୪।୨।୩] ଆଦିରେ ମଧ୍ୟ ଏ କଥାର ସ୍ପଷ୍ଟୀକରଣ କରାଯାଇଛି । ମହର୍ଷି ଦୟାନନ୍ଦ ତାଙ୍କ “ସତ୍ୟାର୍ଥ ପ୍ରକାଶ”ର ସପ୍ତମ ସମୁଲ୍ଲାସରେ ପ୍ରତିପାଦନ କରନ୍ତି ଯେ କେବଳ ସେହି ଚାରିଜଣ ଋଷି ସମସ୍ତ ଜୀବାତ୍ମାଙ୍କ ମଧ୍ୟରେ ସର୍ବାପେକ୍ଷା ଅଧିକ ପବିତ୍ରାତ୍ମା ଥିଲେ । ତାଙ୍କ ସଦୃଶ ଅନ୍ୟ କେହି ନ ଥିଲେ । ସୁତରାଂ ତାଙ୍କ ମଧ୍ୟରେ ହିଁ ପବିତ୍ର ବିଦ୍ୟାର ପ୍ରକାଶ କରାଗଲା ।

ଅନେକ କ୍ଷେତ୍ରରେ ଋଷିମାନଙ୍କ ନାମ ଗୁଣବାଚକ ଭାବରେ ମଧ୍ୟ ବେଦରେ ପ୍ରୟୋଗ କରାଯାଇଛି । ନିଘଂଟୁ ବା ନିରୁକ୍ତ ବିନା ଏହାର ବ୍ୟାଖ୍ୟା କରାଯାଇ ପାରିବ ନାହିଁ । ବେଦରେ ବଶିଷ୍ଠ କୌଣସି ନାମବିଶେଷ ନୁହେଁ । କାରଣ କୁହାଯାଇଛି—“ପ୍ରାଣୋ ବା ବଶିଷ୍ଠଃ ଋଷି” [ଶତ-୨।୧।୮] ପ୍ରାଣ ହିଁ ବଶିଷ୍ଠ । ମେଧାବୀ ଲୋକଙ୍କୁ କଣ୍ୱ କୁହାଯାଏ ବା “କଣ୍ୱଇତି ମେଧାବୀ ନାମ ।” [ନିଘଂଟୁ ୩।୧୫] ସମୁଦ୍ରର ଓ ଅଗ୍ନିକୁ ପରୀକ୍ଷିତ, ଦେଦୀପ୍ୟମାନ ଅଗ୍ନିକୁ ଉର୍ବଶୀ ଓ ବିଦ୍ୱାନମାନଙ୍କୁ ଶୁନଃଶେପ ବୋଲି କୁହାଯାଏ ଏବଂ ବେଦରେ ସେହି ଅର୍ଥରେ କୁହାଯାଇଛି । ଏପରିକି ବେଦରେ ବାରମ୍ବାର ଆସୁଥିବା ଗୌ, ଅଶ୍ୱ, ଘୃତ, ଆପଃ, ଶବ୍ଦ ଅନେକ ସ୍ଥଳେ ଲୌକିକ ନୁହେଁ । ଏହା ସାଙ୍କେତିକ ଓ ପ୍ରତୀକଧର୍ମୀ ଅଟେ । ଆଧ୍ୟାତ୍ମିକ ଅର୍ଥରେ “ଗୌ”, ଶବ୍ଦ ସର୍ବତ୍ର ଦିବ୍ୟପ୍ରକାଶ ଅର୍ଥରେ ବ୍ୟବହୃତ । ତଦ୍ରୂପ “ଅଶ୍ୱ” ଶବ୍ଦ ବେଦରେ ଆଧ୍ୟାତ୍ମିକ ଶକ୍ତିର ପ୍ରତୀକ ଅଟେ । ଲୌକିକ ଅର୍ଥରେ “ହର୍ସପାୱାର୍”ର ପରିଭାଷା ପ୍ରଚଳିତ ଅଛି ଯେହେତୁ “ଅଶ୍ୱ” ଶକ୍ତିର ଏକ ସ୍ୱାଭାବିକ ପ୍ରତୀକ ଅଟେ ।

## ବେଦରେ ଅପୌରୁଷେୟ ତତ୍ତ୍ୱ :

ବିଦ୍ ଜ୍ଞାନେ, ବିଦ୍ ସତ୍ତାୟାମ୍, ବିଦ୍‌ଲାଭେ, ହେବା, ଜାଣିବା ଓ ପ୍ରାପ୍ତ କରିବା ଅର୍ଥରେ ବେଦ ମନୁଷ୍ୟ ସମାଜପ୍ରତି ଏକ ଐଶ୍ୱରୀୟ ପ୍ରେରଣା ଅଟେ । ମହର୍ଷି ଦୟାନନ୍ଦ ଆର୍ଯ୍ୟ-ସମାଜର ତୃତୀୟ ନିୟମରେ ଲେଖନ୍ତି—ବେଦ ସମସ୍ତ ସତ୍ୟବିଦ୍ୟା ଗୁଡ଼ିକର

ପୁସ୍ତକ ଅଟେ । ବେଦକୁ ପଢ଼ିବା, ପଢ଼ାଇବା ଓ ଶୁଣିବା, ଶୁଣାଇବା ସମସ୍ତ ଆର୍ଯ୍ୟଙ୍କର ପରମ ଧର୍ମ ଅଟେ ।

ସ୍ୱାମିଜୀ ଅନ୍ୟ ଧର୍ମଶାସ୍ତ୍ରଗୁଡ଼ିକୁ ଏ ଦୃଷ୍ଟିରୁ ବିଚାର କରିନାହାନ୍ତି । ଜେନ୍ଦାବସ୍ତା, ବାଇବେଲ୍ ବା କୁରାନ୍ କୁହନ୍ତୁ କେହି ବାହ୍ୟ ସଂସ୍କାରରୁ ମୁକ୍ତ ନୁହନ୍ତି । ବାଲ୍ମୀକି କ୍ରୌଞ୍ଚପକ୍ଷୀର ବାହ୍ୟ ପ୍ରଭାବରେ ଆଦି ଶ୍ଲୋକର ସ୍ଫୁରଣ କରନ୍ତି ତ ବାଇବେଲ ଓ କୁରାନ୍ ଇତିହାସର ଘଟଣାବଳୀରେ ଭରପୁର । ନିର୍ମଳ, ସ୍ୱଚ୍ଛ, ମୌଳିକ ଚିନ୍ତାରୁ ଏହା ଛିନ୍ନ-ବିଚ୍ଛିନ୍ନ ଓ ପ୍ରତିକ୍ରିୟାଶୀଳ । ମାତ୍ର କାମନା, ବାସନା, ସ୍ୱାର୍ଥ ଶୂନ୍ୟ, ପ୍ରତିକ୍ରିୟାବିହୀନ ଋଷିଗଣ ବାହ୍ୟସଂସ୍କାରରୁ ମୁକ୍ତ ହୋଇ ଯୋଗାରୂଢ଼ ଅବସ୍ଥାରେ ଯେଉଁ ଜ୍ଞାନର ସାକ୍ଷାତକାର କଲେ ତାହାହିଁ ହେଉଛି ବେଦ ।

ଆଦି ସୃଷ୍ଟିରେ ଋଷିଗଣ ଏ ଅମୃତ ବାଣୀ "ବେଦ" ଈଶ୍ୱରଙ୍କ ପ୍ରେରଣାରେ ଲାଭ କଲେ । ଋଗ୍‌ବେଦରେ କୁହାଯାଇଛି—"ବୃହସ୍ପତେ ପ୍ରଥମଂ ବାଚୋ ଅଗ୍ରଂ ଯତ୍ ପ୍ରୈରତ ନାମଧେୟଂ ଦଧାନା ।" କେହି ପଚାରି ପାରନ୍ତି ବାଣୀପାଇଁ ଅନ୍ୟର ପ୍ରେରଣା କ'ଣ ଏକାନ୍ତ ଆବଶ୍ୟକ ? ଭାରତୀୟ ତତ୍ତ୍ୱମୀମାଂସା କୁହେ ଯେପରି ଶିଶୁର କାନରେ ମାଁ ହିଁ ବାଣୀର ସ୍ଫୁରଣ କରେ ତଦ୍ରୂପ ବାଣୀର ପ୍ରେରଣା ମୂଳରେ ପରମେଶ୍ୱର ବିଦ୍ୟମାନ । ନତୁବା ଆଦିମାନବ ପଦାର୍ଥ ଜ୍ଞାନ ପାଇଲା କେଉଁଠାରୁ । ନିଆଁକୁ ଦେଖି "ଅଗ୍ନି" ବୋଲି କହି ଅଗ୍ନି ଶବ୍ଦରୁ ଅଗ୍ରଣୀୟ ତତ୍ତ୍ୱର ସନ୍ଧାନ ଲାଭ କଲା କିପରି ? ପୃଥୁଳ ବସ୍ତୁପାଇଁ "ପୃଥିବୀ", ମହାନ୍ ପାଇଁ "ମହୀ" ଓ ଗତିଶୀଳ ପାଇଁ "ଜଗତ୍" ଶବ୍ଦ ନିର୍ବାଚନ କଲା କିପରି ?

ବାଣୀ ନିତ୍ୟ । ବାଣୀ-ଶାସ୍ତ୍ରର ମହାନ୍ ଋଷି ପତଞ୍ଜଳି କୁହନ୍ତି ଶବ୍ଦର ଅକ୍ଷରବାଦ କୂଟସ୍ଥ ବା ବିନାଶରହିତ ଓ ପୂର୍ବାପର ଅବିଚଳିତ ଅଟେ । ଏହାର ଅଭାବ ଓ ଆଗମ ହୁଏ ନାହିଁ । କାନରେ ଶୁଣି ଯାହା ଗ୍ରହଣ କରାଯାଏ, ବୁଦ୍ଧିଦ୍ୱାରା ଯାହା ଜ୍ଞାତ ହୁଏ, ଯାହା ବାଣୀର ଉଚ୍ଚାରଣବେଳେ ପ୍ରକାଶିତ ହୁଏ, ତା'ର ନିବାସ ଆକାଶ । ଯାହାକୁ ଶବ୍ଦ କୁହନ୍ତି ।

ଏହି ଈଶ୍ୱରଦତ୍ତ ବାଣୀକୁ ବେଦରେ "ଋଷିଷୁ ପ୍ରବିଷ୍ଟାମ୍" କୁହାଯାଇଛି । ବାଇବେଲରେ ସନ୍ଥ ଯୋହନ ତାଙ୍କ ସୁସମାଚାରର ପ୍ରଥମ ପଦରେ କହିଛନ୍ତି—ଆଦ୍ୟରେ ବାକ୍ୟ ଥିଲେ, ସେହି ବାକ୍ୟ ଈଶ୍ୱରଙ୍କ ସହିତ ଥିଲେ ଏବଂ ସେହି ବାକ୍ୟ ଈଶ୍ୱର ଥିଲେ । ତଦ୍ରୂପ କୋରାନ୍ ଶରିଫ୍‌ରେ କୁହାଯାଇଛି—"ବ ଅଲ୍ଲମା 'ଆଦମ୍ ଅଲ୍ ଅସ୍ମା ଆ କୁଲ୍ଲହା" ବା ଏହାପରେ ଆଲ୍ଲାହ ଆଦମକୁ ଜନ୍ମ ଦେଇ ସମସ୍ତ ବର୍ତ୍ତମାନ ବସ୍ତୁଗୁଡ଼ିକର ନାମକରଣ କରିଥିଲେ ।

ଏ ସମସ୍ତ ସମସ୍ୟା ନେଇ ବେଦର କାଳନିରୂପଣ କରିଯାଇ ପାରୁନାହିଁ । ଏହା ଅପୌରୁଷେୟ ଭାବରେ ଯୁଗ ଯୁଗରୁ ହିନ୍ଦୁ ଧର୍ମ ଓ ସଂସ୍କୃତିର ମୂଳାଧାର ରୂପେ ଧରିନିଆଯାଇଛି । ଯେପରି ନିଉଟନଙ୍କ ପୂର୍ବରୁ ମାଧ୍ୟାକର୍ଷଣ ନାମକ ଶକ୍ତି ବିଦ୍ୟମାନ ଥିଲା ଓ ସେ ଏହାର ସ୍ରଷ୍ଟା ନ ଥିଲେ, ଥିଲେ ଦ୍ରଷ୍ଟା । ସେ ଏହାକୁ ଜନକଲ୍ୟାଣ ଦୃଷ୍ଟିରୁ ଲୋକ-ଲୋଚନକୁ ଆଣିଥିଲେ । ତଦ୍ରୂପ ବେଦ ବା ଜ୍ଞାନ ଜ୍ଞାନୀ ବା ଋଷିଗଣଙ୍କ ପୂର୍ବରୁ ମଧ୍ୟ ଥିଲା ଋଷିଗଣ ସ୍ରଷ୍ଟା ନ ଥିଲେ, ଥିଲେ ଆବିଷ୍କର୍ତ୍ତା । ଏହି ବିଶ୍ୱାସର ଆଧାର ପରେ ଏହା କୁହାଯାଉଥିଲା ଯେ ବେଦ ସୃଷ୍ଟି ପୂର୍ବରୁ ଥିଲା, ସୃଷ୍ଟି ପରେ ମଧ୍ୟ ଅଛି ଓ ପ୍ରଳୟପରେ ମଧ୍ୟ ରହିବ ।

ଅଳଙ୍କ ମନୁଷ୍ୟ ସର୍ବଜ୍ଞ ସ୍ରଷ୍ଟାଙ୍କର ଶ୍ରେଷ୍ଠ ଉପହାର "ବେଦ"ର କାଳ ନିରୂପଣ ନ କରିପାରିବାରେ ଆଶ୍ଚର୍ଯ୍ୟ କିଛି ନାହିଁ । ମନୁଷ୍ୟ ସବୁ ଦୃଷ୍ଟିରୁ ବୁଦ୍ଧିମାନ୍ ନିଶ୍ଚୟ, ମାତ୍ର ଜ୍ଞାନୀ ନୁହେଁ । ବେଦର କାଳ ନିରୁପଣ କରିବାକୁ ଯାଇ ସେ-ଫେନ୍ଦ୍ରର ହାର ମାନିଯାଆନ୍ତି । ସେ ହିନ୍ଦୁମାନଙ୍କ ପରି ଏହାକୁ ଅପୌରୁଷେୟ ବା ବ୍ରହ୍ମାଙ୍କ ଦ୍ୱାରା ସୃଷ୍ଟ ବୋଲି କହିବାକୁ ବାଧ ହୋଇ ଏହା ଶାଶ୍ୱତ ବୋଲି ଘୋଷଣା କରନ୍ତି ।



# ଆର୍ଯ୍ୟ ଅଭିଯାନ—ଇତିହାସର ଏକ ଆଧାରହୀନ କଳ୍ପନା

ଗୋଟିଏ ଗୋଷ୍ଠୀ ବା ଜାତିକୁ ନଷ୍ଟ କରିବାର ସବୁଠାରୁ ସହଜ ଉପାୟ ହେଲା ସେ ଦେଶର ଇତିହାସକୁ ନଷ୍ଟ କରିଦେବା । ଇତିହାସ ନଷ୍ଟ ହେବାପରେ ସେ ଜାତିର ସ୍ୱାଭିମାନ ନଷ୍ଟ ହୋଇଯିବ ଏବଂ ପରିଣାମତଃ ସେ ଗୋଷ୍ଠୀ ବିଶ୍ୱରେ ବିଭକ୍ତ ହୋଇ ସ୍ୱ ଅସ୍ତିତ୍ୱ ହରାଇବ ।

ଏ ପରିପ୍ରେକ୍ଷୀରେ ମୁଁ ଭାରତ ଇତିହାସ କଥା କହୁଛି । ଯାହାର ସାଂସ୍କୃତିକ ସହତିକୁ ଦୁର୍ବଳ କରିଦେବାକୁ ପାଶ୍ଚାତ୍ୟର କେତେକ ଐତିହାସିକ ବଦ୍ଧପରିକର ଭାବରେ କାର୍ଯ୍ୟ କରି ଆସୁଛନ୍ତି ଏବଂ ଆମର କୌଣସି ଶୃଙ୍ଖଳିତ ଇତିହାସ ଲିଖିତ ଆକାରରେ ନାହିଁ ବୋଲି ଆମର ସ୍ୱୀକୃତି ନେଇ ସାରିଛନ୍ତି । ଏ ଦେଶକୁ ପ୍ରେମ ଅପେକ୍ଷା ସାମ୍ରାଜ୍ୟ ଓ ଭକ୍ତି ଅପେକ୍ଷା ଶକ୍ତି ପ୍ରୟୋଗ କରି ଆସିଥିବା ଅନେକ ଆକ୍ରମଣକାରୀ ବଣିକ ସାମ୍ରାଜ୍ୟବାଦୀ ତାଙ୍କ ଐତିହାସିକଙ୍କ ପୁସ୍ତକରେ ଏ ଦେଶର ପ୍ରାଚୀନ ସ୍ୱର୍ଣ୍ଣଯୁଗକୁ "ଅନ୍ଧକାର ଯୁଗ" ଲେଖାଇବାରେ ମଧ୍ୟ କୁଣ୍ଠାବୋଧ କରି ନାହାନ୍ତି । ସେମାନଙ୍କ ମତରେ ଏ ଦେଶ କାହାର ପୈତୃକ ସମ୍ପତ୍ତି ନୁହେଁ । ଏଣୁ ଏହା ଉପରେ ସମସ୍ତଙ୍କର ଅଧିକାର ଅଛି ।

ସ୍ୱାଧୀନତା ସଂଗ୍ରାମ ସମୟରେ ଲୋକମାନ୍ୟ ତିଳକ "ସ୍ୱରାଜ୍ୟ ମୋର ଜନ୍ମସିଦ୍ଧ ଅଧିକାର" ମନ୍ତ୍ରରେ ପ୍ରଭାବିତ କରୁଥିଲେ ମଧ୍ୟ ଇଂରେଜମାନେ ବିପ୍ଳବୀ-ମାନଙ୍କୁ ବୁଝାଉଥିଲେ—"ସ୍ୱରାଜ୍ୟ ସ୍ୱରାଜ୍ୟ ବୋଲି ଚିତ୍କାର କରୁଛ କାହିଁକି ? ଏହା କ'ଣ ତୁମର ସ୍ୱରାଜ୍ୟ । ତୁମେ କାଷ୍ପିୟାନ୍ କୂଳରୁ ଆସି ଏଠାର ଦ୍ରାବିଡ଼ମାନଙ୍କୁ ପରାସ୍ତ କଲ ଓ ଏଠି ଶାସକ ହେଲ । ତୁମ ପରେ ମୁସଲମାନ ଆସିଲେ, ତୁମକୁ ପରାସ୍ତ କଲେ ଓ ଶାସକ ହେଲେ । ତାଙ୍କ ପରେ ଆମେ ଆସିଛୁ । ତୁମ ପରି ଆମେ ମଧ୍ୟ ଭାରତରେ ବିଦେଶୀ । ତେବେ ଅଯଥା ସ୍ୱରାଜ୍ୟ କଥା କାହିଁକି କହୁଛ ?"

ଏ କଥା କହିବା ମଧ୍ୟରେ ଇଂରେଜମାନଙ୍କର ଯେଉଁ ସାମ୍ରାଜ୍ୟବାଦୀ ଉଦ୍ଦେଶ୍ୟ ଥିଲା ତାହା କାହାକୁ ଅଜଣା ନାହିଁ । ଭାରତ ସ୍ୱାଧୀନତା ଲାଭ କରିଛି, ମାତ୍ର ମାନସିକ ଦାସତ୍ୱରୁ ମୁକ୍ତ ହୋଇନାହିଁ । ଏବେ ମଧ୍ୟ ସତ୍ୟାସତ୍ୟ ନିର୍ଣ୍ଣୟ

କରିବାକୁ ଆମ ଭିତରେ ଅହେତୁକ ଭୟ ବ୍ୟାପ୍ତ । ଆର୍ଯ୍ୟଗଣଙ୍କୁ ଆକ୍ରମଣକାରୀ କହିବା ପଛରେ ତର୍କ ନାହିଁ । ତଥାପି ପାରମ୍ପରିକ ଭାବରେ ଏହାକୁ ମାନିନେବାରେ ଆମେ ଅନୁଦାର ନୋହୁଁ ।

## ପାଶ୍ଚାତ୍ୟରେ ପ୍ରଚଳିତ ମତ—

ଯଦି ଭାରତକୁ ଆର୍ଯ୍ୟମାନେ ଆକ୍ରମଣକାରୀ ଭାବରେ ଆସିଥିଲେ ତେବେ ତାଙ୍କର ମୂଳନିବାସ କେଉଁଠି ଥିଲା ? ମୂଳନିବାସ ନିର୍ଣ୍ଣୟ କରିବାକୁ ଯାଇ କେତେକ ପାଶ୍ଚାତ୍ୟ ଐତିହାସିକ ଆର୍ଯ୍ୟଗଣଙ୍କୁ ନିଜ ଦେଶର ମୂଳନିବାସୀ ବୋଲି ପ୍ରମାଣ କରି ଏକ ଶ୍ରେଷ୍ଠ ଓ ଆଦିମ ଜାତିର ଦାୟାଦ ହେବାର ଶ୍ରେୟ ସ୍ୱ ଦେଶକୁ ଦେଇ ବସନ୍ତି ତ ଅନ୍ୟପକ୍ଷରେ କେତେକ ଏ ଜାତିର ଅସ୍ତିତ୍ୱକୁ ମଧ୍ୟ ଅସ୍ୱୀକାର କରି ଥାଆନ୍ତି ।

ଏକ ଶ୍ରେଷ୍ଠ ଓ ଗୌରବପୂର୍ଣ୍ଣ ଜାତିରେ ନିଜକୁ ଅଂଶୀଦାର କରିବାକୁ ହିଟଲର ତ ନିଜକୁ ଆର୍ଯ୍ୟ ଓ ଜର୍ମାନ ଜାତିକୁ ପ୍ରକୃତ ଆର୍ଯ୍ୟବଂଶଧର ମନେ କରି ସ୍ୱ ସେନାଙ୍କ ମଧ୍ୟରେ ସ୍ୱସ୍ତିକ ଚିହ୍ନ ବ୍ୟବହାର କରାଇଥିଲେ । ଜର୍ମାନମାନଙ୍କ ପରି, ଏକ ଶ୍ରେଷ୍ଠ ଜାତିର ଦାୟାଦ ହେବାକୁ ସ୍କାଣ୍ଡିନେଭିଆ, ହଙ୍ଗେରୀ ଓ ରୁଷ୍‌ର ଗବେଷକଗଣ ଆର୍ଯ୍ୟମାନଙ୍କୁ ସ୍ୱ ସ୍ୱ ଦେଶର ମୂଳନିବାସୀ ଧରି ଇତିହାସ ସୃଷ୍ଟି କରି ଚାଲିଛନ୍ତି ।

କେତେକ ଆର୍ଯ୍ୟଙ୍କ ମୂଳନିବାସ ୟୁରୋପ ବୋଲି ଧରି ନିଅନ୍ତି ତ ଅନ୍ୟମାନେ ସେମାନଙ୍କୁ ୟୁରେସିଆ ଅଞ୍ଚଳର ହୋଇଥିବା କଳ୍ପନା କରନ୍ତି । ସ୍କାଣ୍ଡିନେଭିଏନ୍ ବିଦ୍ୱାନ୍ ଡା· ଲୁଥାମ୍, ସ୍କାଣ୍ଡିନେଭିଆର ଭାଷାକୁ ପ୍ରମୁଖ ଆଧାର ମାନି ୧୮୬୦ରେ କହିବାକୁ ଆରମ୍ଭ କରି ଦେଇଥିଲେ ଯେ ପ୍ରଥମରେ ଏସିଆରେ ନୁହେଁ, ୟୁରୋପୀୟ ସଭ୍ୟତାରେ ହିଁ ପ୍ରଥମ ସାଂସ୍କୃତିକ ଉନ୍ମେଷ ହୋଇଥିଲା ।

ଡକ୍ଟର ଗାଇଲଜ ହଙ୍ଗେରୀର କାରପେଥିୟନ ପର୍ବତର ଅପର ପାର୍ଶ୍ୱରେ ଆର୍ଯ୍ୟଙ୍କ ମୂଳନିବାସ କଥା ସ୍ୱ "କେମ୍ବ୍ରିଜ ହିଷ୍ଟ୍ରୀ ଅଫ୍ ଇଣ୍ଡିଆ"ରେ କହନ୍ତି । ସ୍ଲାଭ ଭାଷାର ବିଦ୍ୱାନ ପ୍ରଫେସର ଶେଡ଼ର ମୂଳତଃ ସ୍ଲାଭ ଭାଷାଗୁଡ଼ିକର ଆଧାର ନେଇ ଦକ୍ଷିଣ ରୁଷ୍‌ର ଗୋଲଗା ନଦୀର ମୁହାଣ ଓ କାସ୍ପିୟାନ ସାଗରର ଉତ୍ତର-କୂଳକୁ ଆଦିମାନବର ଆଦିନିବାସ ବୋଲି ପ୍ରମାଣ ଦେଇଛନ୍ତି; କାରଣ ଏବେ ମଧ୍ୟ ସେଠି 'ସାତନଦୀର ଦେଶ ବା ସପ୍ତ ସିନ୍ଧୁ' ନାମକ ଏକ ପ୍ରାନ୍ତ ରହିଛି ବୋଲି କୁହାଯାଏ ।

ଡାରଉଇନବାଦୀ ଐତିହାସିକ ମନୁଷ୍ୟଙ୍କୁ ମାଙ୍କଡ଼ର ବଂଶଧର ପ୍ରମାଣ କରି-ସାରିବା ପରେ ଏହି ମାଙ୍କଡ଼ଙ୍କ ଆଦିସ୍ଥାନ ଆଫ୍ରିକାର ଭିକ୍ଟୋରିଆ ନ୍ୟାଂଜା ଓ ଟାଙ୍ଗାନିକା ସରୋବରର ସମୀପକୁ ଆମ ମାନଙ୍କର ମୂଳନିବାସ ମାନନ୍ତି କହନ୍ତି ତ ଆଉ କେତେକ ବୈଜ୍ଞାନିକ ବର୍ତ୍ତମାନ ଅବସ୍ଥିତ ଏସିଆ ଓ ଆଫ୍ରିକାର ମଧ୍ୟବର୍ତ୍ତୀ ପୋଲିନେସିଆ ଓ ତାହାର ସମୀପ ସ୍ଥାନକୁ ଆମମାନଙ୍କର ମୂଳସ୍ଥାନ କହନ୍ତି । ବିକାଶବାଦୀଙ୍କ ଦୃଷ୍ଟିରେ ନିଗ୍ରୋମାନେ ହିଁ ଉଣୁର ଆମମାନଙ୍କ ବଂଶଜ ଅଟନ୍ତି ।

## 'ଦ୍ରାବିଡ଼' 'ଦସ୍ୟୁ' ନୁହନ୍ତି —

ଆର୍ଯ୍ୟଙ୍କ ମୂଳନିବାସ ସମ୍ପର୍କରେ ବାଦାନୁବାଦ ଅନେକ ହୋଇପାରେ, ମାତ୍ର ଦ୍ରାବିଡ଼ ଜାତିର ଇତିହାସ ତ ସର୍ବସମ୍ମତ ସ୍ୱୀକୃତ ହେବା ଉଚିତ, ଯେହେତୁ ଭାରତରେ ସେମାନେ ମୂଳ ନିବାସୀ । ଇତିହାସରେ ଆମକୁ ଏବେ ମଧ୍ୟ ପଢ଼ାଯାଉଛି ଯେ ସିନ୍ଧୁ ଘାଟିରେ ରହୁଥିବା ଦ୍ରାବିଡ଼ମାନଙ୍କୁ ଯେଉଁମାନେ ପରାଜିତ କରିଥିଲେ ସେମାନେ ହେଲେ ଆର୍ଯ୍ୟ । ଦେଖିବାକୁ ବର୍ଣ୍ଣରେ ସେମାନେ ଗୌର । ଭାରତର ପ୍ରଥମ ଓ ସ୍ଥାୟୀ ଅଧିବାସୀ କୃଷ୍ଣକାୟ ଦ୍ରାବିଡ଼ମାନଙ୍କୁ ଦକ୍ଷିଣକୁ ବିତାଡ଼ିତ କରି ସେମାନେ କୁଆଡ଼େ ଜାଗା ମାଡ଼ି ବସିଲେ ।

ଅନେକ ବର୍ଷ ପରେ ଅବଶ୍ୟ ମୁଁ ଜାଣିବାକୁ ପାଇଲି ଯେ ଆର୍ଯ୍ୟ ପ୍ରକୃତରେ କୌଣସି ନିର୍ଦ୍ଦିଷ୍ଟ ଜାତି ବିଶେଷର ନାମ ନୁହେଁ । ଏହା ଏକ ଗୁଣବାଚକ ସଂଜ୍ଞା । ଶ୍ରେଷ୍ଠ, ଭଦ୍ର ଓ ଆଦର୍ଶ ପୁରୁଷଙ୍କ ଉଦ୍ଦେଶ୍ୟରେ ଏ ଅର୍ଥ ବ୍ୟବହୃତ ହୋଇଛି । ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ଭର୍ତ୍ସନା କରିବାକୁ ଯାଇ 'ଅନାର୍ଯ୍ୟ' ବୋଲି କହନ୍ତି । ଯୁଗ ଥିଲା ବ୍ରହ୍ମଙ୍କୁ ଜାଣିଥିବା ବ୍ୟକ୍ତିଙ୍କୁ ବ୍ରାହ୍ମଣ କୁହାଯାଉଥିଲା ଏବଂ ବ୍ରାହ୍ମଣର ପୁତ୍ର ଚଣ୍ଡାଳର କର୍ମ କଲେ, ଚଣ୍ଡାଳ ବୋଲି ଧରାଯାଉଥିଲା । ମାତ୍ର କାଳକ୍ରମେ ବ୍ରହ୍ମ ଉପାସନା ନ କରି ମଧ୍ୟ ବ୍ରାହ୍ମଣ ପୁତ୍ର ବ୍ରାହ୍ମଣ ହୋଇ ରହିଲା । ସେହିପରି ଶ୍ରେଷ୍ଠ ଆଚରଣ କରୁଥିବା ବ୍ୟକ୍ତିଙ୍କୁ ଆର୍ଯ୍ୟ କୁହାଯାଉଥିଲା ଏବଂ କାଳକ୍ରମେ ସେମାନେ ଏକ ଗୋଷ୍ଠୀରେ ପରିଣତ ହୋଇ ଆର୍ଯ୍ୟ ଜାତି ନାମରେ ଖ୍ୟାତ ହେଲେ । ଯେଉଁ ଜାତି ବିଷୟରେ ଏଠି ଉଲ୍ଲେଖ କରାଯାଉଛି, ପ୍ରବନ୍ଧଟିରେ ଗୁଣବାଚକ ଆର୍ଯ୍ୟଙ୍କୁ ନେଇ କିଛି କୁହାଯାଉ ନାହିଁ ।

କେତେକ ବ୍ୟାକରଣରେ ତ ଆର୍ଯ୍ୟର ବିପରୀତ ଅନାର୍ଯ୍ୟ ଲେଖା ନ ଯାଇ 'ଦ୍ରାବିଡ଼' ବୋଲି ଉଲ୍ଲେଖ ଅଛି । ପ୍ରକୃତରେ କ'ଣ ଦ୍ରାବିଡ଼ ନାମକ ଏକ ଜାତି ସହ ଆର୍ଯ୍ୟମାନଙ୍କ ସଂଗ୍ରାମ ହୋଇଥିଲା ତାହା କହିବା କଷ୍ଟକର ବ୍ୟାପାର । ଏହାକୁ ଏକ କାଳ୍ପନିକ ସଂଗ୍ରାମ କହିଲେ ଭଲ ହେବ କାରଣ ଆର୍ଯ୍ୟମାନେ ଯଦି କେବେ ସଂଗ୍ରାମ

କରିଥାନ୍ତି ତାହେଲେ ତା' ଦ୍ରାବିଡ଼ମାନଙ୍କ ପକ୍ଷ ନୁହେଁ, ବରଂ ଦସ୍ୟୁମାନଙ୍କ ପକ୍ଷ । ଋଗ୍‌ବେଦର କ ସ୍ଥାନ ପ୍ରକାଶ ଥର ଦସ୍ୟୁ ଶବ୍ଦର ଉଲ୍ଲେଖ ଅଛି ।

ଅନ୍ୟ କଥା କହିଲେ, ଆର୍ଯ୍ୟ ଦ୍ରାବିଡ଼ ପରସ୍ପର ପାଇଁ ଏକ ବିପରୀତ ଶବ୍ଦ ନୁହେଁ, ବରଂ ପର୍ଯ୍ୟାୟବାଚୀ ସମାର୍ଥବୋଧକ ଶବ୍ଦ । ଯଦିଓ ଦ୍ରାବିଡ଼ ଶବ୍ଦର ଉଲ୍ଲେଖ କୌଣସି ପ୍ରାଚୀନ ଆର୍ଯ୍ୟ ଶାସ୍ତ୍ରଗ୍ରନ୍ଥରେ ହୋଇନାହିଁ ତଥାପି ଏହାର ସୃଷ୍ଟି ଆର୍ଯ୍ୟ ଶବ୍ଦର ଅନୁସରଣରେ ହୋଇଛି । ଏ ଦୁଇ ଶବ୍ଦକୁ ସମକାଳୀନ ବୁଝାଯାଇ ପାରିବ ନାହିଁ କାରଣ ବେଦରେ ଏହାର ଉଲ୍ଲେଖ ନାହିଁ ।

ଆଜି ଦ୍ରାବିଡ଼ ଶବ୍ଦ ଉପରେ ରାଜନୈତିକ ରଙ୍ଗ ବୋଳି ସ୍ୱାଧୀନ ଭାରତର ଦାକ୍ଷିଣାତ୍ୟରେ ଦ୍ରାବିଡ଼ ମୁନ୍ନେତ୍ର କଡ଼ଗମ ଆଦି ଦଳ ରାଜନୈତିକ ଲୋକପ୍ରିୟତା ହାସଲ କରିବାକୁ ଉତ୍ତର ଭାରତ ଓ ଦକ୍ଷିଣ ଭାରତ ମଧ୍ୟରେ ବିଭେଦ ସୃଷ୍ଟି କରି ଆମର ସାଂସ୍କୃତିକ ବିପର୍ଯ୍ୟୟ ଘଟାଉଛନ୍ତି ।

ଆର୍ଯ୍ୟ ଶବ୍ଦ ପରି ଦ୍ରାବିଡ଼ ଶବ୍ଦ ମଧ୍ୟ ଶୁଦ୍ଧ ସଂସ୍କୃତ 'ଦ୍ରମିଡ଼' ଶବ୍ଦର ଅପଭ୍ରଂଶ ମାତ୍ର । ଦ୍ରମିଡ଼ ମୂଳ ଶବ୍ଦ 'ଦ୍ରମ' ଅର୍ଥାତ୍ ଗତି ବା ଦୌଡ଼ ହୁଏ । ପୁଣି ଦ୍ରାବିଡ଼ ଶବ୍ଦର ମୂଳ 'ଦ୍ରୁ' ବା ଗତି ଅଟେ । ଏଣୁ ଆର୍ଯ୍ୟ ଶବ୍ଦ ପରି ଦ୍ରାବିଡ଼ ଶବ୍ଦର ଅର୍ଥ ଜ୍ଞାନ, ଗମନ ଏବଂ ପ୍ରାପ୍ତି ର ମାଧ୍ୟମରେ ପ୍ରୟୋଗ ହୁଏ ।

ଐତିହାସିକ ଦୃଷ୍ଟିକୋଣରୁ ମଧ୍ୟ ଦ୍ରାବିଡ଼ମାନେ ଜଙ୍ଗଲୀ ଜାତି ନ ଥିଲେ । ଏକ ପରାଜିତ ଅନୁନ୍ନତ ଦୁର୍ବଳ ଜାତି ଭାବରେ ସେମାନେ କେବେ ମଧ୍ୟ ହଡ଼ପା ଓ ମହେଞ୍ଜୋଦାରୋରେ ଥିବା ସଭ୍ୟତାର ଅଧିକାରୀ ହୋଇ ନ ପାରନ୍ତି । ଏପରି ଏକ ସୁସଂସ୍କୃତ ସହରୀ ସଭ୍ୟତାକୁ ବାହାରୁ ଆସିଥିବା ଯାଯାବର ଆର୍ଯ୍ୟମାନେ ଭୂଲୁଣ୍ଠିତ କରି ତାଙ୍କୁ ଦକ୍ଷିଣରୁ ତଡ଼ିଦେଲେ, ଅଥଚ ସେମାନେ ସ୍ୱ ସୁରକ୍ଷାର କୌଣସି ବ୍ୟବସ୍ଥା କରି ନ ଥିଲେ ଏହା କହିବା କେତେଦୂର ସମୀଚୀନ ତା' ବିଚାର୍ଯ୍ୟ ।

ପାଶ୍ଚାତ୍ୟ ପଣ୍ଡିତଗଣ ଋଗ୍‌ବେଦ (୨।୨୦।୮)ରେ ଥିବା ମନ୍ତ୍ରରେ ବୃତ୍ରର ସଂହାର କର୍ତ୍ତା ଇନ୍ଦ୍ର କୃଷ୍ଣଯୋନି ଦସ୍ୟୁଙ୍କୁ ବିନଷ୍ଟ କରନ୍ତି କଥା ଆଧାରରେ କହିବାକୁ ଆରମ୍ଭ କରି ଦିଅନ୍ତି ଯେ ଶ୍ୱେତବର୍ଣ୍ଣ ଆର୍ଯ୍ୟଗଣ କୃଷ୍ଣବର୍ଣ୍ଣ ଦ୍ରାବିଡ଼ମାନଙ୍କୁ ବିନଷ୍ଟ କରିଦେଲେ । ମାନ୍ଦ୍ରାଜର ଜଣେ ଅଧ୍ୟାପକ ବନ୍ଧୁ ଆଲୋଚନା ପ୍ରସଙ୍ଗରେ ମତେ କହିଲେ କି ଆର୍ଯ୍ୟ ଓ ଦ୍ରାବିଡ଼ ମଧ୍ୟରେ ପାର୍ଥକ୍ୟଟା ବର୍ଣ୍ଣ ନେଇ । ଆର୍ଯ୍ୟମାନେ ଶ୍ୱେତ ଓ ଗୌରବର୍ଣ୍ଣ ଏବଂ ଦ୍ରାବିଡ଼ମାନେ କୃଷ୍ଣ ଓ ଶ୍ୟାମଳ ବର୍ଣ୍ଣ । ଦାକ୍ଷିଣାତ୍ୟର ବ୍ରାହ୍ମଣମାନେ କେବଳ ଆର୍ଯ୍ୟବଂଶଜ କାରଣ ସେମାନଙ୍କ ଭିତରେ

ଅନେକ ଗୌରବର୍ଣ୍ଣ ଏବେ ବି ଅଛନ୍ତି । ମୁଁ ମନୋରଞ୍ଜନ କର, କହୁଛି ଯେବେ ଋ ବେଦର ମନ୍ତ୍ରଦ୍ରଷ୍ଟା ନିଷାଦ ପୁତ୍ର କଣ୍ୱ ଏବଂ ମହାଭାରତ ରଚୟିତା ବ୍ୟାସ ବର୍ଣ୍ଣରେ କୃଷ୍ଣ ହେବା ସତ୍ତ୍ୱେ ଦ୍ରାବିଡ଼ମାନଙ୍କ ସହ ଅନ୍ୟାୟ କଲେ । ଆର୍ଯ୍ୟମାନଙ୍କ ବେଦର ଗୀତ ଗାଇଲେ । ଆର୍ଯ୍ୟ ଜାତିର ପୃଷ୍ଠପୋଷକ ଓ ରକ୍ଷକ ଶ୍ରୀରାମ ଓ ଶ୍ରୀକୃଷ୍ଣ ବର୍ଣ୍ଣରେ କୃଷ୍ଣ ଥିଲେ ଏଣୁ ସେମାନଙ୍କୁ ଆର୍ଯ୍ୟ ବୋଲି କହିବାରେ ଦ୍ରାବିଡ଼ ତତ୍ତ୍ୱ ମୀମାଂସା ଅଶୁଦ୍ଧ ହୋଇଯିବ ନାହିଁ ତ ?

## ସିନ୍ଧୁ ସଭ୍ୟତା ବନାମ ଆର୍ଯ୍ୟସଭ୍ୟତା—

ମହେଞ୍ଜୋଦାରୋ ଓ ହରପ୍ପାର ସମ୍ପୂର୍ଣ୍ଣ ଖନନ ନ ହେବା ପର୍ଯ୍ୟନ୍ତ ଆମ ଧାରଣା ସୁଦୃଢ଼ ହୋଇ ଯାଇଥିଲା ଯେ ସିନ୍ଧୁ ସଭ୍ୟତା ଆର୍ଯ୍ୟ ସଭ୍ୟତାର ପୂର୍ବବର୍ତ୍ତୀ ଓ ପ୍ରାଚୀନ । ଏଥର ଖନନ ଓ ଗବେଷଣା ପରେ ଆମର ଏ ଧାରଣାରେ ଅନେକ ପରିବର୍ତ୍ତନ ଆସିଛି । ସେଠାରୁ ପ୍ରାପ୍ତ କେତେକ ମୂର୍ତ୍ତି, ସିଲ୍, ମୋହର ଆଦିରୁ ଜଣାପଡ଼ୁଛି ଯେ ସିନ୍ଧୁ ଉପତ୍ୟକାର ସଭ୍ୟତା ବୈଦିକ ବର୍ଣ୍ଣାଶ୍ରମର ସଭ୍ୟତା ଥିଲା ।

ସେଠାରୁ ପ୍ରାପ୍ତ ଯେଉଁ ଶିଳା ମୋହରଗୁଡ଼ିକର ଧ୍ୱଂସାବଶେଷ ପ୍ରାପ୍ତ ହୋଇଛି ସେଥିରେ ଅଙ୍କିତ ଲିପିର ପାଠୋଦ୍ଧାର ପାଶ୍ଚାତ୍ୟରେ ଏ ପର୍ଯ୍ୟନ୍ତ ହୋଇପାରିନାହିଁ । ସିଲ୍ଚର ନିବାସୀ ପଣ୍ଡିତ ଶ୍ରୀ ମହେନ୍ଦ୍ର ଚନ୍ଦ୍ର କାବ୍ୟତୀର୍ଥ-ସାଂଖ୍ୟାର୍ଣ୍ଣବ କେତେକ ଶିଳାମୋହରର ପାଠୋଦ୍ଧାର କରିଛନ୍ତି । ତନ୍ମଧ୍ୟରୁ ଗୋଟିଏ ଶିଳାରେ ଯେଉଁ ଚିତ୍ର ଅଛି, ସେଥିରେ ଏକ ବୃକ୍ଷ ପରେ ଦୁଇଟି ପକ୍ଷୀ ଚିତ୍ରିତ । ଗୋଟିଏ ପକ୍ଷୀର ଚଞ୍ଚୁ ଫଳ ପରେ ଅଛି ତ ଅନ୍ୟ ପାଖରେ ଅନ୍ୟ ପକ୍ଷୀଟି ବସି ତାକୁ ନିରୀକ୍ଷଣ କରୁଛି । ଏହା ଋଗ୍ବେଦର ନିମ୍ନ ମନ୍ତ୍ରଟିର ଭାବୋଦ୍ରେକ କରୁନାହିଁ ତ ?

ଦ୍ୱାସୁପର୍ଣ୍ଣା ସଯୁଜା ସଖାୟା
ସମାନଂ ବୃକ୍ଷଂ ପରିଷସ୍ୱଜାତେ
ତୟୋରେକ ପିପ୍ପଳଃ ସ୍ୱାଦ୍ୱତ୍ତ୍ୟନ—
ଶ୍ନନ୍ନନ୍ୟୋ ଅଭିଚାକ ଶୀତ ।।

(୧ମ ୧୬୪ ସୂ)

ଉପରୋକ୍ତ ମନ୍ତ୍ରରେ ଜୀବ ଓ ଈଶ୍ୱର ଦୁଇପକ୍ଷୀର ସ୍ୱରୂପ ବର୍ଣ୍ଣିତ ହୋଇଛି । ସାଂଖ୍ୟାର୍ଣ୍ଣବ ମହାଶୟ ଏଥିରେ ଥିବା ଲିପିକୁ ପଢ଼ିଲେ । ୨ ସୁବର୍ଣ୍ଣ (ମୁଦ୍ରା) 'ଦ୍ୱାସୁପର୍ଣ୍ଣ' ସହ '୨ ସୁବର୍ଣ୍ଣ' ଧ୍ୱନିର ସୁନ୍ଦର ସାମଞ୍ଜସ୍ୟ ରହିଛି ଏବଂ ଚିତ୍ର ମଧ୍ୟ

ସମ୍ଭବତଃ ଏହି ମେଳ କାରଣରୁ ଏ ପ୍ରକାର ଅଙ୍କିତ ହୋଇଛି । 'କଲ୍ୟାଣ'ର ଧର୍ମାଙ୍କରେ ଡା. ଚୌଧୁରୀ ମହାଶୟ ଏ ସମ୍ପର୍କରେ ସ୍ପଷ୍ଟ ମତ ଦିଅନ୍ତି ଯେ ଯଦି ଏ ଅନୁମାନ ସତ୍ୟ ହୁଏ ଏବଂ ଏହା ସମ୍ଭବ ହୁଏ ତେବେ ଅନ୍ତତଃ ଏହା ପ୍ରମାଣିତ ହୋଇଯାଏ କି ସିନ୍ଧୁ ଉପତ୍ୟକାର ଏହି ବେଦମନ୍ତ୍ର ପରେ ଆଧାରିତ ଓ ସେଠିକାର ସମାଜ ବୈଦିକ ଧର୍ମାବଲମ୍ବୀ ଥିଲେ ।

ସେ ସ୍ଥାନରୁ ପ୍ରାପ୍ତ କେତେକ ମୂର୍ତ୍ତି ଆସନବଦ୍ଧ ନାସାଗ୍ର ଦୃଷ୍ଟି ଅବସ୍ଥାରେ ଦେଖି ଆମେ ଆଶ୍ଚର୍ଯ୍ୟ ନ ହୋଇ ରହିପାରୁ ନା । ଆସନ ଯୋଗର ଏକ ପ୍ରଧାନ ଅଙ୍ଗ । ଆସନ ଲଗାଇ ବସିବା ପଦ୍ଧତି ଭାରତ ବାହାରେ କେବେ ନ ଥିଲା । ଏହା ଚୀନ୍, ଜାପାନ, ଇଣ୍ଡୋନେସିଆ ଆଦି ଦେଶକୁ ଭାରତରୁ ହିଁ ଯାଇଥିଲା । ନାସାଗ୍ର ଦୃଷ୍ଟିରେ ମନକୁ ଅନ୍ତର୍ମୁଖୀ କରିବା ଏକ ଯୌଗିକ ଉପାୟ ଯା ଭଗବାନ କୃଷ୍ଣ ଗୀତାରେ ମଧ୍ୟ କହିଛନ୍ତି ।

ତୃତୀୟତଃ ସେଠାରୁ ଏକ ଶିଳା ମୋହର ପରେ ଶ୍ମଶାନର ଚିତ୍ର ମିଳିଛି ଏବଂ ସେହି ଚିତ୍ରରୁ କଳସୀ ଅର୍ଦ୍ଧ ଦଗ୍ଧ କାଷ୍ଠ ଏବଂ ଚିତା ଭସ୍ମ ଆଦିର ଆଭାସ ସ୍ପଷ୍ଟ । ଶବକୁ ଅଗ୍ନିସଂସ୍କାର କରିବା ପରମ୍ପରା ପ୍ରାଚୀନକାଳରୁ ଅଦ୍ୟାବଧି ଭାରତରେ ପ୍ରଚଳିତ । ଏହା ଶୁଦ୍ଧ ବୈଦିକ ପରମ୍ପରା । ଏତଦ୍‌ବ୍ୟତୀତ ସେଠାରୁ ପ୍ରାପ୍ତ ଶିବ ଲିଙ୍ଗ ଆଦି ସୂଚାଇ ଦିଏ ଯେ ଶିବ ପୂଜା ଭାରତ ଭିନ୍ନ ଅନ୍ୟତ୍ର ନ ଥିଲା ।

ଶିଳାଲିପିଗୁଡ଼ିକର ପାଠୋଦ୍ଧାର କରି ସାଂଖ୍ୟତୀର୍ଥ ମହାଶୟ ଆଉ ଏକ ନୂତନ ତଥ୍ୟ ଆମକୁ ଦିଅନ୍ତି ଯେ ସେଠାରୁ ମିଳିଥିବା ବିଭିନ୍ନ ମୁଦ୍ରା, ମୂଲ୍ୟର ଦ୍ୟୋତକ ଅଟେ । ଯଥା—ଧରଣ, ନବକଷ୍ଟ, ଗୁଣ୍ଟରଣ, ରଜତ ଦ (ଧ) ନାର, ପଳ ଆଦି । ସେହି ସବୁ ମୁଦ୍ରାର ଉଲ୍ଲେଖ ମନୁ ସ୍ମୃତିରେ ମଧ୍ୟ ରହିଛି । ପିଗର୍ଟ୍ ସାହେବ ମଧ୍ୟ ସ୍ୱ 'ପ୍ରି ହିଷ୍ଟୋରିକ ଇଣ୍ଡିଆ'ରେ ହଡ଼ପାର ଲୋକେ ମୁଦ୍ରାଦ୍ୱାରା କିପରି ବିଦେଶରେ ବାଣିଜ୍ୟ କରୁଥିଲେ ତାହା ଉଲ୍ଲେଖ କରିଛନ୍ତି । ଏ ସମସ୍ତ ପ୍ରମାଣ ଆମପାଇଁ ଯଥେଷ୍ଟ ।

## ଭାରତୀୟ ଭାଷାର ଆଦିସ୍ରୋତ—

ଭାଷାବିତ୍‌ମାନଙ୍କ ମତରେ ଆର୍ଯ୍ୟମାନଙ୍କ ମୂଳନିବାସ କେବେ ମଧ୍ୟ ଭାରତ ନୁହେଁ । ଭାରତ ବାହାରେ ପ୍ରାୟ ଖ୍ରୀଷ୍ଟପୂର୍ବ ୨୫୦୦ରୁ ୧୫୦୦ ମଧ୍ୟରେ ସେମାନେ ଦଳଦଳ ଭାବରେ ଭାରତ, ପାରସ୍, ରୋମ୍, ଗ୍ରୀସ୍, ଜର୍ମାନ୍, ସ୍କାଣ୍ଡିନେଭିଆ ଆଦି ଦେଶଆଡ଼କୁ ଯାଇଥିଲେ ।

ସେମାନେ ଇଉରୋପୀୟ ଭାଷା ବା ଇଣ୍ଡୋୟୁରୋପୀୟ ଭାଷାକୁ ଆଖି ଆଗରେ ରଖି କୁହନ୍ତି ଯେ ଏକ ଭାଷାଗତ ଗୋଷ୍ଠୀର ଲୋକେ ନିଶ୍ଚୟ ଗୋଟିଏ ସ୍ଥାନରେ ରହୁଥିଲେ । ନହେଲେ ବିଶ୍ୱର ଦୂର ଦୂରାନ୍ତରେ ଭାଷାଗତ ସାମ୍ୟ ରହନ୍ତା କିପରି ? ଏଣୁ ସେମାନେ ଏକ କାଳ୍ପନିକ 'ଇଉରୋପୀୟ' ଭାଷାର ଅବତାରଣା କରନ୍ତି । ଇଣ୍ଡୋୟୁରୋପୀୟ ବା ଇଣ୍ଡୋଜର୍ମାନିକ୍ ଭାଷା ଯେ ସଂସ୍କୃତ ତା କହିବାକୁ ସେମାନେ ଅନୁଚିତ ମନେକରିବା ଭିତରେ କୌଣସି କାରଣ ନାହିଁ । ୟୁରୋପୀୟ ଭାଷାର ସଂସ୍କୃତ ସହ କି ପ୍ରକାର ସମ୍ପର୍କ ରହିଛି ତା ଜାଣିପାରିଲେ ପରେ ଆର୍ଯ୍ୟଙ୍କ ମୂଳ ନିବାସ ପରେ କିଛି ଧାରଣା ମିଳିପାରିବ ।

ଐତିହାସିକ ମେକ୍ସଙ୍ଗ୍‌ଙ୍କ ମତରେ ଏକଥା ବିଦ୍ୱାନମାନଙ୍କ ଦ୍ୱାରା ସ୍ୱୀକୃତ ହୋଇଛି ଯେ ଆର୍ଯ୍ୟ ଅଥବା ମନୁଷ୍ୟ ଜାତିର ପୂର୍ବ ପିତାମହ ମନୁ ବା ମାନବ ଅଟନ୍ତି । ଜର୍ମାନୀର 'ମାନସ' ଯାହା ଟ୍ୟୁଟନେର ମୂଳପୁରୁଷ ବୁଝାଏ । ଇଂରାଜୀରେ 'ମେନ୍' ଏବଂ ଜର୍ମାନୀର 'ମନ୍' ଶବ୍ଦ ସହ ଏପରି ମିଳିଯାଏ ଯେପରି ଜର୍ମାନର 'ମେନଶ୍' ସଂସ୍କୃତର 'ମନୁଷ୍ୟ' ସହିତ । ଯଦି ଆର୍ଯ୍ୟମାନେ ବାହାରୁ ଆସିଲେ ତେବେ ମନୁଷ୍ୟ ଶବ୍ଦରୁ 'ମେନ୍' 'ମେନଶ୍' ଆଦି ଅପଭ୍ରଂଶ ସଂସ୍କୃତ ଭାଷାରେ ମିଳନ୍ତା ଏବଂ ତାହା ଅପେକ୍ଷା 'ମନୁଷ୍ୟ' ଶବ୍ଦମୂଳତଃ ସଂସ୍କୃତ ନହୋଇ ଜର୍ମାନ୍ ଆଦି ୟୁରୋପୀୟ ଭାଷାରେ ହୋଇଥାନ୍ତା । ଏ କଥା ନିର୍ବିବାଦରେ ଭାଷାବିତ୍‌ଗଣ ସ୍ୱୀକାର କଲେଣି ଯେ ସଂସ୍କୃତ ବା ବୈଦିକ ଭାଷା ହିଁ ବିଶ୍ୱର ଆଦିଭାଷା । ଉଦାହରଣ ପର୍ଯ୍ୟାପ୍ତ ରହିଛି । ତେବେ କେତୋଟି ଶବ୍ଦ ପରୀକ୍ଷା କରାଯାଇପାରେ ।

ସଂସ୍କୃତରେ ଓଷ୍ଟ୍ରକୁ 'କ୍ରମେଲ' ବା 'କ୍ରମେଲକ' କୁହନ୍ତି । ଏ ଶବ୍ଦ ଫାରସୀରେ ଉଷ୍ଟର; ପଞ୍ଜାବୀ, ବଙ୍ଗଳା, ଓଡ଼ିଆରେ 'ଓଟ'; ହିନ୍ଦୀରେ "ଊଁଟ" ହୋଇ ଯାଇଛି । ସେପରି କ୍ରମେଲ ଗ୍ରୀସରେ ପହଞ୍ଚିବା ମାତ୍ରେ 'କେମେଲେସ୍', ଇଂଲଣ୍ଡରେ 'କେମେଲ', ଇଟାଲୀରେ 'କମଲ' ଓ ଆରବରେ 'ଗମଲ' ବୋଲି କୁହାଯାଉଛି । ସେପରି ସଂସ୍କୃତରେ ଘୋଡ଼ାକୁ ଅଶ୍ୱ, ଘୋଟକ, ବା ହୟ କୁହାଯାଏ । ଏହା ପାରସ୍ୟରେ ଅପଭ୍ରଂଶ ହୋଇ 'ଅସ୍ପ', ଘୋଟକ ଶବ୍ଦରୁ ଭାରତୀୟ ଭାଷାରେ 'ଘୋଡ଼ା' ହୋଇଗଲା । ହୟ ଲାଟିନ୍‌ରେ 'ଇକୁଇସ୍' ବା 'କେବାଲସ୍' ତଥା ଇଂରାଜୀରେ 'କବଲନ୍' ହୋଇ ହ୍ରେଷିତ ଧ୍ୱନିରୁ ଇଂରାଜୀରେ 'ହର୍ସ' ଓ ପୁରାତନ ଜର୍ମାନୀ ଭାଷାରେ 'ହ୍ରସ' ହେଲା । ସଂସ୍କୃତ 'ଅର୍ଷଃ' ରୁ ମଧ୍ୟ 'ହ୍ରସ' ଓ ଜର୍ମାନୀ 'ରସ୍'ର ଅପଭ୍ରଂଶ ହୋଇ ଥାଇପାରେ । କାରଣ 'ଅ' କୁ ବହୁ ସମୟରେ 'ହ' ଭାବରେ ଉଚ୍ଚାରଣ କରାଯାଇଥାଏ ।

## ଭାରତ ଇତିହାସରେ ଆର୍ଯ୍ୟ—

ଭାରତର ଏକ ପ୍ରାଚୀନ ଶୃଙ୍ଖଳିତ ଇତିହାସ ଅଛି । ବେଦ ଯଦିଓ ଜ୍ଞାନ ଓ ସିଦ୍ଧାନ୍ତର ଗ୍ରନ୍ଥ ତଥାପି ବୈଦିକକାଳଠାରୁ ରାମାୟଣ ମହାଭାରତକାଳ ପର୍ଯ୍ୟନ୍ତ ଏକ ଅତୁଟ ଐତିହାସିକ ଶୃଙ୍ଖଳା ଆମେ ଦେଖିବାକୁ ପାଉଁ ।

ଆର୍ଯ୍ୟଙ୍କ ମୂଳନିବାସ ସମ୍ପର୍କରେ ବିଚାର କରିବାକୁ ହେଲେ ବିଦେଶୀ ଇତିହାସ ନ ଖୋଜି ଏ ବିଶାଳ ଦେଶର ଇତିହାସ ସନ୍ଦର୍ଭ ମଧ୍ୟ ପରାମର୍ଶ କରିବା ଦରକାର । ଏ ଦେଶରେ କୌଣସି ଶୃଙ୍ଖଳିତ ଇତିହାସ କେହି ମାନୁନେବେ ନାହିଁ । ବେଦରେ ଏହି କଥା ରହିଛି, ରାମାୟଣ ମହାଭାରତରେ ବିଭିନ୍ନ ସ୍ଥାନ ଓ ଐତିହାସିକ ପୁରୁଷଙ୍କ କଥା ଅଛି ପୁଣି ଅଷ୍ଟାଦଶ ପୁରାଣରେ କେତେଗୁଡ଼ିଏ ପ୍ରସଙ୍ଗ ବିଷଦଭାବେ ବର୍ଣ୍ଣିତ ହୋଇଛି ଅଥଚ ଆର୍ଯ୍ୟଙ୍କ ଭାରତ ଆଗମନ ବିଷୟରେ ପଦେ ଲେଖାନାହିଁ କାହିଁକି ?

ମହାଭାରତର ଭୀଷ୍ମପର୍ବ (୯।୫-୯) ରେ ବର୍ଣ୍ଣିତ ଅଛି ଯେ ଭାରତବର୍ଷ ଦେବତା ଇନ୍ଦ୍ର, ବୈବସ୍ୱତ ମନୁ, ରାଜା ପୃଥୁ, ବୈଦ୍ୟ, ମହାତ୍ମା ଇକ୍ଷ୍ୱାକୁ, ଯଯାତି, ଅମ୍ବରୀଷ, ମାନ୍ଧାତା, ନହୁଷ, ମୁଚୁକୁନ୍ଦ, ଶିବି, ଔଶୀନର, ଋଷଭ-ଦେବ, ଏଲ, ନୃଗ ନୃପତି ଆଦି କ୍ଷତ୍ରିୟଙ୍କ ପ୍ରିୟ ଥିଲା । ଏଥିରୁ ଜଣାଯାଏ ଯେ ଏ ରାଜାଗଣ ଭାରତବର୍ଷରେ ଉତ୍ପନ୍ନ ହୋଇଥିଲେ ଏବଂ ସମସ୍ତେ ଆର୍ଯ୍ୟ ଥିଲେ ।

ଏ ଦେଶର ନାମ ଶାକୁନ୍ତଳ ଭରତ ଅଥବ ଦଶରଥୀ ଭରତଙ୍କ ନାମାନୁସାରେ ଭାରତବର୍ଷ ହୋଇନାହିଁ ବରଂ ସ୍ୱାୟମ୍ଭୁବ ମନୁଙ୍କ ସନ୍ତାନଙ୍କ ମଧ୍ୟରେ ଭରତ ନାମକ ଜଣେ ଯଶସ୍ୱୀ ପୁରୁଷ ଥିଲେ, ଯାହାଙ୍କ ନାମ ପରେ ଜମ୍ବୁଦ୍ୱୀପ ଅନ୍ତର୍ଗତ ଏ ଦେଶର ନାମ ଭାରତବର୍ଷ ହେଲା । ଭଗବତ ଗୀତା (୬।୧) ରେ ଏ କଥା ସଞ୍ଜୟଙ୍କ ମୁଖରୁ ଆମେ ଶୁଣୁଛୁ—'ହେ ଭାରତ ! ଏବେ ମୁଁ ଭାରତବର୍ଷର କଥା ବର୍ଣ୍ଣନା କରୁଛି । ଏ ଦେଶ ଦେବ ଇନ୍ଦ୍ରଙ୍କ ପ୍ରିୟ ଦେଶ ଥିଲା । ଏ ଦେଶ ଇନ୍ଦ୍ରଙ୍କ ଭ୍ରାତା ବିବସ୍ୱାନଙ୍କ ପୁତ୍ର ମନୁଙ୍କ ପ୍ରିୟ ଦେଶ ଥିଲା ।

ବାୟୁ ପୁରାଣରେ ଲେଖାଅଛି ଯେ 'ମେରୁ' ହିମାଳୟର ଦକ୍ଷିଣରେ ଏବଂ ମାନସରୋବରର ଉପରେ ଯମ ବୈବସ୍ୱତ ମନୁ ସ୍ୱ ଯମପୁରରେ ବାସ କରୁଥିଲେ (୫୦।୮) । ଶତପଥ ବ୍ରାହ୍ମଣ (୧।୮।୧।୬) ରେ ଲେଖାଅଛି ଯେ ହିମାଳୟ ପରେ ହିଁ ମନୁଙ୍କୁ ଅବସର୍ପଣ ବା ଜଳ ପ୍ଲାବନ ହୋଇଥିଲା ।

ବାଲ୍ମୀକି ରାମାୟଣର ବାଳକାଣ୍ଡ (୬।୪) ରେ ଲେଖାଅଛି "ଆଦ୍ୟ-ରାଜୋ ମନୁଶଚ ପ୍ରଜନାଂ ପରିକ୍ଷିତା," ଆଦ୍ୟ ସମ୍ରାଟ ମନୁ ପ୍ରଜାଙ୍କ ରକ୍ଷା ପାଇଁ ଉଚିତ ବ୍ୟବସ୍ଥା କରିଥିଲେ । ସ୍ୱୟଂ ମନୁ ତାଙ୍କ ସ୍ମୃତିରେ ତତ୍କାଳୀନ ମାନଚିତ୍ରର ଗାଙ୍ଗ୍ ଦଅନ୍ତି—

ଆସମୁଦ୍ରାତୁ ବୈପୂର୍ବତାସମୁଦ୍ରାତୁ ପଶ୍ଚିମାତ୍ତ୍ର ତୟୋରେବାନ୍ତରଂ ଗିର୍ଯ୍ୟୋରାର୍ଯ୍ୟାବର୍ତ୍ତ ବିଦୁର୍ବୁଧା ସରସ୍ୱତୀ ଦୃଷଦ୍ୱତ୍ୟୋର୍ଦ୍ଦେ ବନଦ୍ୟୋର୍ଯ୍ୟ ଦନ୍ତରମ୍ ତଂ ଦେବ-ନିର୍ମିତଂଦେଶମାର୍ଯ୍ୟାବର୍ତ୍ତଂପ୍ରଚକ୍ଷତେ ॥ (୨ । ୨୨। ୧୭)

ମହର୍ଷି ଦୟାନନ୍ଦ ଏହାର ଭାଷ୍ୟ କରନ୍ତି—ଉତ୍ତରରେ ହିମାଳୟ, ଦକ୍ଷିଣରେ ବିନ୍ଧ୍ୟାଚଳ, ପୂର୍ବ ଓ ପଶ୍ଚିମରେ ତଥା ସମୁଦ୍ର ସରସ୍ୱତୀ, ପଶ୍ଚିମରେ ଅଟକ ନଦୀ, ପୂର୍ବରେ ଦୃଷଦ୍ୱତୀ, ଯାହା ନେପାଳର ପୂର୍ବଭାଗ ପାହାଡ଼ରୁ ବାହାରି ବଙ୍ଗଳା ଆସାମର ପୂର୍ବ ଏବଂ ବ୍ରହ୍ମର ପଶ୍ଚିମ ଦେଇ ଦକ୍ଷିଣ ସମୁଦ୍ରରେ ମିଶିଯାଇଛି । ଯାହାକୁ ବ୍ରହ୍ମପୁତ୍ର କହନ୍ତି ଓ ଯା' ଉତ୍ତର ପାଖ ପାହାଡ଼ରୁ ବାହାରି ଦକ୍ଷିଣ ସାଗରରେ ଅଟକ (ଅଟି) ସମ୍ମିଳିତ ହୋଇଛି । ହିମାଳୟର ମଧ୍ୟରେଖାରୁ ଦେଇ ଦକ୍ଷିଣଦିଗ ପାହାଡ଼ ଭିତରେ ଏବଂ ରାମେଶ୍ୱର ପର୍ଯ୍ୟନ୍ତ ବିନ୍ଧ୍ୟାଚଳ ମଧ୍ୟରେ ଯେଉଁ ଦେଶ ଅବସ୍ଥିତ, ଏ ସବୁ ଆର୍ଯ୍ୟାବର୍ତ୍ତ କୁହାଯାଏ । ଏହି ଆର୍ଯ୍ୟାବର୍ତ୍ତ ଦେବ, ଅର୍ଥାତ୍ ବିଦ୍ୱାନମାନଙ୍କ ଦ୍ୱାରା ବସାଯାଇଛି ଏବଂ ଆର୍ଯ୍ୟଙ୍କ ନିବାସସ୍ଥଳ ହେତୁ ଆର୍ଯ୍ୟାବର୍ତ୍ତ କୁହାଯାଉଛି ।

କାଳଗଣନା ଦୃଷ୍ଟିରୁ ଭାରତରେ ସୁପ୍ରଚଳିତ ଯୁଧିଷ୍ଠିରାବ୍ଦ ଏବଂ କଲ୍ୟାବ୍ଦ କୁରୁକ୍ଷେତ୍ର ଯୁଦ୍ଧ ପରେ ଅନୁମାନତଃ ୩୧୦୨ ଖ୍ରୀ ପୂ.ରେ ପ୍ରଚଳିତ ହୋଇ ଯାଇଥିଲା । ଶତପଥ ବ୍ରାହ୍ମଣ ଅନ୍ତର୍ଗତ ବୃହଦାରଣ୍ୟକ ଉପନିଷଦ ମହାଭାରତଯୁଗ (ଖ୍ରୀ.ପୂ.୩୧୦୦) ପୂର୍ବରେ ଥିଲା । ଏହି ଉପନିଷଦରେ ମଧୁବିଦ୍ୟା (ବ୍ରହ୍ମବିଦ୍ୟା) ର ବଂଶ ବ୍ରାହ୍ମଣରେ ଯାହା ଗୁରୁ ଶିଷ୍ୟ ପରଂପରାରେ ମିଳିଥାଏ ତାହା ସିଦ୍ଧ କରିଦିଏ କି ଏ ବିଦ୍ୟାର ଆଦିଗୁରୁ ଦଧୀଚି ଋଷି ପୌତି-ମାଷ୍ୟ ମୁନିଙ୍କ ୬୨ ବଂଶାବଳୀର ଆଦିପୁରୁଷ ଥିଲେ । ଗୁରୁଶିଷ୍ୟଙ୍କ ଏ ବଂଶାବଳୀରେ ୫୦ ବର୍ଷର ସମୟ ମାନିବା ଅସଙ୍ଗତ ହେବ ନାହିଁ । ଏଣୁ ଦେଖାଯାଏ କି ପୌତିମାଷ୍ୟଙ୍କ ସମୟ ଅନୁମାନତଃ ୩୮୦୦ ଖ୍ରୀଷ୍ଟପୂର୍ବ ମାନିବାଦ୍ୱାରା ଦଧୀଚି ସେମାନଙ୍କଠାରୁ ୫୦ × ୪୭ =୨୩୫୦ ବର୍ଷ ପୂର୍ବେ ଅର୍ଥାତ୍ ୫୮୫୦ ଖ୍ରୀଷ୍ଟପୂର୍ବେ ବିଦ୍ୟମାନ ଥିଲେ । ଯଦି ଆର୍ଯ୍ୟ ଅଭିଯାନ କଥାନ୍ତ ସତ୍ୟ ହୋଇଥାଏ ତାହେଲେ ଅନ୍ତତଃ ଖ୍ରୀଷ୍ଟପୂର୍ବ ୫୮୫୦

ପୂର୍ବରୁ ଏହା ହୋଇପାରେ । ତାହା ପୂର୍ବରୁ ନୁହେଁ । ମାତ୍ର ଖ୍ରୀଷ୍ଟପୂର୍ବ ୫୮୫୦ ବର୍ଷ ପୂର୍ବେ ଆର୍ଯ୍ୟମାନେ ଏ ଦେଶକୁ ଆସିଥିବେ ତାର କୌଣସି ପ୍ରମାଣ ଐତିହାସିକଗଣ ପ୍ରସ୍ତୁତ କରିପାରିନାହାନ୍ତି ।

## ଆର୍ଯ୍ୟ ଭାରତୀୟ ଆଦିବାସୀ—

ଖ୍ରୀଷ୍ଟପୂର୍ବ ୭୦୦ ବର୍ଷ ପୂର୍ବେ ଭାରତ ଭ୍ରମଣକାରୀ ସିକନ୍ଦରଙ୍କ ସେନାପତି ସେଲ୍ୟୁକସ୍‌ଙ୍କ ରାଜଦୂତ ପ୍ରସିଦ୍ଧ ମେଘସ୍ଥିନିସ୍ ତାଙ୍କ ବିବରଣୀରେ ଲେଖିଥିଲେ ଯାହା ମେକ୍ ଡୋନାଲଡ ମଧ୍ୟ ତାଙ୍କ "ଏନସିଏଣ୍ଟ ଇଣ୍ଡିଆ" ରେ ଉଲ୍ଲେଖ କରିଯାଇଛନ୍ତି । ସେ ଦୃଢ଼ତା ସହ କୁହନ୍ତି ବିଶାଳ ଭାରତବର୍ଷର ଜଣେମଧ୍ୟ ମୂଳତଃ ବିଦେଶୀ ନୁହାନ୍ତି । ଏହି କଥା ଏକ ଶତାବ୍ଦୀ ପୂର୍ବେ ଇଲ୍‌ଫିନ୍‌ଷ୍ଟୋନ ଙ୍କ ରଚିତ "ହିଷ୍ଟ୍ରୀ ଅଫ୍ ଇଣ୍ଡିଆ"ରେ ପୂର୍ଣ୍ଣ ସମର୍ଥନକରି ପୁନରାବୃତ୍ତି କରନ୍ତି । ତାଙ୍କ ମତରେ ଭାରତୀୟ ଆର୍ଯ୍ୟମାନଙ୍କ ପୂର୍ବପୁରୁଷ କେବେ ସ୍ୱ ଆଦିନିବାସ ବ୍ୟତୀତ ଅନ୍ୟ କୌଣସି ଦେଶରେ ଉପନିବେଶ ସ୍ଥାପନ କରିଥିଲେ ବା ଆକ୍ରମଣ କରି ସେଠି ବସି ଯାଇଥିଲେ ଏହା ମାନିବା ପାଇଁ ଇତିହାସର ପର୍ଯ୍ୟାପ୍ତ ପ୍ରମାଣ ନାହିଁ ।

ବୈଦିକ ଭାରତୀୟ ଇତିହାସର ଜଣେ ସୁବିଖ୍ୟାତ ଗବେଷକ ଭାବରେ ଡା. କଥ୍ ନିରପେକ୍ଷ ଭାବରେ କୁହନ୍ତି—ଏ ବିଷୟରେ ଯେଉଁ ପ୍ରମାଣ ଉପଲବ୍ଧ ହୋଇଛି ସେଥିରୁ କୌଣସି ସିଦ୍ଧାନ୍ତ ବାହାର କରିବା ପୂର୍ବରୁ ଅତ୍ୟନ୍ତ ସାବଧାନ ହେବା ଉଚିତ । ମାତ୍ର ଏହା ନିଶ୍ଚିତ ଯେ ବୈଦିକ ଭାରତୀୟମାନେ ବାହାରୁ ଭାରତରେ ପ୍ରବେଶ କଲେ ତାହା ନିଶ୍ଚିତ କରିବାର କୌଣସି ପ୍ରମାଣ ନାହିଁ । ଆର୍ଯ୍ୟ ଅଭିଯାତ୍ରୀ ଦଳ ହିନ୍ଦୁକୁଶ ବାଟ ଦେଇ ଭାରତରେ ପ୍ରବେଶ କରିଥାଇ ପାରନ୍ତି ଏବଂ ପଞ୍ଜାବ ଦେଶ ପୂର୍ବ ଦିଗକୁ ଯାଇଥାଇ ପାରିଥାନ୍ତି ଏତତ୍ ସମ୍ପର୍କରେ ଋଗ୍‌ବେଦ ସମ୍ପୂର୍ଣ୍ଣ ନୀରବ ।

ଭାରତବର୍ଷର ପ୍ରାଚୀନତମ ନାମ ଆର୍ଯ୍ୟାବର୍ତ୍ତ ଓ ବ୍ରହ୍ମାବର୍ତ୍ତ ଅଟେ । ଏହା ପୂର୍ବରୁ ଏ ଦେଶର କି ନାମ ଥିଲା ଏଠି କିଏ ବାସ କରୁଥିଲା ଓ ତାହା କି ସଂସ୍କୃତି ଥିଲା ସେ ପର୍ଯ୍ୟନ୍ତ ଇତିହାସ ଗବେଷଣା ପାରିନାହିଁ । ଯୁଗାଗ୍ରଣୀ ବିବେକାନନ୍ଦଙ୍କ ମତରେ ଆଜିକାଲି ଯେଉଁ ମତ ପ୍ରଚଳିତ ଯେ ଦକ୍ଷିଣରେ ଦ୍ରାବିଡ଼ ଓ ଉତ୍ତରରେ ଆର୍ଯ୍ୟ ନାମକ ଜାତି ବାସ କରନ୍ତି ତା ପୂର୍ଣ୍ଣତଃ ଆଧାରହୀନ । ଏହା ବିଶ୍ୱାସ କରାଯାଇ ନ ପାରେ, କାରଣ ସମଗ୍ର ଦେଶ ଆର୍ଯ୍ୟମାନଙ୍କର ଆଉ କାହାର ନୁହେଁ ।

ଦାକ୍ଷିଣାତ୍ୟର ଲୋକେ ନିଜକୁ ଆର୍ଯ୍ୟ ବୋଲି କହିବାକୁ ଲଜ୍ଜ୍ୟାବୋଧ କରୁଥିବା ସମୟରେ କଲମ୍ବିଆ ବିଶ୍ୱବିଦ୍ୟାଳୟର ଦର୍ଶନ ଅଧ୍ୟାପକ ଡ଼ା. ୱିଲିୟମ ଡ୍ୟୁରେଣ୍ଟ ୧୯୩୦ରେ ଭାରତରେ ଅର୍ଦ୍ଧବର୍ଷ ଭ୍ରମଣ କରି ନ୍ୟୁୟର୍କର ପଣ୍ଡିତ ମଣ୍ଡଳୀରେ କହିଲେ କି ଭାରତବାସୀ ଓ ଆମ୍ଭେମାନେ ଏକ ଜାତିର ଲୋକ । ତାହା ଇଉରୋପୀୟ ଜାତି । ଆମ୍ଭମାନଙ୍କର ମୁଖର ଆକୃତି ଓ ସେମାନଙ୍କର ମୁଖର ଆକୃତି ଏକ । ଭାରତ ବୋଧହୁଏ ଇଉରୋପୀୟ ଜାତିର ଆଦିବାସସ୍ଥାନ । ଭାରତ ହିଁ ସଂସ୍କୃତର ଆଦି ଜନ୍ମଭୂମି । ସଂସ୍କୃତ ଇଉରୋପୀୟ ବହୁ ଭାଷାର ମାତୃସ୍ଥାନୀୟା । ଭାରତ ହିଁ ଆମ୍ଭମାନଙ୍କର ମାତା । ଭାରତ ହିଁ ଆମ୍ଭମାନଙ୍କର ଗଣିତ, ଦର୍ଶନ ଓ ଇଉରୋପ ଆମେରିକାରେ ପ୍ରଜାତନ୍ତ୍ରର ଆଦିଭୂମି ଅଟେ ।

କୌଣସି ଦେଶରେ ଇତିହାସ ସେ ଦେଶର ଲୋକଙ୍କ ଦ୍ୱାରା ଯେପରି ଲେଖାଯାଇ ପାରିବ ସେପରି ଜଣେ ବିଦେଶୀ ଦ୍ୱାରା ଲେଖାଯାଇ ପାରିବ ନାହିଁ । ଏ ଦେଶର ପ୍ରାଚୀନ ଇତିହାସ ଆର୍ଯ୍ୟଙ୍କ ମୂଳ ନିବାସ ଭାରତ ବାହାରେ ବୋଲି ନ କହି ମାରିବ ନୁହେଁ । ଭାରତୀୟ ବିଦ୍ୱାନ ଓ ଗବେଷକ ମତ ଦିଅନ୍ତି ଯେ ଆର୍ଯ୍ୟ ବା ଆଦି ମାନବର ସୃଷ୍ଟି ତିବ୍ବତରେ ହୋଇଥିଲା । ଅମରକୋଷର ପ୍ରଥମେ ସ୍ୱର୍ଗ ବର୍ଣ୍ଣନାରେ 'ତ୍ରିବିଷ୍ଟପ' ର ଉଲ୍ଲେଖ ଅଛି ।

ତିବ୍ବତର ରାଜଧାନୀ 'ହ୍ଲାସ' କାରଣ 'ହ୍ଲା' ଅର୍ଥାତ୍ ଦେବ 'ସା' ମାନେ ଭୂମି ବା ଦେବ-ଭୂମି । ତିବ୍ବତର ଏକ ବ୍ୟାପାରମଣ୍ଡଳୀ ନାମ 'ରୁଦୋକ' ବା ରୁଦ୍ରଙ୍କ ଗୃହ । ଦେବରାଜ ଇନ୍ଦ୍ର ଯେ ଜଣେ ବିଶେଷ ରାଜା ଥିଲେ ଓ ତାଙ୍କର ଏଗାର ଜଣ ଭାଇ ଏଠାରେ ରହୁଥିଲେ । ଏତେରେୟ ବ୍ରାହ୍ମଣ (୩।୮) ରେ ଏହାର ବର୍ଣ୍ଣନା ମିଳେ ଯେ ଉତ୍ତର କୁରୁ ଓ ଉତ୍ତର ମଦ୍ର ହିମାଳୟର ଉପରିଭାଗରେ ଥିଲା । ଜଣାଯାଏ ଏହାର ସଠିକ୍ ସ୍ଥାନ ହେଉଛି ତିବ୍ବତ ।

ପଶ୍ଚିମ ତିବ୍ବତରେ କୈଳାଶ ପର୍ବତରେ ଅବସ୍ଥିତ ମନାଯାଏ ଯେଉଁଠି ଶିବ ପାର୍ବତୀ ବାସ କରୁଥିଲେ । ନନ୍ଦୀ ମଧ୍ୟ ତାଙ୍କ ସହ ବାସ କରୁଥିଲେ ଯେ ନାଭିଯନ୍ତ୍ରର ରଚନା, ରସଶାସ୍ତ୍ର ଓ କାମଶାସ୍ତ୍ରର ବିଶେଷଜ୍ଞାତା ଥିଲେ । ମହାଦେବ ସ୍ୱୟଂ ଆୟୁର୍ବେଦର ମହାନ ଜ୍ଞାନୀ ଥିଲେ ।

ଏ ସମ୍ପର୍କରେ ଅନେକ ବାଦ ବିବାଦ ହୋଇପାରେ । ପୌରାଣିକ ଆଖ୍ୟାୟିକା ମଧ୍ୟରେ ଯେ ଇତିହାସର କିଞ୍ଚିତ ପ୍ରଭାବ ନାହିଁ ଏହା କୁହାଯାଇ ପାରିବ ନାହିଁ । ଆର୍ଯ୍ୟଗଣଙ୍କ ମୂଳ ନିବାସ ଯେ ଭାରତ ଓ ସେମାନେ ଏଠାରୁ ବିଶ୍ୱର ବିଭିନ୍ନ ଦେଶକୁ ସେବା ଓ ପ୍ରଚାର ପାଇଁ ଯାଇଥିଲେ ଓ ପୁଣି ଏଠାକୁ ଫେରି ଆସିଥିଲେ ଏଣୁ ଏହା ଆର୍ଯ୍ୟାବର୍ତ୍ତ ନାମରେ ଖ୍ୟାତ ହେଲା । କାରଣ ଆର୍ଯ୍ୟ ଆବର୍ତ୍ତ ଆର୍ଯ୍ୟାବର୍ତ୍ତ ଅଟେ । ଏ କଥା ଅନେକ ଐତିହାସିକ ବର୍ତ୍ତମାନ ବୁଝିଲେଣି । ତଥାପି ଦୀର୍ଘଦିନ ପ୍ରଚଳିତ ଇତିହାସକୁ ପରୀକ୍ଷାକରି ଦେଖିବା ଧୈର୍ଯ୍ୟ ଆମର ନ ଥିବାରୁ ଗତାନୁଗତିକ ପନ୍ଥାରେ ଆମେ ଯାଜୀ । ଏଣୁ ଇତିହାସର ଏକ ମୌଳିକ ପ୍ରଶ୍ନ ଆମ ଆଗରେ ବିବାଦ ସ୍ପଦ ପ୍ରସଙ୍ଗ ହୋଇ ଅଦ୍ୟାବଧି ରହିଛି ।



# ପ୍ରାଚୀନ ଭାରତର ସାଂସ୍କୃତିକ ସାମ୍ରାଜ୍ୟ

ରୋମାନ୍ ସାମ୍ରାଜ୍ୟର ପତନ ହେଲା କାହିଁକି ? ବିଶ୍ୱ ବିଖ୍ୟାତ ଐତିହାସିକ ଗିବନ୍ ଉପମା ଦେଲେ, ଏହାର ପତନ ଏକ ବିଶାଳ ପର୍ବତ ସଦୃଶ ଥିଲା । ଯେଉଁ ସିଜରଙ୍କ ଶସ୍ତ୍ର ସମ୍ମୁଖରେ କିଛି ଅସମ୍ଭବ ନ ଥିଲା ସେ ଜାତି ଏତେ ଶୀଘ୍ର ପତନ ହେବବୋଲି କେହି ଆଶା କରି ନ ଥିଲେ । ଗିବନ୍ କାରଣ ଦର୍ଶାଇଲେ, ପଦଲାଳସା ପାଇଁ ପରସ୍ପର ମଧ୍ୟରେ କଳହ ରୋମାନ ଜାତିର ଏକତାକୁ ଭାଙ୍ଗି ପକାଇଲା । ଯେଉଁ କବଚ ବାନ୍ଧି ରୋମାନ ଯୋଦ୍ଧା ଯୁଦ୍ଧରେ ଯଶସ୍ୱୀ ହେଉଥିଲେ ତୃତୀୟ ଓ ଚତୁର୍ଥ ବଂଶ ପରେ ଏ କବଚ ହାତକୁ ଏତେ ହୁଗୁଳା ହେଲା ଯେ ଏହାକୁ ପିନ୍ଧି ଯୁଦ୍ଧ କରିବା ସମ୍ଭବ ହେଲା ନାହିଁ । ଏହା ପରେ ପରେ ରୋମ୍‌ର ବିଶାଳ ବୈଭବକୁ ଚେଙ୍ଗିଜ୍ ଖାଁ ଓ ଏଟିଲାଙ୍କ ଆକ୍ରମଣ ଧୂଳିଶାୟୀ କରିଦେଲା ।

ରୋମ ପରେ ଗ୍ରୀସ, ବେବିଲୋନିଆ ଓ ଇଜିପ୍ଟର ସଭ୍ୟତା ଉପଯୁକ୍ତ ଦାୟାଦର ଅଭାବରେ ଧ୍ୱଂସ ପାଇଲା । ଅତୀତର ଗତିପଥ ପରିବର୍ତ୍ତନ କରି ସେମାନେ ନିଜର ଅସ୍ତିତ୍ୱକୁ ମଧ୍ୟ ରକ୍ଷା କରି ପାରିଲେ ନାହିଁ । ବିଶ୍ୱରେ ଆଧୁନିକ ସଭ୍ୟତାର ବତାସ ବୋହିଲା । ପରିବର୍ତ୍ତନ ଝଞ୍ଜାରେ ଜାପାନ ପାଶ୍ଚାତ୍ୟାଭିମୁଖୀ ହୋଇଗଲା । ଚୀନର ପ୍ରାଚୀନ ସାଂସ୍କୃତିକ ପ୍ରାଚୀର କମ୍ୟୁନିଜମ୍‌ର ଗୋଟିଏ ଧକ୍କାରେ ଭାଙ୍ଗି ପଡ଼ିଲା ।

ଏ ବତାସ ଭାରତରେ ମଧ୍ୟ ବୋହିଲା । ବର୍ବର ଦସ୍ୟୁଙ୍କର ଆକ୍ରମଣ ଓ ଅତ୍ୟାଚାରରେ ଥରହର ହେଲା । ଗୋଟିଏ ପରେ ଗୋଟିଏ ସାମ୍ରାଜ୍ୟ ଆସିଲା ଓ ଗଲା, ତଥାପି ଶରଶଯ୍ୟା ପରେ ରକ୍ତାକ୍ତ ହୋଇ ଆମ ଭୀଷ୍ମ ପିତାମହଙ୍କ ପରି ଭାରତ ବଞ୍ଚି ରହିଲା । ଦୈହିକ ଦାସତ୍ୱ ସ୍ୱୀକାର କରି ମାନସିକ ମୁକ୍ତି ବଳରେ ଭାରତୀୟ ସଂସ୍କୃତିକୁ ବଞ୍ଚାଇଦେଲା ।

ବିଜ୍ଞାନ ବଳରେ ବିଶ୍ୱ ଯେତେବେଳେ ସଙ୍କୁଚିତ ହେବାକୁ ଲାଗିଲା ସେତେବେଳେ ଆମେ ବହୁଦିନରୁ ହରାଇ ଦେଇଥିବା ଆମ ସାଂସ୍କୃତିକ ସାମ୍ରାଜ୍ୟର ମାନଚିତ୍ର ପାଇଲୁ । ପୂର୍ବଜଙ୍କ କୃତିତ୍ୱ ଓ ଦିଗ୍ବିଜୟ ଆମ ମନରେ ଆତ୍ମବିଶ୍ୱାସ

ହଷ୍ଟିର କଳ୍ପ ଓ ଆମେ ଅନୁଭବ କରୁଁ, ଦେବଗ୍ରାସୀ ଆଧୁନିକ ସଭ୍ୟତାରେ ମଧ୍ୟ ଆମର ଦୁର୍ଦ୍ଦଶା ଗ୍ରସ୍ତ, ପ୍ରେମ ଓ ଶାନ୍ତି ପୂର୍ଣ୍ଣ ନ ହେବା କାରଣ ପଛରେ ଆମର ଅନ୍ତନେଶୁସ୍ଥ ସଂସ୍କୃତି ବିଦ୍ୟମାନ ଥିଲା । ତା ନ ହେଲେ ଏ ସଂସ୍କୃତି ସର୍ବୋଚ୍ଚ ହିମାଳୟ ଓ ଭାରତ ମହାସାଗର ଟପି ବିଶ୍ୱବ୍ୟାପୀ ସାଂସ୍କୃତିକ ଉପନିବେଶ ସ୍ଥାପନ କରି ପାରି ନ ଥାନ୍ତା ।

ରାମାୟଣ ଯୁଗଠାରୁ ଗୁପ୍ତଯୁଗ ପର୍ଯ୍ୟନ୍ତ ବିଶ୍ୱର ବିଭିନ୍ନ ଦେଶସହ ଆମର ସାଂସ୍କୃତିକ ସମ୍ପର୍କ ଅତୁଟ ଥିଲା । ଏ ଦେଶର ମୁନିଋଷିମାନେ ବିଶ୍ୱର ବିଭିନ୍ନ ସ୍ଥାନକୁ ବେଦବେଦାନ୍ତ ଉପନିଷଦର ବାଣୀ ପହଞ୍ଚାଇ ପାରିଥିଲେ ଓ ଗୁଣାନୁସାରେ ଦେଶ-ଗୁଡ଼ିକର ନାମକରଣ ସଂସ୍କାର କରିବାର ଶ୍ରେୟ ସେମାନେ ଏ ଦେଶକୁ ଦେଇଥିଲେ ।

ସୁନ୍ଦର ବଳିଷ୍ଠ ଅଶ୍ୱ ଦେଖି, ସୂର୍ଯ୍ୟଙ୍କ ପ୍ରଖର କିରଣ ପଡ଼ୁଥିବା ରାଷ୍ଟ୍ରକୁ ସେମାନେ 'ଅର୍ବନ୍' କହିଲେ । ଅର୍ବନ୍ ଅର୍ଥ ହୃଷ୍ଟ ପୁଷ୍ଟ ଅଶ୍ୱ ମିଳୁଥିବା ସ୍ଥାନ କିମ୍ବା ପ୍ରଖର ସୂର୍ଯ୍ୟ କିରଣ ପଡ଼ୁଥିବା ଦେଶ । ଏହା କାଳକ୍ରମେ ଆରବ ଦେଶ ଭାବରେ ଆମ ସମ୍ମୁଖକୁ ଆସିଲା ।

ବେଦରେ ଗାନ୍ଧାରୀ ଶବ୍ଦ ଆସେ । ଗାନ୍ଧାରୀ ଶବ୍ଦ ଅର୍ଥ ତୃଣ । ଯାହା ଖାଇ ଗୋ-ମେଷାଦି ପଶୁ ଜୀବନ ଧାରଣ କରନ୍ତି । ଏହାର ଜ୍ୱଳନ୍ତ ପ୍ରମାଣ ସ୍ୱୟଂ ଗାନ୍ଧାର ଦେଶ ଯେଉଁ ଦେଶର କନ୍ୟା ହେଲେ ଗାନ୍ଧାରୀ । କାଳକ୍ରମେ ଗାନ୍ଧାର ଶବ୍ଦ କାନ୍ଦାହାର ଓ ତା ପରବର୍ତ୍ତୀ କାଳରେ ଆଫ୍‌ଗାନିସ୍ଥାନ ଭାବରେ ପରିଚିତ ହେଲା । ଆଫ୍‌ଗାନିସ୍ଥାନ ହେବାର କାରଣ ଆପଗା (ନଦୀ) ର ସ୍ଥାନ (ଆବଦ୍ଧ ସ୍ଥାନ) କୁ ଆଫ୍‌ଗାନିସ୍ଥାନ କୁହାଯାଏ । ହେଲମଣ୍ଡ ନଦୀ ଓ କାବୁଲ ନଦୀ ଦ୍ୱୟ ସମୁଦ୍ରରେ ନ ପଡ଼ି ଦେଶର ହ୍ରଦ ମଧ୍ୟରେ ଆବଦ୍ଧ । ଏ ଦୃଷ୍ଟିରୁ ଏହାର ନାମକରଣ ହେଲା ।

ତଦ୍ରୂପ ଶର୍ମନରୁ ଜର୍ମାନୀ, ଅମରବର୍ତ୍ତରୁ ଆମେରିକା, ଆଦିତ୍ୟାଳୟରୁ ଇଟାଲୀ ଦେଶର ନାମକରଣ ହୋଇଥିବା ସୁସ୍ପଷ୍ଟ । ଶିବିରଦେଶ (ସାଇବେରିଆ) ର ଶୀତଳତମ ପ୍ରଦେଶଠାରୁ ଇଣ୍ଡୋନେସିଆର ଶସ୍ୟଶ୍ୟାମଳ ଉପତ୍ୟକା ପର୍ଯ୍ୟନ୍ତ ଆର୍ଯ୍ୟ ସଂସ୍କୃତିର ବିଜୟପତାକା ଉଡ଼ୁଥିବା ଐତିହାସିକମାନେ ଦେଖିଥିଲେ ।

ଶର୍ମା ଶବ୍ଦ ବ୍ରାହ୍ମଣ ଅର୍ଥରେ ବ୍ୟବହୃତ ହୁଏ । ନିଜକୁ ଆର୍ଯ୍ୟ ' କହିବାରେ

ଜର୍ମାନମାନେ ଗର୍ବିତ । ହିଟଲର ନିଜକୁ ଜଣେ ଶ୍ରେଷ୍ଠ ଆର୍ଯ୍ୟ ଓ ଜର୍ମାନକୁ ଆର୍ଯ୍ୟ ଜାତି ଭାବରେ ଗ୍ରହଣ କରି ବିଶ୍ୱ ସାମ୍ରାଜ୍ୟର ଆକାଂକ୍ଷା ପୋଷଣ କରିଥିଲେ ।

ଅମଳାବତୀରୁ ଆମେରିକା ହେବା ସମ୍ପର୍କରେ ଭିକ୍ଷୁ ଚେମନଲାଲ ତାଙ୍କ 'ହିନ୍ଦୁ ଆମେରିକା'ରେ ଏକ ବିସ୍ତୃତ ବିବରଣୀ ଓ ପ୍ରମାଣ ଦେଇଛନ୍ତି । ତାଙ୍କ ମତରେ କଲମ୍ବସ୍ ଆମେରିକାକୁ ଦ୍ୱିତୀୟବାର ଆବିଷ୍କାର କରି ବିଶ୍ୱସମାଜକୁ ଆଣିଥିଲେ । ଆମେରିକାର ମାୟାଜିଏନ୍ ସଭ୍ୟତା ଥିଲା ପ୍ରାଚୀନ ଭାରତୀୟ ସଭ୍ୟତା । ସେଠାରୁ ମିଳିଥିବା ଗଣେଶ, ଶିବ, ପାର୍ବତୀ ଆଦିମୂର୍ତ୍ତି ଏହାର ସ୍ପଷ୍ଟ ପ୍ରମାଣ । ମେକ୍ସିକୋର ସରକାରୀ କାଗଜପତ୍ରରେ ଏ କଥା ସ୍ୱୀକାର କରାଯାଇଛି ଯେ ଯେଉଁମାନେ ସେ ଦେଶରେ ବସତି ସ୍ଥାପନ କରିଥିଲେ ସେମାନେ ମୂଳତଃ ଥିଲେ ଭାରତୀୟ । ମେକସିକୋ ବା ମାୟାଜିଏନ୍ ସଭ୍ୟତା ସମ୍ପର୍କରେ କିମ୍ବଦନ୍ତୀ ଅଛି ଯେ ବିଖ୍ୟାତ ଅସୁର ଶିଳ୍ପୀ ମୟଦାନବ କୃଷ୍ଣଙ୍କ ଭୟରେ ପାତାଳପୁରରେ ରହୁଥିଲା, ଏବଂ ତା'ଦ୍ୱାରା ଭାରତୀୟ କୃଷ୍ଟି ପରମ୍ପରାର ପ୍ରସାର ପ୍ରଚୁର ଆମେରିକାରେ ଯଥେଷ୍ଟ ପରିମାଣରେ ହୋଇଥିଲା । ମହାଭାରତ କାଳରେ ଆମେରିକା ପାତାଳ ଦେଶ ଭାବରେ ପରିଚିତ ଥିଲା ଏବଂ ମହାଭାରତର ମହାନ ଯୋଦ୍ଧା ଅର୍ଜୁନଙ୍କ ବିବାହ ଆମେରିକା (ପାତାଳପୁର)ର ରାଜକନ୍ୟା ଉଲୁପୀ ସହିତ ହୋଇଥିଲା ।

ଜର୍ମାନର ବିଖ୍ୟାତ ଗବେଷକ ମ୍ୟାକ୍ସମୂଲର ଏକଥା ଆଶା କରୁଥିଲେ ଓ ସ୍ୱୀକାର କରିଥିଲେ, 'ପ୍ରାଚୀନ ଏସିଆ ଓ ପ୍ରାଚୀନ ଆମେରିକାର ଭାଷା ଓ ଧର୍ମରେ ଏତେ ସାଦୃଶ ରହିଛି ଯେ, ମ-ନହୁଏ ପ୍ରାଚୀନକାଳରେ ଅନେକ ଏସିଆବାସୀ ଆମେରିକାରେ ଉପନିବେଶ ସ୍ଥାପନ କରିଥିଲେ । ସେମାନେ ଏସିଆର ଉତ୍ତର ବା ଦକ୍ଷିଣରୁ ଅନୁକୂଳ ବାୟୁ ପ୍ରବାହରେ ଏକ ଦ୍ୱୀପପୁଞ୍ଜରୁ ଅନ୍ୟ ଦ୍ୱୀପପୁଞ୍ଜକୁ ଯାଇ କ୍ରମେକ୍ରମେ ଆମେରିକାରେ ପହଞ୍ଚି ଥିଲେ ।"

ମହାଭାରତ ଯୁଦ୍ଧ ପରେ ଅନେକ ବର୍ଷ ରାଜ୍ୟଶାସନ କରିବା ପରେ ଧର୍ମରାଜ ଯୁଧିଷ୍ଠିର ଆଦି ପାଣ୍ଡବଗଣ ପରୀକ୍ଷିତଙ୍କୁ ରାଜ୍ୟ ଚଳାଇବା ପାଇଁ ସିଂହାସନ ଦେଇ ମହାପ୍ରସ୍ଥାନ କଲେ । ଉତ୍ତର ଆଡ଼କୁ ଶେଷାବସ୍ଥା ପର୍ଯ୍ୟନ୍ତ ସେମାନେ ଯାତ୍ରା କରିଥିଲେ । ହିମାଳୟ ଓ ପାମିର ପର୍ଯ୍ୟନ୍ତ ଯାତ୍ରା କରିଥିବା ବର୍ଣ୍ଣନା ମହାଭାରତର 'ମହାପ୍ରସ୍ଥାନ' ପର୍ବରେ ବର୍ଣ୍ଣିତ ହୋଇଛି ।

ତତସ୍ତେ ନିୟତାତ୍ମାନ ଉଦୀଚୀଂ ଦିଶମାସ୍ଥିତାଃ ।
ଦଦୃଶୁ ର୍ଯୋଗଯୁକ୍ତାଶ୍ଚ ହିମବନ୍ତଂ ମହାଗିରିମ୍ ॥

ତଂ ଗ୍ରସ୍ୟତ — ହିମବନ୍ତଂ ଦୃଷ୍ଟ୍ୱା ଦିଶଂ ଦକ୍ଷିଣାମ୍ ।
ଅତୀତ୍ୟ ମହାଶୈଳଂ ମେରୁଂ ଶିଖରିଣାଂ ବରମ୍ ।।" (୨, ୯-୨)

ଅର୍ଥାତ୍ — ହସ୍ତିନାପୁରର ଦକ୍ଷିଣ ନୈଋତ୍ୟ ଓ ପଶ୍ଚିମ ଦିଗକୁ ଯାଇ ଜଣ ସେମାନେ ଉତ୍ତର ଆଡ଼କୁ ଗଲେ । ଯିବା ବାଟରେ ହିମାଳୟ ପାଖରେ ପହଞ୍ଚି ହିମାଳୟ ଆଡ଼କୁ ଯିବାଦ୍ୱାରା ଏକ ବିଶାଳ ବାଲିର ସମୁଦ୍ର ଦେଖିଲେ । ତାକୁ ଅତିକ୍ରମ କରିବା ପରେ ମେରୁପର୍ବତ ଦେଖାଗଲା । ଏଥିରେ ବର୍ଣ୍ଣିତ ହିମାଳୟ ପରବର୍ତ୍ତୀ ବାଲୁକାମୟ ସମୁଦ୍ର ଅର୍ଥାତ୍ ଗୋବି ନାମକ ମରୁଭୂମିକୁ କୁହାଯାଇଛି । ତାପରେ ମେରୁ ଅର୍ଥାତ୍ ପାମିର ନାମକ ପର୍ବତ ଆସିଲା । ଅଦ୍ୟାବଧି କାନ୍ଦାହାର ବା ଗାନ୍ଧାର ଆଦି ଅଞ୍ଚଳର ପାହାଡ଼ିଆ ଜାତିକୁ 'ମେରୁ-କୋହ' କୁହାଯାଉଛି ।

ମହାଭାରତର ଭୀଷ୍ମ ପର୍ବରେ ଉତ୍ତର ଦିଗସ୍ଥିତ ମ୍ଲେଚ୍ଛ ଲୋକଙ୍କ ବର୍ଣ୍ଣନା ଆସେ, ଯେଉଁଥିରେ ଚୀନ, ପାରସ୍ୟ, କମ୍ବୋଜ, ଯବନ ଆଦି ନାମ ମଧ୍ୟ ଉଲ୍ଲେଖ ହୋଇଛି । ଯେପରି —

'ଯବନାଶ୍ଚୀନ କାମ୍ବୋଜା ଦାରୁଣା
ମ୍ଲେଚ୍ଛ ଜାତୟଃ ।
ସକୃଦ୍‌ଗ୍ରହାଃ କୁଲତ୍ଥାଶ୍ଚ (ହୂନାଶ୍ଚ)
ହୂଣା ପରସିକୈଃ ସହ ।" (୯ ୬୭)

ସମଗ୍ର ବିଶ୍ୱସହ ଭାରତର ସମ୍ପର୍କ ହୋଇ ସାରିଥିଲା । ଚୀନ, ଜାପାନ, ମୋଙ୍ଗୋଲ, ସାଇବେରିଆ ଆଦି ଦେଶ ଭାରତର ଧର୍ମ ଓ ସଂସ୍କୃତି ଗ୍ରହଣ କରିଥିଲେ । ଭାରତୀୟ ଦେବାଦେବୀଙ୍କୁ ବିଭିନ୍ନ ନାମରେ, ଇସ୍ରାଏଲ ଗ୍ରୀସ୍ ଆଦି ଦେଶ ନିଜର କରିନେଇଥିଲେ । ଇସ୍ତାର ଦେବୀଙ୍କ ନାମ ପୁରାତନ ନିୟମରେ ଅଛି । ଏହା ଈଶ୍ୱରୀ ନାମର ଅପଭ୍ରଂଶ ମାତ୍ର । ଇସ୍ତାର ନାମରୁ ହିଁ ଇସ୍ରାଏଲ ଆସିଥିବା କଥା କେତେକ କହନ୍ତି । ଏପରିକି ଇସ୍ତାମ୍ବୁଲ ଓ ଇଟାଲିର ଏକ ପ୍ରଦେଶର ନାମ ଇଷ୍ଟ୍ରିଆ ମଧ୍ୟ ହୋଇଛି । ବାବିଲୋନିଆଁରେ ପୂଜିତା ଇସ୍ତାର ଦେବୀଙ୍କ ନାମାନୁସାରେ ସେଠି ଇସ୍ତାର ତୋରଣ ନିର୍ମିତ ହୋଇଥିଲା; ଏବଂ ଗ୍ରୀସର ଆଫୋଡ୍ରାଇଟ ଦେବୀ ଆମ ଦେଶର ଈଶ୍ୱରୀ ଦେବୀଙ୍କର ଯେ ଅନ୍ୟ ନାମ ହୋଇ ନ ଥିବ ତା' କିପରି କୁହାଯାଇ ପାରିବ ।

କୁହାଯାଏ ଆଲେକ୍‌ଜାଣ୍ଡରଙ୍କ ସମୟରେ ଗ୍ରୀସ୍‌ରେ ଦୁର୍ଗାପୂଜା ହେଉଥିଲା । ପଣ୍ଡିତ ନୀଳକଣ୍ଠ ତାଙ୍କ ଗୀତାର ଭୂମିକାରେ ଏ କଥାକୁ ଗୁରୁତ୍ୱ ଦେଇ କୁହନ୍ତି ଯେ,

ଆଲେକ୍‌ଜାଣ୍ଡର ଭାରତର ପୁରୁ ନାମକ ଜଣେ ସାଧାରଣ ରାଜାଙ୍କ ପରାକ୍ରମ ଦେଖି ଭୟଭୀତ ହୋଇ ଯାଇଥିଲେ । ତାଙ୍କ ସୈନ୍ୟମାନେ ହାତୀ କେବେ ଦେଖି ନ ଥିବାରୁ ହାତୀ ଦ୍ୱାରା ଆହତ ଓ ନିହତ ହେଉଥିଲେ । ଆଲେକ୍‌ଜାଣ୍ଡର ନିଜର ପରାଜୟ ନିଶ୍ଚିତ ଭାବିନେଇ ଭାରତର ପଶ୍ଚିମ ସୀମାନ୍ତ ହିମାଳୟ ପାଦଦେଶର ଜଣେ ଗ୍ରୀକ୍‌ରାଜାଙ୍କ ଯୁବତୀ ରାଣୀଙ୍କୁ ବଳାତ୍କାର କରି ନେବାଲୋକଆଁକୁ ନେଇ ପଳାଇଲେ । ରାଣୀଙ୍କୁ ଅତ୍ୟାଚାର କରିବା ସମୟରେ ରାଣୀ ନିଜ ଅଣ୍ଟାରେ ଲୁଚାଇଥିବା ଛୁରୀଦ୍ୱାରା ଆଲେକ୍‌ଜାଣ୍ଡରଙ୍କୁ ବଧ କଲେ । ସେଇଠି ମହାବୀରଙ୍କ ମୃତ୍ୟୁ ହେଲା । ଏହି ଘଟଣାକୁ ନେଇ ତାଙ୍କ ଶିଳସ୍ତମ୍ଭରେ ମହିଷର ଆକୃତି କରି ଦିଆଗଲା । ଯଥା ଯେପରି ଭାରତୀୟା ରାଣୀ, ଦୁର୍ଗାଙ୍କ ପରି ମହିଷାସୁରକୁ ବଧ କରିଛନ୍ତି ।

ମହାଭାରତ କାଳରୁ ଚୀନ ସହିତ ଆମର ସାଂସ୍କୃତିକ ସମ୍ପର୍କ ଥିଲା ଅତି ନିବିଡ଼ । ସଭାପର୍ବ (୫୦–୧୭) ଦ୍ୟୁତପୂର୍ବାଧ୍ୟାୟରେ ରାଜସୂୟ ଯଜ୍ଞରେ ଯୁଧିଷ୍ଠିରଙ୍କ ଅଭିଷେକରେ ଚୀନବାସୀ ପଦ୍ମ ସଦୃଶ ଦ୍ରବ୍ୟ ସମର୍ପି "କୀଟଜ" ଉପହାର ଦେବା କଥା ସୂଚାଇ ଦିଏ ଯେ ଚୀନ ସାଂସ୍କୃତିକ ଦୃଷ୍ଟିକୋଣରୁ ଭାରତକୁ ପୂଜ୍ୟ ମାନୁଥିଲା ।

ଏହା ପରେ ପରେ କାଶ୍ୟପମାତଙ୍ଗ ଓ ଗୋଦର୍ଦ୍ଧନ ପ୍ରଥମେ ବୁଦ୍ଧଙ୍କୁ ଚୀନକୁ ନେଲେ । ପ୍ରଥମ ଭିକ୍ଷୁ ହୋଇ ସେମାନେ ହାନବଂଶୀୟ ଚୀନ ସମ୍ରାଟ ମିଙ୍ଗ୍‌ତୀଙ୍କୁ ବୁଦ୍ଧ ଧର୍ମରେ ଦୀକ୍ଷିତ କଲେ । ଚୀନ ଭୂମିରେ ପ୍ରଥମ ଥର ପାଇଁ "ଶ୍ୱେତ ଅଶ୍ୱ ବିହାର" ସୁଶୋଭିତ ହେଲା । ବୁଦ୍ଧଙ୍କର ୪୨ ଉପଦେଶ କାଶ୍ୟପଙ୍କଦ୍ୱାରା ଚୀନା ଭାଷାରେ ଅନୂଦିତ ହୋଇ ବୁଦ୍ଧ ଇଷ୍ଟଦେବର ସିଂହାସନ ଲାଭ କଲେ । ଧୀରେ ଧୀରେ ଚୀନ୍ ସାହିତ୍ୟ ବୁଦ୍ଧ ଦର୍ଶନଦ୍ୱାରା ପ୍ରଭାବିତ ହେଲା । ଭାରତକୁ ଧର୍ମ ଭୂମି ଭାବରେ ଫାଇଆନ୍, ହୁଏନସାଂ, ଇତ୍-ସିଙ୍ଗଙ୍କ ପଦଯାତ୍ରାରେ କଣ୍ଟକାକୀର୍ଣ୍ଣ ମାର୍ଗ ଅତିକ୍ରମ କରି ବୁଦ୍ଧଙ୍କ ଜନ୍ମଭୂମିକୁ ଶିକ୍ଷାପାଇଁ ଆସିବାକୁ ପଡ଼ିଲା ।

ଶ୍ରୀ ଗୋବିନ୍ଦପ୍ରସାଦ ଶାସ୍ତ୍ରୀ ସ୍ୱ "ଆର୍ଯ୍ୟୋଁ କା ଚକ୍ରବର୍ତ୍ତୀ ରାଜ୍ୟ" ପୁସ୍ତକରେ ଲେଖନ୍ତି ଯେ, ଚୀନ ଓ ଜାପାନରେ ପୌରାଣିକ କାଳରେ ଚନ୍ଦ୍ରବଂଶୀୟ କ୍ଷତ୍ରିୟଗଣ ରାଜ୍ୟ କରୁଥିଲେ । ସେ ଲେଖନ୍ତି ପ୍ରସିଦ୍ଧ ଐତିହାସିକ "ଟାଡ଼୍" ସ୍ୱ "ଟାଡ଼୍ ରାଜସ୍ଥାନରେ" ରେ ଲେଖନ୍ତି କି ପୁରାଣ ଓ ଚୀନା ମୂଳଗ୍ରନ୍ଥରେ ଚନ୍ଦ୍ର ବଂଶର ଉତ୍ପତ୍ତି ନିମ୍ନ ପ୍ରକାରେ ହୋଇଛି—ପୁରାଣରେ ଅଛି ବୈବସ୍ୱତ ମନୁଙ୍କ କନ୍ୟା 'ଇଳା' ଘନେ ବଣରେ ବିଚରଣ କରୁଥିବା ସମୟରେ ଚନ୍ଦ୍ରପୁତ୍ର 'ବୁଧ'ଙ୍କ ସହିତ ସାକ୍ଷାତ ହୋଇଗଲା । ବୁଧ ଇଲାଙ୍କୁ ଧର୍ମପତ୍ନୀ ରୂପେ ଗ୍ରହଣ କଲେ । ସେଇଠୁ ଚନ୍ଦ୍ରବଂଶର ଉତ୍ପତ୍ତି ହେଲା ।

ଚୀନର ମୂଳଗ୍ରନ୍ଥରେ ବର୍ଣ୍ଣିତ ଅଛି ଯେ, ଥରେ କୌଣସି ସ୍ତ୍ରୀ ବୁଲୁଥିବା ସମୟରେ 'ଫୀ' (ବୁଧ) ନାମକ ଗ୍ରହ ସମ୍ପର୍କରେ ଆସିଲା । ଫୀ (ବୁଧ)ଙ୍କ ଠାରୁ ତା'ର ଏକ ପୁତ୍ର ଉତ୍ପତ୍ତି ହେଲା—ଯା'ର ନାମ 'ୟୁ' (ଆୟୁ) ରଖାଗଲା । ଏ 'ୟୁ' ଚୀନକୁ ନଅଖଣ୍ଡରେ ବାଣ୍ଟି ରାଜ୍ୟଶାସନ କଲେ । ଏଥିରୁ ଜଣାପଡ଼େ ଯେ ଭାରତୀୟଙ୍କର 'ଆୟୁ' ଚୀନର 'ୟୁ' ଓ ପୌରାଣିକମାନଙ୍କର 'ଆୟୁ' ଉକ୍ତ ଚନ୍ଦ୍ରବଂଶର ସ୍ଥାପନକର୍ତ୍ତାଙ୍କ ପୃଥକ ନାମ ମାତ୍ର । ମହାଭାରତରେ ଏ ଚନ୍ଦ୍ର ବଂଶର ମହାରାଜା 'ଆୟୁ' ଥିଲେ, ଆୟୁଙ୍କ ନହୁଷ, ନହୁଷଙ୍କ ଯଯାତି, ଯଯାତିଙ୍କ ପାଞ୍ଚ ପୁତ୍ର ଦ୍ରୁହ୍ୟୁ, ଯଦୁ, ଅନୁ, ତୁର୍ବସୁ ଓ ପୁରୁ ଥିଲେ । ଆୟୁଙ୍କ ପୌତ୍ର ଯଯାତି ସ୍ୱ ପାଞ୍ଚପୁତ୍ର ପୁରୁଙ୍କଠାରେ ପ୍ରସନ୍ନ ହୋଇ ତାଙ୍କୁ ଜମ୍ବୁଦ୍ୱୀପରେ ରାଜ୍ୟ ସମର୍ପିଥିଲେ ଓ ଅନ୍ୟ ଚାରି ପୁତ୍ରଙ୍କୁ ପୁରୁଙ୍କ ଅଧୀନ, ଦକ୍ଷିଣ, ପଶ୍ଚିମ, ଉତ୍ତର ଓ ପୂର୍ବ ଦିଗର ରାଜ୍ୟ ଦେଇଥିଲେ । ଏଥିରୁ ସିଦ୍ଧ ହେଲା ଯେ ଚୀନ ଓ ତା' ସନ୍ନିକଟ ଦେଶ ଜାପାନ ପରେ ମଧ୍ୟ ମହାରାଜା ଯଯାତି ପୁତ୍ରଙ୍କର ରାଜ୍ୟଥିବା ଚନ୍ଦ୍ର ବଂଶୀୟ କ୍ଷତ୍ରିୟ ହିଁ ସେଠି ପ୍ରଧାନ ଥିବେ । ଏଥିପାଇଁ ଭାଗବତ, ମହାଭାରତ ବା ପଦ୍ମପୁରାଣ ଦେଖା-ଯାଇପାରେ ।

ଚୀନ ପରି ଜାପାନର ଉଦାହରଣ ମଧ୍ୟ ଦିଆଯାଇପାରେ । ଜାପାନରେ ବ୍ରାହ୍ମଣ ଧର୍ମର ପ୍ରଚାର ବୌଦ୍ଧଧର୍ମ ପୂର୍ବରୁ ପହଞ୍ଚି ସାରିଥିଲା । ଜାପାନର ସବୁଠୁ ବୃଦ୍ଧ ଶିନ୍ତୋଗ୍ରନ୍ଥ 'ଶଙ୍ଗତାଗେ ନାଗାସାବା' କୁହନ୍ତି ଯେ, ଜାପାନରେ ସବୁଠାରୁ ପ୍ରାଚୀନ ଧର୍ମ ହେଉଛି "ବ୍ରାହ୍ମନୋକ୍ୟୋ" ଯାହା ବ୍ରାହ୍ମଣ ଧର୍ମର ଅପଭ୍ରଷ୍ଟ କହିଲେ ଭୁଲ ହେବ ନାହିଁ । ଜାପାନୀମାନେ ବୌଦ୍ଧ ଧର୍ମରେ ଦୀକ୍ଷିତ ହେବା ପୂର୍ବରୁ ଏ ଧର୍ମ ପାଳନ କରୁଥିଲେ । ଯେଉଁ ଧର୍ମ ଚୀନ ଓ କୋରିଆ ଦେଇ ଜାପାନରେ ପହଞ୍ଚି ଥିଲା ବୋଲି କୁହାଯାଏ ।

ଜାପାନର ବର୍ଣ୍ଣମାଳାକୁ "ହିରଗାନ୍" କୁହାଯାଏ । ଏ ବର୍ଣ୍ଣମାଳାର ଆବିଷ୍କାର କର୍ତ୍ତା ଆଚାର୍ଯ୍ୟ କେବୋଦାଇଶୀ (୭୭୪-୮୩୫) ଥିଲେ । କାଶ୍ମୀରବାସୀ ଆଚାର୍ଯ୍ୟ ପ୍ରଜ୍ଞଙ୍କଠାରୁ ସେ ନାଗରୀ ଲିପି ଶିକ୍ଷା କରିଥିଲେ । ସେ କୋୟାସାନରେ ଶାନ୍ତ ପାର୍ବତ୍ୟାଞ୍ଚଳରେ ସ୍ୱ ଆଶ୍ରମ ସ୍ଥାପନ କରି ଜାପାନୀ ବର୍ଣ୍ଣମାଳା ସୃଷ୍ଟି କଲେ । ଏହାକୁ 'ଗାଜୂଆନ୍' ବା 'ଧ୍ୱନି ପଞ୍ଚାଶିକ' କୁହାଯାଏ । ଏହା ନିମ୍ନ ପ୍ରକାରରେ ଆରମ୍ଭ ହୋଇଛି—

'ଆ ଇଉ ଏଔ
ହା କ କୁ କେ କୋ'

କୋବାଦାଇଶୀଙ୍କ ସମୟରେ କେବଳ ସାମନ୍ତ ପଶବାର ହିଁ ଏ ଭାଷାରେ ଶିକ୍ଷା ପାଉଥିଲେ ଓ ଚୀନା ଲିପିରେ ଲେଖୁଥିଲେ । ସେ ସାମାନ୍ୟ ଜନତାଠାରୁ ଶିଶୁ ପର୍ଯ୍ୟନ୍ତ ଶିକ୍ଷା ବିସ୍ତାର ପାଇଁ ହିରାଗାନା ବର୍ଣ୍ଣମାଳାର ରଚନା କରୁଥିଲେ । ଅଦ୍ୟାବଧି କୋୟାସାନ୍‌ରେ ୧୨୦ଟି ମନ୍ଦିରର ପ୍ରାଣ ପ୍ରତିଷ୍ଠା ସଂସ୍କୃତ ମନ୍ତ୍ରରେ ହୋଇଛି । ଏ ମନ୍ଦିରଗୁଡ଼ିକରେ ପ୍ରାଚୀନତମ ଅକ୍ଷୟଦ୍ୱୀପ ଜଳୁଛି । ୧୦୨୩ ସାଲରେ ସମ୍ରାଟ ଶିରକାବା ଏ ଦ୍ୱୀପ ପ୍ରଜ୍ୱଳିତ କରିଥିଲେ । ଏ ପର୍ଯ୍ୟନ୍ତ ଏହାକୁ ସଜାଗ ରଖା ଯାଇଛି ।

କୋୟାସାନ୍ ଜାପାନ୍‌ର ତାନ୍ତ୍ରିକ ସମ୍ପ୍ରଦାୟ ଶିଗୋନ୍‌ର କେନ୍ଦ୍ର । ଶିଗୋନ୍‌ର ଉପାସନ ମନ୍ତ୍ର ସଂସ୍କୃତ । ଏ ସମ୍ପ୍ରଦାୟର ସହସ୍ର ମନ୍ଦିରରେ ଦୈନନ୍ଦିନ ପୂଜାପାଠ ସଂସ୍କୃତରେ ହେଉଛି । କେହି ଜାପାନରେ ଏହି ମନ୍ଦିରଗୁଡ଼ିକରେ ନାନା ପ୍ରକାରର "ଗୋମା" ବା ହୋମ ମନ୍ତ୍ର ଲେଖା ହୋଇଥିବା ଦେଖି ପାରିବେ ।

ଯଥା—'ଓଁ ପଦ୍ମୋଦ୍‌ଧବାୟ ସ୍ୱାହା
ଓଁ ବଜ୍ରୋଦ୍‌ଧବାୟ ସ୍ୱାହା
ଓଁ ବଜ୍ରାଗ୍ନି ପ୍ରଦୀପ୍ତାୟ ସ୍ୱାହା' ଇତ୍ୟାଦି ।

ଜାପାନର ପ୍ରଧାନ ମନ୍ତ୍ରୀ ନିର୍ବାଚନରେ ଜୟୀ ହେବା ପରେ ସମସ୍ତ ଜନତା ସମ୍ମୁଖରେ ଦାରୁମ-ସାନଙ୍କୁ ଚକ୍ଷୁ ଚଢ଼ାନ୍ତି, ଯେଉଁ ଦାରୁମ-ସାନ ବୌଦ୍ଧଧର୍ମକୁ ଜାପାନକୁ ଭାରତରୁ ନେଇଥିବାର କିମ୍ବଦନ୍ତୀ ରହିଛି । ଧାତୁର ଚକ୍ଷୁ ଚଢ଼ାଇବା ଭାରତୀୟ ପରମ୍ପରା ।

ଚୀନ ଓ ଜାପାନ ପରି ମଙ୍ଗୋଲ ଇତିହାସରେ ଉଲ୍ଲେଖ ଅଛି ଯେ ଷଷ୍ଠ ଶତାବ୍ଦୀର ଅନ୍ତିମ ଦଶକରେ ଜାନ୍ୟବଂଶ, ନରେନ୍ଦ୍ରଶମ୍ ଓ ଅନ୍ୟ ଭାରତୀୟ ଆଚାର୍ଯ୍ୟ ଜନହିତ ପାଇଁ ଭାରତକୁ ଆସିଥିଲେ । ମଙ୍ଗୋଲ ଭାଷାରେ ଛ ସହସ୍ର ସଂସ୍କୃତ ଗ୍ରନ୍ଥର ଭାଷାନ୍ତର ହେଲା । ୧୯୪୦ ସାଲରେ ୭୫୦ ବୁଦ୍ଧବିହାରରେ ନାଳନ୍ଦାର ପରମ୍ପରା ସୁରକ୍ଷିତ ଥିଲା । ସେଇଠି ସଂସ୍କୃତ ତାଳପତ୍ର, ବହୁଶଳକ୍ଷ ହସ୍ତଲିପି ଓ ଦଶଲକ୍ଷ ମୂର୍ତ୍ତି ଥିଲା ଏବଂ ମନ୍ଦିର ଦ୍ୱାରରେ ଗଣେଶଙ୍କ ମୂର୍ତ୍ତି ଓ ବୀଣାବାଦନ-କାରୀଙ୍କର ଚିତ୍ର ମଧ୍ୟ ଥିଲା ।

ଜାକର୍ତ୍ତା, ବେଙ୍କକ୍ ଆଦି ସ୍ଥାନରେ ଆଜି ମଧ୍ୟ ଭାରତୀୟ ସାଂସ୍କୃତିକ ସାମ୍ରାଜ୍ୟର ଚିହ୍ନ ରହିଛି । ସେଠି ପ୍ରଧାନମନ୍ତ୍ରୀ ପଞ୍ଚଶୀଲ, ରଥମାନୁ, ଆଦି ଶବ୍ଦ ତାଙ୍କର ମାତୃଭାଷା ସହିତ ଜଡ଼ିତ । ରଥମାନୁ ହେଉଛି ୧୯୩୨ ବିଦ୍ରୋହର

ସ୍ମରଣରେ ନିର୍ମିତ ହୋଇଥିବା ଆଟଲାଣ୍ଟିକର ଅତି ବିଶିଷ୍ଟ ସ୍ମାରକସ୍ତମ୍ଭ । ବ୍ୟାଙ୍କକ୍‌ର ପ୍ରଧାନ ରାସ୍ତା ମଝିରେ ପଥରର ଏ ସ୍ତମ୍ଭଟି ନିର୍ମିତ ହୋଇଛି । ଏହି ସ୍ତମ୍ଭ ପରେ ପଥରରେ ତିଆରି ଗୋଟିଏ ପୁସ୍ତକ ରହିଛି ଏବଂ ସେ ପୁସ୍ତକଟି ହେଉଛି ସେ ଦେଶର ସମ୍ବିଧାନ । 'ରଥମାନୁ' କ'ଣ ଭାରତୀୟ ନୀତିଦାତା 'ରାଷ୍ଟ୍ରମନୁ'ଙ୍କ ଅପଭ୍ରଷ୍ଟ ନୁହେଁ ତ ?

କେବଳ ଧର୍ମପ୍ରଚାର ପାଇଁ ଏ ଦେଶର ମୁନି ଋଷି ବିଭିନ୍ନ ଦେଶକୁ ଯାଇ ନ ଥିଲେ । ଏ ଦେଶର ବଣିକମାନେ ଓ ଉତ୍କଳର ସାଧବମାନେ ଜାଭା, ବର୍ଣ୍ଣିଓ, ସୁମାତ୍ରା ଆଦି ଦେଶ ଯାଇ ଯଥେଷ୍ଟ ଖ୍ୟାତି ଅର୍ଜନ କରିଥିଲେ । ତା'ର ସ୍ମରଣରେ ଆଜି ମଧ୍ୟ କାର୍ତ୍ତିକ ପୂର୍ଣ୍ଣିମା ଦିନ ଆମେ ଡଙ୍ଗା ଭସାଇଥାଉଁ । "ଭାରତମାତା—ଜଗତମାତା" ପ୍ରବନ୍ଧରେ ଡା. ରବୀନ୍ଦ୍ର ରାମ ଦାସ ପି. ଏଚ୍. ଡି. ଉଲ୍ଲେଖ କରିଛନ୍ତି ଯେ ଭାସ୍କୋଡ଼ିଗାମା ଯେବେ ୧୪୯୮ରେ ଆଫ୍ରିକାର ପୂର୍ବତଟରେ ପହଞ୍ଚିଥିଲେ ସେ ଜଳରେ ଅନେକ ହିନ୍ଦୁ ବ୍ୟବସାୟୀଙ୍କୁ ଦେଖିଥିଲେ । କାନା ନାମକ ଜଣେ ଗୁଜୁରାଟି ବ୍ୟାପାରୀ ଭାସ୍କୋଡ଼ିଗାମାଙ୍କୁ ହିନ୍ଦୁ ମହାସାଗର ପାରକରି ସିଧା କାଲିକଟରେ ପହଞ୍ଚାଇଥିଲେ ।

[ହି: ବି: ମାର୍ଗ ପୌଷ ୧୮୯୧]

ସମଗ୍ର ବିଶ୍ୱରେ ବ୍ୟାପ୍ତ ଆମର ସାଂସ୍କୃତିକ ସାମ୍ରାଜ୍ୟର ମୂଳଦୁଆ ପ୍ରେମ ଓ ସହଯୋଗ ଦ୍ୱାରା ସ୍ଥାପିତ ହୋଇଥିଲା । ଶୋଷଣରହିତ ସାମ୍ରାଜ୍ୟର ଆଦର୍ଶ ଆମେ ବିଶ୍ୱ ସମ୍ମୁଖରେ ଉପସ୍ଥାପିତ କରିପାରିଥିଲୁ । ଶ୍ରୀରାମଚନ୍ଦ୍ର ଶ୍ରୀଲଙ୍କା ବିଜୟ କରିବା ପରେ ମଧ୍ୟ ସେଠାକାର ଅଧିବାସୀ ବିଭୀଷଣଙ୍କୁ ରାଜ୍ୟ ସମର୍ପଣ କରି ଅଯୋଧ୍ୟାକୁ ଫେରି ଆସିଥିଲେ । ଅନ୍ୟାୟକୁ ପ୍ରତିରୋଧ କରି ଆଦର୍ଶରୁ ସାମ୍ରାଜ୍ୟ ସ୍ଥାପନ କରିଥିବାରୁ ଶ୍ରୀରାମଚନ୍ଦ୍ରଙ୍କୁ ଆମେ ମର୍ଯ୍ୟାଦା ପୁରୁଷୋତ୍ତମ ଭାବରେ ପୂଜା କରୁଁ । ସେଇଥିପାଇଁ ଆଜି ବାଲୀ, ଇଣ୍ଡୋନେସିଆ, ମାଲୟ ଆଦି ମୁସଲମାନ ରାଷ୍ଟ୍ରଗୁଡ଼ିକରେ ରାମାୟଣର ମହିମା ଗାନ କରିବାକୁ ସେମାନେ ଧାର୍ମିକ ପ୍ରତିବନ୍ଧକ ମାନନ୍ତି ନାହିଁ । ସାଂସ୍କୃତିକ ସାମ୍ରାଜ୍ୟ ଓ ଶାସନଗତ ସାମ୍ରାଜ୍ୟ ମଧ୍ୟରେ ଏତିକି ହିଁ ପ୍ରଭେଦ । ଏଣୁ ବିଶ୍ୱରେ ସାଂସ୍କୃତିକ ସେତୁ ନିର୍ମାଣ କରିବାରେ ଭାରତୀୟ ଆର୍ଯ୍ୟଗଣ ରାମଚନ୍ଦ୍ରଙ୍କୁ ଆଦର୍ଶ ଭାବରେ ଗ୍ରହଣ କରିଥିବା ସ୍ପଷ୍ଟ ହୋଇଯାଏ ।

# ବେଦରେ କୃଷ୍ଣକାୟ ଆଦିବାସୀର ନିଧନ : ପାଶ୍ଚାତ୍ୟ ବିଦ୍ୱାନଙ୍କର ଏକ ଦୁଷ୍ଟ କଳ୍ପନା

ଆଜି ଯେଉଁମାନଙ୍କୁ ଆମେ ହିନ୍ଦୁ ବୋଲି କହୁଛୁ ସେମାନେ ଦିନେ ଆର୍ଯ୍ୟ-ଜାତି ଭାବରେ ମଧ୍ୟପ୍ରାଚ୍ୟ ବା ପଶ୍ଚିମ ଏସିଆରୁ ଭାରତକୁ ଭ୍ରମଣଶୀଳ ତଥା ଆକ୍ରମଣ-କାରୀ ଭାବରେ ପ୍ରବେଶ କରିଥିଲେ । ସେ ସମୟରେ ସିନ୍ଧୁ ଉପତ୍ୟକାରେ ଦ୍ରାବିଡ଼ମାନଙ୍କର ସଭ୍ୟତା ଥିଲା । ସାଂସ୍କୃତିକ ମତାନ୍ତର କାରଣରୁ ଆର୍ଯ୍ୟମାନଙ୍କୁ ଏହି ଦ୍ରାବିଡ଼ମାନଙ୍କ ସହିତ ଘୋର ଯୁଦ୍ଧ କରିବାକୁ ହେଲା । ଦ୍ରାବିଡ଼ମାନେ ବଳ ଓ ବୁଦ୍ଧିରେ ଆର୍ଯ୍ୟମାନଙ୍କ ଅନୁରୂପ ନଥିବାରୁ ପରାଜିତ ହେଲେ ଏବଂ ଭାରତର ଦକ୍ଷିଣାଞ୍ଚଳକୁ ପଳାୟନ କଲେ । ଏ ପ୍ରକାର ଏକ ମତ ପାଶ୍ଚାତ୍ୟ ଐତିହାସିକମାନେ ଉପସ୍ଥାପିତ କରନ୍ତି । ପ୍ରକୃତରେ ସିନ୍ଧୁ ସଭ୍ୟତା ଆର୍ଯ୍ୟ ସଭ୍ୟତା ଥିଲା ନା ଦ୍ରାବିଡ଼ ସଭ୍ୟତା ଥିଲା କିମ୍ବା ଏ ଦୁଇ ସଭ୍ୟତାର ମିଶ୍ରିତ ସଭ୍ୟତା ଥିଲା ତାର ବିଚାର ପର୍ଯ୍ୟାୟକ୍ରମେ କରାଯିବ । ତେବେ ଏ ମତ ବିକାଶବାଦୀ ଆନୁମାନିକ ମତ ହୋଇଥିବାରୁ ପ୍ରମାଣ ଅଭାବରେ ଆଉ ସ୍ୱୀକୃତ ହେଉନାହିଁ । ଏହାକୁ ଭାରତୀୟ ଶାସ୍ତ୍ରୀୟ ପ୍ରମାଣ ଦେବା ଉଚିତ ଏହା ଲକ୍ଷ୍ୟ ରଖି ପାଶ୍ଚାତ୍ୟ ସଂସ୍କୃତ ବିଦ୍ୱାନଦ୍ୱୟ ମେକ୍‌ଡୋନାଲ୍ଡ଼ ଏବଂ କୀଥ୍ ତାଙ୍କ "ବୈଦିକ ଇନ୍‌ଡେକ୍ସ"ରେ ବେଦର ପ୍ରମାଣ ନେଇ ଏହାହିଁ ପ୍ରମାଣ କରି-ଦେବାରେ ସମର୍ଥ ହୋଇଗଲେ ଯେ ବାହାରୁ ଆସିଥିବା ଆର୍ଯ୍ୟମାନେ ଭାରତରେ ପ୍ରବେଶ କରି ସେଠି ଯୁଗଯୁଗରୁ ବସବାସ କରିଆସୁଥିବା ଆଦିବାସୀଙ୍କ ସହିତ ଯୁଦ୍ଧ କଲେ । ଅନେକ ଆଦିବାସୀଙ୍କୁ ସେମାନେ ହତ୍ୟା କଲେ, ସେମାନଙ୍କ ପୁରପଲ୍ଲୀକୁ ଧ୍ୱଂସ କଲେ । ଯେଉଁମାନେ ଯୁଦ୍ଧରେ ପରାଜିତ ହୋଇ ଶରଣ ପଶିଲେ ସେମାନଙ୍କୁ ଦାସ ହିସାବରେ ବ୍ୟବହାର କଲେ । ଏହି ଆଦିବାସୀଙ୍କୁ ବେଦରେ ଦସ୍ୟୁ, ଅସୁର ଏବଂ ଦାସ ଭାବରେ ବର୍ଣ୍ଣନା କରାଯାଇଛି ଯେଉଁମାନଙ୍କର ନାକ ଚେପ୍‌ଟା ଥିଲା ଏବଂ ଦେଖିବାକୁ ସେମାନେ କୃଷ୍ଣକାୟ ଥିଲେ। ଆର୍ଯ୍ୟମାନେ ଅଗ୍ନିପୂଜକ ହେଲେ ଓ ଏହି ଦାସମାନେ ଲିଙ୍ଗପୂଜକ ଥିଲେ ।

ଆଦିବାସୀ ବର୍ଣ୍ଣ କୃଷ୍ଣ ଥିଲ, ତାହା ପ୍ରମାଣ କରିବାକୁ ସେମାନେ ଋଗ୍‌ବେଦରୁ କୃଷ୍ଣା[1], କୃଷ୍ଣତ୍ୱଚ[2], ତ୍ୱଚଂ କୃଷ୍ଣାମରନ୍ଧୟତ୍[3], ଏବଂ କୃଷ୍ଣଯୋନୀଃ[4] ଆଦି ଶବ୍ଦ ଥିବା ମନ୍ତ୍ର-ଗୁଡ଼ିକ ନେଲେ । ଅନାସ[5] ଶବ୍ଦ ଦେଖି ସେମାନେ ଚିନ୍ତା କରିନେଲେ ଯେ ଏହି ଆଦିବାସୀମାନଙ୍କର ନାକ ଚେପ୍‌ଟା ଥିଲା ଏବଂ ମୃ ଧ୍ରବାଚ[6] ଶବ୍ଦଟିରୁ ସେମାନଙ୍କର ଭାଷା କଠୋର ଥିଲା ବୋଲି ଅନୁମାନ କରିନେଲେ । ଯେହେତୁ ସେମାନେ ଅସଭ୍ୟ ଓ ବର୍ବର ଥିଲେ ଏଣୁ ତାଙ୍କର ଉଚ୍ଚତର ଦେବତା ନଥିଲେ; ତେଣୁ ସେମାନେ ଶିଶ୍ନଦେବ[7] ବା ଲିଙ୍ଗପୂଜକ ଥିଲେ । ଆର୍ଯ୍ୟମାନଙ୍କ ଦେବତା ବା ରାଜା ଇନ୍ଦ୍ର କିପରି ନିର୍ମମ ଭାବରେ ଏମାନଙ୍କର ପୁରପଲ୍ଲୀଗୁଡ଼ିକ ଧ୍ୱଂସ କରିଦେଇଥିଲେ ସେସବୁ ଉଦାହରଣ ସେମାନେ ଋଗ୍‌ବେଦରୁ ବାହାର କଲେ । ତାହା ହେଲା, ହେ ଇନ୍ଦ୍ର ! ତୁମେ ପିପ୍ରୁ ନାମକ ଅସୁରର ନିବାସ ସ୍ଥାନ ନଷ୍ଟ କରିଛ[8], ତୁମେ ବଙ୍ଗୃଦ ନାମକ ଅସୁରର ଶହ ଶହ ପଲ୍ଲୀ ଧ୍ୱଂସ କରିଛ[9], ତୁମେ ବଜ୍ର ଦ୍ୱାରା ଶରଦ୍ ଋତୁରେ ନିର୍ମିତ ଦାସଙ୍କ ସାତଟି ପୁରକୁ ଭାଙ୍ଗିଛ[10], ତୁମେ ଶୁଷ୍ଣ ନାମକ ଅସୁରର ମୁଖ୍ୟ ନଗର ଭାଙ୍ଗିଛ[11] । ତୁମେ ଶମ୍ବରର ଅନେକ ଶହ ବସ୍ତି ଚୂରମାର କରିଦେଇଛ[12] ଇତ୍ୟାଦି । ଶମ୍ବର, ଚୁମୁରି, ଧୁନି, ପିପ୍ରୁ, ବର୍ଚିନ, ଇଲୀବିଶ ଏବଂ ବୃତ୍ର ଆଦି ନାମକୁ ସେମାନେ ଆଦିବାସୀମାନଙ୍କ ସରଦାର ବୋଲି ଉଲ୍ଲେଖ କରି କୁହନ୍ତି ଯେ ଏମାନଙ୍କ ସହ ଆର୍ଯ୍ୟମାନଙ୍କର ଯୁଦ୍ଧ ହୋଇଥିଲା ଏବଂ ଏଥିରେ ଆର୍ଯ୍ୟମାନେ ବିଜୟୀ ହୋଇଥିଲେ । ବେଦର ଏତତ୍‌ସଂପୃକ୍ତ ମନ୍ତ୍ରାଂଶମାନ ନେଇ ସେମାନେ ଯେପରି ଭାରତୀୟ ଇତିହାସର ଆଦିକାଳ ଲେଖିଛନ୍ତି ତାହା ଏପରି ଭ୍ରମାତ୍ମକ ଯେ ସେହି ମନ୍ତ୍ରଗୁଡ଼ିକର ପୂର୍ବାପର ସମ୍ପର୍କ ନ ଜାଣିଲେ ଆମକୁ ସେସବୁ କଥା ସତ୍ୟ ମନେହେବ । ବେଦକୁ ବୁଝିବା ପାଇଁ ସେମାନେ ଯେପରି ସହଜତମ ମନ ମୁତା-ବକ ଅର୍ଥ ନିର୍ବାଚନ କରିଛନ୍ତି ସେଥିରୁ ସେମାନଙ୍କର ପାଣ୍ଡିତ୍ୟ ବେଶ୍ ଜଣାପଡ଼େ । ବେଦକୁ ବୁଝିବା ପାଇଁ ଶିକ୍ଷା, କଳ୍ପ, ନିରୁକ୍ତ, ଛନ୍ଦ, ଜ୍ୟୋତିଷ ତଥା ବ୍ୟାକରଣର ଯଥାର୍ଥ ଜ୍ଞାନ ଆବଶ୍ୟକ । ନଚେତ୍ ଅର୍ଥ ଅନର୍ଥରେ ପରିଣତ ହୋଇଯିବ, ଯାହା ସେମାନଙ୍କ ଦ୍ୱାରା ହୋଇଛି ।

## କୃଷ୍ଣ ଅର୍ଥ ମେଘ

ଯେଉଁ ଯେଉଁ ସ୍ଥଳରେ କୃଷ୍ଣ ଶବ୍ଦ ଆସେ ତାକୁ ଏହି ପାଶ୍ଚାତ୍ୟ ପଣ୍ଡିତମାନେ କୃଷ୍ଣକାୟ ଆଦିବାସୀ ଅର୍ଥରେ ଗ୍ରହଣ କରନ୍ତି, ଯାହା ଭ୍ରମାତ୍ମକ ଅଟେ । କୃଷ୍ଣ ଶବ୍ଦ ମେଘ ଅର୍ଥରେ ହିଁ ବହୁ କ୍ଷେତ୍ରରେ ବ୍ୟବହାର ହୋଇଛି[13] । କୃଷ୍ଣଗର୍ଭା ପଦଟି କଳାମେଘ ଅର୍ଥରେ ବୁଝା ଯାଇଛି[14] । ସେହି ସୂକ୍ତର ଅନ୍ୟମନ୍ତ୍ରରେ ଶୁଷ୍ଣ ଏବଂ ସମ୍ବର ନାମକ ମେଘର ବର୍ଣ୍ଣନା ହୋଇଛି । ସମଗ୍ର ପ୍ରକରଣଟି ମେଘ ଉପରେ

ହିଁ ସୀମିତ । "ହତଂ କୃଷ୍ଣା ମରନ୍ଧଯୁତ୍" ଅର୍ଥ ସେମାନେ ଲେଖନ୍ତି "କୃଷ୍ଣତ୍ୱକ୍ ଥିବା ଅସୁର"ଙ୍କୁ ହତ୍ୟା କଲେ । ଏଠି କୃଷ୍ଣ ଚର୍ମ ଆଦିବାସୀ ଅର୍ଥରେ ହେଇ-ପାରିବ ନାହିଁ । କାରଣ ଇନ୍ଦ୍ରଙ୍କସହ କୃଷ୍ଣବର୍ଣ୍ଣ ମେଘର ସଂଘର୍ଷ କଥା ଏଠାରେ ମଧ୍ୟ କୁହାଯାଇଛି । "କୃଷ୍ଣଯୋନୀଃ" ଶବ୍ଦଟି ଦେଖି ସେମାନଙ୍କର ଭ୍ରାନ୍ତି ହୁଏ । ପ୍ରକୃତରେ ଏ ପଦଟି ଦାସୀର ବିଶେଷଣ ଭାବରେ ବ୍ୟବହାର ହୋଇଛି । ଦାସୀ ଅର୍ଥ "ଯୋନୀଭୂତାଂ ତାଃ କୃଷ୍ଣଯୋନ୍ୟଃ ଦାସ୍ୟଃ" ଅର୍ଥାତ୍ କୃଷ୍ଣବର୍ଣ୍ଣ ମେଘର ଉତ୍ପତ୍ତି ସ୍ଥଳ । ଏହି ମନ୍ତ୍ରରେ ଇନ୍ଦ୍ରଙ୍କ ବିଶେଷଣ ବୃତ୍ରହା ଏବଂ ପୁରନ୍ଦର ଅଟେ ଯା'ର ଅର୍ଥ ହେବ – ଇନ୍ଦ୍ର ବୃତ୍ର ନାମକ ମେଘକୁ ହନନ କଲେ ଏବଂ ମେଘର ଯେଉଁ ପୁର ତାକୁ ବିଦାରଣ କରେ । ଏ ମନ୍ତ୍ରଟିକୁ କୌଣସି ଆଦିବାସୀ ସହ କେବେ ମଧ୍ୟ ଯୋଡ଼ାଯାଇପାରେ ନାହିଁ । ଇନ୍ଦ୍ର ଓ ମେଘ ମଧ୍ୟରେ ପ୍ରାକୃତିକ ଯୁଦ୍ଧର ଏକ ଆଲଙ୍କାରିକ ବର୍ଣ୍ଣନା ଏଥିରେ ଅଛି । ପିପ୍ରୁ ତଥା ମୃଗୟ ନାମକ ମେଘକୁ ଇନ୍ଦ୍ର ବଜ୍ରଦ୍ୱାରା ବିଦୀର୍ଣ୍ଣ କରିବା କଥାକୁ ଆଦିବାସୀଙ୍କସହ କପିନ୍ କଲେ ଯୋଡ଼ାଯାଇ ପାରିବ ନାହିଁ । ତେବେ "ଅନାସୋ" ଶବ୍ଦକୁ ଆମେ କପରି ବୁଝିବୁ ? "ନାସ୍" ଶବ୍ଦ ଅର୍ଥ ନାସିକା ନୁହେଁ । ଣାସୃ ଶବ୍ଦେ ଭ୍ୱାଦିଗଣ ଧାତୁରୁ "ନାସତେ ଶବ୍ଦଂ କରୋତି ଇତି ନାଃ (ନାସ୍) ଅର୍ଥାତ୍ ଯେ ଶବ୍ଦ କରେ ସେ 'ନାସ୍' ଏଣୁ ଯେ ଶବ୍ଦ କରେ ନାହିଁ ସେ "ଅନାସ୍" ଅର୍ଥାତ୍ ମୂକମେଘ । ବିଦେଶୀ ବିଦ୍ୱାନମାନେ "ଅନାସ୍" ଶବ୍ଦକୁ ବହୁବ୍ରୀହି ସମାସ କରି "ନ ବିଦ୍ୟତେ ନାସିକା ଯସ୍ୟ" ଅର୍ଥରେ ଚେପ୍ଟା ନାକ କରି ଦିଅନ୍ତି । ଋକ୍‌ବେଦରେ କୁହାଯାଇଛି—ହେ ଇନ୍ଦ୍ର : ତୁମେ ଅନାସ ଅର୍ଥାତ୍ ମୂକମେଘ ଏବଂ ମୃଧ୍ରବାଚ ଅର୍ଥାତ୍ ଗର୍ଜନ କରୁଥିବା ମେଘକୁ ବଜ୍ରଦ୍ୱାରା ମାରିଛ[15] । ଏହି ସୂକ୍ତଟିରେ ଇନ୍ଦ୍ର (ବିଦ୍ୟୁତ) ଏବଂ ମେଘର ପ୍ରାକୃତିକ ସଂଘର୍ଷ ଦର୍ଶାଇ ଦିଆଯାଇଛି ଏବଂ ନବମ ଓ ଏକାଦଶ ମନ୍ତ୍ରରେ ଶୁଷ୍ଣ ଓ ପିପ୍ରୁ ନାମକ ମେଘକୁ ବିଦୀର୍ଣ୍ଣ କରିଥିବା କଥା ମଧ୍ୟ ଉଲ୍ଲେଖ ହୋଇଛି ।

## ଇନ୍ଦ୍ର-ବୃତ୍ର ଆଖ୍ୟାୟିକା

ଏଠାରେ ଋଗ୍‌ବେଦର ପ୍ରଥମ ମଣ୍ଡଳର ଇନ୍ଦ୍ର-ବୃତ୍ର ଆଖ୍ୟାୟିକାଟିକୁ ମଧ୍ୟ ପାଶ୍ଚାତ୍ୟ ବିଦ୍ୱାନମାନେ ଆର୍ଯ୍ୟ ଅନାର୍ଯ୍ୟ ଯୁଦ୍ଧ ଭାବରେ ବ୍ୟାଖ୍ୟା କରି ବୃତ୍ରର ନିଧନକୁ ଜଣେ ଆଦିବାସୀ ସରଦାରର ମୃତ୍ୟୁ ବୋଲି କହିବାକୁ ପଛାଇ ନାହାନ୍ତି । ପୂର୍ବାପର ସମ୍ପର୍କ ରଖି ଆଖ୍ୟାୟିକାଟିକୁ ଏହିପରି ଅବତାରଣା କରୁଛି । ଦୁର୍ମଦ ବୃତ୍ର ନିଜକୁ ଶତ୍ରୁହୀନ ଭାବି ମହାବୀର ଇନ୍ଦ୍ରଙ୍କୁ ଯୁଦ୍ଧ ପାଇଁ ଆହ୍ୱାନ ଦେଲା । ଇନ୍ଦ୍ରଙ୍କ ବଧ-

କଷ୍ଟ କାର୍ଯ୍ୟରୁ ଏ ବୃତ୍ର ନିବୃତ୍ତ ପାଇଲା ନାହିଁ । ଇନ୍ଦ୍ର ଶତ୍ରୁ ବୃତ୍ର ନଦୀକୁଣ୍ଡଳରେ କଚଡ଼ି ହୋଇ ପଡ଼ି ନଦୀମାନଙ୍କୁ ମଧ୍ୟ ଘାଣ୍ଟିବାରେ ଲାଗିଲା । ପଦରହିତ ଏବଂ ହସ୍ତରହିତ ବୃତ୍ର ଯୁଦ୍ଧ ପାଇଁ ଇନ୍ଦ୍ରଙ୍କୁ ଆହ୍ୱାନ କଲା । ଇନ୍ଦ୍ର ଏହି ବୃତ୍ରକୁ ଉନ୍ନତ ସ୍ଥାନରୁ ବଜ୍ର ଦ୍ୱାରା ଆଘାତ କଲେ । ଯେଉଁପରି ନପୁଂସକ ମନୁଷ୍ୟ ବୀର୍ଯ୍ୟବାନ ମନୁଷ୍ୟର ସମକକ୍ଷ ହେବାପାଇଁ ବ୍ୟର୍ଥ ଚେଷ୍ଟା କରିଥାଏ, ସେହିପ୍ରକାର ବୃତ୍ର ମଧ୍ୟ ବ୍ୟର୍ଥ ଚେଷ୍ଟା କରି ଇନ୍ଦ୍ର ଦ୍ୱାରା ଅନେକ ସ୍ଥାନରେ ତାଡ଼ିତ ହେଲା ଏବଂ ବୃତ୍ର କ୍ଷତବିକ୍ଷତ ହୋଇ ଭୂମି ଉପରେ କଚଡ଼ି ହୋଇ ପଡ଼ିଲା । ବୃତ୍ରକୁ ରକ୍ଷା କରିବାପାଇଁ ବୃତ୍ରର ମାତା ଦନୁ ତା' ଉପରେ ଶୋଇ ପଡ଼ିଲା । ଇନ୍ଦ୍ର ନିମ୍ନ ଦେଶରୁ ବୃତ୍ରକୁ ପ୍ରହାର କଲେ, ଯେଉଁ ସମୟରେ ମାତା ଉପରେ ଓ ପୁତ୍ର ତଳେ ଥିଲେ । ଏହାପରେ ଯେପରି ଗାଈ ନିଜ ବାଛୁରୀ ସହ ଶୟନ କରେ ସେ ପ୍ରକାର ବୃତ୍ରର ମାତା ଦନୁ ମଧ୍ୟ ସବୁଦିନ ପାଇଁ ଶୋଇ ପଡ଼ିଲା[16] । ସଂସ୍କୃତ ଭାଷାରେ ଯେଉଁମାନଙ୍କର ସାଧାରଣ ଜ୍ଞାନ ଥିବ ସେମାନେ ଏ ଯୁଦ୍ଧକୁ ଦୁଇଟି ଗୋଷ୍ଠୀ ମଧ୍ୟରେ ଯୁଦ୍ଧ ବୋଲି କହିପାରିବେ ନାହିଁ । ଇନ୍ଦ୍ରଙ୍କ ଅନ୍ୟନାମ ଏଠି ସୂର୍ଯ୍ୟ ଏବଂ ବୃତ୍ରର ଏକ ନାମ ମେଘ । ସୂର୍ଯ୍ୟ ଓ ବୃତ୍ର ମଧ୍ୟରେ ଚାଲିଥିବା ସଂଘର୍ଷକୁ ବୈଦିକ ଋଷି ଏପରି ଆଲଙ୍କାରିକ ଭାଷାରେ ଥୋଇଛନ୍ତି ଯାହାର ତୁଳନା ନାହିଁ । ସୂର୍ଯ୍ୟଙ୍କୁ ମେଘ ଢାଙ୍କିବାପାଇଁ ଚେଷ୍ଟା କରି ପରିଶେଷରେ କିପରି ପରାଜିତ ହୁଏ ତା'ର ଏହା ଏକ ନମୁନା । ଇନ୍ଦ୍ରଙ୍କ ଅନ୍ୟ ଏକ ନାମ ହେଲା ବିଦ୍ୟୁତ । ଏଣୁ ବିଦ୍ୟୁତ ଓ ମେଘ ମଧ୍ୟରେ ମଧ୍ୟ ଏହା ଏକ ପ୍ରାକୃତିକ ସଂଘର୍ଷ । ଋଗ୍‌ବେଦରେ କୁହାଯାଇଛି — "ଅପାଂ ବିଲମପିହିତଂ ଯଦାସୀଦ୍ ବୃତ୍ରଂ ଜଘନ୍ୱାଂ ଅପ ତଦ୍‌ବାର"[17] ଅର୍ଥାତ୍ — ଜଳପୂର୍ଣ୍ଣ ସ୍ଥାନ ବୃତ୍ର ଦ୍ୱାରା ଆଚ୍ଛାଦିତ ହୋଇଥିଲା । ଇନ୍ଦ୍ର ବୃତ୍ରକୁ ବଧ କଲେ ଏବଂ ଢଙ୍କା ଯାଇଥିବା ସ୍ଥାନରୁ ଜଳ ନିଷ୍କାସନ କଲେ । ଯାସ୍କଙ୍କୁ ମଧ୍ୟ ଏକଥା କହିବାକୁ ହେଲା ଯେ ଏ ବୃତ୍ର ଆଉ କେହି ନୁହେଁ ବରଂ ମେଘ ଅଟେ । ବିକ୍ରମ ସଂବତ୍ ଏକତିରିଶ ବର୍ଷ ପୂର୍ବେ ଲେଖା ଯାଇଥିବା ନିରୁକ୍ତ, ଏତରେୟ ବ୍ରାହ୍ମଣ (3.4), ଶତପଥ ବ୍ରାହ୍ମଣ (6.1.3.14) ଏବଂ କୌଶୀତକି ବ୍ରାହ୍ମଣ (6.9) ରେ ଇନ୍ଦ୍ରଙ୍କୁ ବିଦ୍ୟୁତ ବା ଅଶନି ଭାବରେ ବର୍ଣ୍ଣନା କରାଯାଇଥିବା ଦେଖି ମଧ୍ୟ ଇନ୍ଦ୍ରଙ୍କୁ କିଏ ବ୍ୟକ୍ତିବିଶେଷ ଭାବରେ ପ୍ରମାଣ କରିବ ? ବେଦର ଆଉ ଏକ ଯୁଦ୍ଧ ପ୍ରସଙ୍ଗକୁ ବିଚାରକୁ ଅଣାଯାଉ । କୁହାଯାଇଛି— ପର୍ବତରେ ଆଶ୍ରୟ ନେଇଥିବା ଅହି ନାମକ ମେଘକୁ ଇନ୍ଦ୍ର ବଧ କଲେ । ତ୍ୱଷ୍ଟା ଇନ୍ଦ୍ରଙ୍କ ପାଇଁ ଶବ୍ଦକାରୀ ଏବଂ ଉପତାପକାରୀ ବଜ୍ରର ନିର୍ମାଣ କଲେ । ଯେପରି ନୂଆ କରି ପ୍ରସବ କରିଥିବା ଗାଈ ନିଜ ବାଛୁରି ପଛରେ ଯାଏ, ସେ ପ୍ରକାର ମେଘ ବଧ ପରେ ପରେ ଧାଇଁବାହାରି ଜଳବେଗ ସହିତ ସମୁଦ୍ର ଆଡ଼କୁ ଗଲା[18] ।

ପାଶ୍ଚାତ୍ୟ ବିଦ୍ୱାନମାନେ ଯେଉଁସବୁ ନାମକୁ ଆଦିବାସୀ ବୋଲି ପ୍ରମାଣ କରିବାକୁ ଚାହାନ୍ତି ସେ ସମସ୍ତ ମେଘମାନଙ୍କର ନାମ ବ୍ୟତୀତ ଆଉ କିଛି ନୁହେଁ । ଶମ୍ବର[19] ଏକପ୍ରକାର ମେଘ ଯା'ଦ୍ୱାରା ଜଳ ପ୍ରବାହିତ ହୁଏ[20] । ଚମୁରି[21] ଶବ୍ଦ ଚମୁ ଅଦନେ ଧାତୁରୁ ଆସିଥିବାରୁ ଏହା ଏ ପ୍ରକାର ମେଘ ଯେ ସ୍ୱୟଂ ଜଳକୁ ଖାଇଦିଏ ବା ଉଡ଼ାଇ ନିଏ । ଏ ମେଘ ପ୍ରଜାଙ୍କ କାର୍ଯ୍ୟରେ ଆସେ ନାହିଁ । ବର୍ଚିନ୍[22] ବର୍ଚ ଶବ୍ଦ ବର୍ଚ ଦୀପ୍ତୌ ଧାତୁରୁ ହୋଇଛି ଯେଉଁ ମେଘରେ ବିଦ୍ୟୁତ ଖୁବ ଚକ୍ ଚକ୍ ଦେଖାଯାଏ । ଇଳୀବିଶ[23] ଇଳା'ବିଲଶୟଃ ଅର୍ଥାତ୍ ଭୂମିଗର୍ତ୍ତରେ ପଶି ଯାଉଥିବା ବୃଷ୍ଟି ଅର୍ଥରେ ଏହା ପ୍ରୟୋଗ ହୋଇଛି । ନିଘଣ୍ଟୁ[24] ରେ "ଇଳା" ପଦ ପୃଥିବୀ ନାମରେ ପାଠ ହୁଏ । ପିପ୍ରୁ[25] ଶବ୍ଦ ପୃପାଳନ ପୂରଣୟୋଃ ଧାତୁରୁ ଆସିଥିବାରୁ ଏହି ମେଘ ବର୍ଷା ଦ୍ୱାରା ପ୍ରଜା ପାଳନ କରିଥାଏ । ହେହ୍ୱପର ଧୁନି[26] ଧୁନୋତି ଇତି ଧୁନିଃ ବା ଯେଉଁ ମେଘ ମଧ୍ୟରେ କମ୍ପନ ଅଛି । ଇନ୍ଦ୍ର ଆଦିବାସୀମାନଙ୍କର ପୁରଗୁଡ଼ିକୁ ଧ୍ୱଂସ କରିଦେବା ଯେ ଏକ ଗାଥାତ୍ମକ କଳ୍ପନା ମାତ୍ର ତାହା "ବୈଦିକ ଇନ୍‌ଡେକ୍ସ"ର ବିଜ୍ଞ ବିଦ୍ୱାନ ମାନିବାକୁ ନାରାଜ । ସେମାନେ କଳ୍ପନା କରି ବସନ୍ତି ଯେ ଏହି ଆଦିବାସୀଗଣ ଶରଦ୍ ଋତୁରେ ଯୁଦ୍ଧ ସମୟରେ ଏହି ପୁରଗୁଡ଼ିକରେ ଆଶ୍ରୟ ନିଅନ୍ତି । ଅଥବା ନଦୀ ବଢ଼ି କାରଣରୁ ଏହି ପୁରଗୁଡ଼ିକରେ ବାସ କରନ୍ତି । ଯଦି ସମ୍ବର ଆଦି ମେଘମାନଙ୍କର ନାମ ତେବେ ସେମାନେ ପୁରଗୁଡ଼ିକରେ ଆଶ୍ରୟ ନେବା ପ୍ରଶ୍ନ ଉଠିବ କିପରି ? "ଶାରଦୀ ପୁର" ଅର୍ଥ ଏଠି ଶରଦ୍ ଋତୁରେ ଉତ୍ପନ୍ନ ହେଉଥିବା ମେଘ ଏବଂ ବେଦରେ ଯେଉଁଠି "ଆୟସୀ ପୁରଃ" ଏବଂ "ପାଷାଣ ପୁର" ଆଳଙ୍କାରିକ ଭାବରେ ପଥର ଓ ଲୌହ-ତୁଲ୍ୟ ଦୃଢ଼ ଗୃହ, ଯାହାକୁ ଛିନ୍ନ ଭିନ୍ନ କରିବାପାଇଁ ଇନ୍ଦ୍ରଙ୍କୁ ଅଧିକ ସମୟ ଲାଗେ ବୋଲି ବୁଝିବାକୁ ହେବ । ବେଦ ମନ୍ତ୍ରରେ ବିଭିନ୍ନ ମେଘ ପାଇଁ ବିଭିନ୍ନ ଗୃହ ବା ପୁର କାହାର ଶହେ, କାହାର ଅନେଶ୍ୱର ତ କାହାର ନବେ ବୋଲି ଲେଖା ଅଛି । ଏ ରହସ୍ୟ ମେଘ ବିଦ୍ୟା ବିଶାରଦମାନେ ହିଁ ଅନୁସନ୍ଧାନ କରି ବୁଝେଇ ପାରିବେ ।

ହେହ୍ୱପର "ଇନ୍‌ଡେକ୍ସ" ପଣ୍ଡିତଦ୍ୱୟ ଋଗ୍‌ବେଦରେ[27] ଶିଶ୍ନଦେବ ଶବ୍ଦ-ଟିରୁ ଆଦିବାସୀମାନେ ଲିଙ୍ଗପୂଜକ ଥିଲେ ବୋଲି ମନ ଇଚ୍ଛା ଭାଷ୍ୟ କରି ପାରିବେ ନାହିଁ । କାରଣ ଆଜକୁ ପାଞ୍ଚ ସହସ୍ର ବର୍ଷ ପୂର୍ବେ ଯାସ୍କାଚାର୍ଯ୍ୟ ଶିଶ୍ନଦେବ ଶବ୍ଦଟିକୁ "ଅବ୍ରହ୍ମଚର୍ଯ୍ୟ" ବୋଲି ବ୍ୟଭିଚାରୀ ଅର୍ଥରେ ବ୍ୟାଖ୍ୟା କରିଛନ୍ତି[28] ଏବଂ ବେଦରେ ବ୍ୟଭିଚାରୀ ଅର୍ଥରେ ଏହା ସ୍ପଷ୍ଟ ଭାବରେ ବ୍ୟବହାର କରାଯାଇଛି । ଆର୍ଯ୍ୟମାନେ ଦସ୍ୟୁ, ଦାସ ବା ଦ୍ରାବିଡ଼ମାନଙ୍କୁ ନିଧନ କରି ଭାରତବର୍ଷକୁ କରାୟତ୍ତ କଲେ ବୋଲି ଯେଉଁ କଥା ସେମାନେ ଉଠାଇଛନ୍ତି

ତା'ର ମୂଳ କାରଣ ସେତେ ସ୍ପଷ୍ଟ ନୋହିଲେ ବୋଲି ପି. ଏନ୍. ଓକ୍ ଆଦି ସ୍ପଷ୍ଟ ବାଦୀ ଐତିହାସିକ ଉତ୍ଥାପିତ କରନ୍ତି ନା କାହିଁକି ପାଶ୍ଚାତ୍ୟ ବିଦ୍ୱାନମାନେ ବେଦ ପ୍ରତି ଆସି ସେ ସବୁକୁ ବିସ୍ତୃତ ଭାବେ ନାହାନ୍ତି, ଆମେ କହିବାକୁ ବାଧ୍ୟ । ବେଦ ହେଉଛି ବିଶ୍ୱର ପ୍ରାଚୀନ ଏ କଥାକୁ ଆଦୌ ସ୍ୱୀକାରକୁ ନ ନେଇ ଥିବାରୁ ଏବଂ ପୂର୍ବତନ ନିୟମ ପରି ଏହାକୁ ଇତିହାସ ଗ୍ରନ୍ଥ ଭାବି ଥିବାରୁ ଏହି ପ୍ରକାର ତ୍ରୁଟି ହେବା ଅସ୍ୱାଭା-ବିକ ନୁହେଁ । ପ୍ରକୃତରେ ଆର୍ଯ୍ୟ ନାମକ ଏକ ନିର୍ଦ୍ଦିଷ୍ଟ ଜାତି ଥିଲା ନା ମଣିଷର ସ୍ୱଭାବ ଅନୁସାରେ ଜଣେ ଆର୍ଯ୍ୟ ବା ଦସ୍ୟୁ ହେଉଥିଲା ଏଥିର ବିଚାର କରାଯାଉ ।

## ଆର୍ଯ୍ୟ ଅର୍ଥ ଶ୍ରେଷ୍ଠ

ଆର୍ଯ୍ୟ ଶବ୍ଦ ଋଗ୍‌ବେଦରେ[29] ଶ୍ରେଷ୍ଠ ତଥା ଉତ୍ତମ ସ୍ୱଭାବ ବ୍ୟକ୍ତିଙ୍କ ପାଇଁ ବିଶେଷଣ ପଦଭାବରେ ବାରମ୍ବାର ବ୍ୟବହାର ହୋଇଛି । ମୂଳତଃ ବେଦରୁ ଆର୍ଯ୍ୟ ଶବ୍ଦ ସଂସ୍କୃତ ଶବ୍ଦ କଲ୍ପଦ୍ରୁମ, ବାଚସ୍ପତ୍ୟ ବୃହଦଭିଧାନାଦି କୋଷଗ୍ରନ୍ଥରେ ପୂଜ୍ୟ, ଶ୍ରେଷ୍ଠ, ଧାର୍ମିକ, ଧର୍ମଶୀଳ, ମାନ୍ୟ, ଉଦାର ଚରିତ, ଶାନ୍ତଚିତ୍ତ, ନ୍ୟାୟପଥାବଲମ୍ବୀ, କର୍ମଶୀଳ ବ୍ୟକ୍ତିପାଇଁ ବ୍ୟବହୃତ ହୋଇଛି । ନିରୁକ୍ତକାର ଯାସ୍କ 'ଆର୍ଯ୍ୟଃ ଈଶ୍ୱରପୁତ୍ରଃ' ବୋଲି କହିଛନ୍ତି । ବାଲ୍ମୀକି ରାମାୟଣରେ ନାରଦ ମୁନି ଶ୍ରୀରାମଙ୍କ ଗୁଣ ବର୍ଣ୍ଣନା କରିବାକୁ ଯାଇ କୁହନ୍ତି ସେ ଧର୍ମାତ୍ମା, ସଦାଚାରୀ, ସମ ଓ ପ୍ରିୟଦର୍ଶୀ କାରଣରୁ ଆର୍ଯ୍ୟ ଥିଲେ ।[30] ମହର୍ଷି ବେଦବ୍ୟାସ ଜ୍ଞାନୀ, ସଦା ସନ୍ତୁଷ୍ଟ, ଜିତେନ୍ଦ୍ରିୟ, ଜିତମନ, ସତ୍ୟବାଦୀ, ଦାନୀ, ଦୟାଳୁ ଏବଂ ନମ୍ର ଏହି ଆଠଟି ଗୁଣରେ ଭୂଷିତ ବ୍ୟକ୍ତିକୁ ଆର୍ଯ୍ୟ କହିଛନ୍ତି । ମହାତ୍ମା ବୁଦ୍ଧଙ୍କ ମତରେ ପ୍ରାଣୀମାନଙ୍କୁ ହତ୍ୟା କରିବାରେ କେହି ଆର୍ଯ୍ୟ ହୋଇପାରେ ନାହିଁ । ସମସ୍ତ ପ୍ରାଣୀଙ୍କୁ ଅହିଂସା ଆଚରଣ କରୁଥିବା ମନୁଷ୍ୟ ହିଁ ଆର୍ଯ୍ୟପଦବାଚ୍ୟ ।[31] ଜୈନମାନଙ୍କ 'ତତ୍ତ୍ୱାର୍ଥସୂତ୍ର'ରେ 'ଆର୍ଯ୍ୟା ମ୍ଲେଚ୍ଛାଶ୍ଚ' ଆଦି ସୂତ୍ରରୁ ଆର୍ଯ୍ୟ ଅର୍ଥ ଶ୍ରେଷ୍ଠ ପୁରୁଷ ବୋଲି କୁହାଯାଇଛି ।[32] ପାରସୀଙ୍କ ଧର୍ମଶାସ୍ତ୍ର ଜନ୍ଦ ଅବସ୍ତାରେ ଲେଖା ଅଛି ଆମେ ଆର୍ଯ୍ୟମାନଙ୍କ ସମ୍ମାନାର୍ଥେ ହବନ କରୁ ଯେଉଁମାନଙ୍କୁ ମଜଦା (ଈଶ୍ୱର) ସୃଷ୍ଟି କରିଛନ୍ତି ।[33] ଋଷି ଅରବିନ୍ଦ ଆର୍ଯ୍ୟ ଅର୍ଥ ଉଦାରତା, ନମ୍ରତା, ଶ୍ରେଷ୍ଠତା, ସରଳତା, ସାହସ ପବିତ୍ରତା ଓ ଦୟା ବୋଲି କୁହନ୍ତି ଏବଂ ମାନବୀୟ ଭାଷାରେ ଏଥିରୁ ଅଧିକ ଉତ୍ତମ ଆଉ ଅନ୍ୟ କୌଣସି ଶବ୍ଦ ନାହିଁ ବୋଲି ତାଙ୍କର ମତ ।[34] ଠିକ୍ ସେହିପରି ଆର୍ଯ୍ୟ ଶବ୍ଦର ବିପରୀତ ଶବ୍ଦ ହେଲା ଅନାର୍ଯ୍ୟ । ରାମାୟଣରେ କୈକେୟୀ ରାମଙ୍କ ବନଗମନ ପାଇଁ ବର ମାଗିଥିବାରୁ ଦଶରଥ ତାଙ୍କୁ ଅନାର୍ଯ୍ୟ ବୋଲି କହିଛନ୍ତି ।[35] ଗୀତାରେ କ୍ଷାତ୍ର ଧର୍ମଚ୍ୟୁତ ଅର୍ଜ୍ଜୁନର ମୋହଗ୍ରସ୍ତ ଅବସ୍ଥା ଦେଖି ଶ୍ରୀକୃଷ୍ଣ ତାଙ୍କୁ ଅନାର୍ଯ୍ୟ ଅବସ୍ଥାରେ ପଡ଼ିଛି ବୋଲି କହିଛନ୍ତି ।[36]

ଦସ୍ୟୁ ଶବ୍ଦଟି ଅକର୍ମ, ଅନ୍ୟବ୍ରତ ଏବଂ ଅମାନୁଷିକ ଅର୍ଥରେ ଋକ୍‌ବେଦରେ ଉଲ୍ଲେଖ ହୋଇଛି ।[37] ସ୍ୱାମୀ ଏ ଶବ୍ଦଟିର ବ୍ୟାଖ୍ୟା କରିବାକୁ ଯାଇ ଲେଖନ୍ତି 'ଉପକ୍ଷୟିତ୍' ଅର୍ଥାତ୍ ଔଷଧାଦି କ୍ଷିଣ କରୁଥିବା ବ୍ୟକ୍ତି ବା ନଷ୍ଟ କରୁଥିବା ବ୍ୟକ୍ତି ।[38] ବେଦରେ ସେହି ବ୍ୟକ୍ତିଙ୍କୁ ଦସ୍ୟୁ ବା ବିନାଶକାରୀ ବୋଲି କୁହାଯାଇଛି ଯିଏ ଅବ୍ରତ ଶୁଭ କର୍ମ ରହିତ, ଅନ୍ୟବ୍ରତକୁ ମାର୍ଗୀ, ଅଯଜ୍ୟୁ ଅସୃଜନଶୀଳ, ଅକର୍ମନ, ଅମାନୁଷ, ଅଦେବଦ୍ୱଃ ବା ପାପୀ ଏବଂ କୃସୀଜୀ ବା ସୁଖ ନେଉଥିବା ବ୍ୟାପାରୀ ଅଟେ ।[39] ଏହି ପ୍ରକାରର ବ୍ୟକ୍ତି ସହ କୌଣସି ସତ୍ପୁରୁଷର ସଂଘର୍ଷ ହେବା ସ୍ୱାଭାବିକ । ଏମାନଙ୍କୁ ଯେ କେବଳ ବିନାଶ କରିଦିବା ଉଚିତ ତା' ନୁହେଁ ସେମାନଙ୍କୁ ଉତ୍ତମ ସଂସ୍କାର ଦେବା ପାଇଁ ଏବଂ ଶ୍ରେଷ୍ଠ କରିବା ପାଇଁ ବେଦମାତା କୁହନ୍ତି—

ଇନ୍ଦ୍ରଂ ବର୍ଧନ୍ତୋ ଅପ୍ତୁରଃ
କୃଣ୍ୱନ୍ତୋ ବିଶ୍ୱମାର୍ଯ୍ୟମ୍ ।
ଅପଘ୍ନନ୍ତୋ ଅରାବ୍ଣଃ ।[40]

ମାନବ ସମାଜର ଏହି ଦୁଇଟି ବର୍ଗ ସର୍ବଦା ଥିଲେ, ଅଛନ୍ତି ଏବଂ ରହିବେ । ଏହି ଦସ୍ୟୁ ବା ଦାସଙ୍କୁ ଆର୍ଯ୍ୟମାନେ ମାତ୍ର ପଢାଉଥିଲେ କହିବା କେତେଦୂର ଯୁକ୍ତିସଙ୍ଗତ ତାହା ବିଚାରଣୀୟ । ଶ୍ରୀଅରବିନ୍ଦଙ୍କ ମତରେ ଦସ୍ୟୁଅର୍ଥ ପ୍ରକାଶବାଣୀକୁ ଘୃଣା କରୁଥିବା ବ୍ୟକ୍ତି । ଆର୍ଯ୍ୟ ଓ ଦସ୍ୟୁ ସଂଘର୍ଷକୁ କୌଣସି ଭୌତିକ ସଂଘର୍ଷ ଅର୍ଥରେ ବୁଝାଇ ଦେଇ ହେବ ନାହିଁ । ଏହା ଆଧ୍ୟାତ୍ମିକ ସଂଘର୍ଷ ଏବଂ ଆଧ୍ୟାତ୍ମିକ ବିଜୟର କଥା । ଏଠି କେବଳ ଐତିହାସିକ ବ୍ୟାଖ୍ୟାଦ୍ୱାରା କାର୍ଯ୍ୟ ଚଳାଇ ନେଇ ହେବ ନାହିଁ[41] ଏତଦ୍‌ବ୍ୟତୀତ ଦସ୍ୟୁ ବା ଦାସ ଶବ୍ଦ ଯେ ମେଘ ଅର୍ଥରେ ବେଦରେ ବର୍ଣ୍ଣିତ ହୋଇଛି, ଯାହାର ପୁନରାବୃତ୍ତି ଏଠି ଅନାବଶ୍ୟକ ।

ଆର୍ଯ୍ୟ ଅଭିଯାନ ପାଶ୍ଚାତ୍ୟ ବିଦ୍ୱାନଙ୍କର ଏକ ମନଗଢ଼ା କାହାଣୀ । ଆର୍ଯ୍ୟାବର୍ତ୍ତରେ ଆର୍ଯ୍ୟମାନଙ୍କୁ ବିଦେଶୀ ବୋଲି ପ୍ରମାଣ କରିବାକୁ ଯାଇ ପାଶ୍ଚାତ୍ୟ ବିଦ୍ୱାନମାନେ ସମସ୍ତ ଶକ୍ତି ନଷ୍ଟ କରି ଦେଇଛନ୍ତି ଯାହା ମହେଞ୍ଜୋଦାରୋର ଖନନ ପରେ ପ୍ରମାଣିତ ହୋଇଛି । ସେଠାରୁ ପ୍ରାପ୍ତ ବାମ ଓ ଦକ୍ଷିଣମୁଖୀ ସ୍ୱସ୍ତିକା ଚିହ୍ନ (ଯାହା ଓଁ ର ଅନ୍ୟ ଏକ ସ୍ୱରୂପ) ପ୍ରାପ୍ତ ହେବା ପରେ ପରେ ସତ୍ୟ କଥା ଜଣା ପଡ଼ିଛି । ଅନ୍ୟ ଏକ ଫଳକରେ ଗୋଟିଏ ବୃକ୍ଷ ଚିତ୍ର ଅଛି । ସେଥିରେ ଗୋଟିଏ ବୃକ୍ଷ ଡାଳରେ ଦୁଇଟି ପକ୍ଷୀ ପରସ୍ପରକୁ ମୁହଁ କରି ବସିଛନ୍ତି । ଦକ୍ଷିଣ ପାର୍ଶ୍ୱସ୍ଥ ପକ୍ଷୀଟି ଆକାରରେ କ୍ଷୁଦ୍ର ଓ ତାହାର ଚଞ୍ଚୁ ଉନ୍ନତ । ତା' ଠିକ୍ ତଳେ ଛ'ଟି ଅର ଥିବା ଚକ୍ର ରହିଛି । ତାହା ଦୁଇଟି ବଜ୍ର (ବଜ୍ର ସମାନ ହୋଇ) ଦ୍ୱାରା ବନ୍ଦ ଅଛି ।[42] ଏ ଫଳକଟି ମିଳିବା ପରେ ସମସ୍ତେ ନିଃସନ୍ଦେହ ହୋଇ ପଡ଼ିଛନ୍ତି ଯେ

ଏହା ଋଗବେଦ[12] ର ପ୍ରତୀକାତ୍ମକ ବର୍ଣ୍ଣନାର ଏକ ଚିତ୍ର ରୂପ ଅଟେ । ବୃକ୍ଷ ହେଉଛି ପ୍ରକୃତି । ପ୍ରକୃତି ରୂପୀ ବୃକ୍ଷରେ ପକ୍ଷୀ ରୂପୀ ଆତ୍ମା ଓ ପରମାତ୍ମା । ଜଣେ ଭୋକ୍ତା ହେଲେ ଅନ୍ୟଟି ଦ୍ରଷ୍ଟା ରୂପେ ଅନ୍ୟ ପକ୍ଷୀଟିକୁ ଦେଖୁଛି । ଫଳଟି ଜୀବନ ଓ ମୃତ୍ୟୁର ପ୍ରତୀକ । ଯେଉଁଥିରୁ ମୁକ୍ତ ହୋଇ ଯିବା ପାଇଁ ଆତ୍ମା ସତତ ଚେଷ୍ଟିତ । ଦୁଇଟି ଶ୍ରେଷ୍ଠ ନଗ ରଡ଼ ପୁରୁଷ ଓ ନାରୀର ପ୍ରତୀକ ଅଟେ । ଏହା ବେଦର ବର୍ଣ୍ଣନା ସହ ଏତେ ମିଳିଯାଏ ଯେ ଏହାକୁ ବେଦର ପ୍ରତିଫଳନ ନ କହିବାର ଉପାୟ ନାହିଁ । ମହେଞ୍ଜୋଦାରୋର ଖନନ ପରେ ମଧ୍ୟ ଗୋଟିଏ କବର ଆବିଷ୍କାର ହେବା ଆର୍ଯ୍ୟମାନଙ୍କର ଦାହ ସଂସ୍କାରକୁ ଇଙ୍ଗିତ କରେ ।

## ଆଦିବାସୀ ନୁହେଁ ବନବାସୀ

ଆଜିକାଲି ଯେଉଁ ଆଦିବାସୀ କଥାଟି ଉଠୁଛି ତାହାକୁ ମୁଁ ଏକ ରାଜନୈତିକ ବ୍ୟାକରଣରେ ଅବ୍ୟୟ ପଦ ବୋଲି ଭାବେ । କାରଣ ଆଜିର ଆଦିବାସୀ ସେ କାଳରେ ମଧ୍ୟ ଥିଲେ ଯାହାଙ୍କୁ ଆମେ ବନବାସୀ କହୁଥିଲୁଁ । ବ୍ୟାସ, ବାଲ୍ମୀକିଙ୍କ ପରି କବି ମନୀଷୀ ରସାୟନ ଶାସ୍ତ୍ରବିତ୍ ଚରକ, ବୈଜ୍ଞାନିକ ଭରଦ୍ୱାଜ ସମସ୍ତେ ଆଜିକାଲିର ଆଦିବାସୀଙ୍କର ପିତୃପୁରୁଷ ଥିଲେ । ସେମାନେ ଦୟାର ପାତ୍ର ନ ଥିଲେ ବରଂ ଶ୍ରଦ୍ଧା ଓ ଆତ୍ମୀୟତାର ଅଧିକାରୀ ଥିଲେ । ଏହି ବନବାସୀମାନେ ରାମଚନ୍ଦ୍ରଙ୍କୁ ଲଙ୍କାରେ ସେତୁ ନିର୍ମାଣରେ ସାହାଯ୍ୟ କରିଥିଲେ । ମହାଭାରତରେ ଏକଲବ୍ୟ ଗାଥାକୁ ସତ ଅତିରଞ୍ଜିତ ତତ୍ତ୍ୱଟିକୁ ବାଦ ଦେଇ ବିଚାର କରାଯାଏ ତାହେଲେ ସେମାନେ ଯେ ଭାରତୀୟ ମର୍ଯ୍ୟାଦାକୁ ରକ୍ଷା କରି କପରି ସାମାନ୍ତର ପ୍ରହରୀ ରୂପେ କାର୍ଯ୍ୟ କରୁଥିଲେ ତାହା ଜଣା ପଡ଼ିବ । ଏ ପ୍ରକାର ଏକ ପରିଚୟ ଆମକୁ ଭାରବୀଙ୍କ 'କିରାତାର୍ଜୁନୀୟମ'ରୁ ମିଳେ । ଯେଉଁଥିରେ କିରାତକୁ ଧର୍ମରାଜ ଏକ ଗୁପ୍ତଚର ରୂପରେ କୌରବଙ୍କ ରାଜ୍ୟ ପ୍ରଣାଳୀ ଜାଣିବା ପାଇଁ ନିଯୁକ୍ତ କରନ୍ତି । ରାଜସ୍ଥାନର ଭିଲମାନଙ୍କ ସାହାଯ୍ୟରେ ମହାରାଣା ପ୍ରତାପ, ସାତାରାର ମାଭଲମାନଙ୍କ ସହଯୋଗରେ ଛତ୍ରପତି ଶିବାଜୀ ଆଦି ସ୍ୱରାଜ୍ୟ ପାଇଁ, ସାନ୍ତାଳ ପ୍ରଗଣାର ସିଦ୍ଧକାହ୍ନୁ, ଶ୍ରେଷ୍ଠ ନାଗପୁରର ବିରସାମୁଣ୍ଡା, କୋରାପୁଟର ଶହୀଦ ଲକ୍ଷ୍ମଣ ନାୟକଙ୍କ ତ୍ୟାଗର ବା କି ଉପମା ଦିଆଯିବ । ଘଣ ଜଙ୍ଗଲରେ ବାସ କରୁଥିବା ବନ୍ଧୁମାନଙ୍କୁ ଆମେ ବନବାସୀ ନକହି ଆଦିବାସୀ କହିବାଦ୍ୱାରା ଏ ପ୍ରକାର ଚିନ୍ତା ବିଭ୍ରାଟ ଦେଖା ଦେଇଛି । ଆଦିବାସୀ ଶବ୍ଦଟିକୁ ପାଶ୍ଚାତ୍ୟ ବିଦ୍ୱାନମାନଙ୍କଠାରୁ 'ଏବ ଅରିଜିନାଲ' ଶବ୍ଦରୁ ଗ୍ରହଣ କରି ଆମ ସରକାର ମଧ୍ୟ ଏପର୍ଯ୍ୟନ୍ତ ନୀତି କରି ଚାଲିଛନ୍ତି ଓ ଏ ପ୍ରକାର ସଙ୍କୀର୍ଣ୍ଣ ସଂଜ୍ଞାକୁ ଜନତା ଉପରେ ଲଦି ଦିଆଯାଉଛି । ଆଜି ସମୟ ଆସିଛି ଆମେ ସତ୍ୟକୁ ଗ୍ରହଣ କରିବା ଓ ଅସତ୍ୟକୁ ତ୍ୟାଗ କରିବା ।

## ପାଦଟୀକା :

1. ଋକ୍ 4. 16. 13
2. ,, 1. 101. 1
3. ,, 1. 130. 8
4. ,, 2. 20. 7
5. ,, 5. 29. 10
6. ,,
7. ,, 7. 21. 5, 10. 99. 3
8. ,, 1. 51. 5
9. ,, 1. 53. 8
10. ,, 1. 20. 10
11. ,, 1. 51. 11
12. ,, 1. 54, 6
13. ଋକ୍ 7. 17. 14 ମନ୍ତ୍ରଟିର କୃଷ୍ଣ ଅର୍ଥ ସାୟଣାଚାର୍ଯ୍ୟ "କୃଷ୍ଣବର୍ଣ୍ଣୋ ମେଘଃ" ବୋଲି କହନ୍ତି ।
14. ସ୍କନ୍ଦସ୍ୱାମୀଙ୍କରେ ସ୍ପଷ୍ଟ କୁହାଯାଇଛି । କୃଷ୍ଣଗର୍ଭାଃ କୃଷ୍ଣବର୍ଣ୍ଣସ୍ୟ ମେଘସ୍ୟ ଗର୍ଭଭୂତତ୍ୱାତ୍"
15. ଋକ୍ 5. 29. 10
16. ,, 1. 32. 6. 7. 9
17. ,, 1. 32. 11
18. ,, 1: 32. 2
19. ,, 1. 59. 6
20. ନିରୁକ୍ତ 7. 23
21. ଋକ୍ 6. 18, 8
22. ,, 7. 99. 5.
23. ,, 1. 33. 12
24. ନିଘଣ୍ଟୁ 1. 1
25. ଋକ୍ 6. 20. 7
26. ,, 6. 20. 13
27. ,, 7. 21. 5; 10. 99. 3
28. ନିରୁକ୍ତ 4. 19

29. ଋକ୍ 1. 103. 3; 1. 130. 8; 10. 49. 3.
30. ବାଲକାଣ୍ଡ 1. 16
31. ଧର୍ମପଦ 270
32. ତତ୍ତ୍ୱାର୍ଥସୂତ୍ର, ତୃତୀୟ ଅଧ୍ୟାୟ
33. ଜନ୍ଦଅବସ୍ଥା, ସିଦ୍ରେଜନ୍ଦ 2.9
34. 'ଆର୍ଯ୍ୟ' ତ୍ରୈମାସିକ 1914 , ଖଣ୍ଡ 1, ପୃ-63
35. ଅଯୋଧ୍ୟାକାଣ୍ଡ 13. 5
36. ଗୀତା 2. 3
37. ଋକ୍ 10. 22. 8.
38. ନିରୁକ୍ତ 7. 23
39. ଋକ୍ 8. 70. 11; 7. 6. 3; 10. 22. 8.
40. ,, 9. 63. 5
41. 'ଅନ୍ଧକାରର ପୁତ୍ର' ବେଦ ରହସ୍ୟ (ଅନୁ : ଆଚାର୍ଯ୍ୟ ଅଭୟ ଦେବ) 1 : 25, ପୃ 308-310
42. ସିଲ୍ ନଂ 387 ପ୍ଲେଟ ନଂ CX11
43. ଋକ୍ 91 : 69 : 2



# ବେଦରେ ପୁନରୁକ୍ତି : ଏକ ତ୍ରୁଟି, ଏକ ଅତ୍ୟୁକ୍ତି, ଏକ ଅତିରିକ୍ତି

ବେଦରେ ବୈଦିକ ମନ୍ତ୍ରର ପୁନରାବୃତ୍ତି ଦେଖି ଆଶ୍ଚର୍ଯ୍ୟ ହେବାକୁ ହୁଏ । ମନ୍ତ୍ରାଂଶଠାରୁ ଆରମ୍ଭ କରି ସମ୍ପୂର୍ଣ୍ଣ ସୂକ୍ତ ପର୍ଯ୍ୟନ୍ତ ପୁନରାବୃତ୍ତି ବେଦଗୁଡ଼ିକରେ ଦେଖିବାକୁ ମିଳେ । ପ୍ରଶ୍ନ ହେଉଛି ଭାଷା ଓ ଭାବର ଅନୁକୃତି ଓ ପୁନରାବୃତ୍ତି ଏକ ଐଶ୍ୱରୀୟ ଗ୍ରନ୍ଥରେ ହେବା କ'ଣ ଉଚିତ ? ପୁନରାବୃତ୍ତି ତ ଏକ ତ୍ରୁଟି, ଏକ ଅତ୍ୟୁକ୍ତି, ଏକ ଅତିରିକ୍ତ । ଏ ସମ୍ପର୍କରେ ବୈଦିକ ଋଷିଗଣ କ'ଣ ସଚେତନ ଥିଲେ ? ଯଦି ଥିଲେ ତେବେ ସମ୍ପୂର୍ଣ୍ଣ ସୂକ୍ତ, କ୍ରମାନ୍ୱୟରେ ଦୁଇ ବା ତିନୋଟି ମନ୍ତ୍ରର ପୁନରାବୃତ୍ତି ଗୋଟିଏ ବେଦରୁ ଅନ୍ୟ ବେଦକୁ ସଂପ୍ରସାରିତ ହୋଇ ଆସିଲା କିପରି ? ସମ୍ପୂର୍ଣ୍ଣ କିମ୍ବା ଆଂଶିକ ମନ୍ତ୍ରକୁ ବାରମ୍ବାର ଉଲ୍ଲେଖ କରିବା ଋଷିମାନଙ୍କ ସ୍ମୃତିଭ୍ରଷ୍ଟତା ବା ଅଜ୍ଞାନତାର କାରଣ ନୁହେଁ କି ? ବେଦଜ୍ଞ ବିଦ୍ୱାନମାନଙ୍କ ପାଇଁ ଏହି ପ୍ରସଙ୍ଗଟି ସବୁଠାରୁ ବେଶୀ ବିବଦମାନ ହୋଇ ରହିଛି ।

ବେଦ ପରବର୍ତ୍ତୀ ଭାଷ୍ୟକାର ଓ ବିଦ୍ୱାନମାନେ ମଧ୍ୟ ଏ ସମ୍ପର୍କରେ ସଚେତନ ଥିଲେ । ନ୍ୟାୟ ଦର୍ଶନ [୨ : ୧ : ୫୭]ରେ ଦର୍ଶନକାର ବେଦରେ ଥିବା ଅନୃତ (ଅସତ୍ୟ), ବ୍ୟାଘାତ (ପରସ୍ପର ବିରୋଧାଭାସ) ଓ ପୁନରୁକ୍ତ ଦୋଷ କାରଣରୁ ଶବ୍ଦପ୍ରମାଣ ଶ୍ରୁତିର ପ୍ରମାଣ ନୁହେଁ ବୋଲି ଆମକୁ ସନ୍ଦେହ କରାଇଅଛନ୍ତି । ମୀମାଂସା ଦର୍ଶନରେ ମଧ୍ୟ ଏ ପ୍ରକାର ସମସ୍ୟା ସମ୍ପର୍କରେ ଆମକୁ ସଚେତନ କରି ଦିଆଯାଇଛି । ଏ ଦୃଷ୍ଟିରୁ ସତ୍ୟାସତ୍ୟ ନିର୍ଣ୍ଣୟ ପାଇଁ ବେଦରେ ବାରମ୍ବାର ବ୍ୟବହାର ହୋଇଥିବା ମନ୍ତ୍ରଗୁଡ଼ିକର ପରୀକ୍ଷା କରାଯାଇପାରେ :

ଋଗ୍‌ବେଦର ଯମ-ଯମୀ ସୂକ୍ତ [୧୦.୧୦] ପୂର୍ଣ୍ଣତଃ ଅଥର୍ବବେଦରେ [୧୮:୧] ପୁନରାବୃତ୍ତ ହୋଇଛି । ଋଗ୍‌ବେଦର [୧୦:୧୫୪] ପାଞ୍ଚଟି ଆବୃତ୍ତ ସୂକ୍ତ ସାଧାରଣ ପରିବର୍ତ୍ତିତ ହୋଇ ଅଥର୍ବବେଦକୁ [୧୮:୨] ଚାଲିଆସିଛି । ଋଗ୍‌ବେଦର ସୋମ-ସୂର୍ଯ୍ୟାସୂକ୍ତ ବା ବିବାହ ସୂକ୍ତ [୧୦:୮୨] କିଞ୍ଚିତ୍ କ୍ରମଭେଦରେ ଅଥର୍ବବେଦରେ [୧୪:୧] ଦେଖିବାକୁ ମିଳେ । ଋଗ୍‌ବେଦର ପୁରୁଷସୂକ୍ତ [୧୦:୯୦] ସାଧାରଣ ପରିବର୍ତ୍ତିତ ହୋଇ ଯଜୁର୍ବେଦ [୧୦:୩୧] ଓ ଅଥର୍ବବେଦରେ [୧୯:୬] ମଧ୍ୟ ପୁନରାବୃତ୍ତି ହୋଇଛି । ଋଗ୍‌ବେଦରେ ଉଲ୍ଲେଖିତ ଗାୟତ୍ରୀମନ୍ତ୍ର

[୩:୬୨:୧୦] ଯଜୁର୍ବେଦର କେତୋଟି ସ୍ଥାନରେ [୩:୩୫; ୨୨:୯; ୩୦:୨; ୩୬:୩] ଏବଂ ସାମବେଦର ଗୋଟିଏ ସ୍ଥାନରେ [୬:୬:୩] ପୁନରାବୃତ୍ତି ହୋଇଛି । ଏପରି ମଧ୍ୟ କୁହାଯାଏ ଯେ ସାମବେଦର ୧୮୭୫ ମନ୍ତ୍ରରୁ ପ୍ରାୟ ୧୮୦୦ ମନ୍ତ୍ର ସିଧାସଳଖ ଋଗବେଦରୁ ନିଆଯାଇଛି । ଭାଷାର ଭିନ୍ନତା ପରିଲକ୍ଷିତ ହେଲେ ମଧ୍ୟ ଭାବର ପୁନରାବୃତ୍ତିଠାରୁ ବେଦ ମୁକ୍ତ ରହିଛି ତାହା କୁହାଯାଇ ପାରିବ ନାହିଁ । ଇନ୍ଦ୍ର ବୃତ୍ରାସୁର ସଂହାରକ, ଐଶ୍ୱର୍ଯ୍ୟଶାଳୀ, ବଜ୍ରଧାରୀ ଓ ସୋମରସ ପାନ କରୁଥିବା; ଅଗ୍ନି ଦେବତାଙ୍କ ଦୂତ ଜ୍ୟୋତିଷ୍ମାନ୍, ହବିଭକ୍ଷୀ ଏବଂ ଜୀବମାନଙ୍କ ହିତକାରୀ; ଉଷା ଦିବଲୋକଙ୍କ ପୁତ୍ରୀ, ଜ୍ୟୋତିଷ୍ମତୀ ତଥା ଅନ୍ଧକାରର ଉଚ୍ଛିନ୍ନକାରୀ ଇତ୍ୟାଦି ଭାବ ବେଦରେ ବ୍ୟକ୍ତ କରିଥିଲେ ଚଳିଯାଉଥାନ୍ତା ମାତ୍ର ବାରମ୍ବାର ସେହି ଭାବମୟୀ ବାକ୍ୟ ବ୍ୟବହାର ପୁନଶ୍ଚ ବିରକ୍ତିକର ମନେ ହୁଏ । ଏସବୁ କପରି ଆମେ ବୁଝିବାରେ ସମର୍ଥ ହେବୁ ?

ବେଦରେ କେତେ ପ୍ରକାର ପୁନରାବୃତ୍ତି ହୋଇଛି ତାହା ଦେଖାଯାଉ । ପୁନରାବୃତ୍ତି ଅର୍ଥ, ପୁଣି ଥରେ କହିବା । ବେଦରେ ତିନି ପ୍ରକାର ପୁନରାବୃତ୍ତି ଦେଖାଯାଏ । ଶବ୍ଦ ପୁନରାବୃତ୍ତି, ଅର୍ଥ ପୁନରାବୃତ୍ତି ଏବଂ ଶବ୍ଦାର୍ଥ ପୁନରାବୃତ୍ତି । ଆବଶ୍ୟକ ସ୍ଥଳେ ପୁନରାବୃତ୍ତି ଗ୍ରାହ୍ୟଯୋଗ୍ୟ ମାତ୍ର ଅନାବଶ୍ୟକ ସ୍ଥଳେ ପୁନରାବୃତ୍ତି ବିରକ୍ତିକର ଅଟେ । ବେଦରେ ଥିବା ପୁନରାବୃତ୍ତିର ଏକ ଶ୍ରେଣୀ ବିଭାଗ ସହ ଉଦାହରଣ ଏଠି ପ୍ରସ୍ତୁତ କରାଗଲା :

୧ । ଶବ୍ଦ ପୁନରାବୃତ୍ତି :

ଆପଶ୍ୟନ୍ତି ପ୍ରତିପଶ୍ୟନ୍ତି ପରା ପଶ୍ୟନ୍ତି । (ଅଥର୍ବ ୪:୨୦:୧)

କୋଽସି କତମୋଽସି କସ୍ୟାସି କୋ ନାମାସି । (ଯଜୁ ୭:୨୯)

ମଧୁ ମଧୁ ମଧୁ । (ଯଜୁ ୩୭:୨୩)

୨ । ଦ୍ୱିପଦ ପୁନରାବୃତ୍ତି :

ଯୋଗେ ଯୋଗେ ତବସ୍ତରଂ ବାଜେ ବାଜେ ହବାମହେ । (ସାମ ୧୬୩)

୩ । ପାଦ ପୁନରାବୃତ୍ତି :

ଇନ୍ଦ୍ରାୟେନ୍ଦ୍ରୋ ପରିସ୍ରବ । (ଋଗ୍ ୯:୧୧୨) ୧୧୩, ୧୧୪ ମନ୍ତ୍ର ଶେଷରେ ବାରମ୍ବାର ପ୍ରୟୋଗ ହୋଇଛି ।

କସ୍ମୈ ଦେବାୟ ହବିଷା ବିଧେମ ।

(ଯଜୁ ୨୫.୧୦-୧୩) ଏହା ଅଥର୍ବ ୧୨:୧୦୨ ଏବଂ ୩୨:୬ ଏବଂ ଯଜୁ ୩୪,୧-୬ ମନ୍ତ୍ରରେ ମଧ୍ୟ ବାରମ୍ବାର ପ୍ରୟୋଗ ହୋଇଛି ।

୪ । ଦ୍ୱିପାଦୋକ୍ତ ପୁନରାବୃତ୍ତି :

ବ୍ରତଂ କୃଣୁତ ବ୍ରତଂ କୃଣୁତ । (ଯଜୁ ୪:୧୧)

୫ । ମନ୍ତ୍ରର ତୃତୀୟ ଚରଣ ଅନ୍ୟ ମନ୍ତ୍ରଗୁଡ଼ିକରେ ପୁନରାବୃତ୍ତି :
ଯୋଜାନ୍ୱିନ୍ଦ୍ର ତେ ହରୀ । (ଋଗ ୧:୮୨:୧ରୁ୫ ମନ୍ତ୍ର ପର୍ଯ୍ୟନ୍ତ)

୬ । ଅନୁଲୋମ ବିଲୋମ ପୁନରାବୃତ୍ତି :
ସୂର୍ଯ୍ୟୋ ଜ୍ୟୋତି ଜ୍ୟୋତିଃ ସୂର୍ଯ୍ୟଃ ସ୍ୱାହା । (ଯଜୁ ୩:୯)
ଅଗ୍ନି ଜ୍ୟୋତି ଜ୍ୟୋତିରଗ୍ନିଃ ସ୍ୱାହା । (ଯଜୁ ୩:୯)

ଏହି ପ୍ରକାର ବେଦମନ୍ତ୍ରର ପୁନରାବୃତ୍ତିର ଆଉ ଅନେକ ଉଦାହରଣ ଦିଆଯାଇ ପାରିବ ମାତ୍ର ଏହା ଏକ ତ୍ରୁଟି, ଏକ ବିଚ୍ୟୁତ ବା ଏକ ବିରକ୍ତ ତାହା କିପରି ପ୍ରମାଣ କରାଯାଇ ପାରିବ ? ଯେଉଁ ଯେଉଁ ସ୍ଥାନରେ ପୁନରାବୃତ୍ତି ହୋଇଛି ସେଠି ଅର୍ଥର ବୈଶିଷ୍ଟ୍ୟ, ଭିନ୍ନାର୍ଥ, ଆଳଙ୍କାରିକ, ପ୍ରକରଣ ପରକ ସ୍ତବରେ ଯେ ହୋଇ ନ ଥିବ ତା' କିପରି କୁହାଯାଇ ପାରିବ ? ଜ୍ଞାନ, କର୍ମ, ଉପାସନା ଏବଂ ବିଜ୍ଞାନ ଏ ଚାରୋଟି ବିଷୟକୁ ନେଇ ଋଗ୍ବେଦର ବର୍ଗୀକରଣ ହୋଇଥିବାରୁ ପ୍ରକରଣ ଭେଦରେ ଏ ଚାରି ପ୍ରକାର ଅର୍ଥରେ ବେଦ ମନ୍ତ୍ରଗୁଡ଼ିକୁ ଅର୍ଥ କରାଯିବା ଉଚିତ୍ । ଶବ୍ଦ ଯାହା ଆଉନା କାହିଁକି ଅର୍ଥ ଓ ବ୍ୟାଖ୍ୟା କାରଣରୁ ଏହାକୁ ଅନ୍ୟୂନ ତିନ ପ୍ରକାରେ ବୁଝାଯାଇ ପାରିବ ବୋଲି ନିରୁକ୍ତକାରଙ୍କ ମତ :

୧ । ଆଧ୍ୟାତ୍ମିକ ଅର୍ଥାତ୍ ଆତ୍ମା ଓ ପରମାତ୍ମା ଅର୍ଥରେ

୨ । ଆଧିଦୈବିକ ଅର୍ଥାତ୍ ପ୍ରାକୃତିକ ଦିବ୍ୟ ପଦାର୍ଥ ଅର୍ଥରେ ।

୩ । ଆଧିଭୌତିକ ଅର୍ଥାତ୍ ପ୍ରାଣୀ, ମନୁଷ୍ୟ ସମାଜ ଅର୍ଥରେ ।

ଏଠି ମୁଁ ଗୋଟିଏ ମନ୍ତ୍ରର ଉଲ୍ଲେଖ କରୁଛି ଯେଉଁ ମନ୍ତ୍ରଟି ଋଗ୍ବେଦରେ ସ୍ଥାନ ପାଇଛି :

ଆପୋ ହିଷ୍ଠା ମୟୋଭୁବସ୍ତା ନ ଊର୍ଜେ ଦଧାତନ । ମହେ ରଣାୟ ଚକ୍ଷସେ "(ଋ. ୧୦:୯:୧; ଯ.୧୧:୫୦; ୩୬:୪; ସା. ୯:୨୨; ଅ. ୧:୫:୧)

ଋଗ୍ବେଦରେ ଏ ମନ୍ତ୍ରଟିର ଉଲ୍ଲେଖ ହୋଇଛି ଦଶମ ମଣ୍ଡଳରେ । ଯେଉଁ ମଣ୍ଡଳର ପ୍ରଥମ ସାତସୂକ୍ତ ପୁନଶ୍ଚ ଅଷ୍ଟମ ସୂକ୍ତର ପ୍ରଥମ ଛ' ମନ୍ତ୍ର ଅଗ୍ନିଙ୍କ ବିଷୟରେ ରହିଛି ତଥା ସାତରୁ ନଅ ପର୍ଯ୍ୟନ୍ତ ଏହା ଇନ୍ଦ୍ର, ପୁନଶ୍ଚ ନବମ ସୂକ୍ତ "ଆପଃ" ବିଷୟରେ । ଏଣୁ କ୍ରମ ଦୃଷ୍ଟିରୁ ଏହା ଅଗ୍ନି-ଇନ୍ଦ୍ର-ଆପଃଙ୍କ ବିଷୟରେ କୁହାଯାଇଛି । ପୂର୍ବାପର ସମ୍ବନ୍ଧ ଦୃଷ୍ଟିରୁ ଏ ମନ୍ତ୍ରଟିକୁ ଭୌତିକ ଦୃଷ୍ଟିରୁ ବାଖ୍ୟା କରିବାକୁ ଆମେ ବାଧ୍ୟ । ଅଗ୍ନିରେ ଯଜ୍ଞ କରିବାଦ୍ୱାରା ଜଳବାଷ୍ପ ଉପରକୁ ଯାଇ ବାଦଲ ସୃଷ୍ଟି କରେ, ଯାହାକୁ ବେଦରେ ବୃତ୍ର ସଂଜ୍ଞା ଦିଆଯାଇଛି । ପୁଣି ଏ

ବୃତ୍ର ତଥା ଇନ୍ଦ୍ର (ବିଦ୍ୟୁତ ବା ସୂର୍ଯ୍ୟ)ଙ୍କ ମଧ୍ୟରେ ଯୁଦ୍ଧ ହୁଏ । ଇନ୍ଦ୍ର ବୃତ୍ରକୁ ବଧକରି ଜଳକୁ ଖସାଇ ଦିଅନ୍ତି । ତେବେ "ଆପଃ" ଅର୍ଥାତ୍ ବର୍ଷାଜଳ ଆମକୁ ପ୍ରାପ୍ତ ହୁଏ । ଏହି ବର୍ଷାଜଳକୁ ଉପଯୁକ୍ତ ଭାବରେ ଉପଯୋଗ କରି ଆମକୁ ସ୍ୱାସ୍ଥ୍ୟ, ବଳ ଏବଂ ତେଜ ପ୍ରାପ୍ତ ହୁଏ । ଯଜୁର୍ବେଦରେ ଉକ୍ତ ମନ୍ତ୍ର ଦୁଇଥର ଆସେ । ପ୍ରଥମ ଏଗାର ଅଧ୍ୟାୟର ପଚିଶ ମନ୍ତ୍ର ଦ୍ରଷ୍ଟବ୍ୟ । ଠିକ୍ ପୂର୍ବରୁ ଅଣଚାଶ ମନ୍ତ୍ରରେ ଅଗ୍ନିଙ୍କୁ ସମ୍ବୋଧନ କରି କୁହାଯାଇଛି ଯେ ନିଜର ବରିଷ୍ଠ ବଳ ସହ ଦେଦୀପ୍ୟମାନ ହୋଇ ତୁ ବ୍ୟାଧିଗଣଙ୍କୁ ଦୂରକର । ତାପରେ ଜଳକୁ ହୂଜଣ କରି କୁହାଯାଇଛି କି ତୁମେ ଆମକୁ ବଳ, ପ୍ରାଣ ଏବଂ ମହାନ୍ ରମଣୀୟ ଦୃଷ୍ଟି ଶକ୍ତି ପ୍ରଦାନ କର । ଛତିଶ ଅଧ୍ୟାୟରେ ପୁଣି ସେହି ମନ୍ତ୍ରଟି ଆସେ । ଯେଉଁ ଅଧ୍ୟାୟରେ ଜଳଦ୍ୱାରା ସୁଖଶାନ୍ତି ପାଇଁ ପ୍ରାର୍ଥନା କରାଯାଇଛି, ସାମବେଦ ଭକ୍ତିପରକ ହୋଇଥିବା କାରଣରୁ ମନ୍ତ୍ରଟିରେ ଆପଃ ଅର୍ଥ ଆନନ୍ଦର ସମସ୍ତୀ ଜଗନ୍ମାତା ହେବ । ଅଥର୍ବ ବେଦରେ ମନ୍ତ୍ରଟି ଚିକିତ୍ସା ପ୍ରକରଣରେ ଆସେ । ମନ୍ତ୍ରଟି ପୂର୍ବରୁ ଶର, ମୁଞ୍ଜ ଆଦିଦ୍ୱାରା ଔଷଧ ଚିକିତ୍ସାର ବର୍ଣ୍ଣନା ଆସେ । ସ୍ୱାସ୍ଥ୍ୟ ପାଇଁ ଜଳ ଚିକିତ୍ସାକୁ ମନ୍ତ୍ରଟି ସଙ୍କେତ କରେ । ପ୍ରସଙ୍ଗ ଭେଦରେ ଅନେକ ସ୍ଥାନରେ ଆସୁଥିବା ସତ୍ତ୍ୱେ ଏହା ପୁନରାବୃତ୍ତି ନୁହଁ ବୋଲି କୁହାଯାଇ ପାରିବ ନାହିଁ ।

ଗାୟତ୍ରୀମନ୍ତ୍ରଟି ନିଅନ୍ତୁ । ଏ ମନ୍ତ୍ର ଋଗ୍ ବେଦ (୩୬:୩: ୦), ଯଜୁର୍ବେଦ (୩୬:୩) ଏବଂ ସାମବେଦରେ ମଧ୍ୟ ରହିଛି । ତିନିବେଦରେ ଏହା ଗୋଟିଏ ଅର୍ଥରେ ବ୍ୟାଖ୍ୟା କରାଯାଇ ନାହିଁ । ଋଗ୍ବେଦରେ ଏହା ଆଧିଦୈବିକ ବା ଜ୍ଞାନ ଦୃଷ୍ଟିରୁ କୁହାଯାଇଛି । ଆମେ ସବିତା ଅର୍ଥାତ୍ ପରମାତ୍ମା ଓ ସୂର୍ଯ୍ୟଙ୍କ ଭର୍ଗ (ତେଜ)କୁ ଜାଣି ଧାରଣ କରୁଁ ଯେ ଆମ ବୁଦ୍ଧିକୁ ପ୍ରେରଣା ଦିଅନ୍ତୁ । କର୍ମକାଣ୍ଡ ବା ଆଧିଭୌତିକ ଦୃଷ୍ଟିରୁ ଯଜୁର୍ବେଦରେ ଏହାର ଅର୍ଥ ହେବ ଆମେ ସ୍ୱ କର୍ମରେ ପରମାତ୍ମା, ସୂର୍ଯ୍ୟ, ପ୍ରେରକ (ଅଧ୍ୟାପକ, ଉପଦେଶକ, ସେନାପତି)ଙ୍କ ତେଜକୁ ଧାରଣ କରୁଁ, ଯେ ଆମର ବୁଦ୍ଧି ଓ କର୍ମକୁ ପ୍ରେରିତ କରନ୍ତୁ । ସାମବେଦ ଉପାସନା କାଣ୍ଡ ହୋଇଥିବାରୁ ଆଧ୍ୟାତ୍ମିକ ଅର୍ଥରେ ମନ୍ତ୍ରଟି କୁହେ, ଆମେ ପରମାତ୍ମାଙ୍କ ଶୁଦ୍ଧ ବିଜ୍ଞାନ-ସ୍ୱରୂପକୁ ଉପାସନା ଓ ଯୋଗାଭ୍ୟାସରେ ଧାରଣ କରୁଁ, ଓ ଧ୍ୟାନକରୁ, ଯିଏ ଆମ ବୁଦ୍ଧିକୁ ପ୍ରେରିତ କରନ୍ତୁ ।

"ଚତ୍ୱାରିଶୃଙ୍ଗା ତ୍ରୟୋଽସ୍ୟ ପାଦାଃ" ମନ୍ତ୍ରଟି ଋଗ୍ବେଦରେ [୪:୫୮:୩] ଏବଂ ଯଜୁର୍ବେଦରେ [୧୭:୯୧] ମଧ୍ୟ ଆସେ । ମନ୍ତ୍ରଟିକୁ ନିରୁକ୍ତକାର ଯାସ୍କ ଯଜ୍ଞ ପ୍ରକରଣରେ ଭାଷ୍ୟ କଲେ. ପତଞ୍ଜଳି ଏହାକୁ ବ୍ୟାକରଣ ପ୍ରକରଣରେ ଭାଷ୍ୟ କରନ୍ତି । ସେହି ପ୍ରକାର "ଦ୍ୱା ସୁପର୍ଣ୍ଣା" ମନ୍ତ୍ରଟିକୁ ନିଘଣ୍ଟୁରେ କିରଣ, ଜଳ ଓ ସୂର୍ଯ୍ୟ

ଅର୍ଥରେ ଭାଷ୍ୟ କଲେ ସ୍ୱାମୀ ଦୟାନନ୍ଦ ଏହାକୁ ଆତ୍ମା, ପରମାତ୍ମା ଏବଂ ପ୍ରକୃତି ଅର୍ଥରେ ଭାଷ୍ୟ କରିଛନ୍ତି । "ଶନ୍ନୋଦେବୀ" ମନ୍ତ୍ରଟିର ଗୋଟିଏ ଅର୍ଥ ଜଳ ପରକ ହେଲେ ଅନ୍ୟ ଅର୍ଥଟି ବ୍ରହ୍ମପରକ ହୁଏ ।

ପୁରୁଷ ସୂକ୍ତ ଋଗ୍‌ବେଦର ବହୁସ୍ତବସ୍ତୁ । ଋଗ୍‌ବେଦରେ (୧୦:୯୦:୧) "ସହସ୍ର ଶୀର୍ଷଃ ପୁରୁଷଃ" ହେଲେ ଅଥର୍ବବେଦରେ [୧୯:୬:୧] "ସହସ୍ର ବାହୁଃ ପୁରୁଷଃ" ଅଛି । ବେଦରେ "ତଚ୍ଚକ୍ଷୁ ଦେବହିତମ" ମନ୍ତ୍ର ଅନେକବାର ଆସେ । ଏହା କେଉଁଠି ବ୍ରହ୍ମଚାରୀ ପାଇଁ କେଉଁଠି ଗୃହସ୍ଥୀ ପାଇଁ ତ ଆଉ କେଉଁଠି ରାଜାପାଇଁ କୁହାଯାଇଛି । ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ ଆଶ୍ରମୀ ଓ ବର୍ଣ୍ଣାଶ୍ରମୀଙ୍କ ପାଇଁ ଗୋଟିଏ ମନ୍ତ୍ର ଅନେକବାର ପ୍ରୟୋଗ କରାଯାଇଛି । ଜ୍ଞାନ କାଣ୍ଡରେ ଯେଉଁ ମନ୍ତ୍ର ସ୍ତୁତିପରକ ଅଟେ ଉପାସନା କାଣ୍ଡରେ ତାହା ସଙ୍ଗୀତର ସ୍ୱର ନେଇ ଆମକୁ ମନ୍ତ୍ରମୁଗ୍ଧ କରିଦିଏ ।

ଋଗ୍‌ବେଦରେ ଗୋଟିଏ ମନ୍ତ୍ରରେ [୬:୧୯:୯] 'ବୃଷଭ' ଶବ୍ଦ ସାତଥର ବ୍ୟବହାର ହୋଇଥିବା ଦେଖିବା ଆଉ ଏକ ମନ୍ତ୍ରରେ (୫:୩୬:୫) ଏ ଶବ୍ଦଟି ଆଠଥର ପ୍ରୟୋଗ ହୋଇଥିବା ଦେଖି ଗୋଟିଏ ଶବ୍ଦର ପୁନରାବୃତ୍ତି ହୋଇଛି ବୋଲି ଭାବିବା ଅନୁଚିତ । ଯେହେତୁ ବାରମ୍ବାର "ବୃଷଭ" ଶବ୍ଦଟି ପ୍ରୟୋଗ ହେବାଦ୍ୱାରା ଏହାର ଅନେକ ମହତ୍ୱପୂର୍ଣ୍ଣ ଗୁଣ, କର୍ମ ଓ ସ୍ୱଭାବ ଜଣାପଡ଼େ । ଗୋଟିଏ ଶବ୍ଦର ଭିନ୍ନ ଭିନ୍ନ ଅର୍ଥ ମଧ୍ୟ ରହିଛି । ଯଜୁର୍ବେଦରେ (୮:୧୬) ସୃଷ୍ଟିର ବିବିଧ ପଦାର୍ଥ ସହିତ ଇନ୍ଦ୍ର ପଦ ସଂଯୁକ୍ତ ହୋଇଥିବା ପୁନରାବୃତ୍ତି ନୁହେଁ । ଯେପରି-ଅଗ୍ନିଷ୍ଟମ ଇନ୍ଦ୍ରଷ୍ଟମ, ସୋମଷ୍ଟମ ଇନ୍ଦ୍ରଷ୍ଟମେ, ସବିତା ଚମ ଇନ୍ଦ୍ରଷ୍ଟମେ ଇତ୍ୟାଦି । ଏହି ପ୍ରକାର ୫୮ଟି ପଦାର୍ଥ ସହ ଇନ୍ଦ୍ର ପଦ ସଂଯୁକ୍ତ କରାଯାଇଛି ଏହା ଇନ୍ଦ୍ରତତ୍ତ୍ୱର ବିଭିନ୍ନ ରୂପର ବର୍ଣ୍ଣନା ହୋଇଛି ବୋଲି ବୁଝିବାକୁ ହେବ ।

ବୈଦିକ ସନ୍ଧ୍ୟା ପ୍ରାର୍ଥନାର ଆଠଟି ମନ୍ତ୍ର ନିଅନ୍ତୁ । ହିରଣ୍ୟଗର୍ଭଠାରୁ ଆରମ୍ଭ କରି ଯେନ୍ ଦ୍ୟୌରୁଗ୍ରା ପର୍ଯ୍ୟନ୍ତ ଏ ଛଅଟି ମନ୍ତ୍ରରେ ଗୋଟିଏ ବାକ୍ୟ "କସ୍ମୈ ଦେବାୟ ହବିଷା ବିଧେମ" ବାରମ୍ବାର ଆବୃତ୍ତି କରାଯାଇଛି । ଉକ୍ତ ପଦଟିର ଚାରି ପ୍ରକାର ଅର୍ଥ ରହିଛି । ସନ୍ଧ୍ୟାରେ ଓମ୍ ବାକ୍ ବାକ୍, ଓମ୍ ପ୍ରାଣଃ ପ୍ରାଣଃ ଏକ ରୂପ ପୁନରାବୃତ୍ତି ନୁହେଁ । "ତନ୍ମେ ମନଃ ଶିବ ସଙ୍କଳ୍ପମସ୍ତୁ", "ସ୍ୱସ୍ତିଦା ସ୍ୱସ୍ତିଂ ମେ ଦେହି" ଆଦି ପୁନରାବୃତ୍ତି, ବକ୍ତା ଓ ଶ୍ରୋତାଙ୍କୁ ଆନନ୍ଦ ବିଭୋର କରିଦିଏ ।

ଏହା ପୂର୍ବରୁ ବେଦରେ ଭାଷା ପୁନରାବୃତ୍ତିର କେତେକ ଉଦାହରଣ ଦିଆଗଲା । ଏଥର ଆସନ୍ତୁ ଭାବ ପୁନରାବୃତ୍ତିର ଉଦାହରଣକୁ । ଅଥର୍ବବେଦରେ (୧୯:୬୨:୧) କୁହାଯାଇଛି :

ପ୍ରିୟଂ ମା କୃଣୁ ଦେବେଷୁ
ପ୍ରିୟଂ ରାଜସୁ ମା କୃଣୁ
ପ୍ରିୟଂ ସର୍ବସ୍ୟ ପଶ୍ୟତ
ଉତ ଶୂଦ୍ର ଉତାର୍ଯେ ॥

ଅର୍ଥାତ୍ ହେ ପରମେଶ୍ୱର ! ମତେ ବ୍ରାହ୍ମଣ ମଧ୍ୟରେ ପ୍ରିୟକର, କ୍ଷତ୍ରିୟଙ୍କ ମଧ୍ୟରେ ପ୍ରିୟକର ଏବଂ ବୈଶ୍ୟ ତଥା ଶୂଦ୍ର, ଆଦି ସମସ୍ତଙ୍କ ମଧ୍ୟରେ ପ୍ରିୟକର । ହେ ପରମେଶ୍ୱର ! ଆମର ବ୍ରାହ୍ମଣ ସହ ରୁଚ ରହୁ, କ୍ଷତ୍ରିୟଙ୍କ ସହ ରୁଚ ରହୁ ଏବଂ ବୈଶ୍ୟ ତଥା ଶୂଦ୍ରା ଦ ସମସ୍ତଙ୍କ ସହ ରୁଚ ରହୁ । ଦୁଇଟି ମନ୍ତ୍ର ମଧ୍ୟରେ ଗୋଟିଏ ହିଁ ଭାବ ପ୍ରକଟିତ । ପ୍ରଥମେ ସମସ୍ତଙ୍କ ମଧ୍ୟରେ ପ୍ରିୟ ହେବାପାଇଁ ପ୍ରାର୍ଥନା କରାଯାଇଛି ତ ଅନ୍ୟପଦରେ ସମସ୍ତଙ୍କ ପ୍ରତି ରୁଚ ରଖିବା କଥାଟି କୁହାଯାଇଛି । ଦୁଇଟି କଥା ଗୋଟିଏ କଥା କହୁଥିବା ସତ୍ତ୍ୱେ ଦୁଇଟି କଥା ବିନା ଗୋଟିଏ କଥା ଅସମ୍ପୂର୍ଣ୍ଣ ଏବଂ ଅସମ୍ଭବ ଅଟେ । ଏଣୁ ଏଠି ଭାଗବତ ପୁନରାବୃତ୍ତି ନାହିଁ । ମହାନ ବ୍ୟାକରଣକାର ପାଣିନିଙ୍କ ଅଷ୍ଟାଧ୍ୟାୟୀରେ "ବହୁଳଂ ଛନ୍ଦସି" ଶବ୍ଦାନୁପୂର୍ବ ଅନ୍ୟୂନ ଚଉଦ ଥର ପଢ଼ାଯାଇଛି । ପ୍ରତ୍ୟେକ ପ୍ରକରଣରେ ପ୍ରକରଣଭେଦରେ ଏହାର ଭିନ୍ନ ଭିନ୍ନ ଅର୍ଥ ହୁଏ । କୌଣସି ବିଦ୍ୱାନ ଏ ପୁନରାବୃତ୍ତିକୁ ଅନର୍ଥକ ବୋଲି କହି ନାହାନ୍ତି ।

ପୁନରାବୃତ୍ତି ଏକ ସାହିତ୍ୟିକ ପ୍ରଶ୍ନ । ଲେଖିବା ଓ ଉଚ୍ଚାରଣ ପଦ୍ଧତିରେ, ଧାତୁ ଓ ପ୍ରତ୍ୟୟର ଆଧାରରେ ସଙ୍ଗୀତର ଷଡ଼ଜ ଆଦି ସ୍ୱରର ମାଧ୍ୟମରେ ବ୍ୟାକରଣର ଉଦାତ୍ତ, ଅନୁଦାତ୍ତ ଓ ସ୍ୱରିତ ସ୍ୱର ମଧ୍ୟରେ, ଋଷି, ଦେବତା ଓ ଛନ୍ଦର ମହିରେ ଯେଉଁ ସୂକ୍ଷ୍ମଭେଦ ରହିଯାଏ ତାହାହିଁ ପୁନରାବୃତ୍ତିରେ ଲକ୍ଷ୍ୟ କରିବା ଯୋଗ୍ୟ । ଶୀଘ୍ର ଶୀଘ୍ର ଗମ୍ୟତାମ୍‌ରେ ଦୁଇଥର ଶୀଘ୍ରମ ଶବ୍ଦର ପ୍ରୟୋଗ ପୁନରାବୃତ୍ତି ନୁହେଁ ବରଂ ଅତ୍ୟନ୍ତ ଶୀଘ୍ରତାକୁ ସୂଚିତ କରେ । ମାଳି ମାଳ ତିଆରି କରିବା ସମୟରେ ଗୋଟିଏ ପ୍ରକାର ଫୁଲକୁ ବାର ବାର ଗୁନ୍ଥିବାଦ୍ୱାରା ମାଳାର ସୁନ୍ଦରତା ଦ୍ୱିଗୁଣିତ ହୋଇଯାଇଥାଏ ।

ପୁନରାବୃତ୍ତି କାବ୍ୟର ଜୀବନ ଓ ସୌନ୍ଦର୍ଯ୍ୟ ଅଟେ । ସଙ୍ଗୀତରେ ସ୍ଥାୟୀ ଏବଂ ଅନ୍ତରା ଦୁଇ ବିଭାଗ ଅଛି । ପ୍ରତ୍ୟେକ ଅନ୍ତରା ପୂରା ହେଲାପରେ ସ୍ଥାୟୀ ପଦର ଗାୟନ ବିନା ସଙ୍ଗୀତ ଅପୂର୍ଣ୍ଣ ରହିଯାଏ । ସ୍ଥାୟୀ ପଦର ଗାୟନ ପୁନରାବୃତ୍ତି ବୋଲି

କୁହାଯାଏ ନାହିଁ । "ଜୟଦେବଙ୍କ "ଜୟ ଜୟ ଦେବ ହରେ" ସେ ଦୃଷ୍ଟିରୁ ଏକ ପୁନରାବୃତ୍ତି ନୁହେଁ ଏକ ସଙ୍ଗୀତ ଏକ ଲାଳିତ୍ୟ । "ଜୟ ଜୟ ଦେବ ହରେ" ଯଦି ପୁନରାବୃତ୍ତି ବୋଲି ଧରାଯାଉନାହିଁ ତେବେ ବୈଦିକ "କସ୍ମୈ ଦେବାୟ ହବିଷା ବିଧେମ" କିପରି ପୁନରାବୃତ୍ତି ବୋଲି ଆକ୍ଷେପ କରାଯିବ ? କର୍ମକାଣ୍ଡରେ ଜପ ଅନୁଷ୍ଠାନ ବିନା ପୁନରାବୃତ୍ତିରେ କରାଯାଇ ନ ପାରେ ଗୋଟିଏ ଶବ୍ଦକୁ ବାରମ୍ବାର ଉଚ୍ଚାରଣ କରିବା ଜପରେ ପୁନରାବୃତ୍ତି ନୁହେଁ । ଜପ ସଙ୍ଗରେ ରାମ ଓ କୃଷ୍ଣଙ୍କ ନାମକୁ ବାରମ୍ବାର ଉଚ୍ଚାରଣ କରିବା ମହାମନ୍ତ୍ରର ଅନ୍ତର୍ଗତ ବୋଲି ବୈଷ୍ଣବମାନେ କୁହନ୍ତି । ଏହା ନାମର ପୁନରାବୃତ୍ତି ନୁହେଁ । ଗୀତ କାବ୍ୟରେ "ଭଜ ଗୋବିନ୍ଦଂ ଭଜ ଗୋବିନ୍ଦଂ ଭଜ ଗୋବିନ୍ଦଂ ମୂଢ଼ ମତେ ।" ଗାଇବାଦ୍ୱାରା ଗୀତର ଉତ୍କର୍ଷତା ହିଁ ପ୍ରତିପାଦିତ ହୁଏ ।

ଏପରି କି ସମାନ ପଦର ଭିନ୍ନାର୍ଥରେ ଶ୍ଳେଷାଳଂକାର ହୁଏ । ସମାନ ଅକ୍ଷରର ରଚନାରେ ଅନୁପ୍ରାସ ହୁଏ । ଗୋଟିଏ ପଦର ପୁନରାବୃତ୍ତିକୁ କାବ୍ୟ ଶାସ୍ତ୍ରରେ ଯମକ କୁହାଯାଏ । ଲାବଣ୍ୟବତୀରେ ଭଞ୍ଜ ଏ ପ୍ରକାର ମଧ୍ୟ ଯମକର ପ୍ରୟୋଗ କରିଛନ୍ତି :

ଦେଖରେ ନଳିନ ନଳିନୀ ନଳିନୀରେ ପୂରିତ
ଭ୍ରମନ୍ତ ଭ୍ରମରେ ଭ୍ରମରେ ଭ୍ରମରର ଏ ଶୋଭିତ ।

ଏଠି ପ୍ରଥମ ନଳିନ ସମ୍ବୋଧନ ଅର୍ଥରେ କିବା ପଦ୍ମ ନୟନା ସ୍ତ୍ରୀକୁ କୁହନ୍ତି ତ ଅନ୍ୟ ନଳିନୀ ଅର୍ଥ ପୁଷ୍କରିଣୀ ଓ ପରିଶେଷରେ ନଳିନୀଟି ପଦ୍ମ ଅର୍ଥରେ ବ୍ୟବହୃତ । ଭ୍ରମନ୍ତ ଅର୍ଥ ଭ୍ରମଣ କରନ୍ତି, ଭ୍ରମରେ ଅର୍ଥ ଭ୍ରମର ଗଣ, ଭ୍ରମରେ ଅର୍ଥ ଭ୍ରାନ୍ତିବଶତଃ, ଭ୍ରମରେ ଅର୍ଥ ଜଳ ଭଉଁରୀ ସଦୃଶ ।

ବୈଦେହିଶ ବିଳାସରୁ ଆଉ ଏକ ସବ ଯମକର ଉଦାହରଣ ନିଅନ୍ତୁ :

ବରାହବରେ ପ୍ରକାଶମାନ ଯେ ଦନ୍ତରେ,
ବରାହବରେ ପ୍ରକାଶମାନ ଯେ ଦାନ୍ତରେ,

ଦୁଇଟି ପଦ ଏକ ପ୍ରକାର ପଢ଼ାଯାଉଥିଲେ ମଧ୍ୟ ଏଠି ଅର୍ଥ କ'ଣ ଏକ ପ୍ରକାରର ? ବରାହବରେ ଅର୍ଥ ଶ୍ରେଷ୍ଠ ବରାହମାନେ; ବରାହବରେ ଅର୍ଥ ଘୋର ଯୁଦ୍ଧରେ; ଦନ୍ତରେ ଅର୍ଥ ଦାନ୍ତଦ୍ୱାରା, ଦନ୍ତରେ ଅର୍ଥ କୁଞ୍ଜମଧ୍ୟରେ; ପ୍ରକାଶମାନ ଅର୍ଥ ଧୃତିମାନ; ପ୍ରକାଶମାନ ଅର୍ଥ ପ୍ରକାଶିତ ଅଛେ ।

ଅଭିମନ୍ୟୁ ସାମନ୍ତସିଂହାରଙ୍କ ବିଦଗ୍ଧ ଚନ୍ଦ୍ରାମଣିର ଆଉ ଏକ ଉଦାହରଣ ନିଆଯାଉ :

ଜଳସୂତ ସୂତ ତା ସୂତ ତା ସୂତ
ତା ସୂତ ତା ସୂତ ସୂତ
ତା ସୂତ ସୂତା ସତ ଦେଲ
ଜୀବତ ନାସ୍ତି ସ୍ନେହେ ବିପଯାତ ।

ଏଠି ସୂତ ତା ସୂତର ଅର୍ଥ ଗୋଟିଏ ପ୍ରକାର ହେଲେ ମଧ୍ୟ ଭିନ୍ନ ଭିନ୍ନ ନାମକୁ ଲକ୍ଷ୍ୟ କରି କୁହାଯାଇଛି ।

ଭବଭୂତିଙ୍କ ଏପରି କିଛି ଶ୍ଳୋକ ଅଛି ଯାହା ତାଙ୍କର ଦୁଇ ବା ତିନୋଟି ନାଟକରେ ସମାନ ରୂପରେ ଆସିଛି ଯଦିଓ ପ୍ରସଙ୍ଗ ଭିନ୍ନ । ଶ୍ଳୋକଟି ଦେଖନ୍ତୁ :

କନ୍ତ୍ୱାନୁଷ୍ଠାନକତ୍ୟାତ୍ସ୍ୱାତନ୍ତ୍ର୍ୟମପକର୍ଷତି ।
ସଙ୍କଟା ହ୍ୟାହିତାଗ୍ନୀନାଂ ପ୍ରତ୍ୟବାୟୈର୍ଗୃହସ୍ଥତା ॥ ଉ ୧:୮, ମ. ୪:୩୩

ଉତ୍ତରରାମଚରିତ ତଥା ମହାବୀରଚରିତ ଦୁଇଟି କୃତିରେ ଉକ୍ତ ଶ୍ଳୋକ ଦେଖିବାକୁ ମିଳେ ।

ଶ୍ଳୋକଟି ଉତ୍ତର ରାମଚରିତର ରାମଙ୍କ ରାଜ୍ୟାଭିଷେକ ପ୍ରସଙ୍ଗରେ କୁହାଯାଇଛି । ଉତ୍ସବ ପରେ ଜନକ ଫେରିଯାଇଛନ୍ତି । ସୀତାଙ୍କୁ ଉଦାସ ଦେଖି ସାନ୍ତ୍ୱନାପୂର୍ଣ୍ଣ ବାଣୀରେ ରାମ କହୁଛନ୍ତି ତୁମର ପିତା ଜନକଙ୍କୁ ଏଥିପାଇଁ ଚାଲିଯିବାକୁ ହେଲା କାହିଁକନା ତାଙ୍କୁ ଯଜ୍ଞାଦି କର୍ମ ଅନୁଷ୍ଠାନ କରିବାକୁ ପଡ଼େ । ମହାବୀର ଚରିତରେ ଏହା ବିଶ୍ୱାମିତ୍ରଙ୍କ ମୁଖରେ କୁହାଯାଇଛି । ବିଶ୍ୱାମିତ୍ର ରାମଙ୍କଠାରୁ ବିଦାୟନେବାକୁ ଯାଇ କୁହନ୍ତି ଯେ ତୁମକୁ ଛାଡ଼ିବାକୁ ତ ମୋର ଇଚ୍ଛା ନାହିଁ ମାତ୍ର କ'ଣ କରିବି ଯଜ୍ଞାଦି ଅନୁଷ୍ଠାନ ମତେ ତୁମଠୁ ଅଲଗା କରୁଛି । ଶବ୍ଦ ଓ ଅର୍ଥର ସମାନତା ଥିଲେ ମଧ୍ୟ ପ୍ରସଙ୍ଗକ୍ରମେ ଏହା ଦୁଇଟି କଥା ।

ଦୁଃଖଲାଗେ ସାମବେଦରେ ଋଗ୍‌ବେଦର ଅଧିକତର ମନ୍ତ୍ରଦେଖି ପାଶ୍ଚାତ୍ୟ ବିଦ୍ୱାନଗଣ ଏହା ନିଃସଂକୋଚରେ କହିବସନ୍ତି ଯେ ସାମବେଦ ସଂହିତାରେ ମନ୍ତ୍ରସଂଖ୍ୟା କମ୍ । ପାଶ୍ଚାତ୍ୟ ବିଦ୍ୱାନଙ୍କୁ ମାନିନେଇ ଥିବା କେତେକ ଭାରତୀୟ ବିଦ୍ୱାନ ମଧ୍ୟ ଏହି ଢଙ୍ଗରେ ଚିନ୍ତା କରିବା ପରିତାପର ବିଷୟ । ବୈଦିକ ମୁନି ସ୍ୱାମୀ ହରିପ୍ରସାଦ ଉଦାସୀନ ସେହିପରି ଏକ ପଞ୍ଚସ୍ତୋତ୍ର ମନ୍ତ୍ର ବିଶିଷ୍ଟ "ସାମବେଦ ସଂହିତା" ପ୍ରକାଶ କରି ଏହି ମତର ପୁଷ୍ଟି କରିଛନ୍ତି । ପୂର୍ବରୁ ମୁଁ ପ୍ରମାଣ କରିଛି ଯେ ବେଦର କୌଣସି ମନ୍ତ୍ର ପୁନରାବୃତ୍ତି ବା ପୁନରୁକ୍ତ ହୋଇନାହିଁ । ସ୍ଥାନ କାଳ ପାତ୍ର ଏବଂ ପ୍ରାସଙ୍ଗିକତା ନେଇ ଏଗୁଡ଼ିକର ବ୍ୟାଖ୍ୟା ବା ଭାଷ୍ୟ ହେବା ଉଚିତ । ପ୍ରାଚୀନ କାଳରୁ ଏ ପ୍ରସଙ୍ଗଟି ଆଲୋଚନା ହୋଇ ଆସିଛି । ଗୌତମ ମୁନି ତାଙ୍କ

"ଅନୁବାଦୋପପତ୍ତେଶ୍ଚ" (୨:୧।୬୦) ସୂତ୍ରରେ ବେଦରେ ପୁନରାବୃତ୍ତି ତ୍ରୁଟି ସର୍ବଥା ଅଭାବ ରହିଛି ବୋଲି ଦର୍ଶାଇଛନ୍ତି । କାରଣ ଦର୍ଶାଇବାକୁ ଯାଇ ସେ କହନ୍ତି ଅଭ୍ୟାସ କରିବା ଏକ ପୁନରାବୃତ୍ତି ଦୋଷ ନୁହେଁ । ଏ ସୂତ୍ରଟିକୁ ସ୍ପଷ୍ଟ କରିବାକୁ ଯାଇ ବାତ୍ସ୍ୟାୟନ ମୁନି କହନ୍ତି "ଅନର୍ଥକୋଽଭ୍ୟାସଃ ପୁନରୁକ୍ତମ୍" ବା ଅନର୍ଥକ ବାକ୍ୟ ଅଭ୍ୟାସ କରିବା ହିଁ ପୁନରାବୃତ୍ତି ଦୋଷ ଅଟେ । ଆଚାର୍ଯ୍ୟ ଯାସ୍କଙ୍କର ମଧ୍ୟ ଏହି ମତ : "ଅଭ୍ୟାସେ ଭୂମାଂସମର୍ଥ ମନ୍ୟନ୍ତେ, ଯଥା ଅହୋଦର୍ଶନୀୟୋ ହୋ ଦର୍ଶନୀୟଃ" । ଅର୍ଥାତ୍ ସମାନ ପଦ ଓ ଅର୍ଥର ପୁନରାବୃତ୍ତି ଅଭ୍ୟାସ ବା ପୁନରୁଚ୍ଚାରଣକୁ ହିଁ ବୁଝାଇଥାଏ । ଯେପରିକି କାହାକୁ ଦେଖିବା ମାତ୍ରେ ଅହୋଦର୍ଶନୀୟଃ ଅହୋଦର୍ଶନୀୟ ପଦ ବାରମ୍ବାର ଉଚ୍ଚାରଣ କରି ଆମର ଭାବକୁ ଆମେ ବ୍ୟକ୍ତ କରିଥାଉଁ । ପୁନରାବୃତ୍ତି ଯେତେବେଳେ ନିନ୍ଦ୍ୟ ଯେବେ ଏହା ଅଦରକାରୀ, ଅର୍ଥହୀନ । ଆର୍ଷ ଓ ଅନାର୍ଷ ଗ୍ରନ୍ଥଗୁଡ଼ିକର ଆଧାର ଉପରେ ବେଦର ପୁନରାବୃତ୍ତି ଯେ ଏକ ଆବଶ୍ୟକ, ଏକ ଅର୍ଥପୂର୍ଣ୍ଣ, ଏକ ସଂହତ, ଏକ ଲାଳିତ୍ୟ ତାହାହିଁ ଏଠି ପ୍ରମାଣିତ ।



# ମ୍ୟାକ୍ସମୂଲର : ଜଣେ ବିବାଦମାନ ବ୍ୟକ୍ତିତ୍ୱ

ଷୋଡ଼ଶ ଶତାବ୍ଦୀରେ ଫ୍ରାନ୍ସ, ଜର୍ମାନୀ, ହଲାଣ୍ଡ ଆଦି ଦେଶରେ ଯେଉଁ ସାଂସ୍କୃତିକ କ୍ରାନ୍ତିର ଉଦ୍ଭବ ହେଲା ସେଠାର ମନୀଷୀଗଣଙ୍କ ମଧ୍ୟରେ ଏହା ଏକ ଚିନ୍ତାର ବିଷୟ ହୋଇ ପଡ଼ିଲା ଯେ ସମଗ୍ର ୟୁରୋପର କୌଣସି ନିର୍ଦ୍ଦିଷ୍ଟ ସଂସ୍କୃତି ନ ଥିବାରୁ ବିଶ୍ୱରେ ଏହାର କୌଣସି ନିର୍ଦ୍ଦିଷ୍ଟ ରୂପରେଖ ନାହିଁ। ସେମାନେ ଚାହୁଁଥିଲେ ସମଗ୍ର ୟୁରୋପର ସାଂସ୍କୃତିକ ବିକାଶ ପାଇଁ ଏକ ନିଶ୍ଚିତ ଆଧାର ଦରକାର। ଗ୍ରୀକ୍ ସଂସ୍କୃତିକୁ ସେମାନେ ଏକ ମାଧ୍ୟମ ଭାବରେ ଗ୍ରହଣ କଲେ। ଏତଦ୍‌ବ୍ୟତୀତ ଆରବୀ ଓ ଗ୍ରୀକ୍ ଭାଷାର ଲୁପ୍ତ ଗ୍ରନ୍ଥଗୁଡ଼ିକର ପୁନରୁଦ୍ଧାର ହେଲା। ଏହାର ଅନୁବାଦ ଲାଟିନ୍, ଫ୍ରେଞ୍ଚ ଓ ସ୍ପେନିସ୍ ଆଦି ଭାଷାରେ ହେବା ଫଳରେ ବିଷୟର ପ୍ରଶସ୍ତ ହେଲା। ଅନୁବାଦ କରିବା ସମୟରେ ସେମାନେ ଆଶ୍ଚର୍ଯ୍ୟ ହେଲେ ଯେ ସେ ସବୁ ଗ୍ରନ୍ଥରେ ବହୁ ସ୍ଥାନରେ ଭାରତବର୍ଷର ସନ୍ଦର୍ଭ ରହିଛି। ସେହି ସନ୍ଦର୍ଭ ସେମାନଙ୍କୁ ଭାରତୀୟ ସଂସ୍କୃତି ପ୍ରତି ସ୍ୱାଭାବିକ ଜିଜ୍ଞାସା ଜାଗ୍ରତ କଲା। ମାତ୍ର ସେମାନେ ନିଜର ଅସ୍ତିତ୍ୱ ରକ୍ଷାପାଇଁ ଚାହିଁଲେ ଯେ ଯଦି ଗ୍ରୀକ୍ ଚିନ୍ତା ଓ ଦର୍ଶନକୁ ଭାରତୀୟ ଚିନ୍ତା ଓ ଦର୍ଶନ ଉପରେ ଲଦି ଦିଆ ନ ଯାଏ, ତା'ହେଲେ ୟୁରୋପର ନିର୍ଦ୍ଦିଷ୍ଟ ସଂସ୍କୃତିର ଶ୍ରେଷ୍ଠତା ପ୍ରତିପାଦନ କରିହେବ ନାହିଁ।

ଏହା ପରେ ପରେ ୟୁରୋପରୁ ଭାରତକୁ ସାଂସ୍କୃତିକ ରାସ୍ତା ଖୋଲିଗଲା। ୧୬୫୧ରେ ଡଚ୍‌ମେନ୍ ଅବ୍ରାହମ୍ ରୋଜର୍ ତାଙ୍କ "ଓପନ୍ ଡୋର ଟୁ ଦ ହିଡ଼ନ୍ ହେଥେନ୍‌ଡ଼ନ୍" ପୁସ୍ତକରେ ବ୍ରାହ୍ମଣ ସାହିତ୍ୟ ଉପରେ କିଛି ସୂଚନା ଦେଲେ। ତାଙ୍କ ପରେ ପରେ ୧୬୯୯ରେ ଜେ. ଏ. ହାଙ୍କ୍‌ସ୍‌ଲେଡେନ୍ ଭାରତ ଆସିଲେ। ଭାରତୀୟ ଭାଷା ଉପରେ ସେ ନିଷ୍ଠାପର ଭାବରେ କାର୍ଯ୍ୟ ଆରମ୍ଭ କରିଦେଲେ। ଏପରି ଦୀର୍ଘ ୩୦ ବର୍ଷ ଗଭୀର ସ୍ୱାଧ୍ୟାୟ ପରେ ୟୁରୋପୀୟ ଭାଷାରେ ସେ ପ୍ରଥମ ସଂସ୍କୃତ ବ୍ୟାକରଣ ଲେଖିଲେ। ଯା'ର ନାମ ସେ ରଖିଲେ "ଗ୍ରାମାଟିକା ଗ୍ରନ୍ଥମିଆଁ ସେନ୍ ସାନ୍‌ସ୍କ୍ରୁଡ଼ମିକା।" ଏହାର ପ୍ରକୃତ ପ୍ରୟୋଗ ଅଷ୍ଟ୍ରୀୟ ପାଦ୍ରୀ ଫାଁ ପାଓଲିନୋ ତାଙ୍କ ମିସନାରୀ କାର୍ଯ୍ୟ ପାଇଁ କଲେ।

ତାହାପରେ ଭାରତରେ ଇଂରେଜ ସାମ୍ରାଜ୍ୟର ପ୍ରବର୍ତ୍ତକ ୱାରେନ୍ ହେଷ୍ଟିଂସ୍ ଏଠାକାର ବ୍ରାହ୍ମଣଙ୍କଦ୍ୱାରା "ବିବାଦାର୍ଣ୍ଣବସେତୁ" ନାମକ ଆଇନ୍ ପୁସ୍ତକ ଲେଖାଇଲେ ଯାହାର ଅନୁବାଦ "ଏ କୋଡ୍ ଅଫ୍ ଜେଣ୍ଟୋ'ଜ ଲ" ଭାବରେ ପ୍ରସିଦ୍ଧ ହେଲା । ଅଷ୍ଟାଦଶ ଶତାବ୍ଦୀ ବେଳକୁ ୱିଲ୍କିନ୍ସ ଓ ୱିଲିୟମ୍ ଜୋନସ୍ ସହଯୋଗରେ ଏସିଏଟିକ୍ ସୋସାଇଟିର ସ୍ଥାପନ ହେଲା । ୱିଲ୍କିନସ୍ ସର୍ବପ୍ରଥମେ ବଙ୍ଗଳା ଓ ଫାର୍ସୀ ଅଧ୍ୟୟନ କଲେ । ତାପରେ ସଂସ୍କୃତ ଶିକ୍ଷାକରି "ଭଗବଦ୍ ଗୀତା"ର ସର୍ବପ୍ରଥମ ଇଂରାଜୀ ଅନୁବାଦ କଲେ । ସେହିପରି କାଳିଦାସଙ୍କ ଶକୁନ୍ତଳା, ଋତୁସଂହାର ଓ ମନୁସ୍ମୃତି ଆଦି ଅନୁବାଦ ହେବା ଫଳରେ ପାଶ୍ଚାତ୍ୟରେ ଭାରତୀୟ ସାହିତ୍ୟ ପ୍ରତି ଲୋକଙ୍କର ରୁଚି ବୃଦ୍ଧି ପାଇଲା । ଏହି ସମୟରେ ହେନେରୀ ଟି. କୋଲବ୍ରୁକ୍ ଭାରତରେ ମୁଦ୍ରଣ କାର୍ଯ୍ୟ ଆରମ୍ଭ କରି ଦେଇଥିଲେ । ସେ ପ୍ରଥମେ ପ୍ରଥମ ଜୋନସ୍‌ଙ୍କ ସଂସ୍କୃତ ପ୍ରେମକୁ ଆଲୋଚନା କରୁଥିଲେ ମାତ୍ର ଯେତେବେଳେ ସେ ବୁଝିଗଲେ ଯେ ଭାରତରେ ଶାସନ କରିବାକୁ ହେଲେ ସଂସ୍କୃତ ଅଧ୍ୟୟନ କରିବା ଏକାନ୍ତ ଆବଶ୍ୟକ; ସେ ସଂସ୍କୃତ ଅଧ୍ୟୟନ କରିବାକୁ ଜେମସ୍ ଓ ୱିଲ୍କିନସ୍‌ଙ୍କ ସହ ମିଶି ରଏଲ ଏସିଏଟିକ୍ ସୋସାଇଟିରେ କାର୍ଯ୍ୟ ଆରମ୍ଭ କରିଦେଲେ ।

କୁହାଯାଏ କୋଲବ୍ରୁକ୍ ବେଦ ପ୍ରାପ୍ତ କରିବାକୁ ଚାହୁଁଥିଲେ ମାତ୍ର ଦକ୍ଷିଣ ଭାରତୀୟ ପଣ୍ଡିତମାନେ ତାଙ୍କୁ ବେଦ ଦେଲେ ନାହିଁ । ପାଦ୍ରୀମାନେ ଭାବିଲେ ବ୍ରାହ୍ମଣମାନଙ୍କୁ ଲାଞ୍ଚ ଦେଇ ବାଇବେଲ୍ ସିଦ୍ଧାନ୍ତରେ ବେଦ ଲେଖାଯାଇ ପାରିବ । ତାହା ହିଁ ହେଲା । ରବର୍ଟ ଡି ନୋବେଲୀ ଭାରତକୁ ଆସିଲେ । ୧୫୩୩ରେ ଇଗ୍ନେସିଅସ୍ ଲୋୟଲାଙ୍କ ଦ୍ୱାରା ସ୍ଥାପିତ ରୋମାନ୍ କ୍ୟାଥୋଲିକ୍ ସମ୍ପ୍ରଦାୟର ଇଟାଲିଏନ୍ ଜେସୁଇଟ ଶାଖାର ସେ ପାଦ୍ରୀ ଥିଲେ, ଯେଉଁ ସମ୍ପ୍ରଦାୟ ସହ ଫ୍ରାନ୍ସିସ୍ କୋଭିଆର ସଂଶ୍ଲିଷ୍ଟ ଥିଲେ । ଡିନୋବଲୀ ପଣ୍ଡିତମାନଙ୍କୁ ଅର୍ଥ ଦେଇ ପୁରାଣ ଓ ବାଇବେଲ୍ ମିଶ୍ରିତ ଏକ ସୁନ୍ଦର ସଂସ୍କୃତ ପୁସ୍ତକ ଲେଖାଇ ତାର ନାମ ରଖିଲେ 'ଯଜୁର୍ବେଦ' । ବେଦ ଦେଖି ନ ଥିବା ଜିଜ୍ଞାସୁ ପାଠକ ଯଜୁର୍ବେଦ ସୁବିଧାରେ ଲାଭ କଲେ । ଏହାର ଫ୍ରେଞ୍ଚ ଅନୁବାଦ ମଧ୍ୟ ହେଲା ଏବଂ ତାର୍ ଏକ ପ୍ରତିଲିପି ପେରିସ୍ ପୁସ୍ତକାଳୟରେ ମଧ୍ୟ ରଖାଗଲା । ୧୬୭ ରେ ଏ ସମ୍ପର୍କରେ ଦୀର୍ଘ ପ୍ରବନ୍ଧମାନ ପ୍ରକାଶ ପାଇଲା । ମାତ୍ର ସତ୍ୟ ଅନେକ ଦିନ ଗୋପନ ରହିଲା ନାହିଁ । ପ୍ରଫେସର ମ୍ୟାକ୍ସ-ମୁଲରଙ୍କୁ ମଧ୍ୟ ବାଧ୍ୟ ହୋଇ ସାର୍ବଜନୀନ ଭାବରେ କହିବାକୁ ପଡିଲା – "ସରଳ ଇଂରାଜୀରେ କହିବାକୁ ଗଲେ ସାରା ପୁସ୍ତକ ପିଲାଖେଳ ପରି ଅଟେ । ବୈଦିକ ସମ୍ପତ୍ତିର ଯୋଗ୍ୟ ବିଦ୍ୱାନ ପଣ୍ଡିତ ରଘୁନନ୍ଦନ ଶର୍ମା ଲେଖିଲେ—"ସେହି ପୁସ୍ତକ ଯଦି ଅଲ୍ଲୋପନିଷଦ ପରି ଆଜି ମଧ୍ୟ ପ୍ରଚଳିତ ଥାଆନ୍ତା,

ତେବେ ତାହା ହିନ୍ଦୁମାନଙ୍କର ମାନ୍ୟ ଗ୍ରନ୍ଥ ହୋଇ ଯାଉଥାନ୍ତା ।” ଯେପରି ଫୁଲବାଣୀର ଏକ ଗ୍ରାମରେ ପୁରାଣ ଗାଦୀରେ ‘ସତ୍ୟ ପୁରାଣ’ ନାମକ ଏକ ପୁସ୍ତକ ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଗଲି ଯେ ଏହା ହିନ୍ଦୁ ଧର୍ମର କୌଣସି ମାନ୍ୟଗ୍ରନ୍ଥ ନୁହେଁ ଅଥଚ ପୂଜାଗାଦୀରେ ତା ଉପରେ ଫୁଲ ଚନ୍ଦନ ଲେପାଯାଉଛିଲାଣି । ଏହାର ଲେଖକ ରେଭ୍-ରେଣ୍ଡ୍ ଗଙ୍ଗାଧର ରଥ ଯାହାଙ୍କୁ ଆଚାର୍ଯ୍ୟ ବୋଲି ଲେଖାଯାଇଛି । ଅନୁସନ୍ଧାନ କରି ଜାଣିଲି, ସେ କୁଆଡ଼େ କେବେ ଜଣେ ପୂଜାପଣ୍ଡା ଥିଲେ । ସତ୍ୟପୁରାଣରେ ସେ ବିଷ୍ଣୁପୁରାଣ, ସ୍ମୃତି, ମହାଭାରତ, ବ୍ରହ୍ମାଣ୍ଡପୁରାଣ, ଯୋଗବାଶିଷ୍ଠ, ମନୁସଂହିତା, ଆଦି ଅନେକ ହିନ୍ଦୁଶାସ୍ତ୍ରର ଶ୍ଳୋକମାନ ଉଦ୍ଧାର କରି ପୁରାଣ ଭାଷାରେ ଖ୍ରୀଷ୍ଟଙ୍କ ବିଷୟରେ ହିଁ ଲେଖିଛନ୍ତି । ତା' ଭିତରେ ଜଣେ ମଧ୍ୟ ଅନେକ ଶ୍ଳୋକ ରଚନା କରି ‘ମହର୍ଷି ଯିଶାୟ ବାକ୍ୟ’ ବୋଲି ଉଦ୍ଧୃତ କରିଛନ୍ତି । ଉଦାହରଣ ସ୍ୱରୂପ :—

‘ତସ୍ମାଦ ଭାସ୍ୟତି ଯୁଷ୍ମଭ୍ୟଂ ଚିହ୍ନମେକଂ ପ୍ରଭୁ ସ୍ୱୟଂ,
କୁମାରୀଂ ଗର୍ଭିଣୀଂ ପଶ୍ୟ ସା ପୁତ୍ରଂ ପ୍ରସବିଷ୍ୟତେ ।
ଇମାନୁଏଲ୍ ଇତ୍ୟେବ ତସ୍ୟନାମ କରିଷ୍ୟତି ।”

ମିଶନାରୀମାନେ କି ପ୍ରକାର ଏ ଦେଶର ମୂଳ ସଂସ୍କୃତିରେ ଅପମିଶ୍ରଣ କରିଛନ୍ତି ଏବଂ ଆମ ଦେଶର ପଣ୍ଡିତମାନଙ୍କ ଦ୍ୱାରା ଶାସ୍ତ୍ରର ବ୍ୟାଖ୍ୟା ଦେଇ ନିଜ ଧର୍ମଶାସ୍ତ୍ରକୁ ପ୍ରମାଣ କରିଛନ୍ତି ସେ ସମ୍ପର୍କରେ ଅନେକ ଗ୍ରନ୍ଥର ସୂଚୀ ଏଠି ପ୍ରସ୍ତୁତ କରାଯାଇପାରେ ।

ଏ କଥା ଅବଶ୍ୟ ମୁଁ ଏଠି ପ୍ରଶଂସାସୂଚକ ସ୍ୱରରେ କହିବାକୁ ଭୁଲିଯିବି ନାହିଁ ଯେ ସେମାନଙ୍କୁ ସେଥିପାଇଁ କଠୋର ତ୍ୟାଗ ଓ ସେବା କରିବାକୁ ପଡ଼ୁଛି । କନ୍‌ଭେଣ୍ଟ, ହସ୍‌ପିଟାଲ ଓ ଚର୍ଚ୍ଚମାନ ଖୋଲିବାକୁ ପଡ଼ୁଛି । ଏଠିକାର ସାଧୁମାନଙ୍କ ପରି ଯଜ୍ଞୋପବୀତ ଓ ଗୈରିକ ବସ୍ତ୍ର ଧାରଣ କରିବାକୁ ହୋଇଛି । ଏଠି ବେଦର ଜନ୍ଦ୍ରକମାନଙ୍କୁ ଲୋକେ ନାସ୍ତିକ କହୁଥିବା କଥା ଜାଣି ସେମାନେ ଯଜୁର୍ବେଦ [୪୦-୧] ‘ଈଶା ବାସ୍ୟମ୍ ଇଦଂ ସର୍ବମ୍’ ମନ୍ତ୍ରରେ ଈଶା ବା ଖ୍ରୀଷ୍ଟଙ୍କୁ ମଧ୍ୟ ଆବିଷ୍କାର କରିବାକୁ ପଡ଼ିଛି ଏବଂ ଏହାର ଅର୍ଥ ଖ୍ରୀଷ୍ଟ ସର୍ବବ୍ୟାପକ ବୋଲି ମଧ୍ୟ ଭାଷ୍ୟ କରାଯାଇଛି । ‘ଏ ହିଷ୍ଟ୍ରୀ ଅଫ୍ ଖ୍ରୀଷ୍ଟିୟାନ୍ ମିସନ୍‌ସ’ର ୧୮୩-୧୮୫ ପୃଷ୍ଠା ମଧ୍ୟରେ ଷ୍ଟିଫେନ୍ ନେଲ୍ ଏହା ସ୍ୱୀକାର କରିଛନ୍ତି ଯେ ଡି. ନୋବଲି ଭାରତୀୟ-ମାନଙ୍କ ଉପରେ ବିଜୟ ହାସଲ କରିବା ପାଇଁ ଜଣେ ଭାରତୀୟ ହୋଇଛନ୍ତି, ମାଂସ ଓ ଚମଡ଼ା ଯୋତା ପରିତ୍ୟାଗ କରିଛନ୍ତି । ଗୈରିକ ବସ୍ତ୍ର ଧାରଣ କରିଛନ୍ତି ଓ ଜଣେ ସନ୍ନ୍ୟାସୀ ଗୁରୁଭାବରେ ନିଜକୁ ପରିବର୍ତ୍ତିତ କରି ପ୍ରାଚୀନ ତାମିଲ

ଭାଷାରେ ଦକ୍ଷତା ଅର୍ଜନ କରିଛନ୍ତି । 'ଇନ୍‌ଟ୍ରଡ଼କସନ୍ ଟୁ ଦ ସାଇନ୍‌ସ ଅଫ୍ ଲେଙ୍ଗ୍ୱେଜ୍'ର ପ୍ରଥମଭାଗ ୪୩-୪୪ ପୃଷ୍ଠାରେ ଲେଖକ ଏ. ଏଚ୍ ସେସ୍ ତାଙ୍କ ସମ୍ପର୍କରେ ଅଧିକ କିଛି କହିବାକୁ ଯାଇ କହିଛନ୍ତି ସେ ତେଲଗୁ ଓ ସଂସ୍କୃତରେ ମଧ୍ୟ ଜ୍ଞାନାର୍ଜନ କରିଥିଲେ । ଏଥିପାଇଁ କେତେ କଷ୍ଟ ସେମାନଙ୍କୁ ସ୍ୱୀକାର କରିବାକୁ ପଡ଼ି ନ ଥିବ ?

ପାଶ୍ଚାତ୍ୟ ବିଦ୍ୱାନଗଣ ଏ ଦେଶକୁ ଆସି ଏ ଦେଶର ସଂସ୍କୃତି ସହ ମିଶି ଏହାର ସଂସ୍କୃତିକୁ ନଷ୍ଟକରିବାକୁ ଯେପରି ବିଧିବଦ୍ଧ ଭାବରେ ଚେଷ୍ଟା କରିଛନ୍ତି ତା'ହା ଲେଖିଲେ ଏକ ସ୍ୱତନ୍ତ୍ର ଗ୍ରନ୍ଥ ହେବ । ତା'ହା ଲେଖିବାପାଇଁ ପର୍ଯ୍ୟାପ୍ତ ପ୍ରମାଣ ଥିବା ସତ୍ତ୍ୱେ ମୁଁ ଲେଖିବାକୁ ନାହାନ । ଇଂରେଜ ଶାସନ ଭାରତରେ କି ପ୍ରକାର ପରିବର୍ତ୍ତନ ଓ ବିପର୍ଯ୍ୟୟ ଆଣିଛି ତାହା ଐତିହାସିକର ବିଷୟବସ୍ତୁ । ଏ କଥା ଜାଣିଥିବା ସତ୍ତ୍ୱେ ମୁଁ ଲେଖିବାକୁ ବାଧ୍ୟ ନୁହେଁ ଯେ ଏ ଦେଶକୁ ଜଳପଥ ଆବିଷ୍କାର କରି ଭାସ୍କୋଡାଗାମା ତାଙ୍କ ଆଶ୍ରୟଦାତା କାଲିକଟ୍‌ର ରାଜାଙ୍କ ସହ କି ପ୍ରକାର ବିଶ୍ୱାସଘାତକତା କଲେ । ଏ କଥା ମଧ୍ୟ ମୁଁ ଏଠି ଉଲ୍ଲେଖ କରୁନାହିଁ, ଯାହାଙ୍କୁ ଶ୍ରେଷ୍ଠ ମହାପୁରୁଷବୋଲି ଗୋଆରେ ସେଣ୍ଟ୍ ଜେଭିଅର୍ ବୋଲି ପୂଜା କରୁଛନ୍ତି ସେ କି ପ୍ରକାର ଅତ୍ୟାଚାର ବଳରେ ଲୋକଙ୍କୁ ଧର୍ମାନ୍ତରିତ କରିଥିଲେ । ଏ କଥା ଭାବିଲେ ଜଣେ ଭାରତୀୟଭାବରେ ମନରେ ଦାରୁଣ ଦୁଃଖ ହୁଏ ଯେ ଇଂରେଜମାନେ ଏ ଦେଶର କାରିଗରମାନଙ୍କର ଆଙ୍ଗୁଠି କାଟି ଏ ଦେଶର ବାଣିଜ୍ୟ ନଷ୍ଟ କରିଥିଲେ । ଯୁଗ ଯୁଗରୁ ପ୍ରତିଷ୍ଠିତ ତପସ୍ୱୀମାନଙ୍କର ଦେଶକୁ ବିଳାସପ୍ରିୟ ଦେଶରେ ପରିବର୍ତ୍ତନ କରି ଦେଇଥିଲେ । ପ୍ରକୃତରେ ସେମାନେ ଜାଣିଥିଲେ ଏ ଦେଶର ସଂସ୍କୃତି ନଷ୍ଟ ନ କଲେ ୟୁରୋପରୁ ଆଣିଥିବା ସଂସ୍କୃତି ଓ ଧର୍ମର ମହତ୍ତ୍ୱ କିଛି ରହିବ ନାହିଁ ।

ବସ୍ତୁତଃ କୌଣସି ଦେଶର ସଂସ୍କୃତିକୁ ନଷ୍ଟ କରିବାକୁ ହେଲେ ସେ ଦେଶର ସାହିତ୍ୟ ନଷ୍ଟ କରିବାକୁ ହେବ । ଏଥିପାଇଁ ସାହିତ୍ୟ ପୋଡ଼ିଦେବା ବା ଜଳରେ ବୁଡ଼ାଇଦେବା ଏକ ନିକୃଷ୍ଟ ଧରଣର ପ୍ରଥା ଯାହା ବକ୍ତିଆର୍ ଖିଲିଜୀ ନାଳନ୍ଦା ବିଶ୍ୱବିଦ୍ୟାଳୟରେ କଲେ ଓ ଲକ୍ଷାଧିକ ସଂସ୍କୃତ ପାଣ୍ଡୁଲିପି ଓ ପୋଥି ପୋଡ଼ି ଧ୍ୱଂସ କରିଦେଲେ । ସାହିତ୍ୟକୁ ନଷ୍ଟ କରିବାର ଅନ୍ୟ ଏକ ଉପାୟ ହେଲା ଏହା ମଧ୍ୟରେ ପ୍ରକ୍ଷେପ ଭରିଦେବା ଯାହା ବ୍ୟାସଙ୍କ ନାମରେ ଅନେକ ପୁରାଣକାର କରିଛନ୍ତି । ସାହିତ୍ୟକୁ ଅନର୍ଥକର ପ୍ରମାଣ କରିବା ଆଧୁନିକ ମାରାତ୍ମକ ମାର୍ଗ ଶ୍ରେଷ୍ଠ ଉପାୟ ଯାହା ୟୁରୋପୀୟ ପ୍ରାଚ୍ୟ-ବିଦ୍‌ଗଣ ବିବିଧ ଉପାୟରେ କରିଛନ୍ତି । ପ୍ରମାଣ ସ୍ୱରୂପ ମୁଁ କୃଷ୍ଣ ଯଜୁର୍ବେଦଠାରୁ ଅଲ୍ଲୋପନିଷଦ ପର୍ଯ୍ୟନ୍ତ ଯେତେ ଗ୍ରନ୍ଥ ଲେଖା ହୋଇଛି ସେ ସବୁ ଆର୍ଯ୍ୟ ସଂସ୍କୃତିର ମାନ୍ୟତା ପାଇ ନ ଥିଲେ ମଧ୍ୟ ହିନ୍ଦୁମାନେ ସେ ଗ୍ରନ୍ଥଗୁଡ଼ିକୁ ମାନ୍ୟତା ଦେଇଛନ୍ତି ବୋଲି କହିବ । ଏ ସବୁ ପ୍ରକାର

କୌଶଳ ପ୍ରୟୋଗ କରିବାଦ୍ୱାରା ଆର୍ଯ୍ୟ ଧର୍ମ ଯେ ଏକ କଳୁଷ୍ଟ ବର୍ବରମାନଙ୍କର ଧର୍ମ ତାହା ହିଁ ପ୍ରମାଣ କରାଯାଇଛି । କାରଣ ଭାରତୀୟଙ୍କ କଲ୍ୟାଣ ୟୁରୋପୀୟଙ୍କ ପାଇଁ ଅଶୁଭପ୍ରଦ ଅଟେ । ଏ କଥାକୁ ଲକ୍ଷ୍ୟକରି ବଙ୍ଗଳାର ପ୍ରସିଦ୍ଧ ବିଦ୍ୱାନ ଓ ରସାୟନ ଶାସ୍ତ୍ର ଆଚାର୍ଯ୍ୟ ଶ୍ରୀଯୁକ୍ତ ପି. ସି. ରାୟ ତାଙ୍କ 'ହିଷ୍ଟ୍ରୀ ଅଫ୍ ଇଣ୍ଡିଆନ୍ କେମିଷ୍ଟ୍ରୀ'ର ୪୬ ପୃଷ୍ଠାରେ ଲେଖିଲେ—ଯେତେବେଳେ ୟୁରୋପୀୟ ବିଦ୍ୱାନଙ୍କୁ ଏହା ସ୍ୱୀକାର କରିବାକୁ ପଡ଼େ କି, ବିଦ୍ୟା ସମ୍ବନ୍ଧରେ ୟୁରୋପ ଭାରତବର୍ଷ ପାଖରେ ଋଣୀ, ସେତେବେଳେ ତାଙ୍କୁ ଖୁବ୍ ଖରାପ ଲାଗେ । ଏହି କାରଣରୁ ଲୋକ ଐତିହାସିକ ବିଷୟକୁ ଅନ୍ୟଭାବରେ କଳ୍ପନା କରିବାରେ ବ୍ୟର୍ଥ ଚେଷ୍ଟା କରନ୍ତି ।

## ପାଶ୍ଚାତ୍ୟ ଭାଷ୍ୟକାର—

ପାଶ୍ଚାତ୍ୟ ସଂସ୍କୃତଜ୍ଞ ଓ ପ୍ରାଚ୍ୟ-ବିଦ୍ୟା ବିଶାରଦଗଣ ନିରପେକ୍ଷ ଭାବରେ ଭାରତୀୟ ସଂସ୍କୃତି ଉପରେ କିଛି କାର୍ଯ୍ୟ କରିଛନ୍ତି ତାହା ନିଶ୍ଚୟାତ୍ମକ ଭାବରେ କହିବାକୁ ମଧ୍ୟ ଆମ ମନରେ ସନ୍ଦେହ ଆସେ । ସେମାନେ ବେଦାଦିଶାସ୍ତ୍ରଗୁଡ଼ିକର ମହତ୍ତ୍ୱ ଯେ ଜାଣି ନଥିଲେ ଏହା ତ କୁହାଯାଇ ପାରିବନାହିଁ ମାତ୍ର ଅନେକ ସମୟରେ ଏକଦେଶଦର୍ଶୀ ହୋଇ ଖ୍ରୀଷ୍ଟଧର୍ମର ଏକ ତୁଳନାତ୍ମକ ଅଧ୍ୟୟନରେ ଏହାକୁ ନ୍ୟୂନ ଦେଖାଇବାକୁ ସେମାନେ ଆନ୍ତରିକ ଭାବରେ ଚେଷ୍ଟା କରିଥିଲେ । ସେମାନଙ୍କ ମଧ୍ୟରୁ ଅନେକେ ବେଦକୁ ବାଳ୍ୟଚପଳ, ମେଷ ପାଳକର ଗୀତ ବା କର୍କଶ ବୋଲି କହିବାକୁ ମଧ୍ୟ ସଙ୍କୋଚ କରି ନଥିଲେ । ବେଦ ଅତୀବ ପ୍ରାଚୀନତମ ବୋଲି ମାନିବାସତ୍ତ୍ୱେ ଏହାକୁ ଖ୍ରୀଷ୍ଟଙ୍କ ଦୁଇ ହଜାର ବର୍ଷପୂର୍ବର ବୋଲି ପ୍ରତିପାଦନ କରିବାର ବ୍ୟର୍ଥ ପ୍ରୟାସ ମଧ୍ୟ କରାଯାଇଥିଲା ।

ବେଦ ସମ୍ପର୍କରେ ଅମୂଳକ ଅନେକ କଥା ସେମାନେ ବିଭିନ୍ନ ପତ୍ରପତ୍ରିକା ମାଧ୍ୟମରେ ବହୁଳଭାବରେ ପ୍ରଚାର କରିଛନ୍ତି । ସେମାନେ ଏକଥା ଆମକୁ ବୁଝାଇ ଦେବାରେ ସମର୍ଥ ହୋଇଛନ୍ତି ଯେ ବେଦରେ ପ୍ରକୃତି ପୂଜା ଓ ହଜାର ହଜାର ଦେବାଦେବୀଙ୍କ ପୂଜାର ବିଧାନ ରହିଛି । ବୈଦିକ ଯଜ୍ଞରେ ଛେଳି, ଘୋଡ଼ା, ବଳଦ ଓ ଗାଈ ଏପରିକି ମନୁଷ୍ୟକୁ ମଧ୍ୟ ବଳିଦିଆ ଯାଉଥିଲା । ସୋମ ନାମରେ ବୈଦିକ ଆର୍ଯ୍ୟ ମଦ ସେବନକରି ମତ୍ତ ହୋଇ ପଡ଼ୁଥିଲେ । ଯେପରି ରେଭରେଣ୍ଡ ଷ୍ଟିବନ୍‌ସନ୍ ଓ ଗ୍ରୀଫିଥ ସାମ ବେଦର ଇଂରାଜୀ ଅନୁବାଦ କରି ଜ୍ଞାନମୟ ଭକ୍ତିରସ ପ୍ରତିପାଦକ ସୋମକୁ ଅଧିକତର -ଓ୍ୱାଇନ୍ ବା ଲିକର୍ ଅର୍ଥରେ ଅନୁବାଦ କରିଛନ୍ତି । ସେମାନେ ପୁଣି କୁହନ୍ତି ବୈଦିକ ଯୁଗରେ ସଦାଚାରର କୌଣସି ଭିତମାନଦଣ୍ଡ ନ ଥିଲା । ଆର୍ଯ୍ୟମାନେ ପରସ୍ପର ବା ଶତ୍ରୁ ପର୍ଯ୍ୟନ୍ତ ସ୍ତ୍ରୀ ବିବାହ

କରିନେଉଥିଲେ । ବରୁଣଙ୍କ ବ୍ୟତୀତ ଇନ୍ଦ୍ରାଦି ସମସ୍ତ ଦେବତା ତୋଷାମୋଦପ୍ରିୟ ଓ ସ୍ୱାନଚରଣ ଥିଲେ ଏବଂ ଋଷିଗଣ ସେମାନଙ୍କୁ ପ୍ରସନ୍ନ ରଖିବାପାଇଁ ବେଦମନ୍ତ୍ରର ରଚନା କରୁଥିଲେ ।

ଏପ୍ରକାର ଧାରଣାଦ୍ୱାରା ପ୍ରେରିତ ହୋଇ ସେମାନେ ବେଦର ଅନୁବାଦ କଲେ । ଅନ୍ୟୁନପକ୍ଷେ ଆଜକୁ ଦୁଇଶହ ବର୍ଷ ମଧ୍ୟରେ ସେମାନେ ବେଦ ସମ୍ପର୍କରେ ଅନେକ କିଛି ଲେଖିଛନ୍ତି ଓ ଲେଖୁଛନ୍ତି । ସେମାନଙ୍କ ମଧ୍ୟରୁ ପ୍ରଫେସର ମ୍ୟାକସମ୍ୟୁଲର, ବେଞ୍ଜନ୍, ଲୁଡ୍‌ବିଗ୍, ଗ୍ରାସମନ, ପ୍ରଫେସର ଗାଁଥ, ଓଲଡ଼ନ୍‌ବର୍ଗ, ଡାଃ ୱାବର, କୋଲ୍‌ବ୍ରୁକ୍, ସାର୍ ଉଇଲିୟମ ଜୋନ୍ସ, ବର୍ନଫ, ବେନ୍‌ଫେ ୱିଲସନ, ବ୍ଲୁମ୍ ଫିଲ୍ଡ, କ୍ଲେରନ୍, ମୋରିସ୍ ଫିଲିପ୍ସ, ହ୍ୱିଟନୀ, କୀଥ୍, ମେକ୍‌ଡୋନାଲ୍ଡ, ଜୈକୋବୀ, ଗ୍ରୀଫ୍‌ଥ, ବୋହ୍ଟଲିଙ୍କ୍, ରେଭରେଣ୍ଡ ଷ୍ଟିବେନ୍‌ସନ୍, ପ୍ରଫେସର୍ ରେନ୍, ହ୍ୱିଲ୍‌ବ୍ରାଉନ୍, ଗ୍ରିସ୍‌ବୋଲଡ଼, ବି. ଆର୍. ଓଟୋ, ଗେଲଡ଼ନର, ଓ କେଗୀ ଆଦିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଉପରୋକ୍ତ ସମସ୍ତ ପାଶ୍ଚାତ୍ୟ ପଣ୍ଡିତ ଯେ ଏକଦେଶଦର୍ଶୀ ବା ଦୁରାଗ୍ରହୀ ତା' କହିବା ଅନ୍ୟାୟ୍ୟ ନୁହେଁ ! ତେବେ ସେମାନେ ଜ୍ଞାତସାରରେ ବା ଅଜ୍ଞାତସାରରେ ବେଦକୁ ଏ ପ୍ରକାର ଅନୁବାଦ କରିଛନ୍ତି ଯାହା ପଢ଼ିଲେ ପରେ ଆମ ନିଜ ଶାସ୍ତ୍ରଗ୍ରନ୍ଥକପ୍ରତି ଆମ ଧାରଣା ଜଘନ୍ୟ ହୋଇଯାଏ । ଋଗ୍‌ବେଦ [୧୦. ୨୭. ୨ ଓ ୧୦. ୨୮. ୩] ମନ୍ତ୍ରରେ 'ବୃଷଭ' ଶବ୍ଦକୁ ମେକ୍‌ଡୋନାଲ୍ଡ ଓ ଗ୍ରୀଫ୍‌ଥ "'ବୁଲ୍" ବା ବଳଦ ବୋଲି ଅନୁବାଦ କରି ସେହି ଅର୍ଥରେ ପ୍ରମାଣ କରିବାକୁ ଚେଷ୍ଟା କରିଛନ୍ତି ଯେ ଇନ୍ଦ୍ର ବଳଦ ଖାଆନ୍ତି । ପ୍ରକୃତରେ ପ୍ରକରଣ ଅନୁସାରେ ଋଗବେଦ [୯. ୧୦୮. ୧୧]ରେ ଏହା ସୋମଲତା ଅର୍ଥରେ ପ୍ରଯୁଜ୍ୟ ହେବା ଉଚିତ ଥିଲା । ସେହିପରି ଗୋ, ଅଶ୍ୱ, ଅଗ୍ନି ଏବଂ ମରୁତ ଆଦି ବୈଦିକ ଶବ୍ଦର ଇଂରାଜୀ ଅନୁବାଦ କାଓ, ହର୍ସ୍, ଫାୟାରଗଡ଼, ଷ୍ଟର୍ମ୍‌ଗଡ଼ ରୂପରେ ରୂଢ଼ି ଅର୍ଥରେ ସେମାନେ ମନ୍ତ୍ରଗୁଡ଼ିକର ସାତ୍ତ୍ୱିକତା ଓ କଲ୍ୟାଣକାରୀ ଭାବନାକୁ ନଷ୍ଟ କରିଦେଲେ ।

ଆର. ଟି. ଏଚ୍. ଗ୍ରିଫିଥ, ୧୮୮୯ରେ ଋଗବେଦର ଇଂରାଜୀ ଅନୁବାଦ କଲେ । ଋଗ୍‌ବେଦର 'ଦାସପତ୍ନୀ ରହି ଗୋପାଃ' [୧. ୩୨. ୧୧] ମନ୍ତ୍ରଟିର ଟିପ୍ପଣୀରେ ଲେଖିଲେ— ଜଙ୍ଗଲୀ, ଦସ୍ୟୁ ଭାରତରେ ଅନାର୍ଯ୍ୟଙ୍କ ମଧ୍ୟରେ କୌଣସି ଜଣେ ଅଟେ । 'ଆଭିଃ ସ୍ପୃଧଃ' [ଋକ୍ ୬. ୨୫. ୨] ଅନୁବାଦରେ ସେ 'ଟ୍ରାଇବ୍‌ସ ଅଫ୍ ଦାସଜ୍' ବା ଦାସଙ୍କ ଜାତି ବୋଲି ଶବ୍ଦ ଯୋଡ଼ିଦେଲେ । ଯେଉଁ କ୍ଷେତ୍ରରେ ମନ୍ତ୍ରର କୌଣସି ଅଂଶରେ ଜାତିର ବର୍ଣ୍ଣନା ନାହିଁ । 'ତ୍ୱଂ ତାଂ ଇନ୍ଦ୍ରୋଭୟାଂ

ଅଭିଶାନ୍' [ଋକ୍ ୭. ୩୩. ୩] ମନ୍ତ୍ର ଅନୁବାଦରେ ସେ ଲେଖିଲେ 'ବୋଥ୍ ରେସେସ୍' ବା ଦୁଇଜାତି । ମନ୍ତ୍ରରେ 'ଅଭସ୍ଥାନ୍ ଅମିଶାନ୍' ପାଠ ରହିଛି । ତାହାର ଅର୍ଥହେବ ଦୁଇ ପ୍ରକାର ଶବ୍ଦ । ଗ୍ରିଫିଥ ଏଥିରେ ଅମିଶର ଅର୍ଥ ଜାତି ବୋଲି କରିଛନ୍ତି । 'କୃଷ୍ଣା ଅସେଧଦେଯ ସଦମନୋ ଜାଃ' [ଋକ୍, ୭. ୪୭. ୨୯] ଟୀକାରେ ଗ୍ରିଫିଥ 'ଡାର୍କ ଏବ୍ଅରିଜିନେସ୍' ବା କଳାବର୍ଣ୍ଣର ମୂଳ ନିବାସୀ ବୋଲି ଲେଖିଛନ୍ତି । ଅଥଚ ବେଦରେ ମୂଳନିବାସୀ ବାଚକ କୌଣସି ଶବ୍ଦ ହିଁ ନାହିଁ ।

ଅନ୍ୟାନ୍ୟ ଶ୍ୱେତାଙ୍ଗ ବିଦ୍ୱାନ ଗ୍ରିଫିଥ ଆଦି ବିଦ୍ୱାନଙ୍କ ପଥରେ ଚାଲି ଋଗ୍ବେଦର 'ହିରଣ୍ୟଗର୍ଭ' ଶବ୍ଦଟିର ଅର୍ଥ—'ଗୋଲଡେନ୍ ଏଗ୍' ଓ 'କସ୍ମୈ ଦେବାୟ ହବିଷା ବିଧେମ' ର 'କସ୍ମୈ' ଶବ୍ଦଟିର ଅର୍ଥ 'ଟୁ ହୁଇଚ୍ ଗଡ୍' ବୋଲି ତ୍ରୁଟିପୂର୍ଣ୍ଣ ଅନୁବାଦର ଆଶ୍ରୟ ନେଇଛନ୍ତି । 'କସ୍ମୈ' ଅର୍ଥ ସୁ' ସ୍ୱରୂପ ପରମାତ୍ମାଙ୍କୁ ଶ୍ରଦ୍ଧା ଓ ଭକ୍ତି ଅର୍ପଣ କରିବା ଅର୍ଥରେ କୁହାଯାଇଛି । 'କା'ର ଅର୍ଥ ପ୍ରଜାପତି ପରମାତ୍ମା ଅଟେ । ଯେହେତୁ ଗୋପଥ ବ୍ରାହ୍ମଣ (୭. ୩)ରେ କୁହାଯାଇଛି "କୋ ବୈ ପ୍ରଜାପତିଃ" । ଏ ପ୍ରକାର ଅର୍ଥାନ୍ତର କରିବା ମଧ୍ୟରେ ସେମାନେ ଆମକୁ କହିବାକୁ ଚାହିଁଲେ ଯେ କେଉଁ ଦେବତାଙ୍କୁ ପୂଜା କରିବା ବିଧେୟ ତାହା ଆର୍ଯ୍ୟ ଜାତି ନିର୍ଣ୍ଣୟ କରିପାରୁ ନ ଥିଲେ ।

ଆମକୁ ବାଟବଣା କରିଦେବା ପାଇଁ ବନାରସ ଓ ଲାହୋରରେ ଶିକ୍ଷାନୁଷ୍ଠାନମାନ ଖୋଲାଯାଇଥିଲା । ବନାରସ କଲେଜର ଅଧ୍ୟକ୍ଷ ଭାବରେ ଗ୍ରିଫିଥ ଓ ଲାହୋରର ଓରିଏଣ୍ଟାଲ କଲେଜର ଅଧ୍ୟକ୍ଷ ଭାବରେ ଏ. ସି. ବୁଲନର ନିଯୁକ୍ତି ପାଇଥିଲେ । ଏହି କଲେଜରେ ସ୍ନାତକୋତ୍ତରରେ ଏମ୍. ଏ. ଉତ୍ତୀର୍ଣ୍ଣ ଛାତ୍ର ବିଶେଷତଃ ବ୍ରାହ୍ମଣ ଛାତ୍ରଙ୍କୁ ଉଚ୍ଚତମ ଛାତ୍ରବୃତ୍ତି ଦେଇ ଅକ୍ସଫୋର୍ଡ଼ ପଠାଯାଉଥିଲା । ଯେଉଁ ଛାତ୍ରମାନେ ଏହି ବିଦେଶୀ ଗୋରାଙ୍କ ମହାପ୍ରଭୁମାନଙ୍କର ଶିକ୍ଷା ନେଇ ଫେରି ଆସୁଥିଲେ ତାଙ୍କୁ ପ୍ରିନ୍ସିପାଲ ବା ଉଚ୍ଚକୋଟୀର ପ୍ରଫେସର ପଦ ପ୍ରାପ୍ତ ହେଉଥିଲା । ଲାହୋର ଓ ବନାରସ କଲେଜର ଅଧ୍ୟକ୍ଷ ବେଦର କ୍ଲାସ ସ୍ୱୟଂ ନେଉଥିଲେ । ସେଠାରେ ଅକ୍ସଫୋର୍ଡ଼ର ପାଠ୍ୟକ୍ରମ ଓ ପଠନ-ପାଠନବିଧି ପ୍ରଚଳିତ ଥିଲା । ଏପରି ନିରନ୍ତର ପ୍ରଚାର ଫଳରେ ଭାରତୀୟ ବିଦ୍ୱାନ ପାଶ୍ଚାତ୍ୟ ପଦ୍ଧତି ଦ୍ୱାରା ନିଜକୁ ଦୀକ୍ଷିତ କରି ନେଲେ ଓ ତାଙ୍କପରି ଓଲଟା ତର୍କ କରି ନିଜର ସଂସ୍କୃତି ଉପରେ ନିଜେ ହିଁ ସନ୍ଦେହ ଆରମ୍ଭ କରିଦେଲେ ।

୧୯୪୭ ଅଗଷ୍ଟ ୧୫ରେ, ଯେବେ ଇଂରେଜମାନେ ଭାରତ ଛାଡ଼ି ଚାଲିଗଲେ ସେମାନଙ୍କ ଛାଡ଼ି ଯାଇଥିବା ଶିକ୍ଷା ପ୍ରଣାଳୀ ଆମ ଶିକ୍ଷା କ୍ଷେତ୍ରରେ ଅନେକ କୁପରିଣାମ ସୃଷ୍ଟି କଲା । ଇଂରେଜ ଐତିହାସିକଙ୍କ ତତ୍ତ୍ୱର ଆଧାର ଉପରେ ଏହା ଆମେ କୋମଳମତି ସରଳ ବାଳକ ବାଳିକାମାନଙ୍କ ମୁଣ୍ଡରେ ପଶାଇ ଦେଲୁ, ଯେ ଆର୍ଯ୍ୟଗଣ କାସ୍ପିୟାନ ସାଗର ତଟରୁ ଆକ୍ରମଣକାରୀ ରୂପରେ ଆସି ଏଠାର ଆଦିମ ଅଧିବାସୀମାନଙ୍କୁ ଦାସ କଲେ । ବାସ୍ତବରେ ଆର୍ଯ୍ୟ ଓ ଦସ୍ୟୁ କୌଣସି ଜାତି ନ ଥିଲେ ନ ସେମାନଙ୍କ ମଧ୍ୟରେ ଯୁଦ୍ଧ ହେବାର ବର୍ଣ୍ଣନା ବେଦରେ ଅଛି । ବେଦରେ ଏ ଶବ୍ଦ ତ ଗୁଣବାଚକ ରୂପରେ ବ୍ୟବହୃତ ହୋଇଛି, ଜାତିବାଚକ ରୂପରେ ନୁହେଁ । ଏହା ସତ୍ତ୍ୱେ ସର୍ବପ୍ରଥମ ଏ କଥା 'କେମ୍ବ୍ରିଜ୍ ହିଷ୍ଟ୍ରି ଅଫ୍ ଇଣ୍ଡିଆ'ରେ ଲେଖା ଯାଇଥିଲା ଯେ ଆର୍ଯ୍ୟଗଣ ବାହାରୁ ଆସି ଭାରତର ମୂଳନିବାସୀ ଦ୍ରାବିଡ଼, କୋଲ, ଭିଲ, ସାନ୍ତାଳମାନଙ୍କ ସହ ସଂଗ୍ରାମ କଲେ ।

ଏହା ଅନୁଭବ କରି ଶ୍ରୀ ଅରବିନ୍ଦଙ୍କୁ 'ଫୋଓ୍ୱାର୍ଡ଼ ଟୁ ହ୍ୟୁମ୍ସ ଟୁ ଦ ମିଷ୍ଟିକ୍ ଫାୟାର୍'ରେ ଲେଖିବାକୁ ହେଲା - ୟୁରୋପୀୟ ବିଦ୍ୱାନଗଣ ବେଦର କର୍ମକାଣ୍ଡଗତ ପରମ୍ପରାକୁ ଗ୍ରହଣ କଲେ, କିନ୍ତୁ ଅନ୍ୟାନ୍ୟ ବ୍ୟାପାରରେ ସାୟଣାଚାର୍ଯ୍ୟଙ୍କୁ ସମ୍ପୂର୍ଣ୍ଣ ରୂପେ ବର୍ଜନ କଲେ ଏବଂ ସ୍ୱୀୟ ଇଚ୍ଛାନୁଯାୟୀ ଶବ୍ଦର ଧାତୁଗତ ଅର୍ଥ ଓ ବ୍ୟାଖ୍ୟା କରିବାକୁ ଲାଗିଲେ । ବୈଦିକ ମନ୍ତ୍ରାବଳୀର ଆନୁମାନିକ ଅର୍ଥ ପ୍ରସ୍ତୁତ କରିବାକୁ ଲାଗିଲେ ଏବଂ ସେ ସବୁର ଏପରି ଅର୍ଥ କଲେ ଯାହା ସମ୍ପୂର୍ଣ୍ଣ ସ୍ୱେଚ୍ଛାକୃତ ଓ କାଳ୍ପନିକ । ସେମାନେ ବେଦରେ ଭାରତର ଆଦିମ ଇତିହାସର ଅନୁସନ୍ଧାନ କରିବାକୁ ଲାଗିଲେ । ସେ ସମୟର ସମାଜ, ଅନୁଷ୍ଠାନ, ଆଚାର ପଦ୍ଧତି, ସଭ୍ୟତାର ଚିତ୍ର ସମ୍ବନ୍ଧେ ବିବରଣୀ ଖୋଜି ବସିଲେ । ଭାଷାଗତ ବୈଷମ୍ୟ ଉପରେ ସେମାନେ ଗୋଟିଏ ତତ୍ତ୍ୱର ଉଦ୍ଭାବନ କଲେ ତା' ହେଲା ଉତ୍ତର ଦିଗରୁ ଆର୍ଯ୍ୟମାନଙ୍କର ଭାରତ ଆକ୍ରମଣ, ଆର୍ଯ୍ୟଗଣ ଭାରତୀୟ ଦ୍ରାବିଡ଼ମାନଙ୍କୁ ଆକ୍ରମଣ କଲେ । କିନ୍ତୁ ଏ ପ୍ରକାର ଆକ୍ରମଣ ସମ୍ବନ୍ଧରେ ଭାରତୀୟଙ୍କ କୌଣସି ସ୍ମରଣ ବା ସଂସ୍କାର ନାହିଁ କିମ୍ବା ଭାରତର ମହାକାବ୍ୟ ବା ପ୍ରାଚୀନ ସାହିତ୍ୟରେ ଏହାର କୌଣସି ପ୍ରମାଣ ନାହିଁ ।

## ମେକେଲେ ମ୍ୟାକ୍ସମୁଲରଙ୍କୁ ଭେଟିଲେ—

ଯେଉଁ କେତେଜଣ ଇଂରେଜ ଭାରତ ପାଇଁ କିଛି ଚିନ୍ତା କରୁଥିଲେ ପୁନଶ୍ଚ ଇଂରେଜ ସାମ୍ରାଜ୍ୟବାଦର ମୂଳଦୁଆ ସୁଦୃଢ଼ କରିବା ପାଇଁ କିଛିଟା ଯୋଜନା ନିଜ ହାତକୁ ନେଇଥିଲେ ସେମାନଙ୍କ ମଧ୍ୟରେ ଥମାସ୍ ବେବିଙ୍ଗ୍‌ଟନ୍ ମେକ୍‌ଲେଙ୍କ

ନାମ ଇଂଲଣ୍ଡର ସାମ୍ରାଜ୍ୟବାଦୀ ଓ ଭାରତର ରାଷ୍ଟ୍ରବାଦୀ ଇତିହାସରେ ସର୍ବାଦୌ ସ୍ମରଣୀୟ ହୋଇ ରହିବ । ସେ ଭାରତକୁ ୧୮୩୪ରେ ଏକ ବଳିଷ୍ଠ ଯୋଜନା ନେଇ ପାଦ ବଢ଼ାଇଲେ ଓ ନିଶ୍ଚିତ ହୋଇ ଯାଇଥିଲେ ଯେ ଭାରତରେ ଚିରଦିନ ଶାସନ କରିବାକୁ ହେଲେ ଏ ଦେଶରେ ତାଙ୍କ ଧର୍ମ ବିସ୍ତାର କରିବାକୁ ହିଁ ହେବ । ଏ କଥା ଭାବିବା ପାଇଁ ତାଙ୍କ ପାଖରେ ପର୍ଯ୍ୟାପ୍ତ କାରଣ ଥିଲା ।

ମେକେଲେଙ୍କ ମା ସେଲିନାମିଲସ୍ ଜଣେ କ୍ୱାକର ପରିବାରର କନ୍ୟା ଥିଲେ । ସେ ନିଜେ ରେଭରେଣ୍ଡ୍ ଜୋନ୍ ମେକେଲେଙ୍କ ନାତି ଥିଲେ । ତାଙ୍କ ଅଜା ଖ୍ରୀଷ୍ଟଧର୍ମର ପ୍ରେସ୍‌ବାଇଟେରିୟାନ୍ ସମ୍ପ୍ରଦାୟ ଉପରେ ଆସ୍ଥା ରଖୁଥିଲେ । ମେକେଲେଙ୍କ ଶିକ୍ଷା ଦୀକ୍ଷା ଏପରି ଏକ ଖ୍ରୀଷ୍ଟିୟ ସଂସ୍ଥାରେ ହୋଇଥିଲା, ଯେଉଁ ସଂସ୍ଥା ଖ୍ରୀଷ୍ଟଧର୍ମର କୌଣସି ନିୟମ ଲଙ୍ଘନ କରିବାକୁ ମହାପାପ ବୋଲି ମନେ କରୁଥିଲା । ଏହାର ସଂସ୍ଥାପକ ଥିଲେ ସ୍ୱନାମୀ ଧର୍ମଯାଜକ ଜନ୍ କେଲଭିନ୍ । ଏ ସଂସ୍ଥା ନୀତିଗତ ଦୃଷ୍ଟିରୁ କେପରି ନିଷ୍ଠୁର ଥିଲା ତାହା ଜଣେ ଶିଶୁଙ୍କୁ ନିୟମ ଲଙ୍ଘନ ଅପରାଧରେ ଜୀବନ୍ତ ଦଗ୍ଧ କରି ଦେଇଥିବା ଉଦାହରଣରୁ ବେଶ୍ ଜଣାପଡ଼େ । ଏ ପ୍ରକାର ଏକ ରୂଢ଼ିବାଦୀ ଖ୍ରୀଷ୍ଟିୟ ସମ୍ପ୍ରଦାୟଭୁକ୍ତ ହୋଇ ସେଥିରେ ଦୃଢ଼ ଆସ୍ଥା ରଖୁଥିବାରୁ ସେ ସନ୍ଥ ମାଥିଉ ଉଲ୍ଲେଖ କରିଥିବା ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ ମହାବାକ୍ୟ [୨୮-୧୯-୨୦] "ଅତଏବ ତୁମ୍ଭେମାନେ ଯାଇ ସମସ୍ତ ଜାତିର ଲୋକଙ୍କୁ ପିତା, ପୁତ୍ର ଓ ପବିତ୍ର ଆତ୍ମାଙ୍କ ନାମରେ ବାପ୍ତିସ୍ମ ଦେଇ, ମୁଁ ତୁମ୍ଭମାନଙ୍କୁ ଯେଉଁ ଯେଉଁ ଆଜ୍ଞା ଦେଇଅଛି, ସେହି ସବୁ ପାଳନ କରିବାକୁ ଶିକ୍ଷା ଦେଇ ସେମାନଙ୍କୁ ଶିଷ୍ୟ କର; ଆଉ ଦେଖ, ଯୁଗାନ୍ତ ପର୍ଯ୍ୟନ୍ତ ସବୁ ଦିନ ମୁଁ ତୁମ୍ଭମାନଙ୍କ ସଙ୍ଗେ ସଙ୍ଗେ ଅଛି", ବାକ୍ୟଟି ଯେପରି ସଫଳ ହୁଏ ସେଥିପାଇଁ ସେ ଖ୍ରୀଷ୍ଟଧର୍ମ ରୂପି ଲଙ୍ଗଳରେ ହାତ ଦେଲେ । ଯେହେତୁ ଶାସ୍ତ୍ରରେ କୁହାଯାଇଛି— ଯେ ଲଙ୍ଗଳରେ ହାତ ଦେଇ ପଛକୁ ଚାହେଁ, ସେ ଈଶ୍ୱରଙ୍କ ରାଜ୍ୟର ଯୋଗ୍ୟ ନୁହେଁ । [ଲୂକ ୯-୬୨] ।

ଯେତେବେଳେ ମେକେଲେ ଅଣତ୍ରିଶ ବର୍ଷ ବୟସର ଜଣେ ଅନୁଭବୀ ଯୁବକ, ସେ ସମୟରେ ସେ ଭାରତର ଶିକ୍ଷା ସମ୍ପର୍କରେ 'ହିଷ୍ଟ୍ରିକାଲ୍ ଏସେଜ୍'ରେ ତାଙ୍କ ସୁଚିନ୍ତିତ ମତ ବ୍ୟକ୍ତ କରିଥିଲେ ଯେ ଲୋକଙ୍କର ଶିକ୍ଷା ଖ୍ରୀଷ୍ଟିୟାନଙ୍କ ସାମାନ୍ୟ ସିଦ୍ଧାନ୍ତ ଅନୁସାରେ ହେବା ଉଚିତ । ଏହି ଶିକ୍ଷା ସେହି ମୁଖ୍ୟ ଉଦ୍ଦେଶ୍ୟ ପୂର୍ତ୍ତି ପାଇଁ ଯେପରି ମୂଲ୍ୟବାନ ସିଦ୍ଧ ହୁଏ, ଯେଉଁଥିପାଇଁ ସରକାର ଗଠିତ ହୋଇଛି···ନିଶ୍ଚିତରୂପେ ଏହି ଦେଶ [ଭାରତବର୍ଷ] ଅଟେ, ଯେଉଁଠି ଖ୍ରୀଷ୍ଟଧର୍ମ ପ୍ରଚାରର ଆବଶ୍ୟକତା ରହିଛି ।

ମେକେଲେଙ୍କ ସମୟରେ ଇଂଲଣ୍ଡର ପ୍ରଧାନ ମନ୍ତ୍ରୀ ଥିଲେ ପାଲମରଷ୍ଟନ୍ । ସେ ସେଣ୍ଟଜେନ୍ କଲେଜର ଜଣେ ଅଧ୍ୟାପକ ଗ୍ରାଣ୍ଟ ହିସାବରେ କେଲଭିନଷ୍ଟଙ୍କ ପରି ଧର୍ମାନ୍ଧ ଥିଲେ । ସେ ମେକେଲେଙ୍କୁ ସବୁ ପ୍ରକାର ସହଯୋଗ ଦେଲେ । ତାଙ୍କର ଏକାନ୍ତ କାମ୍ୟଥିଲା ଭାରତରେ କିପରି ଖ୍ରୀଷ୍ଟଧର୍ମ ପ୍ରଚଳିତ ହେବ । ୧୮୫୯ରୁ ୧୮୬୬ ମଧ୍ୟରେ ଲର୍ଡ଼ ହେଲିଫାକସ (ସାର୍ ଚାର୍ଲସ୍ ଉଡ଼) ଭାରତ ପାଇଁ ସେକ୍ରେଟାରୀ ହେଲେ । ସେ କହୁଥିଲେ—ଭାରତର ପ୍ରତ୍ୟେକ ଖ୍ରୀଷ୍ଟିୟାନ ବ୍ରିଟିଶ କମନ୍-ଓ୍ୱେଲ୍ଥ ପାଇଁ ଗୋଟିଏ ଗୋଟିଏ ଶକ୍ତିର ଓ ଶାନ୍ତିର ଉତ୍ସ ଅଟେ ।

ମେକେଲେ ପ୍ରଥମ ଥର ପାଇଁ ୧୮୩୪ରେ ଜଣେ ଲିଗାଲ୍ ଏଡ଼ଭାଇଜର ଭାବରେ ଭାରତ ଆସିଲେ । ଦୀର୍ଘ ଚାରିବର୍ଷ ଭାରତରେ ଅବସ୍ଥାନ ପରେ ସେ ଏ ଦେଶର ସମସ୍ତଙ୍କ ସହ ବେଶ୍ ପରିଚିତ ହୋଇଗଲେ । ତାଙ୍କ ପାଖରେ ଶକ୍ତିଶାଳୀ ଇଂରାଜୀ ଭାଷାର ଜ୍ଞାନ ମଧ୍ୟ ଥିଲା । ଏହି ସମୟରେ ତାଙ୍କ ପିତାଙ୍କ ପାଖକୁ ଲେଖିଥିବା ପତ୍ରଗୁଡ଼ିକ ପାଠକଲେ ଜଣାପଡ଼େ ଇଂରାଜୀ ଶିକ୍ଷା ପ୍ରବର୍ତ୍ତନ କରିବାରେ ତାଙ୍କର ମହାନ ଉଦ୍ଦେଶ୍ୟ ଥିଲା ଏ ଦେଶକୁ ଖ୍ରୀଷ୍ଟିୟକରଣ କରିବା ଏବଂ ଏହା ଫଳରେ ଦେଶରେ ଇଂରେଜ ଶାସନକୁ ସୁଦୃଢ଼ କରି ରଖିବା ।

ସେ କୋଲବ୍ରୁକ୍ଙ୍କ ପରି ଭାବୁଥିଲେ ଯେ ଏ ଦେଶରେ ଦୀର୍ଘଦିନ ଶାସନ କରିବାକୁ ହେଲେ ଏଠାର ପୂର୍ବ ଧାର୍ମିକ ସଂସ୍କାରକୁ ନଷ୍ଟ କରିବାକୁହିଁ ହେବ । ସେ ଭାରତୀୟ ଜୀବନ ମୀମାଂସାକୁ ହସି ଉଡ଼ାଉଥିଲେ । ମାତ୍ର ଯେବେ ସେ ବୁଝିଗଲେ ଯେ ଏ ଦେଶର ଧର୍ମଶାସ୍ତ୍ର ନଷ୍ଟ ନ ହେଲେ ଖ୍ରୀଷ୍ଟଧର୍ମ ପାଇଁ କୌଣସି ସୁଗମ ପଥ ଖୋଲି ପାରିବ ନାହିଁ ତେବେ ସେ ଏପରି ଜଣେ ବିଦ୍ୱାନଙ୍କ ସନ୍ଧାନ କରିବାକୁ ଲାଗିଲେ ଯିଏ ଭାରତୀୟ ଶାସ୍ତ୍ରଗୁଡ଼ିକୁ ଅନର୍ଥ କରି ବ୍ୟାଖ୍ୟା କରି ପାରିବ । ଏହାହିଁ ହିନ୍ଦୁ ଧର୍ମକୁ ଧ୍ୱଂସ କରିବାର ଏକମାତ୍ର ମାରଣାସ୍ତ୍ର ଥିଲା ।

ସେହି ସମୟରେ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟରେ କୋଲୋନେଲ୍ ବୋଡ଼ନ୍ଙ୍କ ଦ୍ୱାରା 'ବୋଡ଼ନ୍ ଚେଆର୍ ଅଫ୍ ସାନ୍ସ୍କ୍ରିଟ' ଖୋଲା ଯାଇଥିଲା । 'ସାନ୍ସ୍କ୍ରିଟ—ଇଂଲିସ୍ ଡିକ୍ସିନାରୀ'ର ଭୂମିକାରେ ଏମ୍. ମୋନିଅର୍ ଉଇଲିୟମ୍ ଏହି ଚେଆରର ଉଦ୍ଦେଶ୍ୟ ସ୍ପଷ୍ଟ କରିବାକୁ ଯାଇ ଲେଖିଥିଲେ:—କୋଲୋନେଲ୍ ବୋଡ଼ନ ଅଗଷ୍ଟ ୧୫, ୧୮୧୧ରେ ମୁକ୍ତ ହସ୍ତରେ ଦାନ ଦେଇ ଏହି ବିଭାଗ ଏଥିପାଇଁ ଖୋଲିଛନ୍ତି ଯେ ଖ୍ରୀଷ୍ଟିୟାନ ଧର୍ମଗ୍ରନ୍ଥଗୁଡ଼ିକୁ ଏହି ସଂସ୍ଥା ସଂସ୍କୃତ ଭାଷାରେ ଅନୁବାଦ କରିବ, ଯାହାଫଳରେ ତାଙ୍କ ଦେଶବାସୀ ଭାରତୀୟ ଜନସାଧାରଣଙ୍କୁ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ କରିବା କାର୍ଯ୍ୟରେ ଅଗ୍ରସର ହୋଇ ପାରିବେ । 'ମୋଡ଼େନ୍ ଇଣ୍ଡିଆ ଏଣ୍ଡ

ଦ ଇନ୍‌ଡିଏନ୍‌ସ’ ପୁସ୍ତକର ତୃତୀୟ ସଂସ୍କରଣ [ପୃ. ୨୬୨]ରେ ମୋନିୟର୍‌ ଉଇଲିୟମ୍‌ ଏକଥା ଅତି ନିର୍ଲଜ ସହକାରେ କହିଥିଲେ କି—“ଯେବେ ବ୍ରାହ୍ମଣ୍ୟ ଧର୍ମର ପ୍ରବଳ ଦୁର୍ଗ ଉପରେ ଆକ୍ରମଣ କରି ତାକୁ ଘେରି ନିଆ ଯାଇ ସଫା କରିଦିଆଯିବ ଓ ଶେଷରେ ଖ୍ରୀଷ୍ଟଙ୍କ ସୈନିକଙ୍କଦ୍ୱାରା ସର୍ବଥା ନଷ୍ଟ କରି ଦିଆଯିବ ତେବେ ଖ୍ରୀଷ୍ଟଧର୍ମର ବିଜୟ ମହତ୍ତ୍ୱପୂର୍ଣ୍ଣ ଓ ସଫଳ ହେବ।” ଏ ପ୍ରକାର ଅଭିମତ ଦେବାର ଅଭିପ୍ରାୟ ହେଲା ବୋଡ଼ନ୍‌ ଚେଆର୍‌ର ବିଦ୍ୱାନଗଣ ନିଜ ଅନ୍ନଦାତାଙ୍କ ପ୍ରତି ସମ୍ପୂର୍ଣ୍ଣ ବିଶ୍ୱସ୍ତ ବୋଲି ଦର୍ଶାଇବା।

ଏହି ଅନୁସନ୍ଧାନ ବିଭାଗର ଅଧ୍ୟକ୍ଷ ହେଲେ ଏ. ଏ. ମେକ୍‌ଡୋନାଲ୍‌ଡ଼। ସେ ନିଜର ସିଦ୍ଧାନ୍ତକୁ ସ୍ଥାୟୀ ରୂପରେ ପ୍ରଚଳିତ କରିବାକୁ ବେଦର ଛାତ୍ରଙ୍କ ପାଇଁ ‘ବୈଦିକ ରିଡର ଫର୍‌ ଷ୍ଟୁଡେଣ୍ଟ’; ‘ବୈଦିକ ଗ୍ରାମାର’ ଓ ‘ବୈଦିକ ମାଇଥୋଲୋଜୀ’ ନାମରେ ତିନୋଟି ଗ୍ରନ୍ଥ ଲେଖିଲେ। ୧୯୧୨ରେ ମେକଡୋନାଲ୍‌ଡ଼ ଓ କୀଥ୍‌ଙ୍କ ସହଯୋଗରେ ‘ବୈଦିକ ଇନ୍‌ଡେକ୍ସ’ ଶୀର୍ଷକ ଗ୍ରନ୍ଥ ବହୁ ପରିଶ୍ରମରେ ଲେଖାଯାଇଥିଲା। ଏ ଗ୍ରନ୍ଥଟିରେ ସମଗ୍ର ବେଦର ଶବ୍ଦଗୁଡ଼ିକର ବ୍ୟାଖ୍ୟା କରାଯାଇଛି। ବୈଦିକ ପଦଗୁଡ଼ିକ ବ୍ୟକ୍ତି ବିଶେଷ ଭାବରେ ବ୍ୟାଖ୍ୟା କରି ଏହାର ପ୍ରକୃତ ଅର୍ଥ କରିବାକୁ ପ୍ରୟାସ କରିନାହାନ୍ତି। ଏଣୁ ବୈଦିକ ସାହିତ୍ୟର ପୁସ୍ତକାଳୟରେ ଏ ଗ୍ରନ୍ଥଟି ଅଯଥା କିଛି ସ୍ଥାନ ଅଧିକାର କରିନେଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ। ଏହା କି ପ୍ରକାର ଅପରିପକ୍ୱ ଓ ତ୍ରୁଟିପୂର୍ଣ୍ଣ ଗ୍ରନ୍ଥ ତାହା ଦର୍ଶାଇବାକୁ ଯାଇ ଆଚାର୍ଯ୍ୟ ବୈଦ୍ୟନାଥ ଶାସ୍ତ୍ରୀ “ବୈଦିକ ଇତିହାସ ବିମର୍ଶ’ରେ ଏହାକୁ ପରୀକ୍ଷାକରି ପ୍ରମାଣ କରି ଦେଇଛନ୍ତି ଏହାର କୌଣସି ଶବ୍ଦ ମଧ୍ୟ ବିବେଚନା ଯୋଗ୍ୟ ନୁହେଁ। ଏହା କି ପ୍ରକାର ଗ୍ରନ୍ଥ ଏହାର ସୂଚନା ଏକ ଅନ୍ୟ ପ୍ରବନ୍ଧର ବିଷୟବସ୍ତୁ ହେବ। ତେବେ ଏଠି ଏତିକି କହିଲେ ଯଥାର୍ଥ ହେବ ଯେ ଏହା ତାଙ୍କର ଅକ୍ଳାନ୍ତ ପରିଶ୍ରମର ଫଳ ଯାହା ସତ୍ୟତା ସମ୍ମୁଖରେ ନିଷ୍ଫଳ ପ୍ରୟାସ ପରି ନିଷ୍ପ୍ରଭ ଜଣାପଡ଼େ।

ତତ୍କାଳୀନ ଜର୍ମାନୀର ସ୍ଥିତି ଠିକ୍‌ ନ ଥିଲା। ମେକସ୍‌ମ୍ୟୁଲରଙ୍କୁ ଘୋର ଆର୍ଥିକ ଅନାଟନ ଦେଇ ଗତି କରିବାକୁ ପଡ଼ୁଥିଲା। ପ୍ରାରମ୍ଭିକ ଜୀବନରେ ସେ ସଂସ୍କୃତ ଅଧ୍ୟୟନ କରିଥିଲେ ଓ ୧୮୪୫ରେ ସେ ପେରିସ୍‌ରେ ଜଣେ ସାଧାରଣ କିରାଣୀ ଭାବରେ ଅନ୍ୟପାଇଁ ସଂସ୍କୃତ ପାଣ୍ଡୁଲିପିର ନକଲ କରିବା କାର୍ଯ୍ୟ କରୁଥିଲେ। ଏହି ବିବଶ ପରିସ୍ଥିତିର ସୁଯୋଗ ନେବାର ସୁଅବସର ମେକ୍‌ଲେଙ୍କୁ ମିଳିଲା। ସେ ଡିସେମ୍ବର ୨୮, ୧୮୫୫ରେ ମ୍ୟାକ୍‌ସ୍‌ମ୍ୟୁଲରଙ୍କ ସହ ସାକ୍ଷାତ କଲେ। ଯେଉଁ ସମୟରେ ମେକେଲେ ଜଣେ ଅନୁଭବୀ ୫୫ ବର୍ଷ ବୟସ୍କ

କୂଟନୀତିଜ୍ଞ ଥିଲେ ସେ ସମୟରେ ମ୍ୟାକସ୍‌ମୂଲ୍ଲର ମାତ୍ର ୩୨ ବର୍ଷ ବୟସର ଅନୁଭବହୀନ ଯୁବକ । ଏହାକୁ ଶୁଭ ସାକ୍ଷାତକାର କହିବା ଅପେକ୍ଷା ଅଶୁଭଭେଟ କହିଲେ ଯଥାର୍ଥ ହେବ । କାରଣ ମ୍ୟାକ୍‌ସମୂଲ୍ଲର ଏ ସମ୍ପର୍କରେ ଲେଖିଲେ—ପ୍ରତ୍ୟେକ ଦୃଷ୍ଟିରୁ ମେକେଲେ ତାଙ୍କ ଉପରେ କର୍ତ୍ତୃତ୍ୱ ବିସ୍ତାର କରିଥିଲେ । ମେକେଲେ ତାଙ୍କୁ ଅନେକ ଆଶାର ସ୍ୱପ୍ନ ଦେଖାଉଥିଲେ ।

ମ୍ୟାକ୍‌ସମୂଲ୍ଲର ସ୍ପଷ୍ଟ ଭାବରେ ଅନୁଭବ କରୁଥିଲେ ଯେ ଏହା ତାଙ୍କ ବ୍ୟକ୍ତିତ୍ୱ ଓ ମୌଳିକତାକୁ ନଷ୍ଟ କରିଦେବ, ତଥାପି ସେ ଆଗାମୀ କାଳର ରଙ୍ଗୀନ୍ ସ୍ୱପ୍ନରେ ନିଜକୁ ମେକେଲେଙ୍କ ପାଖରେ ବିକ୍ରୟ କରିବାକୁ ବାଧ୍ୟ ହେଲେ । କେବଳ ସେ ଆଶାରେ ଚତୁର ନ ଥିଲେ ବରଂ ସେ ଏଥିପାଇଁ ଦାୟୀ ମଧ୍ୟ ଥିଲେ । ସେ ଲଣ୍ଡନରେ ଅନ୍ୟଜଣେ ଜର୍ମାନ ମିଂବନ୍‌ସନ୍ ଓ ପ୍ରଫେସର ଉଲସନ୍‌ଙ୍କ ସାହାଯ୍ୟରେ ଇଷ୍ଟ ଇଣ୍ଡିଆ କମ୍ପାନୀ ପାଇଁ ଋଗ୍‌ବେଦ ଅନୁବାଦ କରିବାର କାର୍ଯ୍ୟ ପାଇଗଲେ । ପ୍ରତ୍ୟେକ ଅନୁବାଦ ପୃଷ୍ଠାପାଇଁ ସେ ପାରିଶ୍ରମିକ ଚାରି ପାଉଣ୍ଡ ପାଉଥିଲେ ।

ମ୍ୟାକସମୂଲ୍ଲର ମେକେଲେଙ୍କ ସହ ସାକ୍ଷାତ କରି ପଶ୍ଚାତ୍ତାପ କଲେ । ସେ ଲେଖିଲେ – "ଆଇ ୱେଣ୍ଟ ବେକ୍ ଟୁ ଅକ୍‌ସଫୋର୍ଡ ଏ ସେଡର୍ ମେନ୍ ଏଣ୍ଡ୍ ଏ ୱାଇଜର ମେନ୍ ।" ସେ ଅକ୍‌ସଫୋର୍ଡକୁ ଜଣେ ଦୁଃଖୀ ଓ ଜଣେ ଜ୍ଞାନୀ ହିସାବରେ ଫେରି ଆସିଲେ । ଦୁଃଖର କାରଣ ଆଉ କିଛି ନ ଥିଲା । ସେ ଜଣେ ସ୍ୱତନ୍ତ୍ର ବିଚାରବାନ ବିଦ୍ୱାନ ହିସାବରେ ଆଉ ଜଣେ କୂଟନୀତିଜ୍ଞଙ୍କ ଜାଲରେ ପଡ଼ିଗଲେ । ମାତ୍ର ଅନ୍ୟଦୃଷ୍ଟିରୁ ସେ ନିଜକୁ ଜ୍ଞାନୀ ମନେକରିବାର କାରଣ ସେ ଜାଣିଥିଲେ ଯେ ମେକେଲେଙ୍କଦ୍ୱାରା ତାଙ୍କର ଆର୍ଥିକ ସ୍ଥିତି ଓ ଇଂଲଣ୍ଡରେ ପ୍ରତିଷ୍ଠା ବଢ଼ିବ । ପ୍ରକୃତରେ ସେଇଦିନ ଜଣେ ବିଦ୍ୱାନଙ୍କ ମୃତ୍ୟୁ ହୋଇଗଲା ଏବଂ ଟଙ୍କା ଓ ସ୍ୱାର୍ଥକୁ ଜାବୁଡ଼ି ଧରିଥିବା ଆଉଜଣେ ମ୍ୟାକ୍‌ସମୂଲ୍ଲର ଅକ୍‌ସଫୋର୍ଡରେ ଜନ୍ମନେଇ ସାରିଥିଲା । ଦୋଷ ତାଙ୍କର ନ ଥିଲା, ଥିଲା ତାଙ୍କ ବୟସର । ସେ ଥିଲେ ଜଣେ ଉଦୀୟମାନ ଯୁବକ । ପ୍ରତ୍ୟେକ ଯୁବକ ମନରେ ଲୋକୈଷଣାର ଲାଳସା ଥାଏ । ସେଥିରୁ ମ୍ୟାକ୍‌ସମୂଲ୍ଲର ବଞ୍ଚିତ ନ ଥିଲେ । ସେକସ୍‌ପିୟରଙ୍କ ଭାଷାରେ କେତେକ ମହତ ହୋଇ ଜନ୍ମନେଇଥାନ୍ତି, କେତେକ ମହାନତାକୁ ପ୍ରାପ୍ତ କରିଥାନ୍ତି ଓ କେତେକଙ୍କ ଉପରେ ମହାନତାକୁ ଲଦିଦିଆ ଯାଇଥାଏ । ଏହି ଉକ୍ତିଟି ଯଦି ପ୍ରକୃତରେ ସତ୍ୟ ହୋଇଥାଏ ମ୍ୟାକ୍‌ସମୂଲ୍ଲରଙ୍କ ଉପରେ ମହାନତାକୁ ମେକେଲେ ଲଦି ଦେଇଥିଲେ କହିବା ଠିକ୍ ହେବ ।

୧୮୬୦ରେ ସେ ବୋଡ଼େନ ପ୍ରଫେସର ଅଫ୍ ସାନ୍ସ୍କ୍ରିଟ୍ର ଜଣେ ଯୋଗ୍ୟ ପ୍ରାର୍ଥୀ ଥିଲେ ମଧ୍ୟ ବିଶ୍ୱବିଦ୍ୟାଳୟ ତାଙ୍କୁ ନିର୍ବାଚିତ କଲା ନାହିଁ । କାରଣ ତାଙ୍କର ଅକ୍ସଫୋର୍ଡ ଥିଓଲୋଜି ସହ ମତପାର୍ଥକ୍ୟ ଥିଲା । ସେ ଇଂରେଜ ନ ଥିଲେ ଓ ଜର୍ମାନର ରେସନାଲିଜିମ୍ ଉପରେ ବିଶ୍ୱାସ କରୁଥିଲେ । ଧର୍ମମତରେ ସେ ଉଦାରପନ୍ଥୀ ଥିଲେ । ଏହାସତ୍ତ୍ୱେ ଅକ୍ସଫୋର୍ଡ ୧୮୬୮ରେ ତାଙ୍କପାଇଁ ତୁଳନାତ୍ମକ ଭାଷାବିଜ୍ଞାନର ଏକ ଚେଆରରେ ତାଙ୍କୁ ଅଲଙ୍କୃତ କଲେ ଏବଂ ସେଠି ହିଁ ସେ "ସେକ୍ରେଡ୍ ବୁକ୍ସ ଅଫ୍ ଦ ଇଷ୍ଟ" ପ୍ରକାଶନ କରିବାର ଅବସର ପାଇଲେ ।

ଇଷ୍ଟଇଣ୍ଡିଆ କମ୍ପାନି ତାଙ୍କୁ ପ୍ରଚୁର ଅର୍ଥ ସାହାଯ୍ୟ କଲେ । ବେଦାଦି-ଶାସ୍ତ୍ରଗ୍ରନ୍ଥକୁ ବିକୃତିପୂର୍ଣ୍ଣ ଭାବରେ ଅନୁବାଦ କରିବାରେ ସେ ମଧ୍ୟ ନିଜର ବିବେକର ଆତ୍ମବିକ୍ରୀରକୁ ସ୍ୱାର୍ଥର ଯଜ୍ଞରେ ଆହୁତି ଦେଇ ସାରିଥିଲେ । ସେ ଏଇଠି ଭୁଲିଗଲେ ଯେ ସତ୍ୟକୁ ପ୍ରକାଶ କରିବା ଜଣେ ଉପଯୁକ୍ତ ବିଦ୍ୱାନର କର୍ତ୍ତବ୍ୟ । ତାଙ୍କ ମନରେ ଖ୍ରୀଷ୍ଟଧର୍ମ ପ୍ରତି ସୁପ୍ତଶ୍ରଦ୍ଧା ଜାଗ୍ରତ ହୋଇ ସାରିଥିଲା । ସେ ନିଜ ପ୍ରାଣପ୍ରିୟା ପତ୍ନୀଙ୍କୁ ୧୮୬୬ରେ ଏକ ପତ୍ର ଲେଖିଲେ—ବେଦର ଅନୁବାଦ କରିବାରେ ମୋର ଏହି ସଂସ୍କରଣ ଭବିଷ୍ୟତ ଭାରତର ଭାଗ୍ୟ ଓ ଲକ୍ଷ ଲକ୍ଷ ଭାରତୀୟଙ୍କ ଆତ୍ମିକ ବିକାଶ ଉପରେ ପ୍ରଭାବ ପକାଇବ । ବେଦ ସେମାନଙ୍କର ଧର୍ମର ମୂଳ ଅଟେ ଏବଂ ସେମାନଙ୍କୁ ଏହି ମୂଳର ସ୍ୱରୂପକୁ ଦେଖାଇବା ଓ ବିଗତ ତିନି ସହସ୍ର ବର୍ଷର ସେମାନଙ୍କର ସମସ୍ତ ସାହିତ୍ୟକୁ ସମୂଳେ ଉତ୍ପାଟନ କରିବା ପାଇଁ ଏହା ଏକମାତ୍ର ଉପାୟ ଅଟେ । (ଲାଇଫ୍ ଏଣ୍ଡ ଲେଟରସ୍ ଅଫ୍ ଫ୍ରେଡ଼ରିକ୍ ମେକସ୍ମୂଲର)

ଇଷ୍ଟ୍ ଇଣ୍ଡିଆ କମ୍ପାନି ଜଣେ ଯଥାର୍ଥ ବ୍ୟକ୍ତିଙ୍କୁ ଲାଭ କରି ନିଜକୁ ଧନ୍ୟ ଧନ୍ୟ ମନେକଲା । ମେକସ୍ମୂଲର ମଧ୍ୟ ଇଂରେଜମାନଙ୍କର ସ୍ତାବକ ହୋଇ ଭାରତୀୟ ଧର୍ମ ଓ ସଂସ୍କୃତି ବିରୁଦ୍ଧରେ ଅନେକ ପତ୍ର ଲେଖି ସେମାନଙ୍କ ପାଖରୁ ବାହାବାହା ପାଇଲେ । ଡିସେମ୍ବର ୧୬, ୧୮୬୮ରେ ସେ ତତ୍କାଳୀନ ଭାରତ ସଚୀବ ଡ୍ୟୁକ୍ ଅଫ୍ ଅର୍ଗାଇଲ୍ଙ୍କୁ ଏହି ଅଭିପ୍ରାୟରେ ଏକ ପତ୍ର ଏହି ମର୍ମରେ ଲେଖିଲେ ଯେ ଭାରତର ଧର୍ମ ନଷ୍ଟ କରିବାରେ ମୁଁ ପୁରାପୁରି ଭାବରେ ଚେଷ୍ଟା କରିଛି ଏବଂ ଏହା ମଧ୍ୟ ନଷ୍ଟ ପ୍ରାୟ । ଏଥର ଏହାର ସ୍ଥାନ ଖ୍ରୀଷ୍ଟଧର୍ମ ନେବା ଉଚିତ । ଯଦି ତାହା ନହୁଏ ତେବେ ଦୋଷ ମୋର ନୁହେଁ ଆପଣଙ୍କର ଅର୍ଥାତ୍ ଭାରତର ସଚୀବଙ୍କର ହିଁ ହେବ । ପତ୍ରଟିର ଅବିକଳ ବାକ୍ୟ ହେଲା—"ଦ ଏନ୍‌ସିଏଣ୍ଟ ରିଲିଜନ୍ ଅଫ୍ ଇଣ୍ଡିଆ ଇଜ୍ ଡୁମଡ୍ ଏଣ୍ଡ୍ ଇଫ୍ ଖ୍ରୀଷ୍ଟିୟାନିଟି

ଓଜ ନଟ୍ ଷ୍ଟେପ୍ ଇନ୍, ହୁଜ୍ ଫଲ୍ଟ ଉଇଲ ଇଟ୍ ବି ?” ଭାରତର ପ୍ରାଚୀନ ଧର୍ମ ନଷ୍ଟ ପ୍ରାୟ । ଯଦି ଖ୍ରୀଷ୍ଟଧର୍ମ ଏହି ସମୟରେ ସେଠାରେ ପ୍ରବେଶ କରି ସେହିସ୍ଥାନ ପୂରଣ ନ କରେ, ତେବେ କାହାର ଦୋଷ ହେବ ?

ଏ ପ୍ରକାର ମନ୍ତବ୍ୟ କେବଳ ଖ୍ରୀଷ୍ଟଧର୍ମ ପ୍ରଚାରପାଇଁ ପ୍ରୋତ୍ସାହିତ କଲା ନାହିଁ ବରଂ ଇଂରେଜମାନଙ୍କୁ ଭାରତରେ ଖ୍ରୀଷ୍ଟଧର୍ମ ପ୍ରଚାର ପାଇଁ ପ୍ରେରଣା ଯୋଗାଇଲା । ଏହି ଉଦ୍ଦେଶ୍ୟପୂର୍ଣ୍ଣ କାର୍ଯ୍ୟ ପାଇଁ ତାଙ୍କର ଜଣେ ଘନିଷ୍ଠ ବନ୍ଧୁ ରେଭରେଣ୍ଡ ଏଡ୍‌ୱାର୍ଡ ବୌଭରୀ ପୁସେ ତାଙ୍କୁ କୃତଜ୍ଞତା ପୂର୍ବକ ପତ୍ର ଲେଖିଲେ— ଭାରତୀୟମାନଙ୍କୁ ଧର୍ମାନ୍ତରିତ କରିବାରେ ତୁମର ଏହି କାର୍ଯ୍ୟ ଏକ ନୂତନ ଯୁଗର ଆହ୍ୱାନ କରିବ । ଅକ୍‌ସଫୋର୍ଡ ସର୍ବଦା ତୁମ୍ଭ ପାଖରେ କୃତଜ୍ଞ ରହିବ, କାରଣ ତୁମର ଆଶ୍ରୟ ଦେଇ ଭାରତୀୟଙ୍କୁ ଖ୍ରୀଷ୍ଟିୟାନ କରିବାରେ ପ୍ରଥମ ଓ ଅତ୍ୟାବଶ୍ୟକୀୟ କାର୍ଯ୍ୟ ସୁଗମ ହେଲା । ଏହା ଫଳରେ ପୁରାତନ ମିଥ୍ୟା ଧର୍ମ ସହିତ ସତ୍ୟ ଧର୍ମ (ଖ୍ରୀଷ୍ଟଧର୍ମ)ର ତୁଳନା କରି ଆମ୍ଭେମାନେ ପ୍ରସନ୍ନ ହେବା ପାଇଁ ସମର୍ଥ ହେବୁ ।

ପ୍ରତ୍ୟେକ କ୍ଷେତ୍ରରୁ ସେ ଖ୍ରୀଷ୍ଟିୟାନମାନଙ୍କର ପ୍ରେରଣା ଓ ପ୍ରଶଂସା ପାଇଲେ । ବାଇବେଲର ସିଦ୍ଧାନ୍ତ ଉପରେ ସେ କୌଣସି ଶଙ୍କା ଉଠାଇବାକୁ ଉଚିତ ମନେ କରୁ ନ ଥିଲେ କିମ୍ବା ଏ ସମ୍ବନ୍ଧରେ କାହାରି ଅଭିମତ ଶୁଣିବାକୁ ସେ ପ୍ରସ୍ତୁତ ନ ଥିଲେ । ଡା: ସ୍ପିଗେଲ୍ ନାମକ ଜଣେ ଜର୍ମାନ ବିଦ୍ୱାନଙ୍କ ସନ୍ଦେହ ହେଲା ଯେ ବାଇବେଲର ସୃଷ୍ଟିତତ୍ତ୍ୱ ନିଶ୍ଚୟ କୌଣସି ଅନ୍ୟ ଧର୍ମରୁ ଅଣାଯାଇଛି । ଏ ପ୍ରକାର ଅଭିମତ ଶୁଣି ମ୍ୟାକ୍‌ସମୂ୍ୟଲର ଜଳି ଉଠିଲେ, “ବାଇବେଲ ସମାଲୋଚନାର ଉଦ୍‌ବେଳିତ ସାଗରରେ ସ୍ପିଗେଲ୍ ଯେଉଁ କ୍ରିୟାଶୀଳ ଉପାଦାନ-ଗୁଡ଼ିକୁ ବିକ୍ଷିପ୍ତ କରିଛନ୍ତି ସେଥିପାଇଁ ତାଙ୍କୁ ବଳିଷ୍ଠ ଯୁକ୍ତି ଏବଂ ହେତୁର ଜାଗ୍ରତ ବାହିନୀ ଆବଶ୍ୟକ କାରଣ ତାଙ୍କ ପରି ଲେଖକ ସଚେତନ ପାଠକମାନଙ୍କଠାରୁ ଦୟା ବା ଅନୁକମ୍ପା କେବେ ହେଲେ ଆଶା କରି ନ ପାରନ୍ତି—ନା ତାଙ୍କ ପାଇଁ ତାହା ଆଶା କରିବା ମଧ୍ୟ ସର୍ବାଦୌ ଅଶୋଭନୀୟ ।” [ମ୍ୟାକ୍‌ସମୂ୍ୟଲରଙ୍କ ଚିପ୍‌ସ୍ ଫ୍ରମ ଏ ଜର୍ମାନ ୱାର୍କସପ’ ପୃ-୧୪୭]

ସେତିକରେ ସେ କ୍ଷାନ୍ତ ହେଲେ ନାହିଁ । ନିଜ ଶକ୍ତି ଅନୁସାରେ ଖ୍ରୀଷ୍ଟଧର୍ମର ପ୍ରଚାର ଓ ପ୍ରସାରର ଦାୟିତ୍ୱ ସେ ନିଜ ହାତକୁ ନେଲେ । ଏହା ଏନ୍. କେ. ମଜୁମ୍‌ଦାର ନାମକ ଜଣେ ବ୍ରହ୍ମସମାଜୀଙ୍କ ପାଖକୁ ଲେଖିଥିବା ପତ୍ରରୁ ଧରାପଡ଼େ; ଯାହା ସେ ୧୮୯୯ରେ ଲେଖିଥିଲେ – ତୁମେ ଜାଣ ଅନେକ ବର୍ଷ ହେଲା ମୁଁ ଭାରତୀୟ ଲୋକପ୍ରିୟ ଧର୍ମରେ ତୁମର ସଂସ୍କାର ଆଣିଥିବା ଚେଷ୍ଟାକୁ ଲକ୍ଷ୍ୟ କରିଛି

ଯା' ଫଳରେ ଅନ୍ୟାନ୍ୟ ଧର୍ମର ପତନ ଓ ପୂର୍ଣ୍ଣତାରେ କେବଳ ଖ୍ରୀଷ୍ଟଧର୍ମର ସର୍ବୋପରିବର୍ତ୍ତୀ ହୋଇ ପାରିବ । ପ୍ରଥମ କଥା ଯାହା ତୁମକୁ ନିଶ୍ଚିତ କରିବାକୁ ହେବ ତା'ହେଲା ତୁମର ପ୍ରାଚୀନ ଧର୍ମକୁ ତୁମେ କେତେ ଦୂର ଇଚ୍ଛାନୁକୃତ ତ୍ୟାଗକରି ପାରିବ । ଯଦି ପ୍ରାଚୀନତା ଦୃଷ୍ଟିରୁ ସମସ୍ତ ମିଥ୍ୟା ବୋଲି ଧରି ନ ପାର ତାହେଲେ ମଧ୍ୟ ଏହାର ବହୁ ଦେବତାବାଦ, ମୂର୍ତ୍ତିପୂଜା ଏବଂ ବିସ୍ତୃତ ବଳିପ୍ରଥା ଆଦିକୁ ତୁମେ ବହୁ ପରିମାଣରେ ତ୍ୟାଗ କରିଛ । ଏଣୁ ତୁମେ ନୂତନ ନିୟମ ନିଅ ଓ ତୁମ ପାଇଁ ତାହା ପାଠକର ଏବଂ ତୁମେ ବିଚାର କର । ପ୍ରକୃତରେ ଖ୍ରୀଷ୍ଟଙ୍କ ବାକ୍ୟ ଯାହା ସେଥିରେ ଅଛି ତାହା ତୁମକୁ ସନ୍ତୋଷଜନକ ଲାଗୁଛି କି ନାହିଁ । ଖ୍ରୀଷ୍ଟ ତୁମ ପାଖକୁ ଆସିଛନ୍ତି ଯେପରି ସେ ଆମ ପାଖକୁ ସୁସମାଚାରଗୁଡ଼ିକର ହସ୍ତ ପୃଷ୍ଠାଗୁଡ଼ିକରେ ସ୍ଥିତ ହୋଇଛନ୍ତି । ଅନ୍ୟ ପ୍ରକାର ଆମେ ତାଙ୍କ ଉପରେ ଭାଷ୍ୟ କରିବୁ ତାହା ଆମର ବିଚାର କରିବାର ଅଧିକାର ବାହାରେ । ତୁମେ ଯଦି ତାଙ୍କ ଉପଦେଶ ଯାହା ଲେଖାଅଛି ତାହା ଗ୍ରହଣ କର ତାହାହେଲେ ତୁମେ ଜଣେ ଖ୍ରୀଷ୍ଟିୟାନ । ତୁମର ଓ ତୁମ ଦେଶବାସୀଙ୍କ ଯୀଶୁଖ୍ରୀଷ୍ଟଙ୍କ ଶରଣରେ ଆସିବାର ଯେଉଁ ଅସୁବିଧା ହେଉଛି ତାହା ମତେ ସ୍ପଷ୍ଟତଃ ବୁଝାଇ ଦିଅ ଓ ମୁଁ ନିଜ ଉତ୍ତରରେ ଯଥାଶକ୍ତି ଏହା ବୁଝାଇବାକୁ ଚେଷ୍ଟା କରିବି ଯେପରି ମୁଁ ଏବଂ ଅନେକେ ଯେଉଁମାନେ ମୋ ସହିତ ଏକମତ ତାଙ୍କୁ ଦେଖିଛନ୍ତି ଓ ସମାଧାନ ପାଇଛନ୍ତି । ମୋ ଦୃଷ୍ଟିରୁ ଭାରତ, ଅନ୍ତକାଳରେ ଏହାର ସର୍ବୋତ୍ତମ ଭାଗ, ଖ୍ରୀଷ୍ଟଧର୍ମରେ ପରିବର୍ତ୍ତିତ ହୋଇ ଯାଉଛି । ତୁମକୁ ଖ୍ରୀଷ୍ଟିୟାନ ହେବା ପାଇଁ ପ୍ରେରଣାର ମଧ୍ୟ ଆବଶ୍ୟକ ପଡ଼ୁନାହିଁ । ଏଣୁ ନିଜେ କାର୍ଯ୍ୟ କରିବାକୁ ମାନସିକ ପ୍ରସ୍ତୁତ ହୋଇଯାଅ । ତୁମ ପୂର୍ବଜଙ୍କଦ୍ୱାରା ସେତୁ ନିର୍ମାଣ ହୋଇ ସାରିଛି । ସାହସ ସହିତ ନିର୍ଭୟରେ ଆଗକୁ ବଢ଼ । ଯେପରି ଭାଙ୍ଗି ନ ପଡ଼ । ତୁମେ ଦେଖିବ କି ଅନ୍ୟ କୂଳରେ ତୁମକୁ ସ୍ୱାଗତ କରିବା ପାଇଁ ଅନ୍ୟମାନଙ୍କ ସହିତ ତୁମର ପୁରାତନ ସାଥୀ ଓ ପଡ଼ୋଶୀ କର୍ମୀ ମ୍ୟାକ୍ସମ୍ୟୁଲର ମଧ୍ୟ ଉପସ୍ଥିତ ଅଛନ୍ତି ଏବଂ ଏଥିରେ ଅତ୍ୟଧିକ ପ୍ରସନ୍ନ ମଧ୍ୟ ଆମେ ହେବୁ ।

ମ୍ୟାକ୍ସମ୍ୟୁଲର ବାରମ୍ବାର ଗୋଟିଏ କଥା ହିଁ ପ୍ରଚାର କରୁଥିଲେ । ଯେଉଁଥି ପାଇଁ ସେ ଅଭିପ୍ରେତ । ବାଇବେଲ ବିନା ଅନ୍ୟ କୌଣସି ପୁସ୍ତକକୁ ସେ ସତ୍ୟ ମାନିବାକୁ ପ୍ରସ୍ତୁତ ନ ଥିଲେ । ସେ ବିଶ୍ୱାସ କରୁଥିଲେ ଖ୍ରୀଷ୍ଟଙ୍କ ସମ୍ପର୍କରେ ସୁସମାଚାର ଗୁଡ଼ିକରେ କେବଳ ବିଶ୍ୱାସଯୋଗ୍ୟ ତଥ୍ୟ ସମାବେଶ ହୋଇଛି । ଏଥିପାଇଁ ସେ ଲେଖି ପାରିଲେ—ଆମଦ୍ୱାରା ବନ୍ଧ ବନ୍ଧା ହୋଇ ସାରିଲାଣି । ଯିଏ ଖ୍ରୀଷ୍ଟଧର୍ମ ଗ୍ରହଣ କରିବ ତାଙ୍କୁ ସ୍ୱାଗତ କରିବା ପାଇଁ ଅନ୍ୟ କୂଳରେ ତାଙ୍କ ସହିତ ଅନେକ ବନ୍ଧୁ ଅପେକ୍ଷା କରି ରହିବେ । ଏପରିକି ସେ ନିଜ ପୁଅ ପାଖକୁ ଏକ

ପତ୍ରରେ ଲେଖିଥିଲେ — ତୁ ଜାଣିବାକୁ ଚାହୁଁ ଯେ କୌଣସି ପ୍ରାଚୀନ ପୁସ୍ତକ ବିଷୟରେ ଅନ୍ୟ ଅପେକ୍ଷା ଶ୍ରେଷ୍ଠ ? ଏହା ଅନ୍ଧବିଶ୍ୱାସ ପରି ଶୁଣାଯାଇ ପାରେ ମାତ୍ର ମୁଁ ନୂତନ ନିୟମକୁ ହିଁ ସେଥିପାଇଁ ଗ୍ରହଣ କରୁଛି ।

## ମ୍ୟାକ୍ସମୂଲରଙ୍କ ବେଦଭାଷ୍ୟ :

ଶ୍ରୀଯୁକ୍ତ ରମେଶ ଚନ୍ଦ୍ର ଦତ୍ତ ଗ୍ୟୋଥେ ସୋସାଇଟିରେ ନଭେମ୍ବର ୨୩, ୧୯୦୦ରେ ଏକ ଅଭିଭାଷଣରେ ମ୍ୟାକ୍ସମୂଲରଙ୍କ ସମ୍ପର୍କରେ କହିଥିଲେ ଯେ ପ୍ରାଚୀନ ଭାରତୀୟ ସାହିତ୍ୟରେ ସେ ଜଣେ ଶ୍ରେଷ୍ଠ ଭାଷ୍ୟକାର ଏବଂ ଆଧୁନିକ ଭାରତର ବିଶ୍ୱସ୍ତ ବନ୍ଧୁ ଥିଲେ । ତାହା ପରି ଆହୁରି ଅନେକ ବରିଷ୍ଠ ଭାରତୀୟ ତାଙ୍କୁ ମହାନ ସଂସ୍କୃତଜ୍ଞ ବୋଲି ଅଭିମତମାନ ଦେଇଛନ୍ତି । ତେବେ ବହୁବାର ପ୍ରଚାରିତ ମିଥ୍ୟା ବହୁ ସମୟରେ ସତ୍ୟ ବୋଲି ସିଦ୍ଧ ହୋଇଥାଏ । ଏହା ଯେତେ କଷ୍ଟକର ମନେ ହେଲେ ମଧ୍ୟ ସତ୍ୟ ହେଲା ମ୍ୟାକ୍ସମୂଲର ଜଣେ ସଂସ୍କୃତ ବିଦ୍ୱାନର ଅଭିନୟ କରୁଥିଲେ । ଏହି ଅଭିନୟ କରିବା ମଧ୍ୟରେ ସେ ସଂସ୍କୃତ ସହ ପ୍ରତାରଣା କରିବାକୁ ମଧ୍ୟ ପଛାଇ ନ ଥିଲେ । ପଣ୍ଡିତ ଗୁରୁଦତ୍ତ ବିଦ୍ୟାର୍ଥୀ ଏହା ତାଙ୍କର ଭାଷ୍ୟର ଆଧାର ଉପରେ ପ୍ରମାଣ କରି ଦେଇଛନ୍ତି ଯେ ମ୍ୟାକ୍ସମୂଲରଙ୍କ ବେଦଭାଷ୍ୟ କେବଳ ତ୍ରୁଟିପୂର୍ଣ୍ଣ ନୁହେଁ ବରଂ ମିଥ୍ୟା ମଧ୍ୟ । ତାହା ଏତେ ଅସମ୍ବଦ୍ଧ, ଏତେ ଅସ୍ପଷ୍ଟ ଓ ଏତେ ବିରୁଦ୍ଧ ଯେ ଯଦି ଏହାକୁ କେବଳ ବ୍ୟାଖ୍ୟା ବୋଲି ମଧ୍ୟ ଧରି ନିଆଯାଏ ତା'ହେଲେ ମଧ୍ୟ ଏହା କୌଣସି ବିଷୟର ବର୍ଣ୍ଣନା ବୋଲି ବୁଝାଯାଇ ପାରିବ ନାହିଁ । ଉଦାହରଣ ସ୍ୱରୂପ ଋଗ୍‌ବେଦର ୧୬୨ ସୂକ୍ତ ପରୀକ୍ଷା କରାଯାଉ —

ମା ନୋ ମିତ୍ରୋ ବରୁଣୋ ଅର୍ଯ୍ୟମାୟୁରିନ୍ଦ୍ର ଋଭୁକ୍ଷା ମରୁତଃ ପରିଖ୍ୟନ୍ ।
ଯଦ୍ବାଜିନୋ ଦେବଜାତସ୍ୟ ସପ୍ତେଃ ପ୍ରବକ୍ଷ୍ୟାମୋ ବିଦଥେ ବୀର୍ଯ୍ୟାଣି ॥

ମ୍ୟାକ୍ସମୂଲର ଭାଷ୍ୟ କଲେ — ମିତ୍ର, ବରୁଣ, ଆର୍ଯ୍ୟମନ୍, ଆୟୁ, ଇନ୍ଦ୍ର, ଋଭୁଙ୍କ ସ୍ୱାମୀ ଓ ମରୁତ ଆମକୁ ବଳିଦାନ ପରେ ଦେବତାମାନଙ୍କ ଦ୍ୱାରା ଉତ୍ପନ୍ନ ବେଗବାନ ଘୋଡ଼ାର ଗୁଣଗାନ କରି ବିରକ୍ତ ନ ହୁଅନ୍ତୁ ।

ଉପର୍ଯ୍ୟୁକ୍ତ ବ୍ୟାଖ୍ୟା ବାସ୍ତବିକ ବୋଲି ସେତେବେଳେ ଧରାଯିବ ଯଦି ମ୍ୟାକ୍ସମୂଲର ଏହା ପ୍ରମାଣ କରି ଦିଅନ୍ତି ଯେ ବୈଦିକ ଯୁଗରେ ଆର୍ଯ୍ୟମାନେ ସେହି ମୂଢ଼ ବିଶ୍ୱାସର ଆଦର କରୁଥିଲେ କି ଅତୀତରେ ଏକ ବେଗବାନ ଘୋଡ଼ା ଦେବତାମାନଙ୍କଠାରୁ ଉତ୍ପନ୍ନ ହୋଇଥିଲା ଓ ମିତ୍ର, ବରୁଣ, ଆର୍ଯ୍ୟମନ, ଆୟୁ, ଇନ୍ଦ୍ର, ଋଭୁଙ୍କ ସ୍ୱାମୀ ଓ ମରୁତ ଦେବତା, ଯଜ୍ଞ ପରେ ବେଗବାନ ଘୋଡ଼ାର

ଗୁଣ ଶୁଣିବାକୁ ସ୍ୱର୍ଗଁ ନ ଥିଲେ, ନାହିଁକି ନା ଅନ୍ୟଥା ଭକ୍ତଙ୍କୁ ବରଦ ହେବା ପାଇଁ ତାଙ୍କ ପାଖରେ କୌଣସି କାରଣ ନ ଥିଲା । ଏହାର କୌଣସି ପକ୍ଷକୁ ମଧ୍ୟ ପ୍ରମାଣ କରିବା ସମ୍ଭବ ନୁହେଁ । 'ଦେବତାମାନଙ୍କଠାରୁ ଉତ୍ପନ୍ନ ବେଗବାନ ଅଶ୍ୱ'ର କଳ୍ପନା ପୂର୍ବରୁ ବର୍ଣ୍ଣିତ ଅଶ୍ୱମେଧକୁ ଯଦି ଉଦ୍ଦେଶ କରୁଥାଏ ତାହେଲେ ଅଶ୍ୱମେଧର ମିଥ୍ୟା କଳ୍ପନା ଠିକ୍ ଯେପରି ଉତ୍ପନ୍ନ ହୋଇଛି ସେପରି ମ୍ୟାକ୍ସମୂଲରଙ୍କର ଅନୁବାଦ ତୋଲି ବୁଝିବାକୁ ହେବ ।

ମ୍ୟାକ୍ସମୂଲରଙ୍କ ଧାରଣା ଯେ ମିତ୍ର ଦିବସର ଦେବତା, ବରୁଣ ଆକାଶକୁ ଆଚ୍ଛାଦିତ କରୁଥିବା ଦେବତା, ଅର୍ଯ୍ୟମନ ସୂର୍ଯ୍ୟର ଦେବତା, ବାୟୁ ବା ଆୟୁ ପବନଦେବତା, ଇନ୍ଦ୍ର ଜଳମୟ ଓ ବାୟୁମଣ୍ଡଳର ଦେବତା, ଋଭୁ ସ୍ୱର୍ଗୀୟ ଚମକାର ଓ ମରୁତ ଝଡର ଦେବତା । କିନ୍ତୁ ଏମାନଙ୍କୁ ଦେବତା କାହିଁକି କୁହାଯିବ ? ମ୍ୟାକ୍ସମୂଲର ଏହାର ଯୌଗିକ ଅର୍ଥ ପ୍ରତି ଧ୍ୟାନ ଦେବାକୁ ଚାହାନ୍ତି ଏଣୁ ଏମାନଙ୍କୁ କେବଳ ନାମବାଚକ ବୋଲି ହିଁ କହିଛନ୍ତି । ଯୌଗିକ ବ୍ୟୁତ୍ପତ୍ତିମୂଳକ ଅର୍ଥରେ ମିତ୍ର ଅର୍ଥ ସୁହୃଦ, ବରୁଣ ଶ୍ରେଷ୍ଠ ଗୁଣବାନ ପୁରୁଷ, ଅର୍ଯ୍ୟମା ନ୍ୟାୟାଧୀଶ, ଅଗ୍ନି ବିଦ୍ୱାନ ପୁରୁଷ, ମରୁତ କ୍ରିୟାତ୍ମକ ରୂପେ ଋତୁଗୁଡ଼ିକର ନିୟମ ପାଳନ କରୁଥିବା ଅର୍ଥରେ ବ୍ୟବହୃତ । ମନ୍ତ୍ରଟିରେ ଅଶ୍ୱ ଶବ୍ଦଟିର ଶାବ୍ଦିକ ଅର୍ଥ ଘୋଡ଼ା କହିଦେଲେ କ'ଣ ହୋଇଗଲା ? ଏହା ତିନି ପ୍ରକାର ଶକ୍ତିକୁ ମଧ୍ୟ ପ୍ରେରିତ କରୁଥିବା ଅର୍ଥରେ ବ୍ୟବହୃତ । ତାହା ହେଲା ଉଷ୍ଣତା, ବିଦ୍ୟୁତ ଓ ଚୁମ୍ବକୀୟ ଶକ୍ତି । ବସ୍ତୁତଃ ଏହାର ଅର୍ଥ କୌଣସି ଏପରି ପଦାର୍ଥକୁ ପ୍ରେରିତ କରେ ଯାହା ଦ୍ରବ୍ୟକୁ ଶୀଘ୍ର ପାର କରାଏ ।

ଋଗ୍‌ବେଦରେ ଅଶ୍ୱ ଅର୍ଥ ଅଗ୍ନି ବୋଲି ମଧ୍ୟ କୁହାଯାଇଛି – 'ଅଶ୍ୱଂ ନ ତ୍ୱା ବାରବନ୍ତମ୍ ବନ୍ଦଧ୍ୟା ଅଗ୍ନିଂ ନମୋଭିଃ' । ଏବଂ ପୁନଃ ବୃଷୋ ଅଗ୍ନିଃ ସମିଧ୍ୟତେଽଶ୍ୱୋ ନ ଦେବବାହନଃ । ତଂ ହବିଷ୍ମନ୍ତ ଈଳତେ । [୧.୨୭.୧] ଅଗ୍ନି ଅର୍ଥାତ୍ ଅଶ୍ୱବାହକ ପଶୁ ସଦୃଶ ସେହି ବିଦ୍ୱାନଙ୍କୁ ନେଇଯାନ୍ତି ଯେ ଏକପ୍ରକାର ଏହାର ଦୂରବାହୀ ଗୁଣରେ ପରିଚିତ । ଶତପଥ ବ୍ରାହ୍ମଣ [୧.୩.୩.୨୯-୩୦]ରେ ଅଶ୍ୱର ଏହି ଦୁଇ ପର୍ଯ୍ୟାୟବାଚୀରେ ବିଷୟରେ କୁହାଯାଇଛି – 'ବୃଷୋ ଅଗ୍ନିଃ । ଅଶ୍ୱୋ ବା ଏଷ ଭୂତ୍ୱା ଦେବେଭ୍ୟୋ ଯଜ୍ଞଂ ବହତି' ।

ମ୍ୟାକ୍ସମୂଲର ପୁନଶ୍ଚ 'ଦେବଜାତଃ'କୁ ଲୌକିକ ଅର୍ଥରେ ଦେବତାଠାରୁ ଉତ୍ପନ୍ନ ବୋଲି କହି ଦିଅନ୍ତି । ଏହା ପୂର୍ଣ୍ଣତଃ ଅଶୁଦ୍ଧ ବ୍ୟାଖ୍ୟା ଅଟେ । ଦେବଶବ୍ଦର ଦୁଇଟି ଅର୍ଥ ଅଛି । ପ୍ରଥମଟି ଦିବ୍ୟଗୁଣ ଓ ଅନ୍ୟଟି ବିଦ୍ୱାନପୁରୁଷ ଅଟେ । ଏ ଦୃଷ୍ଟିକୁ ସେ ଆଦୌ ବିଚାରକୁ ଆଣି ନାହାନ୍ତି । ଅନ୍ୟ ଏକ ମନ୍ତ୍ର ନିଅନ୍ତୁ :–

ଯନ୍ନିର୍ଣିଜାରେକ୍ଣସା ପ୍ରାବୃତସ୍ୟ ରାତିଂ ଗୃଭୀତାଂ ମୁଖତୋ ନୟନ୍ତି ।
ସୁପ୍ରାଂଗଜୋ ମେମ୍ୟଦ୍ବିଶ୍ୱରୂପ ଇନ୍ଦ୍ରାପୂଷ୍ଣୋଃ ପ୍ରିୟମପ୍ୟେତି ପାଥଃ ॥

ମ୍ୟାକ୍ସମ୍ୟୁଲର ଅନୁବାଦ କଲେ — ଯେବେ ସେ ଶୁଭ୍ର ସୁବର୍ଣ୍ଣ, ଭୂଷଣଦ୍ୱାରା ଅଳଙ୍କୃତ ଅଶ୍ୱ ଆଗରେ ଦୃଢ଼ତା ସହ ଧରି ଯାଉଥିବା ବଳିକୁ ନେଇଯାନ୍ତି, ଚିହ୍ନିତ ଛାଗ ମେଁ ମେଁ କରି ଆଗକୁ ଚଳେ । ସେ ଇନ୍ଦ୍ର ଓ ପୂଷଙ୍କ ପ୍ରିୟ ପଥରେ ଯାଏ ।

ମ୍ୟୁଲର ଯେଉଁଶବ୍ଦକୁ ସୁବର୍ଣ୍ଣ ଭୂଷଣ ବୋଲି ଅନୁବାଦ କରିଛନ୍ତି । ପ୍ରକୃତରେ ଦେଖିବାକୁ ଗଲେ ଏହାର ଅର୍ଥ କେବଳ ଧନ ବୋଲି ନିଘଣ୍ଟୁ [୨.୧୦.]ରେ କୁହାଯାଇଛି । ରାତିଂ ଯା ଦାନର କର୍ମସାଧ ଦର୍ଶାଏ ତାହା 'ବଳି' ଶବ୍ଦ ଦ୍ୱାରା ପରିବର୍ତ୍ତିତ କରାଯାଇଛି । ବିଶ୍ୱରୂପ ଅର୍ଥ ସେ ପୁରୁଷ 'ଯେ ସବୁ ରୂପର ଜ୍ଞାନ ରଖେ' ତାହା 'ଚିହ୍ନିତ' ଶବ୍ଦଦ୍ୱାରା ଅନର୍ଥ କରାଯାଇଛି । ଅଜ ଅର୍ଥରୁ କେବଳ ଏକବାର ଜ୍ଞାନରେ ଉତ୍ପନ୍ନ ପୁରୁଷ ଯେ ଦ୍ୱିତୀୟଥର ଉତ୍ପନ୍ନ ହୋଇ ନାହିଁ ତାହା ଛାଗ ଶବ୍ଦଦ୍ୱାରା ବଦଳା ଯାଇଛି । ମେମ୍ୟାତ୍ମାଙ୍ଗ୍ ହିଂସାୟାମ୍ ଧାତୁ ନିଷ୍ପନ୍ନ ତଦ୍ୱାରା ଅର୍ଥ 'ମେଁ ମେଁ' କରୁଥିବା ଅର୍ଥ କରାଯାଇଛି । ସୁପ୍ରାଂଗ ପ୍ରଚ୍ଛଜ୍ଞୀପ୍ସାୟାମ୍ ଧାତୁରୁ ପଚାରିବା ବା ସେ ବ୍ୟକ୍ତି ଯେ ସୁନ୍ଦର ଭାବରେ ପ୍ରଶ୍ନ ପଚାରିବା ଯୋଗ୍ୟ ଅଟେ ତାକୁ ଆଗକୁ ଯିବା ଅର୍ଥରେ ଅର୍ଥ କରିଗଲେ । ପାଥ ଅର୍ଥ କେବଳ ପେୟ ପଦାର୍ଥ ବା ଅନ୍ନ ଅର୍ଥରେ ବ୍ୟବହୃତ ତାକୁ ମ୍ୟାକ୍ସମ୍ୟୁଲର ପଥ ଅର୍ଥରେ ଅନୁବାଦ କଲେ । ସ୍ୱାମୀ ପାଥ ଶବ୍ଦର ବ୍ୟାଖ୍ୟା କରିବାକୁ ଯାଇ ଲେଖନ୍ତି "ପାଥୋଽନ୍ତରିକ୍ଷଂ । ଉଦକମପି ପାଥ ଉଚ୍ୟତେ ପାନାତ୍ । ଅନ୍ନମପି ପାଥ ଉଚ୍ୟତେ ପାନାଦେବ ॥ ଇନ୍ଦ୍ର ଓ ପୂଷ ଯା ଅର୍ଥ ପ୍ରଜାଙ୍କ ଶାସକ ଓ ବଳବାନ ହେବା ଉଚିତ ତାକୁ ସେ ଇନ୍ଦ୍ର ଓ ପୂଷନାମ ବିଶେଷଣ ସହ ଦୁଇ ଦେବତା ବିଶେଷ ଭାବରେ ଉଲ୍ଲେଖ କରିଛନ୍ତି । ମୁଖ-ତୋ ନୟନ୍ତି ଅର୍ଥ ଯେ ବାଗେନ୍ଦ୍ରିୟଠାରୁ ବାହାର କରନ୍ତି ତାକୁ ସେ ସାମନାକୁ ନେଇଯା'ନ୍ତି ଅର୍ଥ କରନ୍ତି । ଏ ପ୍ରକାର ମନ୍ତ୍ରଟିରେ ନ'ଟି ଶବ୍ଦ ସେ ଅଶୁଦ୍ଧ ଭାବରେ ଟାଣି ଓଟାରି ନିଜ ଇଚ୍ଛା ଅନୁସାରେ ଅର୍ଥ କରି ନିଅନ୍ତି ଯା'ର ପ୍ରକୃତ ଅର୍ଥ ଏ ପ୍ରକାର ହେବା ଉଚିତ୍ ଥିଲା—'ପୁରୁଷ ଯେ ଏହି ଉପଦେଶ ଦିଅନ୍ତି କି ଯେଉଁ ଧନ ସବୁ ଯେ ଉପାୟରେ ଉପାର୍ଜିତ କରାଯାଇଛି ତାକୁ ହିଁ ନିଜର ମନେ କରିବା ବା ବ୍ୟୟ କରିବା ଉଚିତ ଓ ଯେଉଁ ଲୋକ ଜ୍ଞାନରୁ ଉତ୍ପନ୍ନ ଓ ସୁନ୍ଦର ଭାବରେ ଅନ୍ୟଙ୍କୁ ପ୍ରଶ୍ନ ପଚାରି ପାରନ୍ତି, ରୂପ ବିଜ୍ଞାନରେ ଓ ମୁଖକୁ ଠିକ୍ କରିବାରେ ନିପୁଣ, ସେହି କେବଳ ଏପରି ମନୁଷ୍ୟ ଯେ ବଳ ଓ ଶାସକୀୟ ଶକ୍ତିକୁ ପାନ କରନ୍ତି ।' ଏ ମନ୍ତ୍ରଟି

ପ୍ରଥମ ମନ୍ତ୍ରଟି ସହ ଘନିଷ୍ଠ ସମ୍ପର୍କ ରଖେ । ପ୍ରଥମ ମନ୍ତ୍ରଟିର ଅଶ୍ୱବିଦ୍ୟା ଯେ କି ଅଭ୍ୟାସ କରିବା ଉଚିତ ଯା'ଙ୍କ ପାଖରେ ପବିତ୍ର ରୂପାସ୍ତ ଅଛି ଓ ଯିଏ ବିଦ୍ୱାନ, ଶାସକ ଓ ଦମନ କରିବାରେ ସାମର୍ଥ୍ୟ ଅଟନ୍ତି ।

୧୬୨ ସୂକ୍ତର ତୃତୀୟ ମନ୍ତ୍ରଟିକୁ ମଧ୍ୟ ଏହି ଦୃଷ୍ଟିରୁ ପରୀକ୍ଷାକୁ ଅଣାଯାଇପାରେ—

ଏଷ ଛାଗଃ ପୁରୋ ଅଶ୍ୱେନ ବାଜିନା ପୂଷ୍ଣୋ
ଭାଗୋ ନୀୟତେ ବିଶ୍ୱଦେବ୍ୟଃ ।
ଅଭିପ୍ରିୟଂ ଯତ୍ପୁରୋଡାଶମର୍ବତା ତ୍ୱଷ୍ଟେଦେନଂ
ସୌଶ୍ରବସାୟ ଜିନ୍ୱତି ॥

ମ୍ୟାକସ୍‌ମ୍ୟୁଲରଙ୍କ ଅନୁବାଦ ହେଲା -ସେହି ଛାଗଲ ଯେ ସମସ୍ତ ଦେବତାମାନଙ୍କ ପାଇଁ ନିଯୁକ୍ତ ପୂଷଣଙ୍କ ଭାଗ ଅନୁସାରେ ପ୍ରଥମେ ବେଗବାନ ଘୋଡ଼ାସହ ଚାଲିଯାଏ, ତାହାକୁ ତ୍ୱଷ୍ଟା ଏହି ପ୍ରିୟ ବଳିକୁ ଯା' ଘୋଡ଼ାସହ ଅଣାଯାଇଛି, ସ୍ୱୟଂ କୀର୍ତ୍ତି ଲାଭ କରେ ।

ଏଠି ପ୍ରଶ୍ନ ହେଉଛି ଛାଗଲ କିପରି ସମସ୍ତ ଦେବତାଙ୍କ ପାଇଁ ନିଯୁକ୍ତ ହୋଇ ପାରିବ ? ଏବଂ ଏହା ସହ ସେହି ସମୟରେ ସେ ଏକାକୀ ପୂଷଣଙ୍କର ମଧ୍ୟ ଭାଗ ହୁଏ ? ମ୍ୟାକସ୍‌ମ୍ୟୁଲରଙ୍କ କାରଣ ଏଠି ଅସ୍ପଷ୍ଟ । ତ୍ୱଷ୍ଟା କିଏ ପୁନଶ୍ଚ ତାଙ୍କର ପୂଷଣଙ୍କ ସହିତ କି ସମ୍ପର୍କ ? କିପରି ତ୍ୱଷ୍ଟା ସ୍ୱୟଂ ପ୍ରିୟ ବଳିକୁ କୀର୍ତ୍ତିମାନ କରନ୍ତି ? ଏସବୁ ପ୍ରଶ୍ନ ସେମାନେ ପଚାରିବା ଉଚିତ ଯେଉଁମାନେ ଏ ପର୍ଯ୍ୟନ୍ତ ବେଦଜ୍ଞ ଭାବରେ ମ୍ୟାକସମ୍ୟୁଲରଙ୍କୁ ସର୍ବଜ୍ଞ ବୋଲି ଧରି ନେଇଛନ୍ତି । ବିଶ୍ୱଦେବ୍ୟ ଅର୍ଥ ସମସ୍ତ ଦେବତାଙ୍କ ପାଇଁ ହେବା ଉଚିତ । ଅଷ୍ଟାଧ୍ୟାୟୀ [୪. ୪. ୯୮]ରେ ବୁଝାଯାଇଛି— ବିଶ୍ୱେଷୁ ଦେବେଷୁ ଦ୍ରବ୍ୟଗୁଣେଷୁ ସାଧୁର୍ବିଶ୍ୱଦେବ୍ୟଃ ॥ ଅର୍ଥାତ୍ ବିଶ୍ୱଦେବ୍ୟଃ କୌଣସି ଏକ ପଦାର୍ଥ ଅଟେ ଯାହା ଉପଯୋଗୀ ଗୁଣ ଉତ୍ପନ୍ନ କରିବାରେ ସର୍ବୋତ୍ତମ ରୂପେ ଯୋଗ୍ୟ ଅଟେ । ତ୍ୱଷ୍ଟା ଅର୍ଥ ବସ୍ତୁ ଗୁଡ଼ିକୁ ଯୋଡିବା ବ୍ୟକ୍ତି ବା ଡାହକିସ୍ତା କୁଶଳ ଅଟେ । ଏହାକୁ ମ୍ୟାକସ୍‌ମ୍ୟୁଲର କିପରି ଏକ ନାମ ବିଶେଷଣରେ ପରିବର୍ତ୍ତିତ କଲେ ? ପୁରୋଡ଼ାଶ ଅର୍ଥ ସୁପକ୍ୱାନ୍ନ ମାତ୍ର ତାକୁ ବଳି ବୋଲି ଅର୍ଥ କରାଯାଇଅଛି । 'ଯାହାକୁ ସାଙ୍ଗରେ ନିଆଯାଇଛି' ଏହା ମ୍ୟାକସ୍‌ମ୍ୟୁଲର ନିଜ ପକ୍ଷରୁ ହିଁ ଯୋଡିଛନ୍ତି. କାରଣ ଏହା ନ ଲେଖିଲେ କିଛି ଅର୍ଥ ଜଣା ପଡ଼ୁନାହିଁ । ଅର୍ବନ ଯାର ଅର୍ଥ ଅଶ୍ୱବୋଲି କରାଯାଏ ଏଠି ତାହା ଜ୍ଞାନପରକ ଅଟେ । ସୌଶ୍ରବସାୟ ଜିନ୍ୱତି'ର ଅର୍ଥ 'ଭଲ ଭୋଜନ ନିମିତ୍ତ ପ୍ରାପ୍ତ କରିବା' ବୈଦିକ ସନ୍ଦର୍ଭରେ ଶ୍ରବସ ଅନ୍ନ ଅର୍ଥରେ

ବ୍ୟବହୃତ । ମ୍ୟାକସ୍‌ମୂଲର କପର କାର୍ତ୍ତିମାନ ବା କାର୍ତ୍ତିକ୍ ଉଠାଇବା ଅର୍ଥରେ ଏହାକୁ ଭାଷ୍ୟ କରନ୍ତି, ତାହା ସ୍ମରଣୀୟ । ମ୍ୟାକସମୂଲର ଯେଉଁ ଯେଉଁ ସ୍ଥାନରେ ବଳ [ଡେଇଫିଫାଇଡ୍] ରେ ବ୍ୟବହାର କରିଛନ୍ତି ତାହା ଅତୀ ବୈଦିକ ପାରମ୍ପରିକ ଶବ୍ଦ ନୁହେଁ ବୋଲି ବୁଝିବାକୁ ହେବ । କାରଣ ଏହା ଏକ ବିଶୁଦ୍ଧ ଖ୍ରୀଷ୍ଟିୟାନ୍ ଶବ୍ଦ ଅଟେ । ପଶୁବଳି ଠାରୁ ମଣିଷ ବଳିଦେବା ପରମ୍ପରା ମୋଶା କାଖିନ୍ ଆଦି ପୁସ୍ତକ [୨୦] ବିଷୟ ବସ୍ତୁ ଅଟେ ।

ମ୍ୟାକସମୂଲର ବେଦରେ ଆସୁଥିବା ମରୁତ ଗେଟିକ୍ ଷ୍ଟର୍ମଗଡ୍ ବା ଝଡର ଦେବତା ଭାବରେ ବର୍ଣ୍ଣନ କରି ସାଧାରଣ ମନ୍ତ୍ରର ଅନର୍ଥ ହିଁ ଦେଇଛନ୍ତି । ବେଦର ପ୍ରତ୍ୟେକ ମନ୍ତ୍ରକୁ ବୁଝିବା ପାଇଁ ତା'ର ଆନୁଷଙ୍ଗିକ ନିରୁକ୍ତ ବା ନିଘଣ୍ଟୁର ଆଶ୍ରୟ ନେବାକୁ ପଡ଼େ । ନିରୁକ୍ତ [୧୧-୧୩]ରେ ଯାସ୍କ କହିଛନ୍ତି – ମିତରାବିଣୋ ବା ମରୁଦ ଉତ୍ତମ୍ରାଣ ବା ଯଦ୍ବାଜ୍ଞ ମିତଭାଷୀ ଅତ୍ୟନ୍ତ ତେଜସ୍ୱୀ ଓ ଦ୍ରୁତ ବେଗବାନ ବୀର ସୈନିକ ଯେ ଦେଶରକ୍ଷାର୍ଥ ମରିବା ମାରିବା ପାଇଁ ସଦା ଉଦ୍ୟତ ସେହି ଅର୍ଥରେ ମରୁତ ଶବ୍ଦ ବ୍ୟବହାର ହେବା ଉଚିତ ଥିଲା । ଏ ସମ୍ପର୍କରେ ଋଗ୍‌ବେଦରେ ଅନେକ ମନ୍ତ୍ର ଅଛି ଯାର ଅନୁବାଦ ସ୍ୱୟଂ ମ୍ୟାକ୍‌ସମୂଲର କରିଛନ୍ତି । ଏହା ସତ୍ତ୍ୱେ ମରୁତ ଅର୍ଥ ଝଡ ଦେବତା କହିବା କ'ଣ ତର୍କସଙ୍ଗତ କି ? ପ୍ରକୃତ କଥା ହେଲା କେତେକ କ୍ଷେତ୍ରରେ ଜ୍ଞାତସାରରେ ଓ ଆଉ କେତେକ କ୍ଷେତ୍ରରେ ଅଜ୍ଞାତସାରରେ ସେ ମନ୍ତ୍ରଗୁଡ଼ିକର ସାଧାରଣ ଅର୍ଥ କରି ମନ୍ତ୍ରାର୍ଥଗୁଡ଼ିକୁ ବିକୃତ କରି ଦେଇଛନ୍ତି ।

ବ୍ରାହ୍ମଣଗ୍ରନ୍ଥ ଓ ନିରୁକ୍ତପ୍ରତି ମ୍ୟାକ୍‌ସମୂଲରଙ୍କ ନିନ୍ଦନୀୟ ବାକ୍ୟ ହେଲା— ବ୍ରାହ୍ମଣ ଗ୍ରନ୍ଥକାରଗଣ ମତବାଦରେ ଅନ୍ଧ ହୋଇ ପୁସ୍ତକ ଲେଖିଛନ୍ତି । ଏବଂ ତାଙ୍କ ପଛରେ ନିରୁକ୍ତକାର ଧାତୁବାଦର ମିଥ୍ୟା ଆଡ଼ମ୍ବରରେ ପଶି ବିଭ୍ରାନ୍ତ କରିଛନ୍ତି । ଏ ଦୁଇପ୍ରକାର ଲେଖକ ଜନତାକୁ ନିଜର ବଦ୍‌ବଗ୍ରା କାରଣରୁ ବିଭ୍ରାନ୍ତ କରିଛନ୍ତି । ତାଙ୍କ ପରବର୍ତ୍ତୀ କାଳର ସାୟଣଙ୍କ ପରି ବୁଦ୍ଧିଶୁଦ୍ଧି ସମ୍ପନ୍ନ ଭାଷ୍ୟକାରଙ୍କୁ ଭ୍ରମରେ ପକାଇ ଦେଇଛନ୍ତି । [ଗ୍ରିଫିଥଙ୍କ ଇଙ୍ଗ୍‌ଲିସ୍ ଟ୍ରାନ୍ସଲେସନ୍ ଅଫ ଋଗ୍‌ବେଦର ପ୍ରିଫେସ୍ ୧୧ ପୃଷ୍ଠ ଦ୍ରଷ୍ଟବ୍ୟ]

ନିରୁକ୍ତର ଗ୍ରନ୍ଥକାର ଯାସ୍କ ଯେ ଶବ୍ଦାର୍ଥତତ୍ତ୍ୱର ପରମଜ୍ଞାତା ଓ ପ୍ରଜାପତି କଶ୍ୟପଙ୍କଦ୍ୱାରା ଲିଖିତ ନିଘଣ୍ଟୁ ଗ୍ରନ୍ଥ ଉପରେ ବିସ୍ତୃତ ଭାଷ୍ୟ ଲେଖିଛନ୍ତି ଏବଂ ଯେଉଁ ଗ୍ରନ୍ଥ ବେଦାର୍ଥ ପ୍ରତିପାଦନ କରିବା ପାଇଁ ପ୍ରାଚୀନତମ ଗ୍ରନ୍ଥ ଅଟେ ସେପରି ମାନ୍ୟଗ୍ରନ୍ଥ ପ୍ରତି ମ୍ୟାକ୍‌ସମୂଲରଙ୍କ ମନ୍ତବ୍ୟ କେତେ ଅସଙ୍ଗତ । ବେଦମନ୍ତ୍ରର ଅର୍ଥ ଜାଣିବାକୁ

ହେଲେ ପ୍ରଥମେ ନିରୁକ୍ତ ଜାଣିବା ଉଚିତ । ଯେଉଁ କଠିନ ଶବ୍ଦ ବ୍ୟାକରଣ ଶାସ୍ତ୍ରଦ୍ୱାରା ସମାଧାନ ହୁଏ ନାହିଁ, ତା'ର ଅବଧାନ ପାଇଁ ନିରୁକ୍ତର ରଚନା କରାଯାଇଛି । ଯାସ୍କଙ୍କ ପୂର୍ବରୁ ନିଘଣ୍ଟୁ ନାମକ ଏକ ବୈଦିକ ଶବ୍ଦକୋଷ ଥିଲା ଯା'ର ଆଧାରପରେ ନିରୁକ୍ତ ରଚନା ହୋଇଛି । ଯାସ୍କଙ୍କ ବୈଦିକ ଶବ୍ଦକୁ ଧାତୁଜ ମନେ କରନ୍ତି ଏହି କାରଣରୁ ଏହା ଏକ ଅସାଧାରଣ ଗ୍ରନ୍ଥ ଅଟେ । ନିଜ ଗ୍ରନ୍ଥରେ ଯେଉଁ ଯାସ୍କ ବୈଦିକମନ୍ତ୍ରର ଅଶୁଦ୍ଧ ଉଚ୍ଚାରଣ କରୁଥିବା ବ୍ୟକ୍ତିଙ୍କ କଟୁ ଆଲୋଚନା କରି କହିଥିଲେ – ସ୍ୱର ଏବଂ ବର୍ଣ୍ଣରେ ଭ୍ରଷ୍ଟ ହୋଇ ମନ୍ତ୍ର ଇନ୍ଦ୍ର ଶତ୍ରୁଙ୍କ ପରି ବାଗ୍‌ବଜ୍ର ହୋଇ ଯଜମାନଙ୍କୁ ବିନଷ୍ଟ କରିଦିଏ, ତାଙ୍କୁ ମ୍ୟାକ୍‌ସମୂଲର ଜନତାକୁ ବିଭ୍ରାନ୍ତ କରିଛନ୍ତି ଓ ବୁଦ୍ଧିଶୁଦ୍ଧି ସମ୍ପନ୍ନ ଭାଷ୍ୟକାରଙ୍କୁ ତ୍ରୁଟିପୂର୍ଣ୍ଣ ମାର୍ଗରେ ସଞ୍ଚାଳିତ କରିଛନ୍ତି କହିବାରେ ବାକ୍ୟ ଅପବ୍ୟୟ କରିଛନ୍ତି ମାତ୍ର ।

ମ୍ୟାକସମୂଲର ବେଦର ଅନ୍ୟାନ୍ୟ ଭାଷ୍ୟକାରଙ୍କ ପ୍ରତି ସହାନୁଭୂତିଶୀଳ ଥିଲେ ବା ତାଙ୍କୁ ଯଥାଯଥ ଭାବରେ ସ୍ୱୀକାର କରୁଥିଲେ ବୋଲି ମଧ କୁହାଯାଇ ପାରିବ ନାହିଁ । ୧୮୯୬ (?)ରେ ଶ୍ରୀ ବି. ଭି କାମେଶ୍ୱର ଆୟାରଙ୍କ ସନ୍ଧ୍ୟାବନ୍ଦନା ଓ ପୁରୁଷସୂକ୍ତ ପାଠକରି ସେ ବିରକ୍ତ ହୋଇ ତାଙ୍କୁ ପତ୍ର ଲେଖିଥିଲେ – ମୁଁ ଭାବୁଛି ତୁମେ ପାଶ୍ଚାତ୍ୟ ବିଦ୍ୱାନଙ୍କ ପାଇଁ ଅନେକ ସମସ୍ୟରେ ଅବିଗ୍ରହ କରୁଛ । ସାୟଣ କେବଳ ରହସ୍ୟର ଏକ ବା ଅଧିକ ବ୍ୟାଖ୍ୟା କରିଛନ୍ତି । ପାଶ୍ଚାତ୍ୟ ବିଦ୍ୱାନମାନେ କାହିଁକି ସେ ସୁଯୋଗ ନେବେ ନାହିଁ ? ମ୍ୟାକସମୂଲରଙ୍କ ପ୍ରଶ୍ନଟିର ଉତ୍ତର ଦେବାକୁ ଯାଇ କାମେଶ୍ୱର ଆୟାର ଲେଖିଲେ – ମୁଁ ପାଶ୍ଚାତ୍ୟ ବିଦ୍ୱାନମାନଙ୍କର କାର୍ଯ୍ୟକୁ ହାଲୁକା କରି ଦେବାକୁ ଚାହେଁ ନାହିଁ ବରଂ ମୁଁ ଅନୁଭବ କରୁଛି ଯେ ସେମାନେ ବୈଦିକ ଶିକ୍ଷା ହୃଦୟଙ୍ଗମ କରିବାକୁ ବିଫଳ ଅଟନ୍ତି ।

"ଦୟାନନ୍ଦ ଏବଂ ବେଦ" ଶୀର୍ଷକ ପ୍ରବନ୍ଧରେ ଶ୍ରୀଅରବିନ୍ଦ କାମେଶ୍ୱର ଆୟାରଙ୍କ ପରି କହିବାକୁ ବାଧ୍ୟ ହେଲେ – ଯଦି କୌଣସି ବେଦଭାଷ୍ୟରେ ଏହିପରି ପରିଶ୍ରମ କରାଯାଇଛି ଯେଉଁଥିରେ ତୁଚ୍ଛ ଆଧାରକୁ ଚତୁରତାପୂର୍ଣ୍ଣ ଢଙ୍ଗରେ ରୂପ ଦିଆଯାଇଛି, ଯେଉଁଥିରେ ସନ୍ଦିଗ୍ଧ ସଙ୍କେତଗୁଡ଼ିକୁ ନିଶ୍ଚିତ ପ୍ରମାଣର ରୂପ ଦିଆଯାଇଛି, ଯେଉଁଥିରେ ଅତ୍ୟନ୍ତ ତୁଚ୍ଛ ଓ ନଗଣ୍ୟ ପ୍ରମାଣର ଆଧାରରେ ଅତ୍ୟଧିକ ସାହସପୂର୍ଣ୍ଣ ପରିମାଣରେ ପହଞ୍ଚିବାଲାଗି ଗୁପ୍ତପ୍ରୟୋଗ କରାଯାଇଛି, ଯେଉଁଥିରେ ଅତ୍ୟନ୍ତ ସ୍ପଷ୍ଟ ଏବଂ ଉତ୍କଟ କଠିନତାକୁ ମଧ ଉପେକ୍ଷା କରିଦିଆଯାଇଛି ଏବଂ ବେଦମନ୍ତ୍ରମାନଙ୍କରେ ସ୍ପଷ୍ଟ ନିର୍ଦ୍ଦେଶ ଥିଲେ ସୁଦ୍ଧା ତାହାର ବିରୁଦ୍ଧାତ୍ମକ, ପକ୍ଷପାତପୂର୍ଣ୍ଣ ବିଗ୍ରହକୁ ପ୍ରାଧାନ୍ୟ ଦିଆଯାଇଛି ତାହା'ହିଁ ପାଶ୍ଚାତ୍ୟ ବିଦ୍ୱାନମାନଙ୍କ ବେଦବିଷୟକ ପରିଶ୍ରମ । ଅବଶ୍ୟ ଏହି ପରିଶ୍ରମ ପାଇଁ ସେମାନେ ପ୍ରଶଂସନୀୟ ଅଟନ୍ତି ।

## ମ୍ୟାକ୍ସମୂଲର ଓ ନୀରଦ ସି. ଚୌଧୁରୀ :--

ଗୋଟିଏ ପଟଟକୁ ଗୋଟିଏ ଛୁରୀଦ୍ୱାରା ବରଂ ହାଣିଦେବା ସହଜ ହୋଇପାରେ ମାତ୍ର ମ୍ୟାକ୍ସମୂଲରଙ୍କୁ ବୁଝିବା ଏତେ ସହଜ ନୁହେଁ । ସେ ପ୍ରକୃତରେ ଜଣେ ବିବାଦସ୍ପଦ ବ୍ୟକ୍ତି ଥିଲେ ଯିଏ ଖୁବ୍ ଚତୁରତା ସହ ଗୋଟିଏ ପକ୍ଷରୁ ଭାରତୀୟମାନଙ୍କର ପ୍ରୀତିଭାଜନ ହେବାକୁ ଚେଷ୍ଟା କରୁଥିଲେ ତ ଅନ୍ୟପକ୍ଷରୁ ତାଙ୍କର ଅନ୍ନଦାତା ଇଷ୍ଟ ଇଣ୍ଡିଆ କମ୍ପାନୀ ପାଇଁ ଭାରତୀୟ ବୋଧିଦ୍ରୁମତଳେ ଆଶ୍ରୟ ନେଇ ତାର ମୂଳରେ କୁଠାରଘାତ କରିବାକୁ ପଛେଇ ନ ଥିଲେ ।

ଊନବିଂଶ ଶତାବ୍ଦୀରେ ଯେବେ ଇଂଲଣ୍ଡ ତଥା ପାଶ୍ଚାତ୍ୟ ଦେଶସମୂହରେ ମ୍ୟାକ୍ସମୂଲରଙ୍କୁ 'ହିରୋ' ଭାବରେ ପ୍ରଶଂସା କରାଯାଉଥିଲା, ଭାରତରେ ସେହି ସମୟରେ ତାଙ୍କୁ ଏଥିପାଇଁ ସମ୍ମାନ କରାଯାଉଥିଲା କାରଣ ସେ ଋଗ୍‌ବେଦର ଅନୁବାଦ କରିଛନ୍ତି । ସେହି କାରଣରୁ ସେ ଭାରତର ଶିକ୍ଷିତ ବ୍ୟକ୍ତିମାନଙ୍କର ଶ୍ରଦ୍ଧାଭାଜନ ହୋଇପାରିଥିଲେ । ସ୍ୱାମୀ ବିବେକାନନ୍ଦ ତାଙ୍କୁ ଭାରତର ଶଙ୍କରାଚାର୍ଯ୍ୟ ଓ ଅନୁପମବ୍ୟକ୍ତି ବୋଲି ସମ୍ବୋଧନ କରିଥିଲେ । ତାଙ୍କୁ ଜର୍ମାନଜାତ ହିନ୍ଦୁ ଋଷି ଓ ମହାନ ସଂସ୍କୃତ ପଣ୍ଡିତ ବୋଲି ମଧ୍ୟ ସ୍ଥାନେ ସ୍ଥାନେ ଉଲ୍ଲେଖ କରାଯାଇଥିଲା । ସେମାନଙ୍କ ପରି ନୀରଦ ସି. ଚୌଧୁରୀ ତାଙ୍କ ଜୀବନୀ ଲେଖିବାକୁ ଯାଇ ତାଙ୍କୁ 'ସ୍କଲର ଏକ୍ସଟ୍ରା-ଅର୍ଡିନାରୀ' ବୋଲି କହିଛନ୍ତି । ଏ ସବୁ ପ୍ରଶସ୍ତିକୁ ବିନାବିଚାରରେ ସ୍ୱୀକାର କରିନେବା ନିରପେକ୍ଷ ଆଲୋଚକର ଧର୍ମ ନୁହେଁ । ଏକଥା ସେ ପର୍ଯ୍ୟନ୍ତ ଲୋକପ୍ରିୟ ହୋଇ ସାରିଥିଲା ଯେ ପର୍ଯ୍ୟନ୍ତ ତାଙ୍କ ପତ୍ରଗୁଡ଼ିକ ପ୍ରକାଶ ପାଇପାରି ନ ଥିଲା । ୧୯୦ 'ରେ ଯେବେ ତାଙ୍କ ଜୀବନ ଚରିତ ପ୍ରକାଶିତ ହେଲା ତାହା ପାଠକର ଆମର ବିଶ୍ୱାସର ସ୍ତମ୍ଭ ଟଳିପଡ଼ିଲା । ଯେଉଁ ଥିଓପୋଲିଟିକାଲ ସିଦ୍ଧାନ୍ତ ନେଇ ସେ ଜୀବନକାଳ କାର୍ଯ୍ୟ କରିଥିଲେ ସେଥିପାଇଁ ସେ ନିନ୍ଦିତ ହେଲେ ।

ନୀରଦ ସି. ଚୌଧୁରୀଙ୍କ ଲିଖିତ ମେକ୍ସମୂଲରଙ୍କ ଜୀବନୀ 'ସ୍କଲର ଏକ୍ସଟ୍ରା-ଅର୍ଡିନାରୀ' ଯଦିଓ ତାଙ୍କର ସୁନ୍ଦର ନୂତନ ପ୍ରତିଭାର ପ୍ରସ୍ତାବନାର ଏକ ଅଭିନବ ପ୍ରୟାସ ଥିଲା ତଥାପି ସେହି ପୁସ୍ତକରେ ସେ ତାଙ୍କର ଅନେକ ବିଶିଷ୍ଟ ଓ ଅଶିଷ୍ଟ ପତ୍ର ପ୍ରକାଶ କଲେ ନାହିଁ କାହିଁକି ? ପୁସ୍ତକଟିର ୩୬୩ ପୃଷ୍ଠାରେ ସେ ଏକଥା ସ୍ୱୀକାର କଲେ ଯେ, 'କୌଣସି ମଧ୍ୟ ବ୍ୟକ୍ତିର ବାସ୍ତବିକ ପରୀକ୍ଷା ତାର ବିନା କଟାଛଣା କରିଥିବା ପତ୍ର ବ୍ୟବହାର ଓ ତାର ଦୈନନ୍ଦିନୀ (ଡାଇରୀ)ରୁ ଜଣାଯାଏ । ମୁଁ ମ୍ୟାକ୍ସମୂଲରଙ୍କର ଅନେକ ପତ୍ର ଓ ପୃଷ୍ଠା ଛାଡ଼ିଛି ।' ଏହା ସତ୍ତ୍ୱେ ସେ ଅନେକପତ୍ର ଯେଉଁଥିରେ ତାଙ୍କର ପ୍ରକୃତ ସ୍ୱରୂପ ଲୁଚି ରହିଛି, ତାହା ସେ ପ୍ରକାଶ

କହିଲେ ନାହିଁ କାହିଁକି ? ସେହି ପତ୍ରଗୁଡ଼ିକ ଲୁଚାଇବା ଛିଣ୍ଡାଇଦେବା ବା ଦବାଇ-ଦେବାର କିଛି ବିଶେଷ କାରଣ ଥାଇପାରେ ଯାହା 'ସ୍କଲର ଏକ୍ସଟ୍ରା-ଅର୍ଡିନାରୀ'ର ପାଠକଙ୍କ ଜ୍ଞାତ ହୋଇପାରିବ ନାହିଁ । ସେହି ପତ୍ରଗୁଡ଼ିକ ଭାରତୀୟମାନଙ୍କ ପାଇଁ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ରଖେ । ସେହି ପତ୍ରଗୁଡ଼ିକ ଯଦି ଆଜି ଏହି ଜୀବନଚରିତରେ ସମାବିଷ୍ଟ କରାଯାଇଥାନ୍ତା, ତାହେଲେ ସ୍ୱତନ୍ତ୍ର ଭାରତବାସୀ ତାଙ୍କ କାର୍ଯ୍ୟକଳାପକୁ ସମୀକ୍ଷା କରିଥାନ୍ତେ । ମାତ୍ର ସେସବୁ ପ୍ରକାଶିତ ତଥ୍ୟାକାରରେ ଉପଲବ୍ଧ ଥିବା ସତ୍ତ୍ୱେ ଚୌଧୁରୀ ବାବୁ କେଜାଣି ଉଦ୍ଦେଶ୍ୟମୂଳକ ଭାବରେ ତାହା ଠିକ୍ ଠିକ୍ ପ୍ରକାଶ କରିନାହାନ୍ତି ।

ମୁଁ ଏଠି ମ୍ୟାକ୍ସମୂଲରଙ୍କ ବ୍ୟକ୍ତିତ୍ୱ ଉପରେ କୌଣସି ଆକ୍ଷେପ ବା ନିନ୍ଦା କରୁ ନାହିଁ ବରଂ ବ୍ରିଟିଶ ଇଣ୍ଡିଆର ଜଣେ ବିଶ୍ୱସ୍ତ ଭକ୍ତ ଭାବରେ କରିଥିବା କାର୍ଯ୍ୟ ପାଇଁ ତାଙ୍କୁ ମୁଁ ଧନ୍ୟବାଦ ମଧ୍ୟ ଦେଉଛି । ସେ ଯାହା ମଧ୍ୟ କରିଛନ୍ତି ସେସବୁ ଇଂଲଣ୍ଡ ଓ ନିଜ ସ୍ୱାର୍ଥ ପାଇଁ କରିଛନ୍ତି । ଏଥିପାଇଁ ତାଙ୍କୁ ଦୋଷାରୋପ କରାଯାଇ ପାରିବ ନାହିଁ । ସେ ଅକ୍ସଫୋର୍ଡରେ ରହି ମଧ୍ୟ ବନାରସର ପବିତ୍ର ଘାଟ ଓ ତା'ର ପବିତ୍ର ଜଳରେ ଅବଗାହନ କରୁଥିବା ଆବାଳ ବୃଦ୍ଧବନିତାଙ୍କ କଥା ଭାବିଛନ୍ତି । ଏପରି ଆହୁରି ଅନେକ ସୁନ୍ଦର ମନ୍ତବ୍ୟ ଦେଇଛନ୍ତି ଯାହା ପାଠକଲେ କେଉଁ ଭାରତୀୟ ତାଙ୍କୁ ଉଚ୍ଛ୍ୱସିତ ଭାଷାରେ ପ୍ରଶଂସା କରିବ ନାହିଁ ?

ତେବେ ସେଥିରେ କ'ଣ ସନ୍ଦେହ ? ବାହାର ବାହାରେ ଓ ଭିତରେ ଭାବ ଥିବାଯୋଗୁ ସେ କୋଟିଏ କଥା ଭାରତୀୟଙ୍କୁ ସନ୍ତୁଷ୍ଟ କରିବାକୁ କହୁଥିଲେ ତ ଆଉ ଏକ ପ୍ରକାର କଥା ୟୁରୋପୀୟ ମିଶନାରୀଙ୍କ ଉଦ୍ଦେଶ୍ୟରେ କରୁଥିଲେ । ଅନେକ ସମୟରେ ଭାରତର ପ୍ରଶଂସା ଖ୍ରୀଷ୍ଟଧର୍ମର ବିରୋଧୀ ତାଙ୍କୁ ମନେ ହେଉଥିଲା । ଫ୍ରାନ୍ସର ପ୍ରସିଦ୍ଧ ବିଦ୍ୱାନ ଲୁଇସ୍ ଜୋକଲେଟ, "ଲା ବାଇବେଲ ଡ୍ୟାନସାଲ' ଇନଡ଼" ବା ଭାରତର ବାଇବେଲ ନାମକ ଗ୍ରନ୍ଥରେ ଭାରତର ପ୍ରଶଂସା କରି ଲେଖିଥିଲେ - 'ପ୍ରାଚୀନ ଭାରତଭୂମି ! ଯାହାକୁ ଶତାବ୍ଦୀ ଶତାବ୍ଦୀ ଧରି ହୋଇଥିବା ନୃଶଂସ ଆକ୍ରମଣ କେବେ ମଧ୍ୟ ଚିହ୍ନ ପଦତଳେ ଦାବିପାରି ନାହିଁ । ତୋର ଜୟ ହେଉ ! ଶ୍ରଦ୍ଧା, ପ୍ରେମ, କାବ୍ୟ ଏବଂ ବିଜ୍ଞାନର ପିତୃଭୂମି ! ତୋର ଅଭିନନ୍ଦନ ! ଆମେ ପାଶ୍ଚାତ୍ୟବାସୀ ଭବିଷ୍ୟତରେ ତୋର ଅତୀତର ପୁନରାଗମନର ଜୟଧ୍ୱନି କରିବୁ ।' ମ୍ୟାକ୍ସମୂଲରଙ୍କୁ ଭାରତର ଏ ପ୍ରକାର ସ୍ତୁତି ଗଭୀର ମାନସିକ ଅଶାନ୍ତି ଦେଇଥିଲା । ସେ ଜୋକଲେଟ୍ ସାହେବଙ୍କୁ ଅମୂଳକ ଭାବରେ ଆଲୋଚନା କରିବାକୁ ଯାଇ ଲେଖି ପକାଇଲେ—"ମନେ ହେଉଛି ଯେ ଲେଖକ ଭାରତୀୟ ବ୍ରାହ୍ମଣମାନଙ୍କ ଚକ୍ରାନ୍ତରେ ପଡ଼ିଯାଇଛନ୍ତି ।"

ଷ୍ଟେଫାନଥ୍ରଲ ଘୋଷଣା କରିଥିଲେ—'ଯଦିଓ ଆମେ ଖ୍ରୀଷ୍ଟ ଧର୍ମର ମୂଳଦୁଆ ସଦାଚାର ମାଗୁଛନ୍ତି । ବାଇବେଲ ଘଟଣାବଳୀଦ୍ୱାରା ମାନବଜାତିର ପ୍ରାଚୀନତମ ଜ୍ଞାନ ଅପେକ୍ଷା ଉଆସାଇଛି ଏପରି ନାହିଁ । ଏହା ପରବର୍ତ୍ତୀ ଭାରତୀୟ ଜ୍ଞାନ ୟୁରୋପ ଉପରେ ପ୍ରବାହିତ ହେବ ଏବଂ ଆମ ଚିନ୍ତାରେ ଏକ ପରିବର୍ତ୍ତନ ଆଣିବ ।' ଏହି ଅଭିମତ ମ୍ୟାକ୍ସମୂଲରଙ୍କ ଧାର୍ମିକ ଧାରଣା ପରେ କି ପ୍ରକାର ପ୍ରତିକ୍ରିୟା ସୃଷ୍ଟି କରିଥିଲା ତାହା ତାଙ୍କ ଉକ୍ତିରୁ ଜଣାଯାଏ । ଏଠାରେ ସ୍ପଷ୍ଟ ମୋର ମନେହୁଏ ଏହି ମହାନ ଦାର୍ଶନିକ ଧର୍ମ ଜାଣିଥିବା ହେତୁ ହସ୍ତାନ୍ତରିତ ହୋଇ ନିଜକୁ ଦୂରକୁ ନେଇ ଯିବାରେ ସ୍ୱତନ୍ତ୍ରତା ଅବଲମ୍ବନ କରିଛନ୍ତି । ସେ ଉପନିଷଦର ଅହଂକାର ପକ୍ଷକୁ ଅତି ଖୁବରେ ସ୍ୱୀକାର କରିଛନ୍ତି ଓ ଇଚ୍ଛାନୁସାରେ ସୁସମାଚାରଗ୍ରନ୍ଥକର ନାଁକୁଲମାନଙ୍କର ଜନ୍ୟ ସତ୍ୟ ପ୍ରତି ଆଖି ବନ୍ଦକରି ଦେଇଛନ୍ତି ଯାହା ରାଜା ରାମମୋହନରାୟ ମଧ୍ୟ କୁଳଙ୍କଟିକା ଓ ବେଦମାଳାର ଅନ୍ୟ ସ୍ଥଳେ ପରାମର୍ଶ ଦ୍ୱାରା ସଂଗୃହୀତ ସମସ୍ତ ଧର୍ମର ମୂଳଶ୍ରୋତକୁ ଅନୁଭବ କରିବାରେ ଅଧିକ ସମୟ ନେଇ ନାହାନ୍ତି ।

ମ୍ୟାକ୍ସମୂଲରର 'ଇଣ୍ଡିଆ ହ୍ୱାଟ କେନ୍ ଇଟ୍ ଟିଚ୍ ଅସ୍ ?' ଗ୍ରନ୍ଥରେ ଏକ ସାର୍ବଜନୀନ ଆଗ୍ରହ ପ୍ରକାଶ କରିଛନ୍ତି ଯେ ଯେଉଁ ବ୍ୟକ୍ତି ଭାଷା ଓ ବିଶ୍ୱର ଐତିହାସିକବିକାଶ ଚିନ୍ତା କରୁଛନ୍ତି, ଯିଏ ଧର୍ମ ଓ ଗାଥାଶାସ୍ତ୍ରର ପ୍ରଥମ ବୃଦ୍ଧିଗତ ବିକାଶର ଚିନ୍ତା କରୁଛନ୍ତି; ବିଜ୍ଞାନ, ଜ୍ୟୋତିଷ, ନକ୍ଷତ୍ରବିଦ୍ୟା, ବ୍ୟାକରଣ, ନିରୁକ୍ତ-ଶାସ୍ତ୍ରର ପ୍ରଥମ ଆଧାର ଉପରେ ଚିନ୍ତା କରୁଛନ୍ତି, ଯିଏ ପ୍ରଥମ ଦାର୍ଶନିକ ବିଚାର, ପାରିବାରିକ ଜୀବନ, ଗ୍ରାମ୍ୟଜୀବନ ଓ ରାଷ୍ଟ୍ରୀୟ ଜୀବନକୁ ନିୟମିତ କରିବାରେ ପ୍ରଥମ ଚେଷ୍ଟାସହ ସମ୍ବନ୍ଧିତ, ଧାର୍ମିକ ବିଧି ବିଧାନ, ପରମ୍ପରା ଓ ସମ୍ପର୍କ ଉପରେ ଆଧାରିତ ବିଷୟରେ ଜାଣିବାକୁ ଇଚ୍ଛୁକ, ତାଙ୍କୁ ଭବିଷ୍ୟତରେ ବୈଦିକ ସାହିତ୍ୟର ଅଧ୍ୟୟନ ଓ ନିଷ୍ଠିତରୂପେ ଧ୍ୟାନ ଦେବା ଆବଶ୍ୟକ ।

ମ୍ୟାକ୍ସମୂଲରଙ୍କ ଏହା ଏକ ସୁନ୍ଦର ପରାମର୍ଶ ହେଉଁଥିରେ ସେ ଗବେଷକ ଓ ବିଦ୍ୱାନଗଣଙ୍କୁ ବୈଦିକ ସାହିତ୍ୟର ଅନୁଶୀଳନ ଏଥିପାଇଁ କରିବାକୁ ଆଗ୍ରହ କରି ନାହାନ୍ତି ଯେ ବେଦର ଉପଦେଶ ସାର୍ବଭୌମ ବା ସର୍ବଜନହିତକାରୀ ଅଟେ ବରଂ ଏହାଦ୍ୱାରା ପ୍ରାରମ୍ଭିକ ଅସଭ୍ୟ ବା ଜଙ୍ଗଲୀ ଲୋକଙ୍କ ବିଚାର ଦ୍ୱାରା ସେମାନେ ପରିଚିତ ହୁଅନ୍ତୁ । ବିକାଶବାଦକୁ ସ୍ୱୀକାର କରୁଥିବାରୁ ତାଙ୍କ ଦୃଷ୍ଟିରେ ଏହା ସ୍ପଷ୍ଟଥିଲା କି ଅତ୍ୟନ୍ତ ଅବିକଶିତ ଓ ନିକୃଷ୍ଟଧରଣର ବିଚାର ମାନବପୁସ୍ତକାଳୟର ଏହି ପ୍ରାଚୀନତମ ଗ୍ରନ୍ଥରେ ମିଳିବା ଉଚିତ । ତାଙ୍କ ସମ୍ପର୍କରେ ମି: ହେଟନ, 'ଦ ଋଗ୍‌ବେଦ ଏଣ୍ଡ ବୈଦିକ ରିଲିଜନ' ପୁସ୍ତକର ୧୫୬ ପୃଷ୍ଠାରେ ଏହି ସନ୍ଦର୍ଭରେ ଲେଖିଲେ —

ଏହା ଭୁଲିବା ଅନୁଚିତ ଯେ ଯଦ୍ୟପି ମ୍ୟାକ୍ସମୂଲରଙ୍କ ଅନୁସାରେ ବେଦର ଐତିହାସିକ ମହତ୍ତ୍ୱ ବହୁତ ଅଧିକ ତଥାପି ଅଧିକାଂଶ ବୈଦିକ ସୂକ୍ତ ବାଲିଶପଣ ବା ମୂର୍ଖତାର ପରାକାଷ୍ଠାରେ ପୂର୍ଣ୍ଣ, ନୀରସ ଓ ତୁଚ୍ଛ ବିଷୟରେ ପରିପୂର୍ଣ୍ଣ । କେବଳ ଅପବାଦ ରୂପରେ ହିଁ ଏହି ସୂକ୍ତର କେଉଁଠି ଆମ୍ଭେ ଚମତ୍କାର, ଆଧ୍ୟାତ୍ମିକ ପ୍ରଜ୍ଞା ଅଥବା ଉଚ୍ଚ ଐଶ୍ୱରୀୟ ଜ୍ଞାନର କିଛି ଝଲକ ଦେଖାଯାଏ ।

ବେଦକୁ ଆମେ ଯେଉଁ ପବିତ୍ର ଦୃଷ୍ଟିକୋଣରୁ ବିଚାର କରୁଁ ସେ ଦୃଷ୍ଟି ମ୍ୟାକ୍ସମୂଲର ବିଚାରକୁ ଆଣି ନାହାନ୍ତି । ବେଦ ସମ୍ପର୍କରେ ତାଙ୍କ ଧାରଣା ଅତି କଦର୍ଯ୍ୟ ଓ କଦାଚାର ଥିଲା । ‘ଇଣ୍ଡିଆ ହ୍ୱାଟ୍ କେନ୍ ଇଟ୍ ଟିଚ୍ ଅସ୍ ?’ ପୁସ୍ତକର ୫୦ ପୃଷ୍ଠାରେ ସେ ଏକଥା ନିଷ୍କପଟ ହୃଦୟରେ ଲେଖିଥିଲେ ଯେ—ବେଦ ବାଲିଶପଣତା ପରି ମୂର୍ଖତା ପୂର୍ଣ୍ଣ ଓ ଆମ ଦୃଷ୍ଟିରେ ରାକ୍ଷସବତ୍ ବିକଟାଳ ନିତାନ୍ତ ଅସଙ୍ଗତ ବିଷୟରେ ପରିପୂର୍ଣ୍ଣ । ଏହା କିଏ ଅସ୍ୱୀକାର କରିପାରିବ ଯେ ଏହା ରାକ୍ଷସବତ୍ ବିକଟାଳ ହେଲେ ମଧ୍ୟ ମନୋରଞ୍ଜକ ଓ ଶିକ୍ଷାପ୍ରଦ ଅଟେ ।

ବେଦର ମାନ୍ୟତାକୁ ‘ଚାଇଲଡ଼ିସ୍’ ବା ପିଲାଳିଆ କହି ତା’ପରେ ‘ଇନଷ୍ଟ୍ରକଟିଭ୍’ ବା ଶିକ୍ଷାପ୍ରଦ କହିବା ପରସ୍ପର ବିପରୀତମୁଖୀ ମନ୍ତବ୍ୟ । ଏପ୍ରକାର ସନ୍ଦେହରେ ପକାଇବା ମ୍ୟାକ୍ସମୂଲରଙ୍କ ଏକ ଶୈଳୀଗତ ସିଦ୍ଧାନ୍ତ ଅଟେ । ଏହାର ପ୍ରମାଣ ଯେ କେତେ ମାରାତ୍ମକ ତାହା ମାଡ୍ରାସ ଖ୍ରୀଷ୍ଟିୟାନ ସୋସାଇଟି ଦ୍ୱାରା ପ୍ରକାଶିତ ବୈଦିକ ହିନ୍ଦୁଇଜମ ପୁସ୍ତକର ୮୨ ପୃଷ୍ଠାରୁ ଜଣାପଡ଼େ । ସେଥିରେ ମ୍ୟାକ୍ସମୂଲରଙ୍କ ଉକ୍ତି ଉଦ୍ଧୃତ କରି ପୁଣିଥରେ ଆମକୁ ଲେଖକ ସ୍ମରଣ କରାଇଦିଅନ୍ତି ଯେ ଭାରତୀୟ ପ୍ରାଚୀନତମ ଶାସ୍ତ୍ର ବାଲ୍ୟଚପଳତା ଓ ମୂର୍ଖତାପୂର୍ଣ୍ଣ ପ୍ରସଙ୍ଗରେ ପରିପୂର୍ଣ୍ଣ ।

ମ୍ୟାକ୍ସମୂଲରଙ୍କ ମତରେ ଋଗ୍‌ବେଦର ପ୍ରକାଶନ ବିଦ୍ୱାନମାନଙ୍କ ଇତିହାସରେ ଏକ ନୂତନ ଯୁଗ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ୟୁରୋପୀୟ ପ୍ରାଚ୍ୟ ବିଦ୍ୟାପାଇଁ ଏକ ନୂତନ ଅଧ୍ୟାୟ ଉନ୍ମୋଚନ କରିବ । ପୁନଶ୍ଚ ସେ କହିଲେ—ଯାହା ହେଲେ ମଧ୍ୟ ଏହା ସେମାନଙ୍କର ବାଇବେଲ । ଏହାର ତିନି ବା ଚାରି ହଜାର ବର୍ଷର ଅସ୍ତିତ୍ୱ ଥିବା ସତ୍ତ୍ୱେ ମଧ୍ୟ ଏହା ପ୍ରକାଶ ପାଇପାରିନଥିଲା ।

ଏଠି ଦେଖିବା କଥା ଯେ ପ୍ରଥମେ ମ୍ୟାକ୍ସମୂଲର ବେଦକୁ ବାଇବେଲ ସହ ତୁଳନା କରିଛନ୍ତି । ସମ୍ପୂର୍ଣ୍ଣ ବେଦ ସମ୍ପୂର୍ଣ୍ଣ ବାଇବେଲ ଯେଉଁମାନେ ପାଠକରିଥିବେ, ସେମାନେ ଆଗକୁ ନିର୍ଣ୍ଣୟ କରିବେ ଯେ ବେଦସହ ବାଇବେଲର ତୁଳନା ହୋଇ ପାରିବ ନା ନାହିଁ । ପୁନଶ୍ଚ ବେଦକୁ ତିନି ବା ଚାରି ହଜାର ବର୍ଷ ପୁରାତନ ବୋଲି କହି ଅନ୍ୟ ଏକ ସ୍ଥାନରେ ବିଶ୍ୱପୁସ୍ତକାଳୟରେ ଏହା ପ୍ରାଚୀନତମ ପୁସ୍ତକ କହିବା କ’ଣ ପରସ୍ପର ବିପରୀତ ଅଭିମତ ନୁହେଁ କି ?

ଆଗରୁ ମୁଁ ଏହା କହିଛି ଜଣେ ବିଦେଶୀ ହୋଇ ମଧ୍ୟ ସଂସ୍କୃତ ସାହିତ୍ୟ ଅଧ୍ୟୟନ କରିବା ପୁଣି ବେଦର ଭାଷ୍ୟ କରିବା ହେତୁ ଭାରତୀୟମାନେ ତାଙ୍କୁ ଶ୍ରଦ୍ଧା ଓ ସମ୍ମାନ ଦୃଷ୍ଟିରେ ଦେଖୁଥିଲେ । ସୁଯୋଗବାଦୀଙ୍କର ଅଭାବ ନାହିଁ । ମ୍ୟାକ୍‌ସମୂଲର ପ୍ରତ୍ୟେକ ସୁଯୋଗରୁ ସୁବିଧା ଉଠାଇଛନ୍ତି । ତାଙ୍କପରି ବିଦେଶରେ ସଂସ୍କୃତ ବିଦ୍ୱାନଗଣ ଏ ଦେଶର ସଂସ୍କୃତ ସାହିତ୍ୟ ଓ ଶାସ୍ତ୍ରକୁ ପରୋକ୍ଷଭାବରେ ଆକ୍ଷେପକରି ଆମ ସମ୍ପର୍କରେ ଯେଉଁ ପ୍ରକାର ପ୍ରବନ୍ଧ, ଚଳଚିତ୍ର ଓ ଅଭିଭାଷଣମାନ ଦେଉଥିଲେ ତାହା ଏ ପ୍ରବନ୍ଧର ବର୍ଣ୍ଣ୍ୟବସ୍ତୁ ନୁହେଁ । ତେବେ ଏ ସମସ୍ତ ବିରୋଧର ପ୍ରତିକ୍ରିୟା ସ୍ୱରୂପ ଭାରତରେ ଏକ ବିରାଟ କ୍ରାନ୍ତିକାରୀ ସମାଜର ଅଭ୍ୟୁଦୟ ହେଲା । ଯା'ର ନେତୃତ୍ୱ ନେଲେ ରାଜା ରାମମୋହନ ରାୟ । ତାଙ୍କ ପରେ ପରେ କେଶବ ଚନ୍ଦ୍ର ସେନ ଖ୍ରୀଷ୍ଟଧର୍ମଦ୍ୱାରା ପ୍ରଭାବିତ ହୋଇ ବ୍ରହ୍ମ ସମାଜର ସିଦ୍ଧାନ୍ତରୁ ଖ୍ରୀଷ୍ଟିୟ ସିଦ୍ଧାନ୍ତ ସହ ସମ୍ମିଳିତ କରି ତାକୁ ଏକପ୍ରକାର ଦେଶୀ ଖ୍ରୀଷ୍ଟିୟାନ ସମାଜରେ ପରିଣତ କରି ସାରିଥିଲେ । ତତ୍କାଳୀନ ଯେଉଁ କେତେକ ଭାରତୀୟଙ୍କୁ ମ୍ୟାକ୍‌ସମୂଲର ଜାଣିଥିଲେ ସେମାନଙ୍କ ମଧ୍ୟରେ ଥିଲେ ଦ୍ୱାରିକା ନାଥ ଠାକୁର, କେଶବ ଚନ୍ଦ୍ର ସେନ୍, ବେହେରାମଜୀ ମାଲବାରୀ ଓ ରମାବାଈ ।

ଯେଉଁ ସମୟରେ ୟୁରୋପରେ ମହାନ ସଂସ୍କୃତ ବିଦ୍ୱାନ ଭାବରେ ମ୍ୟାକ୍‌ସ-ମୂଲରଙ୍କୁ ଲୋକପ୍ରିୟ କରାଯାଉଥିଲା ସେ ସମୟରେ ଭାରତରେ ଏପରି ଜଣେ ମହାନ ଋଷିଙ୍କ ଜନ୍ମ ହୋଇ ସାରିଥିଲା ଯାହାଙ୍କୁ ମ୍ୟାକ୍‌ସମୂଲରଙ୍କର ସମସ୍ତ ସିଦ୍ଧାନ୍ତ ଅବାସ୍ତବପରି ସ୍ପଷ୍ଟ ଦେଖା ଯାଉଥିଲା । ସେ ବ୍ୟକ୍ତି ଥିଲେ ସ୍ୱାମୀ ଦୟାନନ୍ଦ ସରସ୍ୱତୀ । 'ସତ୍ୟାର୍ଥ ପ୍ରକାଶ'ର ଏକାଦଶ ସମୁଲ୍ଲାସରେ ଏହି ମହାନ ଜର୍ମାନ ବିଦ୍ୱାନଙ୍କ ସମ୍ପର୍କରେ ସେ କହି ସାରିଥିଲେ—ଲୋକଙ୍କ ମଧ୍ୟରେ ଏହା ବହୁଳ ଭାବରେ ପ୍ରଚାରିତ ଯେ ଜର୍ମାନ ଦେଶରେ ସଂସ୍କୃତ ବିଦ୍ୟାର ଖୁବ୍ ପ୍ରଚାର ଅଛି ଓ ଯେତେ ସଂସ୍କୃତ ମୋକ୍ଷମୂଲର ସାହେବ ପଢ଼ିଛନ୍ତି ସେତେ କେହି ପଢ଼ିନାହାନ୍ତି । ଏ କଥା କହିବା ବାହୁଲ୍ୟ ମାତ୍ର । 'କାରଣ 'ଯସ୍ମିନ୍ ଦେଶେ ଦ୍ରୁମୋ ନାସ୍ତି ତତ୍ରୈରଣ୍ଡୋପି ଦ୍ରୁମାୟତେ' । ଏଣୁ ମୋକ୍ଷମୂଲରଙ୍କୁ ଆମେ ବରିଷ୍ଠ ପଣ୍ଡିତ ବୋଲି କହିଦେଉଁ । ଯେହେତୁ ସ୍ୱାମୀଜୀ ଜର୍ମାନ ନିବାସୀ ଜଣେ ପ୍ରିନ୍‌ସପାଲ୍‌ଙ୍କ ଠାରୁ ଏହା ଜାଣି ସାରିଥିଲେ ଯେ ସେ ଦେଶରେ ସଂସ୍କୃତ ଚିଠିର ଅର୍ଥ କହିବା ଲୋକ ମଧ୍ୟ ଖୁବ୍ କମ୍ । ମ୍ୟାକ୍‌ସମୂଲରଙ୍କ ବେଦ ଭାଷ୍ୟ ଦେଖି ସ୍ୱାମିଜୀଙ୍କୁ ଏହା କହିବାକୁ ହେଲା ଯେ ଭାରତର ବିଭିନ୍ନ ବିଦ୍ୱାନଙ୍କ ଟୀକା ଦେଖି ଇତସ୍ତତଃ ଭାବରେ ସେ ବେଦର ବ୍ୟାଖ୍ୟା କରିଛନ୍ତି । ଯେପରି :—

"ଯୁଞ୍ଜନ୍ତି ବ୍ରଧ୍ନମରୁଷଂ ଚରନ୍ତଂ ପରିତସ୍ଥୁଷଃ ରୋଚନ୍ତେ ରୋଚନା ଦିବି ॥

(୧. ୬. ୧)

ଏହି ମନ୍ତ୍ରଟିରେ ବ୍ରଧ୍ନର ଅର୍ଥ ସେ ଅଶ୍ୱବୋଲି ସ୍ପଷ୍ଟ କରିଛନ୍ତି । ସାଂସ୍କାଣାଗ୍ରନ୍ଥ ଏହାର ଅର୍ଥ ସୂର୍ଯ୍ୟବୋଲି କୁହନ୍ତି । ମାତ୍ର ଏହାର ଟୀକା ଅର୍ଥ ପରମାତ୍ମା ଅଟେ ।

ପନଲ ପତ୍ରିକ ଷ୍ଟାର ଆଧାରଉପରେ ସ୍ୱାମିଜୀ ଏହା କର୍ଣ୍ଣିକ ଭାବରେ ପ୍ରଗ୍ରହ କଲେ ଯେ ବେଦ ସମସ୍ତ ସତ୍ୟ ପୁସ୍ତକର ଗ୍ରନ୍ଥ ଅଟେ । ତତ୍କାଳୀନ କଂଗ୍ରେସର ଜନ୍ମଦାତା ମିଷ୍ଟର ହ୍ୟୁମ୍ ତାଙ୍କର ପ୍ରତିଭା ଓ କର୍ମ୍ମକତାରେ ପ୍ରଭାବିତ ହୋଇ କହି ଉଠିଲେ—ସ୍ୱାମୀ ଦୟାନନ୍ଦ ଜଣେ ମହାନବଂକ୍ତି । ମୁଁ ତାଙ୍କ ପାଦୁକାର ଫିତା ଖୋଲିବାର ଯୋଗ୍ୟତା ମଧ୍ୟ ହାସଲ କରିନାହିଁ । ୟୁରୋପ ଓ ଆମେରିକାରେ ସ୍ୱାମୀଜୀଙ୍କ ଆବର୍ତ୍ତିବ, ଧର୍ମପ୍ରଗ୍ରହ ଓ ସଂଗଠନ ଉପରେ ଅନେକ ପ୍ରବନ୍ଧମାନ ପ୍ରକାଶ ପାଇଲା । ସେଠାକାର ଲୋକେ ବିଚଳିତ ହୋଇ ପଡ଼ିଲେ । ଆମେରିକାରୁ ପ୍ରକାଶିତ ଅନେକ ପ୍ରବନ୍ଧ ମଧ୍ୟରୁ ଏନ୍‌ଡ୍ରୋ-ଜେକ୍‌ସନ୍-ଡେଭିସ୍ ଏକ ପ୍ରବନ୍ଧରେ ଲେଖିଲେ – ମତେ ଏକ ଅଗ୍ନି ଦେଖାଯାଉଛି, ଯାହା ସର୍ବତ୍ର ବ୍ୟାପ୍ତ ହୋଇ ଗ୍ଲାଉଛି । ସେହି ଅଗ୍ନି ସନାତନ ଆର୍ଯ୍ୟଧର୍ମର ସ୍ୱାଭାବିକ ପବିତ୍ର ପରିସ୍ଥିତି ସୃଷ୍ଟି କରିବାକୁ ଆର୍ଯ୍ୟ ସମାଜରୂପୀ, ଜ୍ୱାଳାମୁଖରୁ ନିର୍ଗତ ହେଉଛି ଓ ଭାରତରେ ଏକ ପରମ ଯୋଗୀ ଦୟାନନ୍ଦ ସରସ୍ୱତୀଙ୍କ ହୃଦୟରେ ପ୍ରକାଶିତ ହୋଇଛି । ତଦ୍ରୂପ ରୋମାଁରୋଲାଂ ଦୟାନନ୍ଦଙ୍କୁ ପୁରୁଷ ସିଂହ ଓ ମ୍ୟାଡ଼େମ୍ ବ୍ଲାଭେସ୍କି ଅସତ୍ୟର ନିର୍ଭିକ ସଂହାରକ ବୋଲି ନିଷ୍ପଟ ଅଭିମତମାନ ଦେଲେ । ଆର୍ଯ୍ୟସମାଜର ଅଭ୍ୟୁଦୟ ସଙ୍ଗେ ସଙ୍ଗେ ଦେଶ ଓ ବିଦେଶର ଶ୍ରେଷ୍ଠ ବଡ଼ ଧାର୍ମିକ ସମ୍ପ୍ରଦାୟଗଣ ପ୍ରମାଦ ଗଣିଲେ । ସଂସ୍କୃତ ପଣ୍ଡିତର ମୁଖାପିନ୍ଧି ସଂସ୍କୃତକୁ ହତ୍ୟା କରୁଥିବା ପାଶ୍ଚାତ୍ୟ ସଂସ୍କୃତ ପଣ୍ଡିତମାନଙ୍କ ସମସ୍ତ କୌଶଳ ଧରାପଡ଼ିଗଲା ।

ମ୍ୟାକ୍‌ସମୂଲରଙ୍କୁ ଆର୍ଯ୍ୟସମାଜ ସମ୍ପର୍କରେ ଆସିବାକୁ ହେଲା । ସ୍ୱାମୀ ଦୟାନନ୍ଦଙ୍କ ଋଗ୍‌ବେଦ ଭାଷ୍ୟଅଙ୍କର ସେ ନିୟମିତ ପାଠକ ହେଲେ ଏବଂ 'ଇଣ୍ଡିଆ-ହ୍ୱାଟକେନ୍ ଇଟ୍ ଟିଚ୍ ଅସ୍ ?' ପୁସ୍ତକରେ ତାଙ୍କୁ ସ୍ୱାମୀ ଦୟାନନ୍ଦଙ୍କ ଋଗ୍‌ବେଦାଦି ଭାଷ୍ୟ ଭୂମିକା ସମ୍ପର୍କରେ କହିବାକୁ ପଡ଼ିଲା ଯେ ତାହା ବୈଦିକ ସାହିତ୍ୟର ସେ ସମୟର ଅନୁପମ ଓ ମନୋରଞ୍ଜକ [ଇଣ୍ଟେରେଷ୍ଟିଙ୍ଗ] ଗ୍ରନ୍ଥ ଅଟେ । ସେ ଲଣ୍ଡନରେ ପ୍ରତିଷ୍ଠିତ ଆର୍ଯ୍ୟସମାଜର ସାପ୍ତାହିକ ଅଧିବେଶନରେ ସମ୍ମିଳିତ ହେବାପାଇଁ ନିମନ୍ତ୍ରଣମାନ ପାଇଲେ ମାତ୍ର ଅନେକ ଅସୁବିଧା ଦର୍ଶାଇ ସେ ଯୋଗଦେଇ ପାରୁ ନ ଥିବାରୁ ସବିନୟ ପତ୍ର ଲେଖିଥିଲେ । ସେ ନିଜ 'ବାୟୋଗ୍ରାଫିକାଲ୍ ଏସେଜ୍'ରେ ସ୍ୱାମୀ ଦୟାନନ୍ଦଙ୍କ ବେଦଭାଷ୍ୟର ନୂତନ ଶୈଳୀ ପ୍ରତି ପୂର୍ଣ୍ଣତଃ ସହାନୁଭୂତିଶୀଳ ହୋଇ ପଡ଼ିଲେ ଓ ତାଙ୍କର ବିଦ୍‌ବତ୍ତା ଓ ପାଣ୍ଡିତ୍ୟକୁ

ସ୍ୱୀକାର କରିବାକୁ ବାଧ୍ୟ ହେଲେ । ମ୍ୟାକ୍‌ସମୂ୍ୟଲରଙ୍କର ପାଣ୍ଡିତ୍ୟର ସମସ୍ତ କୌଶଳ କରାପଡ଼ି ଯିବା ପରେ ଯଦ୍ୟପି ସେ ପ୍ରତ୍ୟକ୍ଷ ଭାବରେ ଦୟାନନ୍ଦଙ୍କୁ ଖଣ୍ଡନ କରିବାର ରାସ୍ତା ପାଉ ନ ଥିଲେ ତଥାପି ଜାନୁଆରୀ ୨୪. ୧୮୮୨ରେ ଶ୍ରୀ ଏ ପନ ବୈରାମଜୀ ମାଲାବାରୀଙ୍କୁ ଲେଖି ଏହା ସାବଧାନ କରାଇ ଦେଇଥିଲେ ଯେ ସ୍ୱାମୀ ଦୟାନନ୍ଦ ଯେପରି ବେଦର ଭାଷ୍ୟ କରୁଛନ୍ତି ତାହା ବେଦକୁ 'ଓଭରଭେଲ୍ୟୁ' ବା ଅତ୍ୟଧିକ ମୂଲ୍ୟାଙ୍କନ ମାତ୍ର କରାଯାଇଛି । ପୁନଶ୍ଚ ସେ ଲେଖିଲେ — ମୁଁ ତୁମକୁ ଦୁଇଟି ବିପଦ ପାଇଁ ସାବଧାନ କରିଦେବାକୁ ଚାହେଁ । ତାହେଲା ତୁମ ପ୍ରାଚୀନ ଜାତୀୟ ଧର୍ମକୁ ତୁମର ଅନ୍ଧ ୟୁରୋପୀୟ ପୂଜକଗଣ ହିଁ ଅବମୂଲ୍ୟନ କରିଦେଇଛନ୍ତି ଓ ଏହାକୁ ଅତ୍ୟଧିକ ମୂଲ୍ୟାଙ୍କନ ଓ ଯେପରି ଏହାର ଭାଷ୍ୟ ହେବା କଥା ସେପରି ନ କରିବାରେ ଭ୍ରମ ତୁମେ ସ୍ୱାମୀଦୟାନନ୍ଦ ସରସ୍ୱତୀଙ୍କ ବେଦରେ ଦୃଷ୍ଟାନ୍ତାତ୍ମକ ମୂଳସ୍ରୋତ ଭାବରେ ଦେଖିପାରିବ ।

ବେଦର କିପରି ଭାଷ୍ୟହେବା କଥା ତାହା 'ମ୍ୟାକ୍‌ସମୂ୍ୟଲରଙ୍କ ବେଦଭାଷ୍ୟ'ରେ ଉଲ୍ଲେଖ କରାଯାଇଛି । ଏଠି ଏତିକି ସ୍ମରଣ ରଖାଯାଇ ପାରେ ଯେ ଦୟାନନ୍ଦଙ୍କୁ ସେ କୌଣସି ତର୍କର ଆଧାର ପରେ ଖଣ୍ଡନ କରି ନାହାନ୍ତି । ସେ ଆର୍ଯ୍ୟସମାଜ ଅପେକ୍ଷା ବ୍ରହ୍ମସମାଜକୁ ଏଥିପାଇଁ ଭଲ ପାଉଥିଲେ ଯେ ତାଙ୍କ ବିଚାରକୁ ସ୍ୱୀକାର କରିନେବା'ରେ କେ. ଚ. ସେନ୍ ଜଣେ ସମୁନ୍ନତବାଦୀ ବ୍ୟକ୍ତିଥିଲେ । ସ୍ୱାମି ଦୟାନନ୍ଦ ସରସ୍ୱତୀ ସତ୍ୟକୁ ସତ୍ୟଭାବରେ ହିଁ କହିବାରେ ନିର୍ଭିକ ଥିବାରୁ ମ୍ୟାକ୍‌ସମୂ୍ୟଲରଙ୍କ ପ୍ରିୟପାତ୍ର ହୋଇପାରିଲେ ନାହିଁ । ସେ କେଶବଚନ୍ଦ୍ର ସେନଙ୍କ ପ୍ରଭାବରେ ଆସି ଥିବାରୁ କହୁଥିଲେ — 'ଯେତେଦିନ ପର୍ଯ୍ୟନ୍ତ ଭାରତର ଧର୍ମ ରହୁଛି, ଯାହା ଏହାର ନାମ ହେଉନା କାହିଁକି, କୃତଜ୍ଞତା ସହ କେଶବଚନ୍ଦ୍ର ସେନ୍‌ଙ୍କୁ ସମସ୍ତେ ସ୍ମରଣ ରଖିବେ, ଜଣେ ଈଶ୍ୱରଙ୍କ ଗୌରବରେ, ମାନବତାର କଲ୍ୟାଣକାରୀ ଓ ସତ୍ୟପାଇଁ ଜନ୍ମ ଓ ମୃତ୍ୟୁ ବରଣ କରିଥିବା ବ୍ୟକ୍ତି ଭାବରେ, ଯାହା ମୁଁ ଦେଖି ପାରୁଛି ।'

ମ୍ୟାକ୍‌ସମୂ୍ୟଲରଙ୍କ ଲିଖିତ 'ରାମକୃଷ୍ଣ ହିଜ୍ ଲାଇଫ୍ ଏଣ୍ଡ ସେଇଙ୍ଗ୍' ପୁସ୍ତକର ସମ୍ପାଦକ ନନ୍ଦ ମୁଖାର୍ଜି ଏହା ତାଙ୍କ ଭୂମିକା (ପୃ. ୨୫)ରେ ମ୍ୟାକ୍‌ସ-ମୂ୍ୟଲରଙ୍କର ବ୍ୟକ୍ତିତ୍ୱ ମୂଲ୍ୟାଙ୍କନ କରିବାକୁ ଯାଇ ଲେଖିଦେଲେ — ମ୍ୟାକ୍‌ସମୂ୍ୟଲର ଦୟାନନ୍ଦ ଓ ଆର୍ଯ୍ୟସମାଜ ପ୍ରତି ଗଭୀର ଶ୍ରଦ୍ଧା ରଖୁଥିଲେ ମାତ୍ର ଜଣେ ଗବେଷକ ହିସାବରେ ଯାହା ବେଦ ସମ୍ପର୍କରେ ଲେଖିବା କଥା ସେ ଲେଖିଛନ୍ତି ।' ଲେଖନ୍ତି । ଏଥିରେ ମନାନ୍ତର ପ୍ରଶ୍ନ ଉଠୁନାହିଁ ବରଂ ମତାନ୍ତର କଥା କୁହାଯାଉଛି । ମତାନ୍ତର ସର୍ବଦା ସ୍ୱାଗତଯୋଗ୍ୟ । ସ୍ୱାମୀଜୀଙ୍କ ସମ୍ପର୍କରେ ମ୍ୟାକ୍‌ସମୂ୍ୟଲରଙ୍କର କୌଣସି

ପ୍ରକାର ସିଦ୍ଧାନ୍ତର ଅନୁସରଣ ମନେ ହେଉନାହିଁ। ଏହି ପ୍ରବନ୍ଧଟି ଲେଖିବା ପୂର୍ବରୁ ମ୍ୟାକ୍ସମୂ୍ୟଲରର ଜୀବନର ଯଥେଷ୍ଟ ସହଯୋଗ ମୁଁ ନେଇଛି। ହୋମିଓରେହଙ୍କ ସମ୍ପାଦିତ ଏଫ୍. ଫେଡ୍ରିକ୍ ମ୍ୟାକ୍ସମୂ୍ୟଲର – 'ହ୍ୱାଟ୍ ଡୁ କେନ୍ ଟିଚ୍ ଅସ୍' ଓ ଓ ଜାନହ୍ ଏଚ୍. ଭଏଟ୍ଙ୍କ ଲିଖିତ 'ମ୍ୟାକ୍ସମୂ୍ୟଲର ଦ ମେନ୍ ଏଣ୍ଡ୍ ହିଜ୍ ଆଇଡ଼ିଆଜ୍' ପୁସ୍ତକ ଦ୍ୱୟ ପଢ଼ି ମୁଁ ମ୍ୟାକ୍ସମୂ୍ୟଲରଙ୍କ ମହାନତା ହୃଦୟଙ୍ଗମ କରିଛି।

ଏହା ସ୍ୱୀକାର କରିବାରେ ମୁଁ କେବେ ଅକୁଣ୍ଠିତ ନୁହେଁ ଯେ ଯେଉଁ ଭାରତୀୟ ବିଦ୍ୱାନମାନଙ୍କ ସହ ତାଙ୍କର ବନ୍ଧୁତା ଥିଲା ତାଙ୍କ ପ୍ରତି ସେ ବ୍ୟକ୍ତିଗତ ଭାବରେ ପୂର୍ଣ୍ଣତଃ ବିଶ୍ୱସ୍ତ ଥିଲେ। ଯେଉଁ ସମୟରେ ଭାରତର ମହାନ ଦେଶପ୍ରେମୀ ତିଳକଙ୍କୁ ବନ୍ଦୀ କରାଯାଇଥିଲା, ସେ ସମୟରେ ସେ ତାଙ୍କର ଋଗ୍‌ବେଦର ସଂସ୍କରଣ ତାଙ୍କ ପାଖକୁ ପଠାଇଥିଲେ। ମାତ୍ର ଏହା ତାଙ୍କୁ ଦିଆ ନ ଯିବାରୁ ସେ ସାର୍ ଜେନ୍ ଲୁବକ୍‌ଙ୍କୁ ଏକ ଆବେଦନ ପତ୍ରରେ ଅନୁରୋଧ କରିଥିଲେ – ଏହା ତାଙ୍କୁ ଦାରୁଣ ଆଘାତ ଦେଇଛି କାରଣ ସେ (ତିଳକ) ତାଙ୍କ ବାଇବେଲ ଓ ପ୍ରାର୍ଥନା ପୁସ୍ତକ ଜେଲ୍‌ରେ ପଢ଼ିବାକୁ ଅନୁମତି ମଧ୍ୟ ପାଉନାହାନ୍ତି।' ଏତଦ୍‌ବ୍ୟତୀତ ସେ ଭାରତୀୟମାନଙ୍କର ସତ୍ୟବାଦିତା ଉପରେ ଆସ୍ଥା ରଖୁଥିଲେ। ଯଦି କେହି ତାଙ୍କୁ ଭାରତୀୟମାନେ ମିଥ୍ୟାବାଦୀ ବୋଲି କହୁଥିଲେ ସେ ତାଙ୍କୁ ପଚାରୁଥିଲେ, ସେ କେତେଜଣ ମିଥ୍ୟାବାଦୀ ଭାରତୀୟଙ୍କୁ ଜାଣିଛନ୍ତି ? ଏବଂ ବଶିଷ୍ଠରୁ ସେ ଉଦ୍ଧୃତ କରି କହୁଥିଲେ ଯେଉଁ ଯେଉଁ ସ୍ଥାନରେ ମିଥ୍ୟା କୁହାଯିବ ତାହା ତାଙ୍କ ଶାସ୍ତ୍ରରେ ଉଲ୍ଲେଖ କରାଯାଇଛି। ଏଣୁ ଅଯଥାରେ ମିଥ୍ୟା ସେମାନେ କାହିଁକି କହିବେ।

ପ୍ରବନ୍ଧଟି ମ୍ୟାକ୍ସମୂ୍ୟଲରଙ୍କ ସମ୍ପର୍କରେ ଯାହା ମଧ୍ୟ ଆଲୋଚନା କରାଗଲା ଏହାଦ୍ୱାରା ତାଙ୍କୁ କୌଣସି ପ୍ରକାର ଅସମ୍ମାନ କରାଯାଇ ନାହିଁ। ସତ୍ୟକୁ ସତ୍ୟ ଭାବରେ କହିବା ପାଇଁ କୌଣସି ପ୍ରକାର ସ୍ୱାର୍ଥଦୃଷ୍ଟ ଶବ୍ଦ ନାହିଁ। ତେବେ ଏ କଥା ଅବଶ୍ୟ ଶେଷରେ ମୁଁ କହିବାକୁ ଉଚିତ ମନେ କରିବି ଯେ ବେଦଭାଷ୍ୟରେ ଯାହା ମଧ୍ୟ ବିଭ୍ରାଟ ହୋଇଛି ସେଥିପାଇଁ ମ୍ୟାକ୍ସମୂ୍ୟଲର ଯଦି ଏକ ଚତୁର୍ଥାଂଶ ଦାୟୀ ହୁଅନ୍ତି ତା ହେଲେ ମୋକଲେଙ୍କୁ ତିନି ଚତୁର୍ଥାଂଶ ଦାୟୀ କରାଯାଇ ପାରିବ।

# ବେଦରେ ସାମ୍ୟବାଦ

ବିଶ୍ୱ ଇତିହାସରେ ବେଦ ହିଁ ନିଃସନ୍ଦେହରେ ଏକମାତ୍ର ଶାସ୍ତ୍ର—ଯେଉଁଥିରେ ମନୁଷ୍ୟକୁ ସରସ ଓ ବିକଶିତ କରିବାପାଇଁ ରହିଛି ଅନେକଗୁଡ଼ାଏ ମନ୍ତ୍ର । ସାଧାରଣରୁ ଅସାଧାରଣ ଲୌକିକରୁ ଅଲୌକିକ ଏବଂ ଭୌତିକରୁ ଆଧ୍ୟାତ୍ମିକ ସ୍ତର ପର୍ଯ୍ୟନ୍ତ ପହଞ୍ଚିବାପାଇଁ ମନୁଷ୍ୟକୁ ସେଥିରେ ଦେଖାଇ ଦିଆଯାଇଛି ଗୋଟିଏ ଗୋଟିଏ ମାର୍ଗ !

ଏହା ଥିଲା ସେହି ଯୁଗର କଥା ଯେଉଁ ଯୁଗରେ ଧର୍ମ, ଅର୍ଥ, କାମ ଓ ମୋକ୍ଷ ପ୍ରାପ୍ତି କରିବାପାଇଁ ପ୍ରତ୍ୟେକ ବ୍ୟକ୍ତିକୁ ଇଚ୍ଛାକୃତ ଚାରୋଟି ଆଶ୍ରମ ଦେଇ ଗତି କରିବାକୁ ପଡ଼ୁଥିଲା । ଏହି ଜୀବନଯାତ୍ରା ପ୍ରଣାଳୀକୁ ଆମେ ବ୍ୟକ୍ତିବାଦ ବା ସାମ୍ୟ-ବାଦ ବୋଲି ଅଭିହିତ କରିପାରୁଁ । ସେଥିପାଇଁ ବେଦର କିଛି ଯାଏ ଆସେ ନାହିଁ । ମନୁଷ୍ୟକୁ ବ୍ୟକ୍ତିଗତଭାବରେ ତା'ର ସ୍ୱାଧୀନତା ଠିକଣା ଦେବା ପରେ ମଧ୍ୟ ସେ ଯେପରି ସମାଜର ଜଣେ ସୃଜନଶୀଳ ସଦସ୍ୟ ହୋଇପାରିବ ତାହାହିଁ ହେଉଛି ବେଦମାତାଙ୍କ ମାନବ ସମାଜ ପ୍ରତି ଉପଦେଶ ।

ବେଦ ବିଶ୍ୱ ଇତିହାସରେ ପ୍ରାଚୀନତମ ଜ୍ଞାନକୋଷ ହୋଇଥିବାରୁ ଏହାର କୌଣସି ଶବ୍ଦଟିକୁ ବହୁ ପରିମାଣରେ ଗୁରୁତ୍ୱ ଦେବା ନିରର୍ଥକ । ଏଣୁ ବେଦରେ କ'ଣ ଅଛି କହିବା ଯେ ପ୍ରକାର ବହୁ ପାଣ୍ଡିତ୍ୟର କଥା, ତଦ୍ରୂପ ବେଦରେ କ'ଣ ନାହିଁ ତାହା ମଧ୍ୟ କହିବା ଗବେଷଣାର ବିଷୟବସ୍ତୁ ଅଟେ । ତେବେ ଏଠି ବେଦର ଗୋଟିଏ ଶବ୍ଦ ଉପରେ ଆଲୋଚନା କରି ମୁଁ ଏହାକୁ ସଂକ୍ଷିପ୍ତ କରିବାକୁ ଚାହେଁ । ତାହା ହେଲା "ବେଦରେ ସାମ୍ୟବାଦ ।"

"ସାମ୍ୟବାଦ" ଶବ୍ଦଟି ଉଚ୍ଚାରଣ କରିବା ଦ୍ୱାରା ଆମେ ସ୍ୱାଭାବିକ ଭାବରେ ଚିନ୍ତାକରି ନେଉ ଯେ ଯାହା ବହୁଳ ଭାବରେ କୁହାଯାଉଥିବା ସାମ୍ୟବାଦୀ ସମାଜ ବ୍ୟବସ୍ଥା ପରି କିଛି କଥା । ଏଠାରେ ମୁଁ ଆପଣମାନଙ୍କୁ ସତର୍କ କରିଦେବାକୁ ଚାହେଁ ଯେ ସାମ୍ୟବାଦ ଶବ୍ଦଟି ଲାଟିନ୍ 'କମ୍ୟୁନସ୍" ଶବ୍ଦର ଇଂରାଜୀ ଅପଭ୍ରଂଶ "କମ୍ୟୁନିଜମ୍"ରୁ ଭାରତୀୟ ଭାଷାକୋଷକୁ ଆସିଛି । "ସାମ୍ୟ" ଶବ୍ଦଟି ଯଦିଓ ଭାରତୀୟ ପ୍ରାଚୀନତମ ବାଙ୍ମୟରେ ରହିଛି ତଥାପି ଏହା ସହିତ ଏକ ନିର୍ଦ୍ଦିଷ୍ଟ "ବାଦ"ର ସଂଯୋଗ ଯେ ପାଶ୍ଚାତ୍ୟର ଦାନ ତାହା କହିବାରେ ଭାରତୀୟ ସଂସ୍କୃତି ଅପୂର୍ଣ୍ଣ ବୋଲି ଧାରଣା ହେବା ଅନୁଚିତ ।

"ଏ ଚେତିର ବ୍ୟବହାର ଯେତେବେଳେ ଫରାସୀ ଭାଷାରେ କମ୍ୟୁନ" ବା "ପ୍ରାଚୀନ ଗ୍ରାମ ସଂଗଠନ" ଭାବରେ ପ୍ରଚଳନ ହୋଇଥିଲା ସେତେବେଳେ ପର୍ଯ୍ୟନ୍ତ ଏହାର ସ୍ୱରୂପ ଏତେ ସ୍ପଷ୍ଟ ହୋଇ ପାରି ନଥିଲା । ଏହା ସେ ପର୍ଯ୍ୟନ୍ତ ଅସ୍ପଷ୍ଟ ହୋଇ ରହିଲା ଯେ ପର୍ଯ୍ୟନ୍ତ ମାର୍କସ୍ ତାଙ୍କ "ଦ କମ୍ୟୁନିଷ୍ଟ ମେନିଫେଷ୍ଟୋ" ଲେଖି ସାରି ନଥିଲେ । ମାର୍କସ୍ ଏ ଶବ୍ଦଟିର ପ୍ରୟୋଗ ସର୍ବୋ ସାମ୍ୟବାଦ ଭାବରେ କରିଥିଲେ ତେବେ ଯେ ବୈଜ୍ଞାନିକ ସମାଜବାଦ ଓ ସ୍ୱତନ୍ତ୍ରକାଂକ୍ଷୀ ସମାଜବାଦ ମଧ୍ୟରେ ସିଦ୍ଧାନ୍ତଗତ ପାର୍ଥକ୍ୟ ଦର୍ଶାଇବାକୁ ଚାହୁଁଥିଲେ । କାରଣ ଫ୍ରାନ୍ସ ଓ ବ୍ରିଟେନ୍‌ର ପ୍ରାରମ୍ଭିକ ସିଦ୍ଧାନ୍ତକାରଗଣ ସ୍ୱତନ୍ତ୍ରକାଂକ୍ଷୀ ସମାଜବାଦର ପ୍ରତିପାଦନ କରିଚାଲିଥିଲେ ।

ମାର୍କସ ଯେପରି ବୈଜ୍ଞାନିକ ସମାଜବାଦ ଓ ସ୍ୱତନ୍ତ୍ରକାଂକ୍ଷୀ ସମାଜବାଦ ମଧ୍ୟରେ ମତ ପାର୍ଥକ୍ୟ ଦେଖାଇବାକୁ ଚାହିଁଥିଲେ ତଦ୍ରୂପ ଏଠାରେ ମୁଁ ମଧ୍ୟ ମାର୍କସଙ୍କ ସାମ୍ୟବାଦ ଓ ବୈଜ୍ଞାନିକ ସାମ୍ୟବାଦ ମଧ୍ୟରେ ଥିବା ନୀତିଗତ ପାର୍ଥକ୍ୟ ଦର୍ଶାଇବାକୁ ଚାହେଁ । ତେବେ "ବୈଦିକ ସାମ୍ୟବାଦ" କହିବା ଅପେକ୍ଷା ବୈଦିକ ସାମ୍ୟ ଚେତନା" ଶବ୍ଦଟିର ବ୍ୟବହାର ଏଥିପାଇଁ ମୁଁ କରିବାକୁ ଚାହୁଁଛି; କାରଣ ବେଦ କୌଣସି ବାଦ, ଛବାଦ ବା ସମ୍ବାଦର ବହୁ ଊର୍ଦ୍ଧ୍ୱରେ । ଏତଦ୍‌ବ୍ୟତୀତ 'ବାଦ' ବା 'ଇଜମ୍' କହିଲେ ଆମେ ଯାହା ବୁଝୁ ଏହା ସେ ପ୍ରକାର ରତି ଅର୍ଥର ପ୍ରତିପାଦନ କରେ ନାହିଁ ।

କୌଣସି ଶବ୍ଦ ବା ତତ୍ତ୍ୱ ଯଦି ଥରେ ରୂଢ଼ି ଅର୍ଥରେ ପ୍ରୟୋଗ ହୋଇଯାଏ, ଏହାର କ୍ଷତି ସାରା ସମାଜକୁ ସହ୍ୟ କରିବାକୁ ପଡ଼େ । ମୁଁ ଏଠାରେ ରୁଷ ବା ଚୀନର ଜନକ୍ରାନ୍ତି ସମ୍ପର୍କରେ କିଛି ଉଲ୍ଲେଖ କରିବାକୁ ଚାହୁଁ ନାହିଁ । କାରଣ ଏ କ୍ରାନ୍ତି ସଫଳ ହେବାପରେ ସେଠାରେ କ'ଣ ହେଉଛି କ'ଣ ହେଉନାହିଁ ତାହା କହିବା ସହଜ କଥା ନୁହେଁ । ଏସବୁ କଥାକୁ ଦୃଷ୍ଟି ଆଗରେ ରଖି ରୂଢ଼ି ଅର୍ଥରେ 'ସାମ୍ୟ ଚେତନା' ଶବ୍ଦଟି ମଧ୍ୟ ମୁଁ ପ୍ରତିପାଦନ କରିବାକୁ ଚାହେଁ ନାହିଁ । ଯଦି ବେଦରେ ମୁଁ ସାମ୍ୟବାଦ ସାବ୍ୟସ୍ତ କରିଦିଏ, ତାହାହେଲେ ଆଉ ଜଣେ ବୈଦିକ ବିଦ୍ୱାନ ଏହା ମଧ୍ୟରେ ଈଶ୍ୱରବାସ୍ତବବାଦ, ମାନବବାଦ, ଅନ୍ତଃବାସ୍ତବବାଦ ବା ବ୍ୟକ୍ତିବାଦ ମଧ୍ୟ ପ୍ରମାଣ କରିଦେଇ ପାରିବେ । ଯେହେତୁ ବେଦରେ ଅନେକ ମନ୍ତ୍ର ଏ ପ୍ରକାର ଅର୍ଥରେ ରଚିତ ହୋଇଛି ।

ମାର୍କସ ଇତିହାସକୁ ଛ'ଟି ଯୁଗରେ ବିଭକ୍ତ କରିବା ମଧ୍ୟରେ ପ୍ରଥମଯୁଗକୁ ଯେଉଁଅର୍ଥରେ ସେ ଦେଖିଥିଲେ ତାହା ପ୍ରକୃତରେ ବୈଦିକ ଯୁଗ ଥିଲା । ସେ କହୁଥିଲେ ଅତିପ୍ରାଚୀନ ମନୁଷ୍ୟ ସାମ୍ୟବାଦୀ ସଂଘରେ ଅବସ୍ଥାନ କରୁଥିଲା ।

ସେହି ସମୟରେ ଉତ୍ପାଦନ ଓ ବିତରଣ ଆଦି ସମାଜବାଦୀ ଢଙ୍ଗରେ ହେଉଥିଲା । ଯେହେତୁ ବେଦରେ ବର୍ଣ୍ଣିତ ହୋଇଛି—

"ସମାନୋ ମନ୍ତ୍ରଃ ସମିତିଃ ସମାନୀ
ସମାନଂ ମନଃ ସହଚିତ୍ତମେଷାମ୍,
ସମାନଂ ମନ୍ତ୍ର ଅଭିମନ୍ତ୍ରୟେ ବଃ
ସମାନେନ ବୋ ହବିଷା ଜୁହୋମି ।"

(ଋ : ୧୦ : ୧୯୧ : ୩)

ହେ ମନୁଷ୍ୟ ! ତୁମର ମନ୍ତ୍ରଣା ଓ ସଭାସ୍ଥଳ ଏକ ହେଉ । ମନ ଓ ଚିତ୍ତ ସମାନ ହେଉ । ମୁଁ ତୁମ୍ଭମାନଙ୍କ ନିମିତ୍ତ ସମାନ ମନ୍ତ୍ରଣା ଦେଉଛି । ଐଶ୍ୱର୍ଯ୍ୟ ଓ ଅଭ୍ୟୁଦୟପ୍ରାପ୍ତି ଆଦି ଶ୍ରେଷ୍ଠ କର୍ମରେ ତୁମେ ନିରନ୍ତର ସଂଲଗ୍ନ ରୁହ ।

ପୁନଶ୍ଚ ବେଦମାତା ମନୁଷ୍ୟମାନଙ୍କୁ ଆଦେଶ ଦିଅନ୍ତି,
"ସଂଗଚ୍ଛଧ୍ୱଂ ସଂବଦଧ୍ୱଂ ସଂ ବୋ ମନାଂସି ଜାନତାମ୍
ଦେବାଭାଗଂ ଯଥାପୂର୍ବେ ସଂଜାନାନା ଉପାସତେ ।"

(ଋ: ୧୦ : ୧୯୧ : ୨)

ହେ ମନୁଷ୍ୟ ! ତୁମେ ସମସ୍ତେ ମିଳିମିଶି ଚାଲ; ମିଳିମିଶି ବାର୍ତ୍ତାଳାପ କର । ପରସ୍ପର ସହଯୋଗପୂର୍ବକ ଜ୍ଞାନପ୍ରାପ୍ତି କର ଯେପରି ପୂର୍ବେ ମନୁଷ୍ୟ ଜ୍ଞାନପ୍ରାପ୍ତି କରୁଥିଲେ ।

ଉତ୍ପାଦନ ଓ ବିତରଣ ମଧ୍ୟ ସେହି ଢଙ୍ଗରେ ହେଉଥିଲା । ପ୍ରତ୍ୟେକ ଶ୍ରମଜୀବୀ ଓ କୃଷିଜୀବୀଙ୍କୁ ବେଦମାତାଙ୍କ ଆଦେଶ ଥିଲା —

"ଶତହସ୍ତ ସମାହର ସହସ୍ର ହସ୍ତ ସଂକିର,
କୃତସ୍ୟ କାର୍ଯ୍ୟସ୍ୟ ଚେହ, ସ୍ଫାତିଂ ସମାବହ ।"

(ଅଥର୍ବ : ୩ : ୫)

ଶହେ ହାତରେ କାର୍ଯ୍ୟ କର ଓ ହଜାର ହାତରେ ସଞ୍ଚିତ ଧନରୁ ଦାନ ଦିଅ । ନିଜ ପରିଶ୍ରମରେ ତୁମେ ଯେଉଁ ଧନ ପ୍ରାପ୍ତ କରିଛ, ତା'ର ସଦ୍ ଉପଯୋଗ କର । କୃପଣ ହୁଅ ନାହିଁ । ଉଦାରତା ପୂର୍ବକ ଦିଅ ।

ଏପ୍ରକାର ସମାନତାଥିବା ସତ୍ତ୍ୱେ ଆପଣମାନଙ୍କ ଗୋଚରାର୍ଥେ କହିରଖୁଛି ଯେ — ସାମ୍ୟବାଦୀ-ସମାଜ ବ୍ୟବସ୍ଥା ସହ ବୈଦିକ ସାମ୍ୟଚେତନାର ଯଥେଷ୍ଟ ସାମଞ୍ଜସ୍ୟ

ଥିବା ସତ୍ତ୍ୱେ ଅନେକ ପାର୍ଥକ୍ୟ ମଧ୍ୟ ପରିଦୃଷ୍ଟ ହୁଏ । ବେଦ ପୁଞ୍ଜିବାଦର ବିରୋଧ କରେ ନାହିଁ । ଏହା ଅର୍ଥ ଯେପରି ପୁଞ୍ଜିବାଦୀ ଦର୍ଶନ ବୋଲି ନ ଭାବନ୍ତୁ । ଚତୁଃବର୍ଗ ପ୍ରାପ୍ତିରେ ଧର୍ମ ପରେ ପରେ ଅର୍ଥର ସ୍ଥାନ ମଧ୍ୟ ତାତ୍ପର୍ଯ୍ୟପୂର୍ଣ୍ଣ ଅଟେ । ମାତ୍ର ବେଦ ପ୍ରତିପାଦନ କରେ "ତେନ୍ ତ୍ୟକ୍ତେନ ଭୁଞ୍ଜିଥା ।" (ତ୍ୟାଗ ପୂର୍ବକ ଭୋଗ କର ।) । ପୁନଶ୍ଚ ବେଦରେ କୁହାଯାଇଛି—ହେ ମନୁଷ୍ୟ ! ତୁମେ ଧନର ସ୍ୱାମୀ ହୁଅ । ଅର୍ଥାତ୍ ଦାସ ହୁଅ ନାହିଁ । ଧନର ସ୍ୱାମୀ ହେବା କ'ଣ ଏତେ ଖରାପ କଥା ? ଧନ ଅର୍ଜନ ପାପ ନୁହେଁ ନା ନିର୍ଧନତା ପୁଣ୍ୟ ନୁହେଁ । ପ୍ରଶ୍ନ ଉଠୁଛି—ଧନ ଅର୍ଜନର ଉପାୟ କ'ଣ ହେବା ଉଚିତ ? ଏହା ଏକ ନୈତିକ ପ୍ରଶ୍ନ । ଅନୈତିକଭାବରେ ଅର୍ଜନ କରୁଥିବା ଧନୀ ଦସ୍ୟୁ ଅଟେ । ଏଣୁ ଋଗ୍‌ବେଦରେ କୁହାଯାଇଛି—

"ନତା ନଶଂଣ୍ତି ନ ଦଭାତି ତସ୍କରୋ
ନାସା ମାମିତ୍ରୋ ବ୍ୟଥିରା ଦଧର୍ଷିତି ।
ଦେବାଂଶ୍ଚ ଯାଭିର୍ଯ୍ୟଜତେ ଦଦାତି—ଚ
ଜ୍ୟୋଗିତ୍ତାଭିଃ ସଚତେ ଗୋପତି ସହ ।।"
(ଋ : ୬ : ୨୮ : ୩)

ହେ ମନୁଷ୍ୟ ! ଦୂଷିତ ଉପାୟରେ ଧନ ଉପାର୍ଜନ କର ନାହିଁ । ଏ ଧନ ତୁମକୁ ସୁଖୀ କରିବ ନାହିଁ । ଅନ୍ୟକୁ ଶୋଷଣ ବା ହିଂସା ଦ୍ୱାରା ପ୍ରାପ୍ତ ଧନ କେବେ ମଧ୍ୟ ଶୁଭଙ୍କର ନୁହେଁ । ଏ ପ୍ରକାର ପାପାର୍ଜିତ ଧନଦାନରେ ପୁଣ୍ୟାର୍ଜନ ମଧ୍ୟ ହେବ ନାହିଁ । କିମ୍ବା ଦାନଗ୍ରହୀତା ପାଇଁ ମଧ୍ୟ ଏହା ସୁଫଳ ଦେବନାହିଁ ।

ଏହି ପ୍ରଥମ ଯୁଗ ସମ୍ପର୍କରେ କହି ସାରିବା ପରେ ମାର୍କସ ଅନ୍ୟ ଯୁଗଗୁଡ଼ିକୁ ଦାସତ୍ୱର ଯୁଗ ସାମନ୍ତବାଦୀ ଯୁଗ ଏବଂ ପୁଞ୍ଜିବାଦୀ ଯୁଗ କହି ପଞ୍ଚମ ଯୁଗକୁ ସର୍ବହରାଙ୍କ ଅଧିନାୟକତ୍ୱର ଯୁଗ କୁହନ୍ତି ଏବଂ ଶେଷଯୁଗକୁ ସ୍ୱର୍ଣ୍ଣଯୁଗ କହି ଏହାକୁ "ରାଜ୍ୟ ବିହୀନ ସମାଜ" ବା "କ୍ଲାସଲେସ୍ ସୋସାଇଟି" ଭାବରେ ଅଭିହିତ କରନ୍ତି । ଏ ରାଜ୍ୟ ବିହୀନ ସମାଜର ଦୃଷ୍ଟାନ୍ତ ମହାଭାରତର ଶାନ୍ତିପର୍ବ (୫।୬)ରେ ଦେଖି ଆମେ ଆଶ୍ଚର୍ଯ୍ୟ ହୋଇଯାଉ ଯେଉଁଥିରେ କୁହାଯାଇଛି ସେହି ସତ୍ୟଯୁଗରେ ଜନତା କୌଣସି ରାଜା, ରାଜ୍ୟ, ଦଣ୍ଡବିଧାନ ବିନା ଧର୍ମଦ୍ୱାରା ନିୟନ୍ତ୍ରିତ ହୋଇ କାର୍ଯ୍ୟ କରି ଯାଉଥିଲେ । ଏଣୁ କୁହାଯାଇଛି—

"ନ ରାଜ୍ୟଂ ନ ଚ ରାଜାସୀନ୍ନ ଦଣ୍ଡୋ ନ ଚଦାଂଡିକଃ
ଧର୍ମେଣୈବ ପ୍ରଜାଃ ସର୍ବାରକ୍ଷଂତି ସ୍ମ ପରସ୍ପରମ୍ ।।"

ତେବେ ଏଠି ପ୍ରଶ୍ନ ଉଠୁଛି ଯଦି ପ୍ରାଚୀନ ମନୁଷ୍ୟ ସାମ୍ୟବାଦୀ ସଂଘର ସ୍ଥିତିଥିଲା, ତା'ର ପତନ ହେଲା କିପରି ? ଏହାର ସମାପ୍ତି ଯେଉଁ କାରଣରୁ ହେଲା ସେହି କାରଣରୁ ସର୍ବହରାଙ୍କ ଅଧିନାୟକତ୍ୱର ସମାପ୍ତି ହେବନାହିଁ ବୋଲି କିପରି କୁହାଯିବ ? ପ୍ରକୃତରେ କ'ଣ ଋଷ ବା ଚୀନରେ ଚାଲିଥିବା ସାମ୍ୟବାଦୀ ଶାସନ ସର୍ବହରାଙ୍କ ଅଧିନାୟକତ୍ୱରେ ନ ଚାଲି ସର୍ବହରାଙ୍କ ଉପରେ ଅଧିନାୟକତ୍ୱରେ ଚାଲୁନାହିଁ ଏହାକୁ "ଡିକ୍ଟେଟରସିପ୍ ଅଫ୍ ଦି ପ୍ରୋଲେଟେରିଏଟ୍" ନ କହି ଡିକ୍ଟେଟର୍ ସିପ୍ ଓଭର ଦି ପ୍ରୋଲେଟେରିଏଟ୍ ବୋଲି କହିଲେ ଠିକ୍ ହେବ ।

ଯେଉଁ କ୍ଷୁଧା ପାଇଁ ସମଗ୍ର ମାର୍କସବାଦ ଛିଡ଼ା ହୋଇଛି, ସେ କ୍ଷୁଧା ବୈଦିକ ଋଷିମାନଙ୍କ ପାଖରେ ଅନ୍ୟ ରୂପରେ ଦେଖାଦେଇଛି । ବେଦ "ନିଜେ ବଞ୍ଚ ଓ ଅନ୍ୟକୁ ବଞ୍ଚାଅ"ର ଆଦର୍ଶରେ ପରିପୂର୍ଣ୍ଣ । ସାମ୍ୟବାଦୀ ଦାରିଦ୍ର୍ୟତା ଏକ ସମାଜ-କୃତ କୃତ୍ରିତ ଦାରିଦ୍ର୍ୟତା—ଯାହାର ଆଧାର ଉପରେ ସମଗ୍ର ସାମ୍ୟବାଦ ଛିଡ଼ା ହୋଇଛି । ସେଠି କ୍ଷୁଧିତମାନଙ୍କ ବିଷୟରେ କୁହାଯାଇଛି ଯେଉଁମାନଙ୍କ ପେଟ ଭରିନାହିଁ । ଏହାର ସମାଧାନ ଅନ୍ନ ଦ୍ୱାରା ସମ୍ଭବ । ମାତ୍ର ଆଜିର ସମାଜ ତୃଷ୍ଣାର ଦାରିଦ୍ର୍ୟତା ଦ୍ୱାରା ପରିପୂର୍ଣ୍ଣ । ଯିଏ ସମଗ୍ର ସଂସାରର ସମ୍ପତ୍ତି ପାଇଲେ ମଧ୍ୟ ପୁନଶ୍ଚ ଦରିଦ୍ର । ଏଣୁ କୋଟିପତି ନିଜକୁ କାଙ୍ଗାଳ କହେ, କାରଣ ସେ ଅର୍ବପତି ହୋଇ ପାରିନାହିଁ । ଏ କ୍ଷେତ୍ରରେ ମାର୍କସବାଦ କଥା ନିଷ୍ପ୍ରଭ ଉଠିବ ।

ମାର୍କସ୍‌ବାଦ ଏକ ପତିତପାବନ ବା ଦରିଦ୍ର ନାରାୟଣଙ୍କ ଦର୍ଶନ ଛଡ଼ା ଅନ୍ୟ କିଛି ନୁହେଁ । ଯେଉଁଥିରେ ଅନ୍ନମୟ କୋଷର କଥା କୁହାଯାଇଛି । ଏହାପରେ ମଧ୍ୟ ରହିଛି ଆହୁରି ଚାରୋଟି କୋଷ । ତାହା ହେଲା ପ୍ରାଣମୟ, ମନୋମୟ, ବିଜ୍ଞାନମୟ ଏବଂ ଆନନ୍ଦମୟ କୋଷ । ଏ ସମସ୍ତ ସ୍ତର ଦେଇ ନ ଆସିଲେ ମନୁଷ୍ୟ ଆହାର, ନିଦ୍ରା, ଭୟ, ମୈଥୁନ କରୁଥିବା ପଶୁ ସ୍ତରରୁ ଉଠି ପାରିବ ନାହିଁ ।

ପରିଶେଷରେ ଏତିକି କହିଲେ ଯଥେଷ୍ଟ ହେବ ଯେ ବୈଦିକ ସମାଜ ବ୍ୟବସ୍ଥା ଏକ ଶୁଷ୍କ ଭୌତିକ ସମାଜ ବ୍ୟବସ୍ଥା ନୁହେଁ, ଯେଉଁଠି କି ମନୁଷ୍ୟ ନିଜର ଆବଶ୍ୟକତାକୁ ମୁଖ୍ୟକରି ଶ୍ରେଣୀସଂଘର୍ଷରେ ସମସ୍ତ ସମୟ ବ୍ୟର୍ଥ କରିଦେବ । ଏହା ଏକ ଆଧ୍ୟାତ୍ମିକ ସମାଜ ଯାହା ଭୌତିକ ଆବଶ୍ୟକତାକୁ ମଧ୍ୟ ଯଥେଷ୍ଟ ସହାନୁଭୂତିସହ ସମାଜରେ ସ୍ଥାନ ଦିଏ । ଆଧ୍ୟାତ୍ମିକ ବିଶ୍ୱାସ ଆଧୁନିକ ସାମ୍ୟବାଦୀଙ୍କ ପାଇଁ ଯେତେ ଅଦରକାରୀ ମନେ ହେଲେ ମଧ୍ୟ ଏହାର ବଳରେ ସମାଜ ସୁଶୃଙ୍ଖଳିତ ଓ ସୁନିୟନ୍ତ୍ରିତ ହୁଏ—ଯାହା ବୈଦିକ ସାମ୍ୟ ଚେତନାର ସ୍ୱରୂପ ଅଟେ ।

●

# ଅସ୍ପୃଶ୍ୟତା ନୁହେଁ ବର୍ଣ୍ଣବ୍ୟବସ୍ଥା

ଅସ୍ପୃଶ୍ୟତା ସପକ୍ଷରେ କିଛି କହିବାକୁ ଯିବା ପୂର୍ବରୁ ଜଣେ ଏପରି ମହାପୁରୁଷଙ୍କ କଥା ମନେ ପଡ଼େ, ଯାହାଙ୍କୁ ପଦେ ପଦେ ଲାଂଛନା ଭୋଗ କରିବାକୁ ପଡ଼ିଛି । ସେ ଅସ୍ପୃଶ୍ୟ, ଏହା ଜାଣିବା ପରେ ଭଣ୍ଡାରୀ ତାଙ୍କ ବାଳ ଅଧା କାଟି ବନ୍ଦ କରିଦେଲା । ଶେଷରେ ତାଙ୍କ ଭଉଣୀଙ୍କୁ ହିଁ ବାଳ କାଟିବାକୁ ପଡ଼ିଲା । ପାଠଶାଳା ଭିତରକୁ ତାଙ୍କର ପ୍ରବେଶ ନିଷେଧ । ବାରଣ୍ଡାରେ ଏକା ଏକା ହିଁ ତାଙ୍କୁ ପାଠ ପଢ଼ିବାକୁ ହେଉଥିଲା । ଜାତି ଜାଣିବା ମାତ୍ରେ ଅର୍ଦ୍ଧ ରାତ୍ରିରେ ଟାଙ୍ଗାବାଲା ତାଙ୍କୁ ଟାଙ୍ଗାରୁ ଉତାରି ଦେଲା । ଆମେରିକାରୁ ଶିକ୍ଷାପ୍ରାପ୍ତି ପରେ ମଧ୍ୟ ସେହି ଦଶା । ଅଧ୍ୟାପକ ହେଲା ପରେ ଅନ୍ୟାନ୍ୟ ଅଧ୍ୟାପକମାନେ ମଧ୍ୟ ତାଙ୍କ ପାନପାତ୍ରକୁ ନିଜ ପାନପାତ୍ର-ଠାରୁ ପୃଥକ କରି ଦେଲେ । ଅଫିସ ଚପରାଶି ମଧ୍ୟ ତାଙ୍କ ଫାଇଲକୁ ହାତରେ ଉଠାଇବାକୁ ନାରାଜ । ଲୁହା ଚିମୁଟାରେ ଧରି ତାଙ୍କ ପାଖରେ ଫୋପାଡ଼ି ଦେଲା । ତାଙ୍କ ଘରେ ନିଆଁ ଲଗାଇବାକୁ ସେ ଧମକ ପାଇଲେ । ସବୁକାର୍ଯ୍ୟ ପଛରେ ଗୋଟିଏ ହିଁ କାରଣ ଥିଲା, ତାହା ହେଲା ସେ ଅସ୍ପୃଶ୍ୟ ।

ହିନ୍ଦୁ ସମାଜର ତୀବ୍ର କଷାଘାତ ସେ ସହିଲେ । ମାତ୍ର ହିନ୍ଦୁଧର୍ମରେ ତାଙ୍କର ସ୍ଥାନ ନାହିଁ, ଏହା ଜାଣିବା ପରେ ନାଗପୁରର ଏକ ବିଶାଳ ସଭାମଣ୍ଡପରେ ଅଶ୍ରୁପୂର୍ଣ୍ଣ ନୟନରେ ସେ କହିଉଠିଲେ—"ଏହିକ୍ଷଣିଠାରୁ ମୁଁ ହିନ୍ଦୁଧର୍ମ ତ୍ୟାଗ କରୁଛି । ଯେଉଁ ଜାତିରେ ଜ୍ଞାନୀ ହେଲେ ମଧ୍ୟ ଜ୍ଞାନର ପୂଜା ନାହିଁ, ଜାତି ଭେଦର ମେଘନାଦ ପାଚେରୀ ଗଢ଼ିବାରେ ଯେଉଁ ଧର୍ମ ସମସ୍ତ ଶକ୍ତି ଖଟାଇ ସାରିଛି, ସେପରି ଧର୍ମ ସହ ବା ମୋର କି ସମ୍ପର୍କ ? ଆମେରିକାରେ ସର୍ବୋଚ୍ଚ ଶିକ୍ଷା ପାଇସାରିବା ପରେ ସ୍ୱଦେଶରେ ଏକ ଅପମାନିତ ଜୀବନ ଯାପନ କରିବା କ'ଣ ଅଭିଶାପ ନୁହେଁ କି ?"

ସେ ହିନ୍ଦୁଧର୍ମ ତ୍ୟାଗ କଲେ । ବୌଦ୍ଧଧର୍ମର ସାମ୍ୟ, କରୁଣା, ମୈତ୍ରୀ ଭାବ ପ୍ରଭାବିତ ହୋଇ ସେ ହେଲେ ଜଣେ ବୁଦ୍ଧଧର୍ମୀ । ସ୍ୱଧର୍ମ ତ୍ୟାଗ କରିସାରିବାପରେ ସେ କହିଲେ—"ମୁଁ ନିଜର ପିତାକୁ ହିଁ ପିତା କହିବି । ବୁଦ୍ଧଧର୍ମ କୌଣସି ବିଦେଶୀ ଧର୍ମ ନୁହେଁ" ପୁନଶ୍ଚ ସେ କହିଲେ—ଥରେ ସେ ଗାନ୍ଧିଜୀଙ୍କୁ କଥା ଦେଇଥିଲେ କି ଅସ୍ପୃଶ୍ୟତା ପ୍ରଶ୍ନ ଉପରେ ତାଙ୍କ ମତଭେଦ ଥାଇପାରେ । କିନ୍ତୁ ଯେବେ ସମୟ ଆସିବ, ସେ ଏପରି ଏକ ମାର୍ଗ ବରଣ କରିବେ, ଯେଉଁଥିରେ ରାଷ୍ଟ୍ରର କୌଣସି

ପ୍ରକାର ଅଦ୍ଭୁତ ହେବ ନାହିଁ । ବୌଦ୍ଧଧର୍ମ ଗ୍ରହଣ କରି ସେ ଗାନ୍ଧୀଜୀଙ୍କୁ ଦେଇଥିବା ବଚନ ପୂରଣ କଲେ । ସେ ଆଉ କେହି ନ ଥିଲେ । ସେ ଥିଲେ ଆଧୁନିକ ଭାରତର ମନୁ ଡାଃ ଆମ୍ବେଦକର୍ । ତାଙ୍କ ଜୀବନୀ ପଢ଼ିବା ପରେ କିଏ ଏପରି ପରିସ୍ଥିତିରେ ମଧ୍ୟ ହିନ୍ଦୁଧର୍ମରେ ରହିବାକୁ ଇଚ୍ଛା କରିବ ?

ଅସ୍ପୃଶ୍ୟତା ହିନ୍ଦୁଧର୍ମର କଳଙ୍କ । ମଣିଷ ମନରେ ସମ୍ପ୍ରଦାୟର ପ୍ରବେଶ ଯେପରି ଧୀରେ ଧୀରେ ହୋଇଛି, ଜାତି ଜାତି ମଧ୍ୟରେ ଘୃଣା କଟୁତା ଠିକ୍ ସେହି ପଥ ଦେଇ ହିନ୍ଦୁ ଧର୍ମକୁ ପ୍ରବେଶ କରିଛି ବୋଲି ବୁଝିବାକୁ ହେବ । ଆର୍ଯ୍ୟମାନେ ସମାଜକୁ ସୁଶୃଙ୍ଖଳିତ କରି ଚଳାଇବା ପାଇଁ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଏହିପରି ଚାରିଭାଗରେ ବିଭକ୍ତ କରିଥିଲେ । ବେଦରେ ଏହି ଚାତୁର୍ବର୍ଣ୍ଣ୍ୟ ସମ୍ପର୍କରେ କୁହାଯାଇଛି —ବ୍ରାହ୍ମଣ ଏହି ସମାଜର ମୁଖ ସଦୃଶ ହୋଇ ଉପଦେଶ ଦ୍ୱାରା ସମାଜକୁ ମାର୍ଗ-ଦର୍ଶନ କରାଇବେ । ଆଭ୍ୟନ୍ତରୀଣ ଶାନ୍ତି ଓ ବାହ୍ୟଶତ୍ରୁର ଆକ୍ରମଣରୁ ରକ୍ଷା କରିବା ଦାୟିତ୍ୱ କ୍ଷତ୍ରିୟର । ଏଣୁ ସେ ସମାଜର ବାହୁସଦୃଶ । ଧନ ଉପାର୍ଜନ କରି ସମୁଦାୟଙ୍କ ସମୃଦ୍ଧି କରି ସମାଜକୁ ଆହାର ଯୋଗାଉଥିବା ହେତୁ ବୈଶ୍ୟ ଉଦର ସ୍ୱରୂପ । ଏବଂ ପାଦଦ୍ୱାରା ଆମେ ଚାଲୁ, ପ୍ରଗତି କରୁ, ଏଣୁ ପ୍ରଗତିର ପ୍ରତୀକ ହୋଇଛନ୍ତି ଶୂଦ୍ର, ଯେ ସମାଜର ପଦସଦୃଶ ।

ଆମ ମସ୍ତିଷ୍କର ଯେତେ ପ୍ରୟୋଜନ, ପାଦର ମଧ୍ୟ ଠିକ୍ ସେହି ପରିମାଣରେ ଆବଶ୍ୟକତା ରହିଛି । ସେ ସମୟରେ ସମାଜ ଥିଲା ଏକ ଶରୀରପରି ପୂର୍ଣ୍ଣାଙ୍ଗ । ପ୍ରତ୍ୟେକ ପ୍ରତ୍ୟେକର ପୋଷକ ଥିଲେ । ଯେପରି ପାଦରେ ଆଘାତ ଲାଗିଲେ ହାତ ଟାଳ ବସିପାରେ ନାହିଁ କିମ୍ବା ପେଟରେ ଭୋକ ଥିଲେ ମୁଣ୍ଡ ଠିକ୍ କାମ କରିପାରିବ ନାହିଁ ତଦ୍ରୂପ ସମାଜର ରକ୍ଷଣାବେକ୍ଷଣ ଦୃଷ୍ଟିରୁ ଚାରିବର୍ଣ୍ଣର ସୃଷ୍ଟି ଆର୍ଯ୍ୟମାନେ କରିଥିଲେ ।

ବର୍ଣ୍ଣ ବୈଷମ୍ୟ ନ ଥିଲା । ଏହାକୁ ବର୍ଣ୍ଣ ବ୍ୟବସ୍ଥା କୁହାଯାଉଥିଲା । ଜାତି ବା ବର୍ଣ୍ଣ ଜନ୍ମଗତ ହୋଇ ନ ଥିଲା । ଆଜିକାଲି ପରି ସେ ସମୟରେ ବ୍ରାହ୍ମଣର ପୁଅ ବ୍ରାହ୍ମଣ ହୋଇପାରୁ ନ ଥିଲା । ତ୍ରିପାଠୀ, ଦ୍ୱିବେଦୀ, ପଣ୍ଡା, ମିଶ୍ରର ପୁଅ ତ୍ରିପାଠୀ, ଦ୍ୱିବେଦୀ, ପଣ୍ଡା ବା ମିଶ୍ର ଜନ୍ମ ଦୃଷ୍ଟିରୁ ହୋଇପାରୁ ନ ଥିଲେ । ଏସବୁ ଗୁଣବାଚକ ଉପାଧିମାତ୍ର ଥିଲା । ଯିଏ ଚତୁର୍ବେଦ ପାଠ କରୁଥିଲେ ତାଙ୍କୁ ଚତୁର୍ବେଦୀ, ଯିଏ ତିନି ବେଦ ପାଠ କରୁଥିଲେ, ତାଙ୍କୁ ତ୍ରିବେଦୀ ଓ ଯିଏ ଦୁଇଟି ବେଦ ପାଠ କରୁଥିଲେ, ସେମାନଙ୍କୁ ଦ୍ୱିବେଦୀ କୁହାଯାଉଥିଲା । ଆଚାର୍ଯ୍ୟଙ୍କ ପୁଅ ଆଚାର୍ଯ୍ୟ ହେବା ବା ଶାସ୍ତ୍ରୀଙ୍କ ପୁଅ ଶାସ୍ତ୍ରୀ ହେବାର କୌଣସି ବାଧ୍ୟବାଧକ କାରଣ ନ ଥିଲା । ଯେପରି ଜଣେ ପ୍ରଫେସରଙ୍କ ପୁଅ ପ୍ରଫେସର ହେବା ବା ଡାକ୍ତରଙ୍କ ପୁଅ ଡାକ୍ତର ହେବାର ମାନେ କିଛି ନାହିଁ; ଠିକ୍ ସେପରି କର୍ମଗତ

ଯୋଗ୍ୟତା ନେଇ ଲୋକେ ଶର୍ମା, ବର୍ମା, ଦାସ ଓ ଗୁପ୍ତ ବୋଲି ସଙ୍ଜ୍ଞା ରଖୁଥିଲେ । ମାନବ ଜାତିର ପ୍ରଥମ ବିଧି ମହାରାଜା ମନୁ ନିଜ ସ୍ମୃତିରେ ଆମମାନଙ୍କ ଉଦ୍ଦେଶ୍ୟରେ ଲେଖିଯାଇଛନ୍ତି —

"ଶୂଦ୍ରୋ ବ୍ରାହ୍ମଣତାମେତି
ବ୍ରାହ୍ମଣଶ୍ଚୈତି ଶୂଦ୍ରତାମ୍ ।
କ୍ଷତ୍ରିୟାଜ୍ଜାତମେବନ୍ତୁ
ବିଦ୍ୟାଦ୍‌ବୈଶ୍ୟାତ୍ତୁ ତଥୈବଚ" ।

( ୧୦-୬୫ )

ଏଥିରୁ ଜଣାଯାଏ ଜଣେ ଶୂଦ୍ରକୁଳରେ ଜନ୍ମ ହୋଇ ମଧ୍ୟ ବ୍ରାହ୍ମଣ ହୋଇପାରୁଥିଲା । ବ୍ରାହ୍ମଣ କୁଳରେ ଜନ୍ମ ହୋଇ ମଧ୍ୟ ଲୋକେ ଶୂଦ୍ର ହୋଇ ଯାଉଥିଲେ । ତଦ୍ରୂପ ବୈଶ୍ୟ ଓ କ୍ଷତ୍ରିୟ କୁଳରେ ସମ୍ଭୂତ ବ୍ୟକ୍ତି ସ୍ୱଗୁଣ କର୍ମ ଓ ସ୍ୱଭାବ ଅନୁସାରେ ଆପଣା ଠାରୁ ଉଚ୍ଚ ଓ ନୀଚ ବର୍ଣ୍ଣ ପ୍ରାପ୍ତ ହେଉଥିବାର ବିଧାନ ଆର୍ଯ୍ୟ ପରମ୍ପରାରେ ଥିଲା ।

ରାମାୟଣରେ ବର୍ଣ୍ଣିତ ହୋଇଛି ବ୍ରହ୍ମର୍ଷି ପୁଲସ୍ତ୍ୟଙ୍କ ପୁତ୍ର ବିଶ୍ରବାଙ୍କ ସନ୍ତାନ ରାବଣ କୁମାର୍ଗଗାମୀ ଥିଲା । ଏଣୁ ତାଙ୍କୁ ବ୍ରାହ୍ମଣ କୁହା ନ ଯାଇ ରାକ୍ଷସ କୁହାଯାଉଥିଲା । ବାଲ୍ମୀକି ତାଙ୍କୁ ଲେଖିଲେ, "ପୌଲସ୍ତ୍ୟ ବଂଶପ୍ରଭବୋ ରାବଣୋ ନାମ ରାକ୍ଷସଃ" ।

(୨୦-୧୬)

ବର୍ଣ୍ଣ ବ୍ୟବସ୍ଥାର ସିଦ୍ଧାନ୍ତ ଥିଲା, ବ୍ୟାପକ ପ୍ରଶସ୍ତ ଓ ଏକ ବହୁମୁଖୀ ଚିନ୍ତା । ଗୋଟିଏ ପରିବାରରେ ଭିନ୍ନ ପ୍ରକାର ବର୍ଣ୍ଣର ବ୍ୟକ୍ତି ବାସ କରୁଥିବାର ପ୍ରମାଣ ଋଗ୍‌ବେଦ (୯୧୨.୩)ରେ ଦେଖିବାକୁ ମିଳେ ।

"କାରୁରହଂ ତତୋ ଭିଷଗୁପଲ ପ୍ରକ୍ଷିଣୀ ନମ ।
ନାନାଧିୟୋ ବସୁୟବୋଽନୁ ଗାଇବ" ।

ଅର୍ଥାତ୍ — ମୁଁ ଶିଳ୍ପକାର, ମୋ ପିତା ଚିକିତ୍ସକ, ମାତା ଯବକ୍ଷେପଣକାରିଣୀ, ଆମେ ଧନକାମୀ ହୋଇ ଭିନ୍ନ ଭିନ୍ନ କାମ କରୁଛୁ । ଗାଭୀମାନଙ୍କ ପରି ମିଳିମିଶି ଏକ ଗୃହରେ ରହି ପରିଚର୍ଯ୍ୟା କରୁଛୁଁ ।

ଆଜିକାଲି ପରି ଶୂଦ୍ରଜାତିକୁ ଘୃଣା କରିବା ପ୍ରଥା କେବେ ମଧ୍ୟ ପ୍ରାଚୀନ ଆର୍ଯ୍ୟମାନଙ୍କ ମଧ୍ୟରେ ପ୍ରଚଳିତ ନ ଥିଲା । ହାଡ଼ିପା ମେହେନ୍ତର ଥିବା ସତ୍ତ୍ୱେ ରାଜା ଗୋବିନ୍ଦଚନ୍ଦ୍ରଙ୍କୁ ତାଙ୍କ ମା ଗୁରୁ କରିବା ପାଇଁ ଉପଦେଶ ଦେଇଥିବା କଥା ଆଜି ମଧ୍ୟ ଆମକୁ ଏହା ସ୍ମରଣ କରାଇ ଦିଏ ଯେ ଦିନେ ଜାତି ବର୍ଣ୍ଣ ନିର୍ବିଶେଷରେ ଆମ ଦେଶର ଲୋକେ ଜ୍ଞାନର ପୂଜା କରୁଥିଲେ । ମହର୍ଷି ମନୁ ନିର୍ବିକାର ଚିତ୍ତରେ ଘୋଷଣା କରିଥିଲେ —

"ଶ୍ରଦ୍ଧଧାନଃ ଶୁଭାଂ ବିଦ୍ୟାମାଦଦୀତା
ବରାଦପି ।
ଅନ୍ତ୍ୟାଦପି ପରଂ ଧର୍ମଂ ସ୍ତ୍ରୀ ରତ୍ନଂ
ଦୁଷ୍କୁଲାଦପି ।" (୨।୨୩୮)

ଅର୍ଥାତ୍—ଶ୍ରଦ୍ଧାରେ ନୀଚକୁଳଠାରୁ ମଧ୍ୟ କଲ୍ୟାଣକାରୀ ବିଦ୍ୟା ଗ୍ରହଣ କରିବ, ଚଣ୍ଡାଳଠାରୁ ମଧ୍ୟ ଧର୍ମ ଗ୍ରହଣ କରିବ ଏବଂ ନିକୃଷ୍ଟକୁଳରୁ ମଧ୍ୟ ନାରୀରତ୍ନ ବିବାହ କରିବ ।

ଏହି ଶୁଦ୍ଧ ଶ୍ରଦ୍ଧାପୂର୍ଣ୍ଣ ଆର୍ଯ୍ୟପରମ୍ପରା ଯେତେବେଳେ ସମୟକ୍ରମେ କାଳପରେ ଲୁପ୍ତ ହେବାକୁ ବସିଲା, ଶ୍ରୀକୃଷ୍ଣଙ୍କୁ ଗୀତାରେ ଅର୍ଜୁନଙ୍କୁ ଏହା ସ୍ମରଣ କରାଇ ଦେବାକୁ ପଡ଼ିଲା ଯେ, "ଚାତୁର୍ବର୍ଣ୍ୟ ମୟାସୃଷ୍ଟଂ, ଗୁଣକର୍ମ ବିଭାଗଶଃ ।"

ସମାଜକୁ ସମଭାବରେ ସନ୍ତୁଳନ କରିବାପାଇଁ ବର୍ଣ୍ଣବ୍ୟବସ୍ଥା ହେଲା । ସମାଜରେ ବ୍ରାହ୍ମଣ ବଡ଼ ନ ଥିଲା ନା ଶୂଦ୍ର ଶ୍ରେଷ୍ଠ ନ ଥିଲା । ସମସ୍ତେ ସମାନ ଥିଲେ । କ୍ଷତ୍ରିୟ ପାଖରେ ବଳ ଥିଲା, ବୈଶ୍ୟ ପାଖରେ ସମ୍ପତ୍ତି ଥିଲା, ଶୂଦ୍ର ପାଖରେ କୃଷି ଥିଲା, ମାତ୍ର ବ୍ରାହ୍ମଣ ପାଖରେ କିଛି ନ ଥିଲା । ବ୍ରାହ୍ମଣକୁ 'ଭୂଦେବ' ବୋଲି କୁହାଯାଉଥିଲା । ବ୍ରାହ୍ମଣ କେବଳ ଧନ ବା ଭୂମିର ମାଲିକ ହୋଇ ନ ଥିଲା । ସେ ସବୁ ବର୍ଣ୍ଣ ମଧ୍ୟରେ ଜ୍ଞାନୀ ଓ ବୁଦ୍ଧିଜୀବୀ ହେବା ସତ୍ତ୍ୱେ ଭିକ୍ଷାନ୍ନ ଥିଲା ତାର ଜୀବିକା ନିର୍ବାହର ଏକମାତ୍ର ପନ୍ଥା । ସର୍ବୋପରି ମାନବ ସମାଜରେ ନା କିଏ ବଡ଼ ବା ଶ୍ରେଷ୍ଠ ବୋଲି କୁହାଯାଉଥିଲେ । ସମସ୍ତେ ଭାଇ ଭାଇ ଭାବରେ ମିଳିମିଶି ଲୌକିକ ଓ ପାରଲୌକିକ ଚିନ୍ତା କରୁଥିବା କଥା ଋଗ୍‌ବେଦ (୫-୬୦-୫)ର ଏକ ମନ୍ତ୍ରରୁ ଜଣାଯାଏ—'ଅଜ୍ୟେଷ୍ଠା ସୋ ଅକନିଷ୍ଠାସ ଏତେ ସମ୍ଭ୍ରାତରୋ ବା ବୃଧୁଃ ସୌଭଗାୟ ।'

ବୈଦିକ ଋଷି ଭବିଷ୍ୟବାଦୀ ଥିଲେ । ସେମାନେ ଆଶଙ୍କା କରୁଥିଲେ, ସମୟକ୍ରମରେ ବର୍ଣ୍ଣାଶ୍ରମ, ଧର୍ମ ନଷ୍ଟ ହୋଇଯାଇପାରେ । ବର୍ଣ୍ଣବିଦ୍ୱେଷ ଓ ସାମ୍ପ୍ରଦାୟିକ ଚିନ୍ତା ସମାଜକୁ ନଷ୍ଟ କରିଦେଇପାରେ । ଏଣୁ ସେମାନେ ବାରମ୍ବାର ପ୍ରାର୍ଥନା କରୁଥିଲେ—

'ସମାନୋ ମନ୍ତ୍ରଃ ସମିତିଃ ସମାନୀ
ସମାନଂ ମନଃ ସହ ଚିତ୍ତ ମେଷାମ୍ ।'
ସମାନଂ ମନ୍ତ୍ରମଭିମନ୍ତ୍ରୟେ ବଃ
ସମାନେନ ବୋ ହବିଷାଜୁହୋମି ।
[(ଋକ୍ ୧୦ ୧୯୧-୩)

ହେ ମନୁଷ୍ୟ ! ତୁମ୍ଭମାନଙ୍କର ମନ୍ତ୍ରଣା ଓ ସଭାସ୍ଥଳ ସମାନ ହେଉ । ମନ ଓ ଚିତ୍ତ ସମାନ ହେଉ । ମୁଁ ତୁମ୍ଭମାନଙ୍କ ନିମିତ୍ତ ସମାନ ମନ୍ତ୍ରଣା ଦେଉଛି । ଐଶ୍ୱର୍ଯ୍ୟ ଓ ଅଭ୍ୟୁଦୟ ପ୍ରାପ୍ତି ପାଇଁ ଶ୍ରେଷ୍ଠ କର୍ମରେ ନିରନ୍ତର ନିୟୋଜିତ ରୁହ ।

ପୁଣି ସେମାନେ ଆମକୁ ଚେତାଇ ଦେଉଥିଲେ ସଂଗଚ୍ଛଧ୍ୱଂ ସଂବଦଧ୍ୱଂ ସଂ ବୋ ମନାଂସି ଜାନତାମ୍ । ଦେବାଭାଗଂ ଯଥା ପୂର୍ବେ ସଂଜାନାନା ଉପାସତେ ।

(ଋଗ୍—୧୦-୧୯୧-୨)

ହେ ମନୁଷ୍ୟ ! ତୁମେ ସମସ୍ତେ ମିଶିମିଶି ଚାଲ, ମିଳିମିଶି ବାର୍ତ୍ତାଳାପ କର । ପରସ୍ପର ସହଯୋଗପୂର୍ବକ ଜ୍ଞାନପ୍ରାପ୍ତ କର । ପୂର୍ବକାଳର ମନୁଷ୍ୟ ଏହି ରୂପେ ଜ୍ଞାନପ୍ରାପ୍ତି କରିଥିଲେ ।

ପୁନଶ୍ଚ ପରମାତ୍ମାଙ୍କ ପାଖରେ ପ୍ରାର୍ଥନା କରୁଥିଲେ, ହେ ପରମାତ୍ମାନ୍ ! ମୋର ଦୃଷ୍ଟିଶକ୍ତି ଦୃଢ଼, ନିର୍ମଳ ଓ ପ୍ରୀତିଯୁକ୍ତ ହେଉ । ସଂସାରର ସମସ୍ତ ପ୍ରାଣୀ ମୋତେ ମିତ୍ର ଚକ୍ଷୁରେ ଦେଖନ୍ତୁ ଏବଂ ମୁଁ ସମସ୍ତଙ୍କୁ ମିତ୍ରଚକ୍ଷୁରେ ଦେଖିବି ।

ମିତ୍ରସ୍ୟାହଂ ଚକ୍ଷୁଷା ସର୍ବାଣି ଭୂତାନି ସମୀକ୍ଷେ
ମିତ୍ରସ୍ୟ ଚକ୍ଷୁଷା ସମୀକ୍ଷାମହେ ॥



# ଶ୍ରୀଜଗନ୍ନାଥଙ୍କ ବୈଦିକତ୍ୱ ଭ୍ରାନ୍ତ ପ୍ରମାଣିତ

ଓଡ଼ିଶାର ଧର୍ମ, ସଂସ୍କୃତି ଓ ଇତିହାସ ହିଁ ଶ୍ରୀ ଜଗନ୍ନାଥ ସଂସ୍କୃତି । ଏଣୁ ଉତ୍କଳରୁ ଜଗନ୍ନାଥଙ୍କୁ ବା ଜଗନ୍ନାଥଙ୍କଠାରୁ ଉତ୍କଳକୁ ବିଚ୍ଛିନ୍ନ କରାଯାଇ ନ ପାରେ । କେବଳ ଏତିକି କହି କଥାଟାକୁ ସଂପୂର୍ଣ୍ଣ କରିଦେଲେ ଚଳିବନାହିଁ । କାରଣ ଜଗନ୍ନାଥ କେବଳ ପୁରୀ ବା ଓଡ଼ିଶାର ଠାକୁର ନୁହନ୍ତି । ସେ ଆଜି ସ୍ୱ ନାମକୁ ସାର୍ଥକ କରି ସାରିଛନ୍ତି । ସମଗ୍ର ବିଶ୍ୱରେ ଆଜି ଇସ୍କନ୍ ମାଧ୍ୟମରେ ରଥଯାତ୍ରା ହେଉଛି । ଶ୍ରୀ ଜଗନ୍ନାଥ ଆଜି ଜଗତର ନାଥ ଭାବରେ ଅଶାନ୍ତ ଆତ୍ମାଗୁଡ଼ିକୁ ଶାନ୍ତି ଦେଉଛନ୍ତି । ଏକଥା ଭାବିବାରେ ମନ ଆନନ୍ଦରେ ବିଭୋର ହୋଇଉଠେ ।

ଏସବୁ ଭକ୍ତି ଓ ଶ୍ରଦ୍ଧାର କଥା । ମୁଁ ପ୍ରଭୁ ଶ୍ରୀ ଜଗନ୍ନାଥଙ୍କୁ କାହିଁକି ଭକ୍ତି କରେ ତାହା ଏଠି ଉଲ୍ଲେଖ କରିବାକୁ ଯାଉନାହିଁ । କାରଣ ଆଧୁନିକ ବିଜ୍ଞସମାଜ ମତେ ସାଲବେଗ ବୋଲି ଆଖ୍ୟାଦେଇ ମୋ ମନସ୍ତତ୍ତ୍ୱ ଉପରେ ସନ୍ଦେହ କରିପାରେ । ଏ କାରଣରୁ ନ ହେଲେ ମଧ୍ୟ ଆହୁରି ଅନେକ କାରଣ ରହିଛି । କାହିଁକି ମୁଁ ଭକ୍ତମାନଙ୍କୁ ଏଠି ସାକ୍ଷୀଦେବାକୁ ଡାକୁନାହିଁ । ଇତିହାସରେ ଭକ୍ତିର ସ୍ଥାନ କାହିଁ ? ଲୀଳା ବା ଆଶ୍ଚର୍ଯ୍ୟ କର୍ମର କଥା ଉଲ୍ଲେଖ କରି ବୈଜ୍ଞାନିକ ଜଗତ ମୁଖରେ ମୁଁ ହସ ଫୁଟାଇବାକୁ ଚାହେଁ ନାହିଁ । ଏସବୁକୁ ମୁଁ ଯେ ଅବିଶ୍ୱାସ କରୁଛି ତାହା ପାଠକ ଭୁଲ ବୁଝିବେ ନାହିଁ । ଏହା ବିଶ୍ୱାସ କଲେ ବା ନ କଲେ ଏଥିରେ ଶ୍ରୀ ଜଗନ୍ନାଥଙ୍କର କିଛି ଯାଏଆସେ ନାହିଁ । ଭୟ ତ କେବଳ ଜଗନ୍ନାଥଙ୍କ ରକ୍ଷକମାନଙ୍କୁ ।

ଯେଉଁମାନେ ଜଗନ୍ନାଥଙ୍କୁ ଅନାଦି ବୋଲି ବିସ୍ମରିକରି ସେମାନଙ୍କ ବିଶ୍ୱାସକୁ ସ୍ଥାୟୀ କରିବାକୁ ଚାହାନ୍ତି, ସେମାନେ ଜାଣନ୍ତି ଯେ ଜଗନ୍ନାଥଙ୍କୁ ଯଦି ବେଦମଧ୍ୟରେ ଆବିଷ୍କାର କରି ନ ଯାଏ ତାହେଲେ ବେଦର ନାଁରେ ବିଶ୍ୱାସ କରୁଥିବା ହିନ୍ଦୁମାନେ ଜଗନ୍ନାଥଙ୍କୁ ସହଜରେ ସ୍ୱୀକାର କରି ନେବେ ନାହିଁ । ଯେହେତୁ ବେଦ ଆର୍ଯ୍ୟ-ମାନଙ୍କର ମୂଳମନ୍ତ୍ର ଅଟେ । ଆର୍ଯ୍ୟ ଅର୍ଥ ଶ୍ରେଷ୍ଠ ହୋଇଥିବାରୁ ଜର୍ମାନଠାରୁ ଆରମ୍ଭକରି ଇରାନ୍ ପର୍ଯ୍ୟନ୍ତ ସମସ୍ତେ ଆର୍ଯ୍ୟମାନଙ୍କର ବଂଶଧର ବୋଲି ପ୍ରମାଣ କରିବାକୁ ଗଲେଣି । ବେଦ କହିଲେ ଆମମାନଙ୍କ ମନରେ ଏକ ପବିତ୍ରଭାବ

ସଂସ୍କାର କରିଦିଏ । ଏଣୁ ଯଦି କିଏ କହି ଦିଏ ଯେ ଏହା ବେଦରେ ଅଛି, ତେବେ ଆମେ ସେଥିରେ ସନ୍ଦେହ ନ କରି ମାନିନେଉ । କାରଣ ବେଦ ସ୍ୱତଃ ପ୍ରମାଣ । ମହାଭାରତ ମନୁଙ୍କ ସମୟରେ ବେଦକୁ ନିନ୍ଦା କରୁଥିବା ବ୍ୟକ୍ତିଙ୍କୁ ନାସ୍ତିକ ବୋଲି କୁହାଯାଉଥିଲା । ଏହାକୁ ଏତେ ପବିତ୍ର, ଏତେ ଗୁପ୍ତ ବୋଲି ମଧ୍ୟକାଳୀନ ଦାର୍ଶନିକଗଣ ମନେ କରୁଥିଲେ ଯେ କେବଳ ବ୍ରାହ୍ମଣମାନଙ୍କ ଦ୍ୱାରା ଏହା ସର୍ବସ୍ୱତ୍ୱ ସଂରକ୍ଷିତ ବୋଲି ଆଚାର୍ଯ୍ୟ ଶଙ୍କରଙ୍କ ସମୟରେ ପ୍ରଚାରିତ ହୋଇଥିଲା ।

ଆର୍ଯ୍ୟ ସଂସ୍କୃତିର ତଥା ପରବର୍ତ୍ତୀ ହିନ୍ଦୁ ସଂସ୍କୃତି ଭିତରେ ବେଦର ଅଖଣ୍ଡ ପ୍ରଭାବ ଦେଖି ଯେ କେହି ମନେ କରିବ ଯେ ଏହା କୌଣସି କାଳ, କୌଣସି ବ୍ୟକ୍ତି ବା କୌଣସି ଏକମୁଖୀ ଚିନ୍ତାର ହୋଇ ନ ପାରେ ବରଂ ଏହାକୁ ଏକ ବିଶ୍ୱକୋଷ ବୋଲି କୁହାଯାଇପାରେ । କୌଣସି ସନ୍ଦେହ, ଦ୍ୱନ୍ଦ୍ୱ ବା ପରାମର୍ଶ ପାଇଁ ବେଦ ହିଁ ଦ୍ରଷ୍ଟବ୍ୟ । ଗର୍ଭାଧାନ ସଂସ୍କାରଠାରୁ ଅଗ୍ନି ସଂସ୍କାର ପର୍ଯ୍ୟନ୍ତ ବେଦମନ୍ତ୍ର ପାଠ ବିନା କାର୍ଯ୍ୟ ଅସଂପୂର୍ଣ୍ଣ । ଏହା ହେଲା ବେଦର ସାର୍ବଜନୀନ ସ୍ୱରୂପ । ଏହାର ଲୋକପ୍ରିୟତା, ସାର୍ବଜନୀନତା ଏବଂ ପ୍ରାଚୀନତା ହିଁ ପରବର୍ତ୍ତୀ ଯୁଗରେ ଏହା ମଧ୍ୟକୁ ଅନେକ ପ୍ରକ୍ଷେପ ଆଣିଛି ଏବଂ ଆଧୁନିକ ଯୁଗର ସାଂପ୍ରଦାୟିକ ଧ୍ୱଜାଧାରୀଗଣ ବେଦକୁ ସ୍ୱ ସ୍ୱ ସଂପ୍ରଦାୟ ମଧ୍ୟରେ ସୀମିତ କରିଦେବାକୁ ସଙ୍କୋଚ ବୋଧ କରି ନାହାନ୍ତି । ଏଣୁ ସେମାନେ ବେଦରେ ଈଶା (ଯୀଶୁ), ପରୀକ୍ଷିତ, ଭରତା, ମଦନା ଏବଂ ଦାରୁ (ଜଗନ୍ନାଥ) ଆଦି ଅର୍ଥକୁ ଅନର୍ଥ କରି ଏହା ପ୍ରମାଣ କରିବାକୁ ଚାହୁଁଛନ୍ତି ଯେ ଏ ମହାପୁରୁଷ ଓ ସ୍ଥାନଗୁଡ଼ିକର ବର୍ଣ୍ଣନା ବେଦରେ ରହିଛି । ଏ ନାମଗୁଡ଼ିକ କେଉଁ ପ୍ରସଙ୍ଗରେ ଆସୁଛି ତାକୁ ଦେଖିବାକୁ ଆମର ଧୈର୍ଯ୍ୟ ନାହିଁ । ଏଠି ମୁଁ କେବଳ ଜଗନ୍ନାଥଙ୍କ ପ୍ରସଙ୍ଗଟି ସମ୍ପର୍କରେ ଆଲୋଚନା କରି ପ୍ରବନ୍ଧଟିକୁ ସୀମିତ କରିଦେବାକୁ ଚାହେଁ ।

ଜଗନ୍ନାଥଙ୍କୁ ବିଭିନ୍ନ ସମ୍ପ୍ରଦାୟ ବିଭିନ୍ନ ରୂପରେ ଦେଖନ୍ତି । ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ବୌଦ୍ଧମାନେ ବୌଦ୍ଧଧର୍ମ ଓ ସଂଘୋ ରୂପେ ଦେଖିଲେ ବୈଷ୍ଣବମାନେ ଏହାଙ୍କ ମଧ୍ୟରେ କୃଷ୍ଣ, ବଳରାମ ଓ ସୁଭଦ୍ରାଙ୍କ ଦର୍ଶନ କରନ୍ତି । କେତେକ ବୈଦିକ ବିଦ୍ୱାନ ଏହାଙ୍କ ମଧ୍ୟରେ ପ୍ରଣବ ଓ ମର’ ‘ଅ-ଉ-ମ’ର ସାଙ୍କେତିକ ସ୍ୱରୂପ ଉପଲବ୍ଧି କରନ୍ତି ତ କେତେକ ସମନ୍ୱୟବାଦୀ ପୁରାଣ ପଣ୍ଡା ଏ ତ୍ରିମୂର୍ତ୍ତି ମଧ୍ୟରେ ବିଷ୍ଣୁ, ଶକ୍ତି ଓ ଶିବ ଲିଙ୍ଗର ଆରୋପ ମଧ୍ୟ କରିଥାନ୍ତି । ଏ ସମସ୍ତ ଧାର୍ମିକ ବା ଆଧ୍ୟାତ୍ମିକ ଆରୋପ ମଧ୍ୟ ଡାଃ. ବେଣୀମାଧବ ପାଢ଼ୀ ଏହାଙ୍କୁ ସେହି ଅଷ୍ଟ୍ରିକ (ପ୍ରୋଟୋ ଅଷ୍ଟ୍ରେଲ-ଅଡ଼) ଶବର ଗୋଷ୍ଠୀର ଦାରୁ ବୋଲି ପ୍ରମାଣ କରିବାକୁ ଯାଇ ବହୁ ସମାଲୋଚିତ ହୋଇଛନ୍ତି । ଯଦିଓ ତାଙ୍କର ଗବେଷଣା

ସତ୍ୟର ସମ୍ମୁଖୀନ ହୋଇଛୁ ତଥାପି ତାହା ନିଚ୍ଛକ ସତ୍ୟ ବୋଲି ଏଥିପାଇଁ ମୁଁ କହିବାକୁ ଇଚ୍ଛୁକ ନାହିଁ । କାରଣ ବେଦ ଓ ଭାରତୀୟ ସଂସ୍କୃତି ସମ୍ପର୍କରେ ତାଙ୍କ ଧାରଣା ଯଥେଷ୍ଟ ତ୍ରୁଟିପୂର୍ଣ୍ଣ ଅଟେ ।

ପୁରାଣଗ୍ରନ୍ଥକ ପଢ଼ିଲେ ଜଣାଯାଏ ଏଥିରେ ସତ୍ୟ ଯେତିକି ରହିଛି ତା'ଠାରୁ ବେଶୀ ରହିଛି କଳ୍ପନା । ପୁରାଣଗ୍ରନ୍ଥକ ମଧ୍ୟଯୁଗୀୟ ଲୌକିକ ମନୋରଞ୍ଜନ କହିଲେ ବୋଧହୁଏ ଭୁଲ ହେବ ନାହିଁ । ବ୍ୟାସଙ୍କ ନାମରେ ପୁରାଣକାରଗଣ ଭାରତୀୟ ସଂସ୍କୃତିକୁ ଉଦ୍ଧାର କରିବାକୁଯାଇ ଯେଉଁ କ୍ଷତି କରିଛନ୍ତି ତା ଅନ୍ୟ ଏକ ପ୍ରବନ୍ଧର ବିଷୟବସ୍ତୁ । ଏଥିରେ ଭକ୍ତି ଓ ବିଶ୍ୱାସକୁ ପ୍ରମାଣ କରିବାକୁ ସମସ୍ତ ଶକ୍ତି ଲଗାଇ ଦିଆଯାଇଛି ଯାହା ବେଦୋକ୍ତ ମାର୍ଗ ନୁହେଁ ।

ତେବେ ରାମାୟଣ ମହାଭାରତକୁ ବିଚାରକୁ ନିଆଯାଇପାରେ । ରାମାୟଣରେ ଜଗନ୍ନାଥଙ୍କ ସମ୍ପର୍କରେ ଉଲ୍ଲେଖ ନ ଦେଖି ଏହାକୁ ତାହାର ପରବର୍ତ୍ତୀ ବୋଲି ଭିହାଯାଇ ପାରିବ । ରାମାୟଣ ପରବର୍ତ୍ତୀକାଳ ମହାଭାରତର ସମୟ । ମହାଭାରତରେ ମଧ୍ୟ ଜଗନ୍ନାଥ ଦାରୁବ୍ରହ୍ମଙ୍କ ଉଲ୍ଲେଖ ନାହିଁ । ବନପର୍ବର କଳିଙ୍ଗ ସମୁଦ୍ରତଟ ମହାବେଦୀ ପ୍ରସଙ୍ଗକୁ ଟାଣିଓଟାରି କୁହାଯାଉଛି ଯେ ଏ ମହାବେଦୀରେ ଶ୍ରୀ ଜଗନ୍ନାଥଙ୍କ ନିଳାଦ୍ରି କନ୍ଦର ଅବସ୍ଥିତ ହୋଇପାରେ । ଏହା ଯେ ଏକ ପବିତ୍ର ସ୍ଥାନ ଥିଲା ଏଥିରେ ଦ୍ୱିରୁକ୍ତି ନାହିଁ, ତେବେ ଦାରୁବ୍ରହ୍ମ ଏଠି ପୂଜା ପାଉଥିଲେ ତାହାର ଉଲ୍ଲେଖ ନଥିବା ଦେଖି ମନେହୁଏ ଯେ ସେହି ମହାବେଦୀ ବା ପାହାଡ଼ ଉପରେ ପରବର୍ତ୍ତୀ କାଳରେ ଦାରୁବ୍ରହ୍ମଙ୍କ ସ୍ଥାପନା ହେଲା ।

ମହାଭାରତ ଯୁଗ ପରବର୍ତ୍ତୀ କୌଣସି ସମୟରେ ଯଦି ଦାରୁବ୍ରହ୍ମଙ୍କ ସ୍ଥାପନା ହେଲା ତେବେ, ସେ ସମ୍ପର୍କରେ ବେଦରେ ଉଲ୍ଲେଖ ହେଲା କପରି ? ବେଦ ତ ମହାଭାରତ, ରାମାୟଣ କାଳର ବହୁ ପୂର୍ବ ରଚିତ ? ବିଦେଶୀ ବିଦ୍ୱାନଙ୍କ ମତ ମଧ୍ୟ ଯଦି ନିଆଯାଏ ତାହାହେଲେ ବେଦ ସୃଷ୍ଟିର କାଳ କୌଣସି ଖ୍ରୀ. ପୂ. ୪,୦୦୦ ବର୍ଷ ପ୍ରାଚୀନ ବୋଲି କହନ୍ତି । ଏ ସମ୍ପର୍କରେ 'ସପ୍ତର୍ଷି'ରେ ପ୍ରକାଶିତ ମୋ ଦ୍ୱାରା ଲିଖିତ ପ୍ରବନ୍ଧ, "ବେଦର କାଳ ନିରୂପଣ ପାଇଁ କିଛି ପୂର୍ବାପର ଐତିହାସିକ ସାମଗ୍ରୀ' ଦ୍ରଷ୍ଟବ୍ୟ । ବେଦ ଏକ ଭାବବାଣୀ ନୁହେଁ କିମ୍ବା ଏକ ଐତିହାସିକ ସନ୍ଦର୍ଭ ସୂଚୀ ନୁହେଁ ଯେ ଯେଉଁଥିରେ ବିବରଣୀ କିମ୍ବା ଭବିଷ୍ୟତବାଣୀ ଥିବ । ଐତିହାସିକ ଦୃଷ୍ଟିରୁ ମଧ୍ୟ ଏହା ଏକ ଖଣ୍ଡିତ ବିଚାର ଅଟେ । ତେବେ ଏ ବିଚାର ଆସିଲା କପରି ? ଏହା ବେଦମନ୍ତ୍ରରୁ ଆସିଲା ବୋଲି ମୁଁ ଶୁଣିବାକୁ ପାଇଲି । ମନ୍ତ୍ରଟି ହେଲା .—

"ଅଦୋ ଯଦ୍‌ଦାରୁ ପ୍ଲବତେ ସିନ୍ଧୋଃପାରେ ଅପୁରୁଷମ୍,
ତଦା ରଭସ୍ୱ ଦୁହଣୋ ତେନ ଗଚ୍ଛ ପରସ୍ତରମ୍" ।
( ଋଗ୍‌ବେଦ ମ ୧୦, ସୂ, ୧୫୫, ମ ୪ )

ଉପରୋକ୍ତ ମନ୍ତ୍ରଟି ସ୍କନ୍ଦ ପୁରାଣରେ ଆସୁଆସୁ ଅନ୍ୟପ୍ରକାର ହୋଇଗଲା :—

ଅହୋ ବୋଧ୍ୟଂ ଖଳୁ ଭାଗ୍ୟାଣି-
ଯେନାବତରସୀଦ୍‌ଭୁ ବ ଦାରୁମୂର୍ତ୍ତିଃ । ୧ ।
ଯସ୍ୟାପ୍ୟୁପାସ୍ତିଂ ଶ୍ରୁତିରାହ ମୁକ୍ତି
ପ୍ରଦାନ ମାତ୍ମଜ୍ଞ ବମୋହିତନାମ୍ । ୨ ।
ଯ (ସ) ଏଷ ପ୍ଳବତେ ଦାରୁଃ ସିନ୍ଧୁପାରେ ତ୍ୱପୌରୁଷ
ତମୁପାସ୍ୟ ଦୁରାରାଧଂ ମୁକ୍ତିଂ ଯାତି ସୁଦୁର୍ଲଭମ୍ । ୩ ।
(ଉତ୍କଳଖଣ୍ଡ ୧୧ଶ ଅଧ୍ୟାୟ)

ଅର୍ଥାତ୍ :—ହେ ନରପତି ! ତୁମର ଭାଗ୍ୟରାଶି ଅତି ଆଶ୍ଚର୍ଯ୍ୟ । ପୁରୁଷୋତ୍ତମ ଭଗବାନ ଜଗତରେ ଦାରୁମୂର୍ତ୍ତି ଧାରଣ କରି ଆବିର୍ଭୂତ ହୋଇଥିଲେ । ଶ୍ରୁତି (ବେଦ)ରେ କୁହାଯାଇଛି ଯେ ଏହାଙ୍କୁ ଉପାସନା କଲେ ଆତ୍ମଜ୍ଞାନ ବମୋହିତ ବ୍ୟକ୍ତିମାନଙ୍କର ମଧ୍ୟ ମୋକ୍ଷଲାଭ ହୁଏ । (ଶ୍ରୁତିବର୍ଣ୍ଣିତ) ଯେ ଏହି ଅପୁରୁଷେୟ ଦାରୁ ସମୁଦ୍ର ତୀରରେ ଭାସମାନ ହେଉଛି । ଏ ଦୁରାରାଧ୍ୟ, ଉପାସନା କଲେ ଅତ୍ୟନ୍ତ ଦୁର୍ଲଭ ମୁକ୍ତିପ୍ରାପ୍ତ ହୁଏ ।

ପ୍ରକୃତରେ ଋଗ୍‌ବେଦର ସେ ମନ୍ତ୍ରଟିର ଅର୍ଥ କ'ଣ ସେଇଆ ଯାହା ଏମାନେ ଜଗନ୍ନାଥଙ୍କୁ ପ୍ରତିପାଦନ କରିବାପାଇଁ କରୁଅଛନ୍ତି ? ସେ ସୂକ୍ତରେ ଥିବା ପାଞ୍ଚଟି ମନ୍ତ୍ର ଅଛି । ସେ ସମସ୍ତ ନ ଜାଣିଲେ ଏହାର ପୂର୍ବାପର ସମ୍ପର୍କ ଜାଣିହେବନାହିଁ । ଏଣୁ ସେହି ପାଞ୍ଚଟି ମନ୍ତ୍ର ଏଠି ଉଲ୍ଲେଖ କରିବାକୁ ମୁଁ ବାଧ୍ୟ :—

ଅରାୟି କାଣେ ବିକଟେ ଗିରିଗଚ୍ଛ ସଦାନ୍ୱେ,
ଶିରିମ୍ବିଠସ୍ୟ ସତ୍ୱଭିସ୍ତେଭି ଷ୍ଟ୍ୱା ଚାତୟାମସି । ୧ ।

ଚତ୍ତୋ ଇତଶ୍ଚତ୍ତାମୁତଃ ସର୍ବା ଭ୍ରୁଣାନ୍ୟାରୁଷୀ,
ଅରାଯ୍ୟଂ ବ୍ରାହ୍ମଣସ୍ପତେ ତୀକ୍ଷ୍ଣ ଶୃଙ୍ଗୋଦୃଷନ୍ନିହି । ୨ ।

ଅଦୋ ଯଦ୍‌ଦାରୁ ପ୍ଲବତେ ସିନ୍ଧୋଃପାରେ ଅପୁରୁଷମ୍,
ତଦା ରଭସ୍ୱ ଦୁହଣୋ ତେନ ଗଚ୍ଛ ପରସ୍ତରମ୍ । ୩ ।

ଯଦ୍ଧ ପ୍ରାଚୀର ଜଗନ୍ତୋରୋ ମଣ୍ଡୁ ଧାଣିକାଃ,
ହତା ଇନ୍ଦ୍ରସ୍ୟ ଶତ୍ରବଃ ସର୍ବେ ବୁଦ୍‌ବୁଦୟାଶବ । ୪ ।

ପରୀମେ ଗାମନେଷତ ପର୍ଯ୍ୟଗ୍ନିମହୃଷତ,
ଦେବେଷ୍ୱକ୍ରତ ଶ୍ରବଃ କ ଇମାଁ । ଆ ଦଧର୍ଷତି । ୫ ।

ଋଗ୍ ୧୦, ୧୫୫

ଋଷି-ଶିରିମ୍ବିଠେ ଭାରଦ୍ୱାଜଃ । ଦେବତା-ଅଲକ୍ଷ୍ମୀଘ୍ନମ୍
ବ୍ରାହ୍ମଣ ସ୍ତୁତିଃ ବିଶ୍ୱେଦେବାଃ ଛନ୍ଦ ଅନୁଷ୍ଟୁପ ।

ଅର୍ଥାତ୍ :—ହେ ଅଲକ୍ଷ୍ମୀ, ତୁମେ ସ୍ୱୟଂ ଦାନଶୂନ୍ୟ ଆଦିରୁ ଅଲଗା ରହୁଛ । ତୁମ ମୁଖ ବିଶାଳ ଏବଂ ଭୟଙ୍କର ଗର୍ଜନ କରୁଛ । ତୁମେ ଏହି ପାହାଡ଼ ଉପରକୁ ଆସ । ମୁଁ ତୁମକୁ ସର୍ବସାଧାରଣଙ୍କ ଠାରୁ ଦୂରରେ ରଖିବାକୁ ଦୃଢ଼ ପ୍ରତିଜ୍ଞ ଅଟେ । ୧ । ଏ ଅଲକ୍ଷ୍ମୀ, ଖାଦ୍ୟାନ୍ନ, ଗଛବୃକ୍ଷ ଓ ଲତାପତ୍ରକୁ କ୍ଷୀଣ କରେ । ସେହି ଅକାଳ ଆଦିର କାରଣ ଅଟେ । ମୁଁ ଏହି ଅଲକ୍ଷ୍ମୀଙ୍କୁ ଏହି ମୃତ୍ୟୁଲୋକରୁ ସ୍ୱର୍ଗଲୋକକୁ ତଡ଼ୁଛି । ହେ ବୃହସ୍ପତି ତୁମେ ଅତ୍ୟଧିକ ତେଜସ୍ୱୀ ଅଟ । ସ୍ୱୟଂ ଦାନରୁ ବିମୁଖ ରହୁଥିବା ଓ ଖରାପକାର୍ଯ୍ୟ କରୁଥିବା ଅଲକ୍ଷ୍ମୀକୁ ଏଠାରୁ ଦୂରସ୍ଥ ସ୍ଥାନକୁ ତଡ଼ିଦିଅ । ୨ । ସାଗରରେ ଏ ଯେଉଁ ଦାରୁ ଭାସୁଅଛି, ଏହାର କେହି ମାଲିକ (ଅଧିପତି) ନାହାନ୍ତି । ହେ ଅଲକ୍ଷ୍ମୀ, ତୁମେ ଭୟାନକ ଆକୃତି ସମ୍ପନ୍ନ; ତୁମେ ଏହା ଉପରେ ବସି ଦୂରସ୍ଥ ଦେଶକୁ ଚାଲିଯାଅ । ୩ । ହେ ଅଲକ୍ଷ୍ମୀ, ତୁମେ ଭୟାନକ ଗର୍ଜନ କର । ତୁମେ ଯେବେ ଏଠାରୁ ପ୍ରସ୍ଥାନ କରିଗଲ ତେବେ ଇନ୍ଦ୍ରଙ୍କ ସମସ୍ତ ବିରୋଧୀ ପାଣିଫୋଟକା ପରି ନଷ୍ଟ ହୋଇଗଲେ । ୪ । ସେ ଧେନୁଗଣଙ୍କୁ ସ୍ୱାତନ୍ତ୍ର୍ୟତା ପ୍ରଦାନ କଲେ ଏବଂ ସ୍ଥାନେସ୍ଥାନେ ଅଗ୍ନିର ସ୍ଥାପନା କଲେ । ସେହି ଦେବଗଣଙ୍କୁ ହବି ନାମକ ଅନ୍ନ ଦେଇଥିଲେ । ପୁନଶ୍ଚ କାହାର ଶକ୍ତି ଅଛି ଯେ ଇନ୍ଦ୍ରଙ୍କୁ ପ୍ରହାର କରିବ । ୫ ।

(ଅନୁବାଦ ଓ ସକଳନ — ଆଚାର୍ଯ୍ୟ ଗୋପାଳ ପ୍ରସାଦ, ଋଗ୍‌ବେଦ)

ପୂର୍ବୋକ୍ତ ମନ୍ତ୍ରଟିରେ କେଉଁଠି ଜଗନ୍ନାଥଙ୍କ ସମ୍ପର୍କରେ କୁହାଯାଇଛି ଦେଖନ୍ତୁ । ଯଦି ସେହି ଦାରୁଟି ଜଗନ୍ନାଥଙ୍କ ମୂର୍ତ୍ତି ବୋଲି ଧରୁଁ ତାହେଲେ ତାହା ଉପରେ ଅଲକ୍ଷ୍ମୀଙ୍କୁ ବସିକରି ଯିବା ପାଇଁ ବେଦ ନିର୍ଦ୍ଦେଶ ଦିଅନ୍ତି । "ତୁମ ମୁଖ ବିଶାଳ"କୁ ଯଦି ଜଗନ୍ନାଥଙ୍କ ମୁଖ ସହିତ ତୁଳନା କରୁଁ ତାହେଲେ ତାହା ଅଲକ୍ଷ୍ମୀଙ୍କ ମୁଖ ବୋଲି ବେଦ କୁହନ୍ତି । କୌଣସି ପ୍ରକାରେ ଏଠି ଜଗନ୍ନାଥ ପ୍ରତିପାଦିତ ହୋଇପାରନ୍ତି ନାହିଁ ।

ବୈଦିକ ଈଶ୍ୱରଙ୍କର ସ୍ୱରୂପ ହେଲା ସେ ସଚ୍ଚିଦାନନ୍ଦ ସ୍ୱରୂପ, ନିରାକାର, ସର୍ବଶକ୍ତିମାନ, ନ୍ୟାୟକାରୀ, ଦୟାଳୁ, ଅଜନ୍ମା, ଅନନ୍ତ, ନିର୍ବିକାର, ଅନାଦି, ଅନୁପମ, ସର୍ବେଶ୍ୱର, ସର୍ବବ୍ୟାପକ, ସର୍ବାନ୍ତର୍ଯ୍ୟାମୀ, ଅଜର, ଅମର, ଅଭୟ,

ଐଶ୍ୱର୍ଯ୍ୟପ୍ରଦାନ ଓ ସୃଷ୍ଟିକର୍ତ୍ତା ଅଟନ୍ତି । ଏ ସମସ୍ତ ଗୁଣବାଚକକୁ ଯଦି ଆମେ ଜଗନ୍ନାଥଙ୍କ ମୂର୍ତ୍ତି ଦ୍ୱାରା ପ୍ରତିପାଦନ କରିଦେବାରେ ସମର୍ଥ ମଧ୍ୟ ହୋଇଯାଉ ତଥାପି ଜଗନ୍ନାଥଙ୍କ ମୂର୍ତ୍ତି ଯେ ଅବୈଦିକ ତାହା ପ୍ରମାଣ ହୋଇଯିବ । କାରଣ ବେଦର କୌଣସି ସ୍ଥାନରେ ମୂର୍ତ୍ତି ପୂଜା କରିବାର ଆଦେଶ ବା ଉପଦେଶ ଦିଆଯାଇ ନାହିଁ । ବରଂ କୁହାଯାଉଛି :—

ନ ତସ୍ୟ ପ୍ରତିମା ଅସ୍ତି ଯସ୍ୟ ନାମ ମହଦ୍‌ଯଶଃ ॥ (ଯଜୁ ୩୨।୩)

ତାଙ୍କର (ପରମେଶ୍ୱରଙ୍କର) ପ୍ରତିମା ନାହିଁ ଯାହାଙ୍କ ଯଶ ମହାନ ଅଟେ । ବୈଦିକ ଋଷି ଯେ ମୂର୍ତ୍ତି ପୂଜକ ନ ଥିଲେ ତାହା ସର୍ବମାନ୍ୟ ତଥ୍ୟ ଅଟେ । ଏହା ଜାଣିବା ସତ୍ତ୍ୱେ ଜଗନ୍ନାଥ ମୂର୍ତ୍ତିର ବର୍ଣ୍ଣନା ବେଦରେ ଦେଖିବା ଖୁବ୍ ବହୁସ୍ତ ଅସଙ୍ଗତପଣ ମନେହୁଏ ।



# ଦଶଅବତାର : ଏକ ବିକାଶବାଦୀ ଦୃଷ୍ଟିକୋଣ

ବିକାଶବାଦ ପାଶ୍ଚାତ୍ୟ ବୈଜ୍ଞାନିକମାନଙ୍କ ପାଇଁ ଯେତେ ଅଭିନବ ଚିନ୍ତା ହୋଇଥାଉନା କାହିଁକି, ପ୍ରାଚ୍ୟ ପଣ୍ଡିତଗଣ ଏହାର ଏକ କ୍ରମିକ ଶୃଙ୍ଖଳାର ଚିନ୍ତା କରି ସାରିଥିଲେ । ସେମାନେ ବିକାଶବାଦକୁ କେଉଁ କେଉଁ କାରଣରୁ ଅପୂର୍ଣ୍ଣ ଓ ବିଶୃଙ୍ଖଳିତ ଭାବୁଥିଲେ ତାର ଆଲୋଚନା ଏ ପ୍ରବନ୍ଧଟିର ଅନ୍ତର୍ଗତ ନୁହେଁ । ବିକାଶବାଦ ସମ୍ପର୍କରେ ଭାରତୀୟ କେତେକ ତତ୍ତ୍ୱଦର୍ଶୀ କ'ଣ ଭାବୁଥିଲେ ତାର ପାଠକ ବିଚାର ଏଠି କରାଯିବ ।

ଯୋଗଦର୍ଶନ ପ୍ରଣେତା ମହର୍ଷି ପାତଞ୍ଜଳିଙ୍କ ଅନୁସାରେ ବାସନା ଦ୍ୱାରା ମନୀଷ ବିଭିନ୍ନ ଜନ୍ମରେ ବିଭିନ୍ନ ଶରୀରପ୍ରାପ୍ତ କରିଥାଏ ଏବଂ ଜାତ୍ୟନ୍ତର ପରିଣାମଃ ବା ଏକ ଜାତିର ଅନ୍ୟଜାତି ସହ ପରିଣାମ ବା ପରିବର୍ତ୍ତନ ହୋଇଥାଏ । ଡାରୱିନଙ୍କ ମତରେ, କାମନାର ପୂର୍ତ୍ତି କ୍ରମନ୍ତେ ଜୀବଗଣଙ୍କ ପରିବର୍ତ୍ତନ ହୋଇଥାଏ ଏବଂ ଗୋଟିଏ ବଂଶର ପରିବର୍ତ୍ତନ ଅନ୍ୟ ବଂଶରେ ଉତ୍ତରାଧିକାରୀ ରୂପରେ ପ୍ରାପ୍ତ ହୁଏ । ଏ ପ୍ରକାର ପରିବର୍ତ୍ତନ ହେଉ ହେଉ ଏକ ଅନ୍ୟ ଯୋନିରେ ପରିବର୍ତ୍ତନ ହୋଇଯାଏ ।

ଡାରୱିନଙ୍କ ବିକାଶବାଦ ଜେଲି ଠାରୁ ମନୀଷ ପର୍ଯ୍ୟନ୍ତ ବିଭିନ୍ନ ସ୍ଥିତି ପରିସ୍ଥିତି ଦେଇ ଗତିକରେ । ଏହି ବିକାଶମୁଖୀ ପ୍ରକ୍ରିୟାକୁ ଆମ ଶାସ୍ତ୍ରକାରଗଣ ଦଶଅବତାର ଭାବରେ ଖୁବ୍ ମନୋଜ୍ଞ ଭାବରେ ଚିତ୍ରଣ କରିଛନ୍ତି । ପ୍ରଥମରେ ଭଗବାନ ମତ୍ସ୍ୟ ଅବତାର ଧାରଣ କରିଥିଲେ ଯାହା ଡାରୱିନଙ୍କ ଜେଲି ସହ ତୁଳନୀୟ । ଅନ୍ୟ ପୃଥିବୀରୁ ଏହି ଗୋଲକକୁ ମତ୍ସ୍ୟରୂପୀ ବିଷ୍ଣୁଙ୍କ ସାହାଯ୍ୟରେ ପ୍ରାଣଶକ୍ତି ନେଇ ଆସିଥିଲେ ବୈବସ୍ୱତ ମନୁ । ତାକୁ ଏକ ଯୁଗ ଭାବରେ ଗଣନାରେ ଆମେ ଧରିନେଉ । ବୈଜ୍ଞାନିକଗଣ ଏ ଯୁଗକୁ ସୁଲରସ୍ଥାନ ଏଜ୍ ବା ମତ୍ସ୍ୟଯୁଗ ଭାବରେ ଗଣନା କରନ୍ତି ।

ଭଗବାନଙ୍କ ଦ୍ୱିତୀୟ ଅବତାର ହେଲା କୂର୍ମ । ଏ ଅବତାର ପ୍ରସଙ୍ଗ କ୍ରମେ ସମୁଦ୍ରମନ୍ଥନ କଥା କୁହନ୍ତି । କୂର୍ମ ଶରୀର ଉପରେ ମନ୍ଦର ଗିରି ରଖି

ବିଶାଳ ସାଗରର ଉତ୍ପତ୍ତି ପରେ ବାସୁକୀ ସର୍ପ ସାହାଯ୍ୟରେ ମନ୍ଥନ ହେଲା । ପୁନଶ୍ଚ ବାହାରିଲେ ପଦ୍ମାଳୟା ଲକ୍ଷ୍ମୀ ଓ ଅମୃତ । ଅବଶେଷରେ ଏଥିରୁ ଉଦ୍‌ଗିରଣ ହେଲା ହଳାହଳ ବିଷ । ଏହି ଆଖ୍ୟାୟିକାର ତାତ୍ପର୍ଯ୍ୟ ଅଛି । ଜଳଚର ମତ୍ସ୍ୟ ପରେ ପରେ ସୃଷ୍ଟି ହେଲା ଉଭୟଚର ପ୍ରାଣୀ । ଯିଏ ଜଳ ସ୍ଥଳ ଉଭୟ ସ୍ଥାନରେ ବିହରୀପାରିବ । ଜଳଭାଗ ଧୀରେ ଧୀରେ ଶୁଖିଯାଇ ସ୍ଥଳଭାଗରେ ପରିଣତ ହେବାକୁ ଲାଗିଲା । ଜଳରେ ପ୍ରାଣୀଗଣ କ୍ରମଶଃ ସ୍ଥଳଚର ପାଲଟିବାକୁ ଲାଗିଲେ । ପୁନଶ୍ଚ ଏକ ଅମୃତ ମୂହୂର୍ତ୍ତ ଅଭିନବ ସୃଷ୍ଟିର ସୂର ଦେଲା । ସମୁଦ୍ର ମନ୍ଥନ ଫଳରେ ନାନାଦି ଜୀବଜନ୍ତୁଙ୍କର ଜନ୍ମହେଲା । ଏହା ପରେ ପରେ ଆସିଲା ପ୍ରଳୟ । ସ୍ଥଳଭାଗ ବୁଡ଼ି ରହିଲା ।

ଭଗବାନଙ୍କ ବରାହ ଅବତାର ହେଲା । ଜଳ ମଧ୍ୟରୁ ଉଠି ଆସିଲା ଅନେକ ମହାଦେଶ । ଲେମୁରିଆନ ମହାଦେଶ । ତାପରେ ପୃଥିବୀରେ ଜନ୍ମନେଲେ ସ୍ତନ୍ୟପାୟୀ ପ୍ରାଣୀ । ବରାହ ଅବତାର ସେହି ପ୍ରାଣୀର ପ୍ରତୀକ ।

ସ୍ତନ୍ୟପାୟୀ ପ୍ରାଣୀ ଜନ୍ମ ହେବା ପରେ ଭଗବାନ ନରସିଂହ ଅବତାର ନେଲେ । ଅର୍ଦ୍ଧ ସିଂହ ଓ ଅର୍ଦ୍ଧ ମନୁଷ୍ୟ ହୋଇ ସେ ଆବିର୍ଭାବ ହେଲେ । ଏହି ଅବସ୍ଥାରେ ଅନେକ କାଳ ବିତିତ ହେବା ପରେ ଅର୍ଦ୍ଧ ପଶୁ ଓ ଅର୍ଦ୍ଧ ମନୁଷ୍ୟ ଏକ ପ୍ରକାର ମନୁଷ୍ୟର ଆକୃତି ଧାରଣ କଲା । ଆମେ କହିଲୁ ଭଗବାନ ବାମନ ଅବତାର ଧାରଣ କଲେ । ବାମନ ଅବତାରରେ ଦୁଇଟି ପାଦରେ ସ୍ୱର୍ଗ ଓ ମର୍ତ୍ତ୍ୟ ପୂର୍ଣ୍ଣ ହେଲା । ତୃତୀୟ ପାଦ ରଖିବାକୁ ସ୍ଥାନ ରହିଲା ନାହିଁ ।

ଅର୍ଥାତ୍ ଏହି ସମୟରେ ସୃଷ୍ଟି କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇ ସାରିଥିଲା । ସ୍ୱର୍ଗଚର ପ୍ରାଣୀ ଓ ମର୍ତ୍ତ୍ୟଚର ପ୍ରାଣୀମାନଙ୍କର ପୂର୍ଣ୍ଣ ବିକାଶ ହୋଇସାରିଥିଲା । ଅନ୍ୟ କଥାରେ କହିବାକୁ ଗଲେ ମଣିଷ ପ୍ରଗତି ପଥରେ ଆଗେଇ ସାରିଥିଲା । ସେ ବିଭିନ୍ନ କ୍ଷେତ୍ରରେ ଏ ପ୍ରକାର ପ୍ରଗତି କରି ସାରିଥିଲା ଯଦ୍ଦ୍ୱାରା ତାର ତୃତୀୟପାଦ ରଖିବାକୁ ଟିକିଏ ସ୍ଥାନ ମଧ୍ୟ ସେ ପାଇପାରୁ ନଥିଲା ।

ଏ ସ୍ଥିତିରେ ସମାଜଗଠନ, ରାଜ୍ୟ ପ୍ରତିଷ୍ଠା ଓ ରାଜାଗଣଙ୍କର ଆଧିପତ୍ୟ ମଧ୍ୟ ବିସ୍ତାର କରିବାକୁ ଲାଗିଲା । ରାଜାଗଣ ସ୍ୱାର୍ଥାନ୍ଧ ହୋଇ ପ୍ରଜାଗଣଙ୍କୁ ଶୋଷଣ କରିବାକୁ ଲାଗି ଯାଇଥିଲେ । ଏହା ସହ୍ୟ କରି ନ ପାରି ଜନ୍ମନେଲେ ପର୍ଶୁରାମ । ସେ ଏ ପ୍ରକାର ସାମ୍ରାଜ୍ୟବାଦୀ, ପୁଞ୍ଜିବାଦୀ ରାଜାମାନଙ୍କୁ ଏକୋଇଶ ବାର ନିଧନ କଲେ । ଶ୍ରେଣୀ ସଂଘର୍ଷର ପରିସମାପ୍ତି ହୋଇ ଶ୍ରେଣୀହୀନ ସମାଜ ଗଠନ ହେଲା । ଯେଉଁ ସମାଜବାଦୀ ସମାଜର ନେତୃତ୍ୱ ନେଲେ ପୁରୁଷୋତ୍ତମ ଭଗବାନ ଶ୍ରୀରାମ ।

ପ୍ରକାରଙ୍କ ଶ୍ରୀରାମଚନ୍ଦ୍ରଙ୍କ ଦ୍ୱାରା ଯେଉଁ ଗଣତାନ୍ତ୍ରିକ ଶାସନତନ୍ତ୍ର ଗଢ଼ାଯାଇଥିଲା ତାହା ଧୀରେ ଧୀରେ କେତେକ ସ୍ୱାର୍ଥୀମାନଙ୍କ ଦ୍ୱାରା ପରବର୍ତ୍ତୀ କାଳରେ ଧ୍ୱଂସ ହୋଇ ଯାଇଥିଲା । ଲୋକେ ବଳି ନାମରେ ପଶୁହତ୍ୟା କରିବାକୁ ଲାଗି ପଡ଼ିଥିଲେ । ବେଦ ନାମରେ ବ୍ରାହ୍ମଣଗଣ ନାନାଦି କୁସଂସ୍କାରକୁ ମାନ୍ୟତା ଦେଇ ଯାଉଥିଲେ । ଏହି ବିଘଟନାତ୍ମକ ସ୍ଥିତି ମଧ୍ୟରେ ଆବିର୍ଭାବ ହେଲେ ମହାତ୍ମା ବୁଦ୍ଧ । ସେ ହିଂସା ବିରୁଦ୍ଧରେ ଅହିଂସାର ପ୍ରଚାର କଲେ । କୁସଂସ୍କାର ଅନେକ ପରିମାଣରେ ବିଶ୍ୱରୁ କମିଗଲା । ମାତ୍ର ଏ ଯୁଗର ସ୍ଥାୟିତ୍ୱ ଅଧିକ କାଳ ରହିଲା ନାହିଁ । ସମାଜରେ ବୌଦ୍ଧିକତାର ପ୍ରଚାର ହେଲା ସତ୍ୟ ମାତ୍ର ଲୋକେ ବିଚାରବାନ ହୋଇପାରିଲେ ନାହିଁ । ଏଣୁ ସମାଜରେ ବ୍ୟଭିଚାର, ଅନାଚାର ଅନ୍ୟାୟ ଦେଖାଦେଲା ।

ଏହା ପରେ ପରେ ଭଗବାନଙ୍କୁ ବାଧ୍ୟ ହୋଇ କଳ୍କୀ ଅବତାର ଧାରଣ କରିବାକୁ ପଡ଼ିଲା । କଳ୍କୀ ଅର୍ଥ ଲୁହା । ଅର୍ଥାତ୍ ଲୌହଯୁଗ ଆରମ୍ଭ ହେଲା । ଜ୍ଞାନ ବିଜ୍ଞାନର ବିକାଶ ହେଲା । ଲୋକେ ସୁଖ ଆଶାରେ ଯେତେ ବିଜ୍ଞାନର ଶରଣ ନେଲେ ସେତେ ଦୁଃଖୀ ସନ୍ଦେହବାଦୀ, ବସ୍ତୁବାଦୀ ହୋଇ ପଡ଼ିଲେ । ପରସ୍ପର ମଧ୍ୟରେ ସ୍ୱାର୍ଥ ପାଇଁ, ଭୂମି ପାଇଁ ଓ ଶାସନ ପାଇଁ ବିଶ୍ୱଯୁଦ୍ଧମାନ ହେଲା । ଲୋକ କ୍ଷୟ ହେଲେ । ସମାଜ ନୈତିକତାର ସ୍ତରସାମ୍ୟ ହରାଇଲା । ଏ ପ୍ରକାର ଦଶଟି ସ୍ଥିତି ନେଇ ଭାରତୀୟ ମନୀଷୀଗଣ ମନୁଷ୍ୟର ସୃଷ୍ଟି ଠାରୁ ପ୍ରଳୟ ଅବସ୍ଥା ପର୍ଯ୍ୟନ୍ତ ପହଞ୍ଚାଇ ଦେଇଥିଲେ ।

ମହର୍ଷି ପତଞ୍ଜଳି ଓ ଡାରଉଇନଙ୍କ ମତରେ କାମନା କାରଣ ଓ ଶରୀର କାର୍ଯ୍ୟ । କାମନା ନଷ୍ଟ ହୁଏ ନାହିଁ । କାମ, କ୍ରୋଧ, ଲୋଭ, ମୋହ, ଶୋକାଚ୍ଛନ୍ନ ଶରୀର ଉପରେ ତତ୍କାଳୀନ ପ୍ରଭାବ ପଡ଼େ । ଏଥିପାଇଁ ଅନୁଭବୀ ଲୋକ ମନୁଷ୍ୟର ଆକୃତି ଦେଖି ତା'ର ସ୍ୱଭାବ ଓ ଚରିତ୍ର ବିଷୟରେ କହିଦିଅନ୍ତି । ଜ୍ୟୋତିଷ ବା ସାମୁଦ୍ରିକ ଜାଣିଥିବା ବ୍ୟକ୍ତି ହସ୍ତରେଖା ଦେଖି ଜଣକର ଭବିଷ୍ୟତ ମଧ୍ୟ କହିଦେଇ ପାରନ୍ତି । କାରଣ ହସ୍ତରେଖାଗୁଡ଼ିକ ମସ୍ତିଷ୍କର କ୍ରିୟାତ୍ମକ ରୂପ ଓ ତାହାର ସାଙ୍କେତିକ ରେଖାଙ୍କନ ମାତ୍ର । ଯେଉଁ ପ୍ରକାରେ ମସ୍ତିଷ୍କ ଜୀବନ ଏବଂ ବିଶ୍ୱର ଘାତ ପ୍ରତିଘାତ ଦ୍ୱାରା ପ୍ରଭାବିତ ହେଉଥାଏ, ଠିକ୍ ସେହି ସେହି ପ୍ରକାରେ ହାତ ଉପରେ ରେଖାଙ୍କନ ହୋଇ ଚାଲିଥାଏ ।

ଯେ ପର୍ଯ୍ୟନ୍ତ କାରଣ ନଷ୍ଟ ହୋଇ ନାହିଁ, କାର୍ଯ୍ୟ ନଷ୍ଟ ହେବ କିପରି ? ସେ ରୂପ ବଦଳାଇ ଚାଲିଥାଏ । ଯେ ପ୍ରକାର ଗୋଟିଏ ବସ୍ତ୍ର ଚିରିଯିବା ପରେ ଆମେ ଅନ୍ୟ ବସ୍ତ୍ର ବ୍ୟବହାର କରୁଥାଉଁ, ତଦ୍ରୂପ ଗୋଟିଏ ଶରୀର ତ୍ୟାଗ କରିବା ମାତ୍ରେ ଆମେ ଆମର ପୂର୍ବ ବାସନା, ସାମର୍ଥ୍ୟ ଓ ପରିସ୍ଥିତି ନେଇ ନବକଳେବର

ଧାରଣ କରିଥା'ନ୍ତି । ଆମର ଶରୀରର ବାସନା ବୃଦ୍ଧି ନେବାପରେ ଏହା ଜାଣିହେବ ଯେ ଆମକୁ ଆମେ କି ଜନ୍ମ ପାଇବୁ । ଯେ ଅତ୍ୟନ୍ତ କ୍ରୋଧୀ ସେ ସର୍ପ ଜନ୍ମ ହେବ ବୋଲି ଆମେ କହୁ । ଯେ ଅତ୍ୟନ୍ତ କାମୁକ ସେ ମାଙ୍କଡ଼ ବା ପକ୍ଷୀ ଜନ୍ମନେବା କଥା କୁହାଯାଇଥାଏ । ଏହାକୁ ଆଧାରହୀନ କଳ୍ପନା କହି ହଟାଇ ଦିଆଯାଇ ପାରିବ ନାହିଁ । କାରଣ ମାନବ ଶରୀରରେ ଏତେ ଅଧିକ କାମ ସେବନ ପାଇଁ କ୍ଷମତା ନାହିଁ : ହିନ୍ଦୁଶାସ୍ତ୍ର ସିଦ୍ଧାନ୍ତ ଏବଥାକୁ ଏକ ବୈଜ୍ଞାନିକ ବିଶ୍ଳେଷଣଦ୍ୱାରା ପ୍ରତିଷ୍ଠା କରନ୍ତି । ଗୋଟିଏ ବସ୍ତୁ ଛିଣ୍ଡିଯିବା ପରେ ଅନ୍ୟବସ୍ତୁ ଧାରଣ କରିବା ପର୍ଯ୍ୟନ୍ତ ଯେଉଁ ସମୟ ଲାଗେ ତାକୁ ନବସ୍ତୁତା କୁହାଯାଏ । ତଦ୍ରୂପ ଗୋଟିଏ ଶରୀର ଛାଡ଼ିବା ପରେ ଅନ୍ୟ ଶରୀର ପ୍ରାପ୍ତ ହେବାର ସମୟକୁ ପ୍ରେତାବସ୍ଥା କୁହାଯାଏ ।

ଶରୀର ରଚନାରେ ବାସନାର ମହତ୍ତ୍ୱ ସ୍ୱୀକାର କରିବା ପରେ ମଧ୍ୟ ବିକାଶବାଦୀ ପୁନର୍ଜନ୍ମକୁ ସ୍ୱୀକାର କରନ୍ତି ନାହିଁ । ଶରୀରରେ ଆତ୍ମା ଅଛି, ଏହାକୁ ମଧ୍ୟ ସ୍ୱୀକାର କରିବାକୁ ସେମାନେ ନାରାଜ । ସେମାନଙ୍କ ମତରେ ଜଡ଼ର ଏକ ବିଶେଷ ସଂଯୋଗରୁ ଚେତନାର ଉତ୍ପତ୍ତି । ଶରୀର ନଷ୍ଟ ହେବା ସଙ୍ଗେ ସଙ୍ଗେ ତାହା ମଧ୍ୟ ନଷ୍ଟ ହୋଇଯାଏ । ତା'ର କାରଣ ଦର୍ଶାଇବାକୁ ସେମାନେ ବାଧ୍ୟ ନୁହଁନ୍ତି । ଗୁଡ଼ ମାଛିଆର ମାଛିକୁ ଆକର୍ଷଣ କରିବାର ଶକ୍ତି ଅଛି ତାହା ବୋଲି ଏହା କ'ଣ ମାଛିକ ଉତ୍ପନ୍ନ କରିପାରିବ କି ?

ଏ ସମ୍ପର୍କରେ ସାଂଖ୍ୟ ଦର୍ଶନ (୧୪୫)ରେ ଏବଂ ସାଂଖ୍ୟକାରିକା (୨୧)ରେ 'ପଙ୍ଗୁ ଅନ୍ଧନ୍ୟାୟ' ଉପଯୁକ୍ତ ସମାଧାନ ଦିଅନ୍ତି । ପଙ୍ଗୁ ଅକର୍ମଣ୍ୟ । ସେ ଚାଲିପାରେ ନାହିଁ । ଏବଂ ଅନ୍ଧ ଦେଖିପାରେ ନାହିଁ । ଏ ଦୁହିଁଙ୍କର ସଂଯୋଗରେ ପଙ୍ଗୁ ଅନ୍ଧ କାନ୍ଧରେ ଚଢ଼ି ଅନ୍ଧର ପାଦ ଓ ପଙ୍ଗୁର ଆଖି ସାହାଯ୍ୟରେ ଚାଲେ । ତଦ୍ରୂପ ଅନ୍ଧତୁଲ୍ୟ ଅଚେତନ ପ୍ରକୃତି ଓ ପଙ୍ଗୁତୁଲ୍ୟ ଗତିଶକ୍ତିହୀନ ଚେତନ ପୁରୁଷ ସୃଷ୍ଟି ଚଳାଇ ପାରନ୍ତି । ବ୍ୟବହାରରେ ଅଚେତନ ରଥକୁ ପ୍ରବୃତ୍ତ ଚେତନ ଅଶ୍ୱର ଆଧାର ଉପରେ ଚଳାଇଥାଏ ।

ବିକାଶବାଦ ପାଖରେ ଏଥିପାଇଁ କୌଣସି ସନ୍ତୁଷ୍ଟାତ୍ମକ ଉତ୍ତର ନାହିଁ । ଏଣୁ ଡାରଉଇନଙ୍କ ପୁତ୍ର ପ୍ରଫେସର ଜର୍ଜ ଡାରଉଇନ ଅଗଷ୍ଟ ୧୬, ୧୯୦୫ରେ ଦକ୍ଷିଣ ଆଫ୍ରିକାରେ ବ୍ରିଟିଶ ଆସୋସିଏସନରେ ଏହା ସ୍ପଷ୍ଟ ଭାବରେ କହିଲେ ଯେ ଜୀବନର ରହସ୍ୟ ଏବେ ମଧ୍ୟ ଏତେ ଗୂଢ଼ ଯେତେ ପ୍ରଥମେ ଥିଲା । ଡାରଉଇନଙ୍କ ବିକାଶବାଦକୁ ପ୍ରବଳ ତର୍କଦ୍ୱାରା ଖଣ୍ଡନ କରିବାକୁ ଯାଇ ଜେଶନ ବୋସନ

ଲେଖନ୍ତି—ଯଦି ମନୁଷ୍ୟ ଜାତିର ଇତିହାସ ଉତ୍ତରୋତ୍ତର ବିକାଶ ଦିଗକୁ ଅଗ୍ରସର ହେଉଛି, ତା'ହେଲେ ଚୀନଦେଶର ଲୋକେ ପୂର୍ବେ ବାରୁଦ ଓ ସାମୁଦ୍ରିକ ଧ୍ରୁବଦର୍ଶନ ସୂଚୀର ବ୍ୟବହାର କରୁଥିଲେ । କିନ୍ତୁ ବର୍ତ୍ତମାନ ସେ ସବୁ ଭୁଲିଗଲେ କିପରି ! ପିରାମିଡ୍‌ର ନିର୍ମାତା ମିଶର ଅଧିବାସୀ ଏକଦା ରେଖାଗଣିତ ବିଦ୍ୟାର ଆବିଷ୍କାରକ ଥିବାବେଳେ ବର୍ତ୍ତମାନ ସେଥିରେ କେଉଁ କାରଣରୁ ପାରଦର୍ଶୀ ନୁହନ୍ତି ? ଜାଭାଦ୍ୱୀପର ମନ୍ଦିର ଉପରକୁ ଉଠାଯାଇଥିବା ବିଶାଳ ପ୍ରସ୍ତର ଏବେ ସେଠାରେ କିପରି ଉଠାଯାଇ ପାରୁନାହିଁ । ଏ ସବୁଥିରୁ ସ୍ପଷ୍ଟ ଯେ ବିକାଶ ଘଟୁ ନାହିଁ, ବାସ୍ତବରେ ହ୍ରାସ ଘଟୁଛି ।



# କୁପରନିକସ ଓ ଗାଲିଲିଓଙ୍କ
# ବହୁ ପୂର୍ବରୁ ଭାରତୀୟ ସୌର ବିଜ୍ଞାନ

ଟଲେମି ମିଶରର ସର୍ବଶ୍ରେଷ୍ଠ ଗଣିତଜ୍ଞ ଥିଲେ । ସମଗ୍ର ମିଶରରେ ତାଙ୍କ ସିଦ୍ଧାନ୍ତର ବିସ୍ତାର ହୋଇଥିଲା । ସମସ୍ତ ପ୍ରକାର ଶଙ୍କା ସମାଧାନ ପାଇଁ ତାଙ୍କ ଗ୍ରନ୍ଥ ବିଦ୍ୱାନମାନଙ୍କ ପାଇଁ ସନ୍ଦର୍ଭ ଗ୍ରନ୍ଥ ସ୍ୱରୂପରେ ଉଦ୍ଧୃତ କରାଯାଉଥିଲା । ବିଶ୍ୱ ବ୍ରହ୍ମାଣ୍ଡ ସମ୍ପର୍କରେ ତାଙ୍କର ବିଶ୍ୱାସ ଥିଲା ଅଟଳ ଓ ଶକ୍ତିଶାଳୀ । ନିକୋଲାସ୍ କୁପରନିକସ୍ ତାଙ୍କ ସିଦ୍ଧାନ୍ତଗୁଡ଼ିକୁ ବୁଝି ପାରୁ ନ ଥିଲେ । ଟଲେମିଙ୍କ ସିଦ୍ଧାନ୍ତ ଉପରେ ସେ ସନ୍ଦେହ କରିବାକୁ ଲାଗିଲେ । ନିଜ ବନ୍ଧୁମାନଙ୍କ ନିକଟରେ ସେ ତାଙ୍କ ସନ୍ଦେହ ସପକ୍ଷରେ ଅନେକ ତର୍କ ବାଢ଼ିଲେ । ଟଲେମିଙ୍କ ସିଦ୍ଧାନ୍ତକୁ ଖଣ୍ଡନ କରୁଥିବା ଦେଖି ବନ୍ଧୁମାନେ ତାଙ୍କୁ ବ୍ୟଙ୍ଗ କରୁଥିଲେ ଓ ପରାମର୍ଶ ଛଳରେ କହୁଥିଲେ—"ଆରେ ମୂର୍ଖ ! ଟଲେମି ଏହା ଉପରେ ସବୁକଥା ବତାଇଛନ୍ତି । କ'ଣ ତୁ ନିଜକୁ ତାଙ୍କଠାରୁ ଅଧିକ ବୁଦ୍ଧିମାନ ମନେକରୁଛୁ" ? ତାଙ୍କ କଥା କେହି ବୁଝି ପାରିଲେ ନାହିଁ । ଅନ୍ଧପର ବ୍ୟକ୍ତିନିଷ୍ଠ ହୋଇ ଧର୍ମାନ୍ଧ ଓ ପରମ୍ପରାବାଦୀ ତାଙ୍କୁ ଅବହେଳା କଲେ । ତାଙ୍କ ଜୀବନ ଖୁବ୍ ଦୁଃଖ ଓ ନିର୍ଯ୍ୟାତନା ମଧ୍ୟରେ ସମାପ୍ତ ହେଲା ।

ଏହା ପରେ କୁପରନିକସ୍‌ଙ୍କ ସିଦ୍ଧାନ୍ତକୁ ଜନମାନସରେ ଆଦୃତ କରିବାକୁ ଇଟାଲୀର ପିସା ନାମକ ନଗରୀରେ ଜନ୍ମ ନେଲେ ଗାଲିଲିଓ । ତାଙ୍କ ସହ ଜଣେ ଇଂରେଜ ଯୁବ କବି ଦେଖା କରିବାକୁ ଆସିଥିଲେ, ଯେ ଦୁର୍ଭାଗ୍ୟବଶତଃ ଜୀବନର ସ୍ୱର୍ଣ୍ଣିମ ପ୍ରଭାତରେ ଅନ୍ଧ ହୋଇ ଯାଇଥିଲେ । ଗାଲିଲିଓ ତାଙ୍କ ଯନ୍ତ୍ର ସମ୍ପର୍କରେ ଧାରଣା ଦେଲେ । ବଡ଼ ଦୁଃଖର ବିଷୟ, ଏହି ପ୍ରସିଦ୍ଧ ଇଂରେଜ ଅନ୍ଧ କବି ମିଲଟନ୍ ସ୍ୱରଚିତ-ଶ୍ରେଷ୍ଠ ମହାକାବ୍ୟ "ପାରାଡ଼ାଇଜ ଲଷ୍ଟ"ରେ ସୌରମଣ୍ଡଳ ସମ୍ପର୍କରେ ଗାଲିଲିଓ ଅଥବା ଟଲେମୀ କାହାର ମତ ଠିକ୍ ସେ ବିଷୟରେ ନିର୍ଣ୍ଣୟ କରି ପାରି ନ ଥିଲେ ।

କୁହାଯାଏ, କଲମ୍ବସ୍‌ଙ୍କ ଯାତ୍ରା ପୂର୍ବରୁ ସ୍ପେନ୍‌ର ମୁଦ୍ରାରେ ହାରକୁଲସ୍‌ର ସ୍ତମ୍ଭ ବା ଅନ୍ଧ ମହାସାଗରର ଜିବ୍ରାଲେଟର୍ ଅଙ୍କିତ ହେଉଥିଲା । ଏବଂ ସେହି

ମୁଦ୍ରା ଉପରେ ବଡ ବଡ ଅକ୍ଷରରେ ଲାଟିନ୍‌ରେ ଲେଖା ଯାଉଥିଲା — 'ନି ପ୍ଲସ୍ ଅଲ୍‌ଟ୍ରା' ବା ଏହାର ଆଗକୁ ଆଉ କିଛି ନାହିଁ । ଏହା ଥିଲା ତତ୍କାଳୀନ ଚିନ୍ତନ । ମାତ୍ର କଲମ୍ବସ୍ ସ୍ୱ ଯାତ୍ରାର ଅନୁଭୂତିରେ ପ୍ରତିପାଦନ କରିଦେଲେ 'ପ୍ଲସ୍ ଅଲଟ୍ରା' ବା ଆଗକୁ ଅନେକ ଅଛି । ଆଗକୁ ଅନେକ ଅଜ୍ଞାତ ଲୋକାଳୟ ରହିଛି । ଏହି ସତ୍ୟ ଉଦ୍‌ଘାଟନ କରିବାକୁ ବୈଜ୍ଞାନିକମାନଙ୍କୁ ଅସହ୍ୟ ଯନ୍ତ୍ରଣା ସହ୍ୟ କରିବାକୁ ପଡୁଥିଲା ।

ପାଶ୍ଚାତ୍ୟ ଦେଶରେ ଯେଉଁ ସତ୍ୟ ଓ ବିଜ୍ଞାନ ପାଇଁ ବୈଜ୍ଞାନିକଗଣ ଭୟ କରୁଥିଲେ ପ୍ରାଚ୍ୟରେ ସେହି ସତ୍ୟ ପାଇଁ ଥିଲା ଯଥେଷ୍ଟ ଆଗ୍ରହ ଓ ଆଦର । କୋପରନିକସ୍, ଗାଲିଲିଓ ଓ କଲମ୍ବସ୍‌ଙ୍କ ଶହ ଶହ ବର୍ଷ ପୂର୍ବରୁ ଭାରତରେ ଭୌତିକ ବିଜ୍ଞାନର ଗବେଷଣା ହେଉଥିଲା । କଣାଦ, ବୃହସ୍ପତି ଆଦି ଋଷି ବସ୍ତୁବାଦୀ ଦର୍ଶନର ପୃଷ୍ଠପୋଷକ ଥିବା ସତ୍ତ୍ୱେ ବ୍ୟକ୍ତିଗତ ବିରୋଧ ଶାରୀରିକ ଯନ୍ତ୍ରଣାରେ ସ୍ୱୀକାର କରାଯାଇ ନ ଥିଲା ।

ବୈଦିକ ଯୁଗରୁ ବିଜ୍ଞାନର ସ୍ଥାନ ଥିଲା ଅତି ଉଚ୍ଚରେ । ଆର୍ଯ୍ୟ ସଂସ୍କୃତିରେ ସୂର୍ଯ୍ୟଙ୍କୁ ଦେବତା କରି ଏକ ସ୍ୱର୍ଣ୍ଣିମ ବିମାନରେ ବସାଇ ଉଦୟାଚଳରୁ ଅସ୍ତାଚଳକୁ ନେବା ଆଣିବା ପରମ୍ପରା ସେତେବେଳେ ପ୍ରଚଳିତ ନଥିଲା । ସୂର୍ଯ୍ୟ ସକଳ ଶକ୍ତିର ଆଧାର ଥିବାରୁ ଆର୍ଯ୍ୟଜନ ପ୍ରଭାତରେ ସୂର୍ଯ୍ୟ ପୂଜନଦ୍ୱାରା 'ଅଲଟ୍ରା ଭାୟୋଲେଟ୍‌ରେ' ଗ୍ରହଣ କରୁଥିଲେ ।

ଏ ଦେଶର ମୁନି ଋଷିଗଣ ପ୍ରଚାର କରୁଥିଲେ, ପୃଥିବୀ ବୁଲୁଛି, ଯଦିଓ ସ୍ଥିର ପରି ଜଣାପଡୁଛି । ବୈଦିକ ପରମ୍ପରାର ସୂତ୍ରଧର ଭାସ୍କରାଚାର୍ଯ୍ୟ ଗୋଲାଧ୍ୟାୟରେ ବହୁ ପୂର୍ବରୁ ଏ ତଥ୍ୟ ପ୍ରକାଶ କରି ଯାଇଥିଲେ —

“ଚଳା ପୃଥ୍ୱୀ ସ୍ଥିରା ଭାତି
ଭୂଗୋଳେ ବ୍ୟୋମ୍ନି ତିଷ୍ଠତି” ।

ପୁନଶ୍ଚ ବିଶ୍ୱର ସ୍ୱରୂପ ସମ୍ପର୍କରେ କହୁଥିଲେ —

“କପିତ୍ଥ ଫଳବତ୍ ବିଶ୍ୱଂ
ଦକ୍ଷିଣୋତ୍ତରୟୋଃ ସମମ୍”

ବା କଇଁଥ ଫଳପରି ବିଶ୍ୱର ଦକ୍ଷିଣ ଓ ଉତ୍ତର ସମଯୁକ୍ତ ଅଟେ ।

ଯଦିଓ ସଂସାରକୁ 'ଅଚଳା' ବୋଲି ପରବର୍ତ୍ତୀ ପୌରାଣିକ କାଳରେ ଆମେ କହିବା ଆରମ୍ଭ କରି ଦେଇଥିଲୁ ତଥାପି ବୈଦିକ ପରିଭାଷାରେ ବିଶ୍ୱ 'ଜଗତ୍' ବା 'ସଂସାର' ଭାବରେ ଆମ ଦେଶରେ ପରିଚିତ ଥିଲା । ଜଗତ ଅର୍ଥ 'ଗଚ୍ଛତୀତି

ଜଗନ୍ତି' ବା ଯେ ସବଦା ଗତି କରେ ତାକୁ ଜଗତ ଏବଂ ଯେ ଭଲସ୍ତବରେ ପ୍ରତ୍ୟେକ ଘୂରେ ତାକୁ ସଂସାର ବା 'ସଂସରଣାତ୍ ସଂସାରଃ' ବୋଲି ଈଶ୍ୱର ଏ ପ୍ରକାର ନାମକରଣ କରାଯାଇଥିଲା । ଯଜୁର୍ବେଦ (୩/୬)ରେ କୁହାଯାଇଛି –

"ଆୟଂଗୌଃ ପୃଶ୍ନିର-କ୍ରମୀଦସଦନ୍

ମାତରମ୍ପୁରଃ ପିତରଂଚ ପ୍ରୟନ୍ତ୍ସ୍ୱଃ ।" ଅର୍ଥାତ୍ ଏ ଭୂଗୋଲ ଜଳ ସହିତ ସୂର୍ଯ୍ୟଙ୍କ ଚାରିପାଖରେ ଘୂରୁଛି । ଏଠି 'ଗୌ' ଅର୍ଥ ପୃଥିବୀ । ଯାସ୍କ ନିରୁକ୍ତରେ ଏହା ଭାଷ୍ୟ କରନ୍ତି – 'ଗୌରିତି ପୃଥିବ୍ୟା ନାମଧେୟମ୍ । ଯଦ୍ ଦୂରଂଗତା ଭବତି' ବା ଦୂରଦୂର ପର୍ଯ୍ୟନ୍ତ ଚଳୁଥିବାରୁ ଏ ବିଶ୍ୱକୁ "ଗୌ" କୁହାଯାଏ । ସରଳ ସଂସ୍କୃତରେ ବ୍ୟାଖ୍ୟା କଲେ 'ଗଚ୍ଛତୀତି ଗୌ' ବା ଯାହା ଗତିକରେ ତାହା ଗୌ ଅଟେ ।

ସୌରମଣ୍ଡଳ ସମ୍ପର୍କରେ ଅନେକ କଥା ବେଦରେ ଲେଖାହୋଇଛି । ଯେଉଁ ତତ୍ତ୍ୱ ପୂର୍ବରୁ ଜ୍ଞାତ ହୋଇଥିଲେ ପାଶ୍ଚାତ୍ୟରେ କୁପରନିକସ୍ ବା ଗାଲିଲିଓଙ୍କୁ ଅବରୋଧ ସହ୍ୟ କରିବାକୁ ପଡ଼ି ନ ଥାନ୍ତା । ବେଦରେ ଭୌତିକ ବିଜ୍ଞାନ ସମ୍ପର୍କରେ ମଧ୍ୟ ଅନେକ ସୁନ୍ଦର ତଥ୍ୟମାନ ପରିବେଷଣ କରାଯାଇଛି । ସୌର ଜଗତ ସମ୍ପର୍କରେ ବେଦର ମାନ୍ୟତା କ'ଣ ଥିଲା ତା'ର ତୁଳନାତ୍ମକ ଅଧ୍ୟୟନ କରାଯାଉ ।

୧୧୫୦ ଖ୍ରୀଷ୍ଟାବ୍ଦରେ ଦ୍ୱିତୀୟ ଆର୍ଯ୍ୟଭଟ୍ଟ ଏ ସିଦ୍ଧାନ୍ତରେ ପହଞ୍ଚି ସାରିଥିଲେ ଯେ କୌଣସି କୌଣସି 'ଲୋକ' ବାୟୁଶ୍ରିତ । ଅନ୍ୟ କୌଣସି କୌଣସି 'ଲୋକ' ପୃଥିବୀ ଆଶ୍ରିତ । କିନ୍ତୁ ପୃଥିବୀ କାହାର ଆଶ୍ରୟରେ ନାହିଁ । ଏହା ଶୂନ୍ୟରେ ରହିଛି । ଗୋଲାକାର ପୃଥିବୀର ଚତୁର୍ଦ୍ଦିଗରେ ସମୁଦ୍ର ପର୍ବତ ବେଷ୍ଟିତ ହୋଇ ରହିଛି । ଏ ମହାନ ଜ୍ୟୋତିଷ ଶାସ୍ତ୍ରୀ ତାଙ୍କ ମହାସିଦ୍ଧାନ୍ତରେ ଏକଥା ପ୍ରତିପାଦନ କରନ୍ତି –

"ଅନିଲାଧାରାଃ କେଚନ୍ତ କେଚଲ୍ଲୋକା ବସୁନ୍ଧରା ଧାରାଃ
ବସୁଧାନାନ୍ୟାଧାରା ତିଷ୍ଠତି ଗଗନେ ସ୍ୱଶକ୍ତ୍ୟୈବ ।
କନ୍ଦୁକରୂପା ଧାତ୍ରୀ ସର୍ବନାମ୍ଭୋଧିପର୍ବତଂ ଦ୍ୱୀପୈଃ
ବ୍ୟାପ୍ତଂ କନ୍ଦୁକ କୃଷ୍ଣଂ ପୃଷ୍ଠାନି ପାତାଳ ଲୋକାଃ ସ୍ୟୁଃ ।

(୧୬, ୪–୫)

ଏଥିରୁ ବଳି ସ୍ପଷ୍ଟ ଉକ୍ତି ଆମେ କେଉଁଠାରୁ ପାଇବା ? ବୈଦିକ ଯୁଗ ଠାରୁ ପୁରାଣ ଯୁଗ ପର୍ଯ୍ୟନ୍ତ ଜ୍ୟୋତିଷର ଶୁଦ୍ଧ ପରମ୍ପରା ପ୍ରଚଳିତ ଥିଲା । ବିଷ୍ଣୁ ପୁରାଣରେ ବର୍ଣ୍ଣିତ ହୋଇଛି :—

‘‘ଦିବସସ୍ୟ ରଶ୍ମିମଧ୍ୟେ ସର୍ବକାଳଂ ବ୍ୟବସ୍ଥିତଃ । ୧୩ ।
ସର୍ବଦ୍ୱୀପେଷୁ ମୈତ୍ରେୟ ନିଶାର୍ଦ୍ଧସ୍ୟ ଚ ସମ୍ମୁଖଃ
ଉଦୟାସ୍ତ-ମନେ ଚୈବ ସର୍ବକାଳଂ ତୁ ସମ୍ମୁଖେ । ୧୪ ।
ବିଦିଶାସୁ ତ୍ୱଶେଷାସୁ ତଥା ବ୍ରହ୍ମନ୍ ଦିଶାସୁ ଚ
ଯୈର୍ଯତ୍ର ଦୃଶ୍ୟତେ ଭାସ୍ୱାନ୍ ସ ତେଷାମୁଦୟଃ ସ୍ମୃତଃ । ୧୫ ।
ତିରୋଭାବଂ ଚ ଯତ୍ରୈତି ତତ୍ରୈବାସ୍ତମନଂ ରବେଃ
ନୈବାସ୍ତ-ମନ ମର୍କସ୍ୟ ନୋଦୟଃ ସର୍ବଦା ସତଃ । ୧୬ ।
ଉଦୟାସ୍ତ-ମନ ମର୍କସ୍ୟ ହି ଦର୍ଶନା ଦର୍ଶନଂ ରବେଃ

(ବି: ପୁ:)

ଅର୍ଥାତ୍ ସୂର୍ଯ୍ୟଙ୍କ ଉଦୟ ଅସ୍ତ ନାହିଁ । ଯେ ଯେଉଁଠି ତାଙ୍କୁ ଦେଖେ ସେ ଉଦୟ ହେବା କଥା କହେ । ଯେଉଁଠାରେ ମଧ୍ୟାହ୍ନ ହୁଏ, ତା’ର ଅପର ପାର୍ଶ୍ୱରେ ମଧ୍ୟରାତ୍ରି ଥାଏ । ଯେଉଁ ସ୍ଥାନରେ ଉଦୟ ହୁଏ ତା’ର ଠିକ୍ ଅପର ପାର୍ଶ୍ୱରେ ସୂର୍ଯ୍ୟ ଅସ୍ତ ହୋଇଯାନ୍ତି ।

ଏ ସମସ୍ତ ତଥ୍ୟ ପ୍ରକାଶ ହେଲା ପରେ ଡାଃ. ହୌଗ ଓ ପ୍ରଫେସର ଉଇଲସନ୍ ଆଦି ବିଦ୍ୱାନ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ ।

ଋଗ୍ ବେଦରେ କୁହାଯାଇଛି — କେବଳ ପୃଥିବୀ ନୁହେଁ, ସମସ୍ତ ନକ୍ଷତ୍ର ରାଶି ମଧ୍ୟ ନିଜମଣ୍ଡଳ ଅକ୍ଷରେ ଘୂରୁଛନ୍ତି । ଏଣୁ ଉପର, ତଳ, ପୂର୍ବ ଓ ପଶ୍ଚିମ ଆଦି ବ୍ୟବହାର ଦୃଷ୍ଟିରୁ କଳ୍ପିତ ପଦ ଅଟେ ।

‘‘କତରା ପୂର୍ବା କତରା ପରାୟୋଃ
କଥା ଜାତେ କବୟଃ କୋ ବିବେଦ ।
ବିଶ୍ୱଂ ତ୍ମନା ବିଭୃତୋ ଯଦ୍ଧ ନାମ
ବିବର୍ତ୍ତେତେ ଅହନୀ ଚକ୍ରିଏବ । (୧-୧୮୫-୧)

ପୃଥିବୀ ସୂର୍ଯ୍ୟ ଚାରିପାଖରେ ଘୂରିବା କଥା ଋଗ୍ ବେଦର ଆଉ ଏକ ମନ୍ତ୍ରରେ ଉଲ୍ଲେଖ ଅଛି —

‘‘ଅହସ୍ତା ଯଦପଦୀ ବର୍ଦ୍ଧତ କ୍ଷାଃ
ଶଚୀଭିର୍ବେଦ୍ୟାନାମ୍ ।
ଶୁଷ୍ଣଂ ପରି ପ୍ରଦକ୍ଷିଣିତ୍
ବିଶ୍ୱାୟବେ ନି ଶିଶ୍ନଥଃ । (୧୦-୨୨-୧୪)

ସୂର୍ଯ୍ୟଙ୍କୁ ତେଜସ୍ୱାନ୍, ଉଜ୍ଜ୍ୱଳ ଓ ଅଗ୍ନି ପିଣ୍ଡ ଅବସ୍ଥାରେ ଦେଖି ସୂକ୍ତ ଋକ୍ ବେଦ (୧ । ୧୭୪ । ୪୬)ରେ ତାଙ୍କୁ "କୃଷ୍ଣ" ବୋଲି ବର୍ଣ୍ଣନା କରାଯାଇଛି । ଆମେ ସନ୍ଦେହରେ ପଡ଼ୁଥାଉଁ, ପ୍ରକୃତରେ ସୂର୍ଯ୍ୟ କ'ଣ କଳା ? ଅନେକ ଚିନ୍ତା ମନନ ପରେ ଏହା ମୁଁ ଜାଣିବାକୁ ପାଇଲି ଯେ "କୃଷ୍ଣ" ଶବ୍ଦ ପ୍ରୟୋଗ କରି ଋଷି ଏକ ନୂତନ ତଥ୍ୟ ଉଦ୍‌ଘାଟନ କରିଛନ୍ତି । "କୃଷ୍ଣ"ର ଅର୍ଥ କେବଳ କଳା ନୁହେଁ । କାରଣ "ଆକର୍ଷିତୁତ ଯ ସଃ କୃଷ୍ଣ" ବା ଯେ ଆକର୍ଷଣ କରେ ସେ କୃଷ୍ଣ । ଏହି ଅର୍ଥରେ ସୂର୍ଯ୍ୟଗ୍ରହ ଉପଗ୍ରହଗୁଡ଼ିକୁ ଆକର୍ଷଣ କରି କୃଷ୍ଣ ଭାବରେ ନାମିତ ହୋଇଛନ୍ତି ।

ଯେଉଁ ମାଧ୍ୟାକର୍ଷଣ ତତ୍ତ୍ୱ ଆବିଷ୍କାର କରି ନ୍ୟୁଟନ୍ ବିଶ୍ୱରେ ବିସ୍ମୟ ସୃଷ୍ଟି କରିଦେଲେ, ସେ ତତ୍ତ୍ୱ ବୈଦିକ ଋଗ୍ ବେଦ (୧ । ୩୫ । ୯) ମନ୍ତ୍ରରେ "ବିଚର୍ଷଣି" ଦ୍ୱାରା ସାର୍ଥକ କରି ସ୍ତୁତି କରୁଥିଲେ —

"ହିରଣ୍ୟ ପାଣିଃ ସବିତା ବିଚର୍ଷଣି ରୁଭେ<br>
ଦ୍ୟାବା ପୃଥିବୀ ଅନ୍ତରୀୟତେ<br>
ଅପାମୀବା ବାଧତେ ବେତି ସୂର୍ଯ୍ୟମଭି<br>
କୃଷ୍ଣେନ ରଜସା ଦ୍ୟାମୃଣୋତି ॥

"ବିଚର୍ଷଣି" ଓ "କୃଷ୍ଣ" ଏ ଦୁଇ ଶବ୍ଦ ଆକର୍ଷଣ ଅର୍ଥରେ ବ୍ୟବହୃତ ହୋଇଛି । ଏ ସମ୍ପୂର୍ଣ୍ଣ ଭୁବନ ସୂର୍ଯ୍ୟଙ୍କ ରଥ ପରେ ସ୍ଥିତ । ଗ୍ରହ, ଉପଗ୍ରହ ସୂର୍ଯ୍ୟଙ୍କ ବିନା ଚଳି ପାରନ୍ତେ ନାହିଁ । ଏଣୁ ଋଗ୍ ବେଦର ଅନ୍ୟ ଏକ ମନ୍ତ୍ରରେ ଏହାର ସ୍ପଷ୍ଟୀକରଣ କରାଯାଇଛି କି "ଭୁବନାନି ବିଶ୍ୱାଃ" । ସମ୍ପୂର୍ଣ୍ଣ ଭୁବନ ସୂର୍ଯ୍ୟଙ୍କ ରଥ ପରେ ଆଶ୍ରିତ । ଋଗ୍ ବେଦ, ସୂର୍ଯ୍ୟ ଆକର୍ଷଣ ଶକ୍ତି ବଳରେ ପୃଥିବୀକୁ ନିଜ ଚତୁଃପାର୍ଶ୍ୱରେ ଘୂରାଉଥିବା କଥା ନିମ୍ନୋକ୍ତ ମନ୍ତ୍ରରେ କହି ଦେଇଛନ୍ତି—

"ସବିତାଯନ୍ତ୍ରୈଃ ପୃଥିବୀମରମ୍ଣାଦସ୍କମ୍ଭନେ<br>
ସବିତା ଦ୍ୟାମ ଦୃଂହତ୍ ।<br>
ଅଶ୍ୱମିବାଧୁକ୍ଷତ୍ ଧୂନି ମନ୍ତ୍ରରିକ୍ଷମତୁର୍ତ୍ତେ<br>
ବଦ୍ଧଂ ସବିତା ସମୁଦ୍ରମ୍ (୧୦।୧୪୯।୧)

ଏ ପ୍ରକାର ଅନେକ ଆଲଙ୍କାରିକ ଭାଷା ସହିତ ଭୌତିକ ବିଜ୍ଞାନର ସର୍ବୋତ୍ତମ ସମୁନ୍ନୟ ବେଦରେ ଖୁବ୍ ଚମତ୍କାର ଭାବରେ ବ୍ୟକ୍ତ ହୋଇଛି ।

ଗୋଟିଏ ସ୍ଥାନରେ ବ୍ରହ୍ମଋଷି ଜିଜ୍ଞାସା କରନ୍ତି "ଏ ଜଗତର ଧାରକ କିଏ ?" ତୈତ୍ତିରୀୟ ଆରଣ୍ୟକ (୧।୮।୬)ରେ ଋଷି ଉତ୍ତର ଦେଉଛନ୍ତି "ବସ୍ତୁ"। କିଏ ଏ ବସ୍ତୁ ? ଯେ ଏ ବିଶ୍ୱକୁ ଧାରଣ କରିଛନ୍ତି ? ସେ ପୁଣି କର୍ମିଙ୍କ ଶଙ୍ଖ ଚକ୍ର ଗଦା ପଦ୍ମଧାରୀ ବସ୍ତୁ ନୁହନ୍ତି ତ ? ତାଙ୍କର ପ୍ରକୃତ ପରିଚୟ ପାଇବାକୁ ଆମେ ବ୍ୟସ୍ତ ହୋଇପଡ଼ୁ । ବସ୍ତୁ ପୁରାଣଙ୍କର ବସ୍ତୁଙ୍କ ସ୍ୱରୂପ ନିରୂପଣ କରିବାକୁ ଯାଇ କୁହନ୍ତି ସେ ଅତି ତେଜସ୍ୱାନ, ଦେଦୀପ୍ୟମାନ, ସୂର୍ଯ୍ୟଙ୍କପରି ତାଙ୍କ ପରମ ପଦ (୨।୮।୧୦୫) । ଏ ବସ୍ତୁ ସ୍ୱୟଂ ସୂର୍ଯ୍ୟ ନୁହନ୍ତି ତ ? ଝଷ୍ଟୀକରଣ କରିବାକୁ ଯାଇ ଐତରେୟ ବ୍ରାହ୍ମଣ କୁହନ୍ତି –

"ଅଗ୍ନିର୍ଦେବାନାମବ-ମୋ ବସ୍ତୁ
ପରମସ୍ତଦନ୍ତରେଣ ସର୍ବା ଦେବତାଃ" ।

ବେଦରେ ପ୍ରଶ୍ନୋତ୍ତର ରୂପରେ ଜିଜ୍ଞାସୁର ଅନେକ ସନ୍ଦେହ ମୋଚନ କରାଯାଇଛି । ଯଜୁର୍ବେଦରେ ଏକ ଉଦାହରଣ ଦିଆଯାଉ –

"କଃ ସ୍ୱି ଦେକାକୀ ଚରତି, କଉ ସ୍ୱିଜ୍ଜାୟତେ ପୁନଃ ?
କିଂ ସ୍ୱିଦ୍ଧିମସ୍ୟ ଭେଷଜଂ କିଂବା ବପନଂ ମହତ୍ ।।

ଅର୍ଥାତ୍ – ଏକା କିଏ ବୁଲେ ବା କିଏ କୌଣସି ଗ୍ରହର ଚାରିପାଖରେ ଘୂରେ ନାହିଁ ? କିଏ ଘରପାଖରେ ଘୂରେ ? ଶୀତର ଔଷଧ କ'ଣ ? ବୀଜ ବୁଣିବାର ସବୁଠାରୁ ବଡ଼ କ୍ଷେତ୍ର କ'ଣ ?

"ସୂର୍ଯ୍ୟ ଏକାକୀ ଚରତି, ଚନ୍ଦ୍ରମା ଜାୟତେ ପୁନଃ ।
ଅଗ୍ନିର୍ହିମସ୍ୟ ଭେଷଜଂ, ଭୂମି ଏବ ପନଂ ମହତ୍ ।।"

ଅର୍ଥାତ୍ – ସୂର୍ଯ୍ୟ ଏକାକୀ ବୁଲେ ବା କୌଣସି ଗ୍ରହ ଚାରିପାଖରେ ଘୂରେ ନାହିଁ । ଚନ୍ଦ୍ରମା ଘରପାଖରେ ଘୂରେ । ଅଗ୍ନି ଶୀତର ଔଷଧ । ଭୂମି ବୀଜ ବୁଣିବା ପାଇଁ ସବୁଠୁ ବଡ଼ କ୍ଷେତ୍ର ।

ଯଜୁର୍ବେଦ ପରି ଋଗ୍ ବେଦରେ ସୌର ମଣ୍ଡଳ ସମ୍ପର୍କରେ ଆହୁରି ଅନେକ ତଥ୍ୟ ରହିଛି । ପ୍ରକୃତ ଗବେଷଣାର ଅଭାବରେ ସେଉଁ ମନ୍ତ୍ରଗୁଡ଼ିକର ସଠିକ ଅର୍ଥ କରାଯାଇ ପାରୁନାହିଁ । ଯେପରି ସୂର୍ଯ୍ୟ ରଶ୍ମି ପ୍ରତିଫଳନରେ ରାତିର ଚନ୍ଦ୍ର ଆଲୋକିତ ହେବା କଥା ଋଗ୍ବେଦରେ ୧,୮୪,'୫ ଏବଂ ୧୦,୮୫,୯ ଆଦି ମନ୍ତ୍ରରୁ

ଜଣାଯାଏ । ଐତରେୟ ବ୍ରାହ୍ମଣର "ସୂର୍ଯ୍ୟ ରଶ୍ମିଷ୍ଟ ଚନ୍ଦ୍ରମା-ଗନ୍ଧର୍ବ" ସୂକ୍ତରୁ ସୂର୍ଯ୍ୟଦ୍ୱାରା ଚନ୍ଦ୍ର ଆଲୋକିତ ହେବା କଥା ଜାଣିପାରିବା ପରେ ମଧ୍ୟ କିପରି କୁହାଯାଇପାରିବ ଯେ ଆଦ୍ୟ ମାନବ ବିଜ୍ଞାନ କ'ଣ ଜାଣି ନଥିଲା ?

ପ୍ରକୃତରେ ଦେଖିବାକୁ ଗଲେ, ବେଦରେ ଏପରି ଅନେକ ମନ୍ତ୍ର ଅଛି ଯାହାକୁ ବୁଝିବାକୁ ହେଲେ ବୈଜ୍ଞାନିକମାନଙ୍କୁ ବହୁ ବର୍ଷ ଲାଗିଯାଇପାରେ । ଆଜିର ଭୌତିକ ବିଜ୍ଞାନ ଯଥେଷ୍ଟ ପ୍ରଗତି କଲା ପରେ ଯାଇ ଆମର ପ୍ରାଚୀନ ସତ୍ୟ ଓ ଶାଶ୍ୱତ ତତ୍ତ୍ୱର ଉପଯୁକ୍ତ ସମୀକରଣ ହୋଇପାରିବ ।



# ଶଙ୍କର ଦର୍ଶନରେ କିଛି କଳ୍ପିତ ସ୍ୱୟଂସିଦ୍ଧି

ଶଙ୍କରାଚାର୍ଯ୍ୟଙ୍କ ଅଦ୍ୱୈତବାଦ କେବଳ ଅଦ୍ୱୈତବାଦ ନୁହେଁ । ଏହି ଅଦ୍ୱୈତବାଦ ସହିତ ସେ ମାୟାବାଦକୁ ମଧ୍ୟ ସଂଯୋଜିତ କରିଛନ୍ତି । ତାଙ୍କ ମତରେ "ବ୍ରହ୍ମ ସତ୍ୟଂ ଜଗତ୍ ମିଥ୍ୟା" ବା ବ୍ରହ୍ମହିଁ ଏକମାତ୍ର ସତ୍ୟ ଏବଂ ଜଗତ ମିଥ୍ୟା ବା ମାୟା ଅଟେ । ବ୍ରହ୍ମଙ୍କୁ ସତ୍ୟ ମାନିବା ସଙ୍ଗେ ସଙ୍ଗେ ଜଗତକୁ ମିଥ୍ୟା ଭାବିବା ଶଙ୍କରଙ୍କ ପାଇଁ ଏକ ଆବଶ୍ୟକତା ଅନୁଭୂତ ହୁଏ । ଏହାକୁ ପୁଷ୍ଟ କରିବା ପାଇଁ ସେ ଅବଶ୍ୟ ଗୌଡ଼ପାଦାଚାର୍ଯ୍ୟଙ୍କର କାରିକାର ସାହାଯ୍ୟ ନେଇଥିଲେ । ଗୌଡ଼ପାଦଙ୍କର ଶିଷ୍ୟ ଗୋବିନ୍ଦାଚାର୍ଯ୍ୟଙ୍କର ଶିଷ୍ୟତ୍ୱ ଗ୍ରହଣ କରି ଶଙ୍କର ବୌଦ୍ଧଧର୍ମ ଖଣ୍ଡନ ପାଇଁ ମାୟାବାଦକୁ ଯେ ଅସ୍ତ୍ର ରୂପେ ଗ୍ରହଣ କରି ନେଇଥିଲେ ତାହା ଗବେଷଣାସାପେକ୍ଷ ।

ଗୌଡ଼ପଦ କାରିକା ଅନୁସରଣରେ ଶଙ୍କର କହିବାକୁ ଆରମ୍ଭ କରିଦେଲେ ଯେପରି ରଜ୍ଜୁକୁ ଆମେ ଭ୍ରମତଃ ସର୍ପଜ୍ଞାନ କରୁ ସେପରି ଜୀବ ମିଥ୍ୟା ମାୟା ସଂସାରକୁ ସତ୍ୟଜ୍ଞାନ କରେ ଯାହାକୁ ସେ ଅଧ୍ୟାସ ବୋଲି କହନ୍ତି । ସେହି ଦୃଷ୍ଟିରୁ ବେଦାନ୍ତମାନେ ଜଗତକୁ ସ୍ୱପ୍ନବତ୍ ମିଥ୍ୟା ବୋଲି କହିଥାନ୍ତି ।

ଶଙ୍କରଙ୍କ ମତରେ ବ୍ରହ୍ମ ପୂର୍ଣ୍ଣ, ଅନନ୍ତ ଓ ଜ୍ଞାନ ଅଟନ୍ତି । ପୁନଶ୍ଚ ସେ ବିଚାର କରନ୍ତି ଯେ ମାୟାଦ୍ୱାରା ପ୍ରଭାବିତ ବ୍ରହ୍ମ ହିଁ ଜୀବ ହୋଇଥାଏ ଏବଂ ପୂର୍ଣ୍ଣଜ୍ଞାନ ହେବା ପରେ ବା ସ୍ୱରୂପ ଜ୍ଞାନ ହେବାପରେ ସେ ପୁଣି ବ୍ରହ୍ମ ହୋଇଯାଏ । ପୁନଶ୍ଚ ଶଙ୍କର ଜୀବର ସ୍ୱତନ୍ତ୍ର ସତ୍ତା ମାନିବାକୁ ନାରାଜ । ଯଦି ମାୟା ପୂର୍ବରୁ ଜୀବର କୌଣସି ସତ୍ତା ନ ଥିଲା ତେବେ ତାହା ମାୟାର ଆଶ୍ରୟ କିପରି ନେଇପାରିବ । ଏ ପ୍ରଶ୍ନଟିକୁ ଏଡ଼ାଇବାକୁ ଯାଇ ଶଙ୍କର ବୁଦ୍ଧିମତ୍ତାର ସହ କହନ୍ତି ଅବିଦ୍ୟା ବଶତଃ ଏ ସଂସାର ଆମକୁ ସତ୍ୟ ମନେ ହୁଏ । ମାତ୍ର ଏଠି ମନେ ରଖିବା ଉଚିତ୍ ଯେ 'ମନେହେବା' ଓ 'ହେବା' ମଧ୍ୟରେ ଅନେକ ପାର୍ଥକ୍ୟ ଅଛି । ଯେପରି ସୂର୍ଯ୍ୟ ପୂର୍ବ ଦିଗରେ ଉଦୟ ହେବା, ଜଳ ମଧ୍ୟରେ ଷ୍ଟିକ୍ ବଙ୍କା ଦେଖାଯିବା ଏବଂ ଚଳନ୍ତା ରେଳଗାଡ଼ିରୁ ବୃକ୍ଷଲତା ଗତିଶୀଳ ପ୍ରତୀତ ହେବା ମିଥ୍ୟା ଅଟେ । ଠିକ୍ ସେହି ପ୍ରକାର ଜଗତ, ସୂର୍ଯ୍ୟ, ଚନ୍ଦ୍ର, ତାରକା ଏବଂ ବହୁସଂଖ୍ୟକ ଜୀବଜନ୍ତୁ

ଆମକୁ ପ୍ରତୀତ ହେଲେ ମଧ୍ୟ ଏମାନେ ସତ୍ୟ ନୁହନ୍ତି । ବ୍ୟବହାରିକ ଜ୍ଞାନରେ ଏମାନେ ଅନେକ ମନେ ହେଲେ ମଧ୍ୟ ପାରମାର୍ଥିକ ଜ୍ଞାନରେ ଏମାନେ ତାହା ନୁହନ୍ତି ।

ତିନୋଟି ଉଦାହରଣ ଦ୍ୱାରା ଏହାକୁ ଆହୁରି ସ୍ପଷ୍ଟ କରିଦିଆଯାଇ ପାରିବ । ଅନ୍ଧାରରେ ଦଉଡ଼ି ଆମକୁ ସାପ ପରି ଦେଖାଯାଏ, ମାତ୍ର ଆଲୋକରେ ଦେଖିଲେ ତାହା ଦଉଡ଼ି ହିଁ ଦେଖାଯାଏ ଏବଂ ଆମେ ଆମର ମୂର୍ଖତା ପାଇଁ ହସୁ । ସେହିପରି ସ୍ୱପ୍ନରେ ଆମେ ଭିନ୍ନ ଭିନ୍ନ ବସ୍ତୁ ଦେଖୁ ମାତ୍ର ଜାଗ୍ରତ ହେଲା ପରେ ସେ ସବୁ ରହେନାହିଁ । ଜଣେ ଯାଦୁକର ଗୋଟିଏ ଟଙ୍କାକୁ ବହୁ ଟଙ୍କାରେ ପରିଣତ କରିପାରେ ମାତ୍ର ଖେଳ ପରେ ସେ ସବୁ ଉଭେଇ ଯାଏ । ଏ ସବୁ ଉଦାହରଣ ଦ୍ୱାରା ଶଙ୍କର ନାନାରୂପ ପ୍ରତୀତ ହେଉଥିବା କଥାକୁ ମାୟା ବୋଲି ପ୍ରତିପାଦନ କରନ୍ତି ।

ମାୟା ଏକ ବନ୍ଧନ । ଯେବେ ଆମେ ଜାଣିପାରିବୁ ଯେ ଦଉଡ଼ି ସାପ ନୁହେଁ ତେବେ ଆମର ଆଉ ଭୟ ରହିବ ନାହିଁ । ଯଦି ଆମେ ଅନୁଭବ କରିପାରିବୁ ଯେ ମୁଁ ବ୍ରହ୍ମ ଅଟେ ତେବେ ଶୋକ, ଦୁଃଖ, ମୋହ ଆଉ ରହିବ ନାହିଁ । ଏହି ଜ୍ଞାନ ହିଁ ପ୍ରକୃତ ଜ୍ଞାନ । ଶଙ୍କର କୁହନ୍ତି ଏହି ଜ୍ଞାନ ଦ୍ୱାରା ହିଁ ମୁକ୍ତି ସମ୍ଭବ । ଏଠି ମନେ ରଖିବା ଉଚିତ ଯେ ରଜ୍ଜୁରେ ସର୍ପଜ୍ଞାନ ଏକ ତ୍ରୁଟି ମାତ୍ର ଏକ ଭ୍ରାନ୍ତି ନୁହେଁ । ଭୁଲ୍ ବ୍ୟକ୍ତିଗତ ହୁଏ ମାତ୍ର ଭ୍ରାନ୍ତି ଏକ ସାମୂହିକ ତ୍ରୁଟି ଅଟେ । ମୁଁ ଯଦି ରାତିରେ ଯାଉଁ ଯାଉଁ ଏକ ଦଉଡ଼ିକୁ ସାପ ବୋଲି ଭାବିନେଲି ତେବେ ଭୁଲ୍ ମୋର ହେବ, କାରଣ ସେହି ରାସ୍ତାରେ ଚାଲିଥିବା ସମସ୍ତ ବ୍ୟକ୍ତିଙ୍କ ପାଇଁ ଏହା କେବେ ମଧ୍ୟ ସର୍ପ ନୁହେଁ । ଭୟଭୀତ ମଣିଷ ପାଇଁ ଏହା ସର୍ପ ପରି ମନେ ହୋଇପାରେ ଏହାକୁ ଏକ ସାର୍ବଜନୀନ ତ୍ରୁଟି କୁହାଯାଇପାରିବ ନାହିଁ । ମଶାଲ ଜଳାଇ ଦିଅ । ଏହା ଆଉ ସର୍ପ ପରି ଦେଖାଯିବ ନାହିଁ । ସେହିପରି ଗୋଟିଏ କାଚ ଗ୍ଲାସ୍‌ରେ ପାଣି ନିଅ । ସେଥିରେ ସ୍କେଲ୍‌ଟିଏ ପକାଅ । ସ୍କେଲ୍‌ଟି ବଙ୍କା ଦେଖାଯିବ । କିନ୍ତୁ ପ୍ରକୃତରେ ସ୍କେଲ୍ କ'ଣ ବଙ୍କା ? ଏହା ଏକ ତ୍ରୁଟି ନୁହେଁ ଭ୍ରାନ୍ତି, ଏକ ସମୂହଗତ ଭ୍ରାନ୍ତି ।

ଶଙ୍କରଙ୍କ ଦୁଇଶହ ବର୍ଷ ପରେ ରାମାନୁଜାଚାର୍ଯ୍ୟ ଆସିଲେ । ତାଙ୍କର ଆତ୍ମା ଶଙ୍କରଙ୍କ ବିଚାରରେ ଶାନ୍ତି ପାଇଲା ନାହିଁ । ଶଙ୍କରଙ୍କ ମାୟାର ମାୟାକୁ ବୁଝିବା ତାଙ୍କ ପାଇଁ ଅସମ୍ଭବ ହୋଇପଡ଼ିଲା । ସେ ବୁଝିପାରିଲେ ନାହିଁ ମାୟା କି ପ୍ରକାର ବସ୍ତୁ ଯାହାର ଅସ୍ତିତ୍ୱ ନଥିବା ସତ୍ତ୍ୱେ ଏତେ ବିଶାଳ ବିଶ୍ୱ ପ୍ରତୀତ ହେଉଛି । ପୁନଶ୍ଚ ମାୟା ବ୍ରହ୍ମକୁ ଲୁଚାଇ କିପରି ପାରିବ ? ବ୍ରହ୍ମ ଯଦି ଜ୍ଞାନ

ସ୍ୱରୂପ ତେବେ ଜ୍ଞାନର ତିରୋଧାନ କ'ଣ ସମ୍ଭବ ? ଯେ ପର୍ଯ୍ୟନ୍ତ ପ୍ରକାଶ ଲୁଚି ଯାଇନାହିଁ ଅନ୍ଧାର କିପରି ଆସିବ ? ପ୍ରଦୀପ ଜଳୁଛି, ଆମେ ଯଦି ତା' ଉପରେ ପାତ୍ରଟିଏ ଘୋଡ଼ାଇ ଦେଉ ବା କାନ୍ଥର ଅନ୍ୟ ପାଖରେ ତାହା ରଖିଦେଉ ତା'ହେଲେ ହୁଏତ ପ୍ରକାଶ ଆସିପାରିବ ନାହିଁ ଓ ଅନ୍ଧକାର ହୋଇଯିବ । ଏବଂ ଅନ୍ଧାରରେ ଦଉଡ଼ିକୁ ସାପ ଓ ସାପକୁ ଦଉଡ଼ିର ଭ୍ରମ ଉତ୍ପତ୍ତି ହୋଇଯିବ । ଯଦି ଏ ପ୍ରକାର ବାଧକ ବସ୍ତୁ ନାହିଁ ଅନ୍ଧକାର କିପରି ହେବ ? ବ୍ରହ୍ମକୁ କ'ଣ ଢଙ୍କାଯାଇ ପାରିବ କି ? ପ୍ରଶ୍ନ ଏଠି ଅଦ୍ୱୈତର ନୁହେଁ ଦ୍ୱୈତର । କାରଣ ଢାଙ୍କିବା ଲୋକ ଓ ଢଙ୍କାଯାଇ ଥିବା ବସ୍ତୁ ଏକ ନୁହେଁ ଦୁଇ । ଯେ ପର୍ଯ୍ୟନ୍ତ ପ୍ରକାଶ ଢଙ୍କା ନ ଯାଉଛି ସେ ପର୍ଯ୍ୟନ୍ତ ଅନ୍ଧାର ହୋଇପାରିବ ନାହିଁ । ଯଦି ମାୟାକୁ ଅସତ ବା କିଛି ବସ୍ତୁ ନୁହେଁ ବୋଲି କୁହାଯାଏ ତେବେ ବହୁତ୍ୱର ଭ୍ରମ କିପରି ଏହା ଉତ୍ପନ୍ନ କରିପାରୁଛି ? ଯଦି କୁହାଯାଏ ନା ଏହା ସତ୍ୟ ନା ଅସତ୍ୟ, ତା'ହେଲେ ଏଥିପାଇଁ କ'ଣ ଉଦାହରଣ ଦିଆଯାଇପାରିବ ? ଏହା କିପରି କୁହାଯିବ ଯେ ଅଛି କିନ୍ତୁ ନାହିଁ ବା ନାହିଁ କିନ୍ତୁ ଅଛି । ମାୟାକୁ ମାନିନେବା ଦ୍ୱାରା ଶଙ୍କର କିପରି ତାଙ୍କର ଅଦ୍ୱୈତ ସିଦ୍ଧାନ୍ତକୁ ପ୍ରମାଣ କରିପାରିବେ ?

ମାୟା ପାଇଁ ଏଠି କାରଣ ନୀରବ । ଯାହା ସତ୍ୟ ନୁହେଁ ବା ଅସତ୍ୟ ନୁହେଁ ସେଥିପାଇଁ କାରଣର ବା କି ଆବଶ୍ୟକତା ଅଛି ? ଦଉଡ଼ି ଏବଂ ସାପ ଦୁହିଁଙ୍କର ଅସ୍ତିତ୍ୱ ଥିବାରୁ ଏହାର ଭ୍ରମ ଉତ୍ପନ୍ନ ହୋଇଥାଏ । ଯଦି ଆମେ ସାପ କିମ୍ବା ଦଉଡ଼ି ପ୍ରଥମରୁ ଦେଖି ନ ଥାନ୍ତୁ କିମ୍ବା ଜାଣି ନ ଥାନ୍ତୁ ତା'ହେଲେ ସାପକୁ ଦଉଡ଼ି କିମ୍ବା ଦଉଡ଼ିକୁ ସାପ ବୋଲି ପ୍ରତୀତ ହୁଅନ୍ତା ନାହିଁ । ଏଥିରୁ ଏହା ପ୍ରମାଣିତ ହୋଇଯାଏ ଯେ ଦ୍ରଷ୍ଟା ଦୁଇଟି ଦ୍ରବ୍ୟକୁ କେବେ ଦେଖିଛି ଏବଂ ଏହାର ସଂସ୍କାର ମସ୍ତିଷ୍କରେ ରହିଥିବା କାରଣରୁ ଅନ୍ଧାରରେ ଦଉଡ଼ି ସାପପରି ଦେଖାଯାଉଛି ।

ଅନ୍ୟ ପ୍ରକାରେ ବିଚାର କଲେ ବ୍ରହ୍ମ ଛଡ଼ା ଯଦି ଆଉ କାହାରି ଅସ୍ତିତ୍ୱ ନାହିଁ ତା'ହେଲେ ଅସ୍ତିତ୍ୱ ନ ଥାଇ ଏ ମାୟା କିପରି ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିନିଏ । ମାୟା ଦ୍ୱାରା ଯେଉଁ ଭ୍ରାନ୍ତି ଉତ୍ପନ୍ନ ହୋଇଯାଏ ତାହା ବ୍ରହ୍ମଶକ୍ତିଠାରୁ ଅଲଗା ଭାବରେ ବିଚାର କରାଯାଇ ପାରିବ କି ? ଦଉଡ଼ିଟି ସାପଭଳି ଦେଖାଯିବା କ'ଣ ମିଥ୍ୟା ଅଟେ ? ଦଉଡ଼ିଟି ସାପ ଭଳି ଦେଖାଯିବା ଯେପରି ସତ୍ୟ, ଜଗତ ମଧ୍ୟ ସେହିପରି ସତ୍ୟ ଅଟେ । ଏ ଦୃଷ୍ଟିରୁ ଜୀବ ବ୍ରହ୍ମ, ଜଗତ ବ୍ରହ୍ମ, ମାୟା ବ୍ରହ୍ମ, ଏବଂ ସବୁ ବ୍ରହ୍ମକୁହିଁ ବ୍ରହ୍ମଜ୍ଞାନ କୁହାଯିବା ଉଚିତ । ଦେଖିବାକୁ ଗଲେ ମାୟାପରି ବ୍ରହ୍ମ ମଧ୍ୟ ଏକ ବୌଦ୍ଧିକ ପ୍ରତୀତି ଅଟେ । ମାୟା ଯେପରି ମନର

ଉପଜ ବ୍ରହ୍ମ ମଧ୍ୟ ସେହିପରି ମନର ଉପଜ ଅଟେ । ସତ୍ୟ ଦୃଶ୍ୟମାନ ଜଗତ ଯଦି ମାୟା ବା ମିଥ୍ୟା ହୋଇଯାଏ ତା'ହେଲେ ଅଦୃଶ୍ୟ ବ୍ରହ୍ମ କିପରି ସତ୍ୟ ହୋଇ ପାରିବେ ? ଶଙ୍କର ମାୟାବାଦ ଦ୍ୱାରା ସତ୍ୟକୁ ଆବୃତ କରି ନାହାନ୍ତି ତ ?

ଅଦ୍ୱୈତବାଦୀମାନେ ଜଗତର ତୁଳନା ସ୍ୱପ୍ନ ସହିତ ମଧ୍ୟ କରନ୍ତି । ସ୍ୱପ୍ନରେ ଆମର ଅନୁଭବ ପଦାର୍ଥର ସଂସ୍କାର ବିଦ୍ୟମାନ । ଅନେକ ସମୟରେ ସ୍ୱପ୍ନରେ କାର୍ଯ୍ୟର ଶୃଙ୍ଖଳା ନ ଥିଲେ ମଧ୍ୟ ପଦାର୍ଥର ସମ୍ବନ୍ଧରେ ଆମେ ପରିଚିତ ଥାଉ । ଜାଗ୍ରତ ଅବସ୍ଥାର ସତ୍ୟପଦାର୍ଥର ସଂସ୍କାରହିଁ ସ୍ୱପ୍ନରେ ରୂପାନ୍ତରିତ ହୁଏ । ଆହୁରି ସରଳ ଉଦାହରଣଟିଏ ନିଅନ୍ତୁ । ଜନ୍ମ ଅନ୍ଧ କଣ ସ୍ୱପ୍ନରେ ବସ୍ତୁ ଦର୍ଶନ କରିପାରେ କି ଜନ୍ମ କାଲ କଣ ଶବ୍ଦ ଶୁଣିପାରେ ? ଏଥିରୁ ସ୍ପଷ୍ଟ ଯେ ବସ୍ତୁ ସତ୍ୟ କିନ୍ତୁ ସ୍ୱପ୍ନରେ ଏଥିରେ ଆମେ ଶୃଙ୍ଖଳା ବା ବିଶୃଙ୍ଖଳା ଦେଖିଥାଉ । ରଜ୍ଜୁରେ ସର୍ପଜ୍ଞାନ ମିଥ୍ୟା ତା ବୋଲି କ'ଣ ଆମେ ସର୍ପର ଅସ୍ତିତ୍ୱକୁ ଅସ୍ୱୀକାର କରି ପାରିବା କି ?

ଯଦି ସ୍ୱପ୍ନ ଦେଖିବା ଲୋକ ନାହିଁ ତାହେଲେ ସ୍ୱପ୍ନ କେଉଁଠୁ ହେବ ? ଧରନ୍ତୁ ମୁଁ ସ୍ୱପ୍ନରେ ଦେଖିଲି ହାତୀ ଉପରେ ଚଢ଼ିଛି । ହାତୀରେ ଚଢ଼ିବା ସ୍ୱପ୍ନ କିଏ ଦେଖିଲା ? ମୁଁ । ମୁଁ କାହିଁକି ଦେଖିଲି ? ଏଥିପାଇଁ ଯେ ମୋ ମସ୍ତିଷ୍କରେ ବିକାର ଅଛି । ମୋତେ ନିଦ ହେଲା ନାହିଁ ଏବଂ ଜାଗ୍ରତ ଅବସ୍ଥାରେ ପଡ଼ିଥିବା ସଂସ୍କାର ଗାଢ଼ନିଦ ଅଭାବରେ ମୋ ମନ ଆଗରେ ନୃତ୍ୟକଲେ । ଯଦି ମୁଁ ନ ଥାନ୍ତି ତା'ହେଲେ ମୋତେ ସ୍ୱପ୍ନ ମଧ୍ୟ ହୋଇ ନ ଥାନ୍ତା କିମ୍ବା ଯଦି ମୁଁ ଥାନ୍ତି ମାତ୍ର ମୋର ମସ୍ତିଷ୍କରେ ବିକାର ନଥାନ୍ତା ତେବେ ମୋତେ ସ୍ୱପ୍ନ ହୋଇ ନ ଥାନ୍ତା । କିନ୍ତୁ ସ୍ୱପ୍ନ ପାଇଁ ଏପରି ଏକ ସତ୍ତାର ଆବଶ୍ୟକ ଯାହା ଅଳ୍ପ, ଅପୂର୍ଣ୍ଣ ଓ ବିକାର ପ୍ରଭାବିତ ହୋଇଥିବ । ଜାଗ୍ରତ ଅବସ୍ଥାକୁ ସତ୍ୟ ମନେ କରିବା ଏବଂ ସ୍ୱପ୍ନାବସ୍ଥାକୁ ମିଥ୍ୟା ବୋଲି କହିବାର କିଛି ମାନେ ନାହିଁ । ସ୍ୱପ୍ନକୁ ମିଥ୍ୟା କହିବା ଦ୍ୱାରା ଜାଗ୍ରତାବସ୍ଥା ସ୍ୱତଃ ସତ୍ୟସିଦ୍ଧ ହୋଇଯାଏ । ଯେହେତୁ ଜାଗ୍ରତାବସ୍ଥା ଆସିବା ପରେ ସ୍ୱପ୍ନର ଅଭିମାନ ବା ଅନୁଭବ ନଷ୍ଟ ହୋଇଯାଏ । ମୁଁ ଯେବେ କହିବି ଯେ କାଲି ରାତିରେ ମୋତେ ଖୁବ୍ ଭଲ ନିଦ ହୋଇଥିଲା ଏହାର ଅର୍ଥ ବୁଝିବାକୁ ହେବ ଯେ ଗତ ରାତିରେ ମୁଁ କୌଣସି ସ୍ୱପ୍ନ ଦେଖି ନାହିଁ । ଭୁଲିଯିବା ଅନେକ ସମୟରେ ଆନନ୍ଦଦାୟକ ହୋଇଥିବାରୁ ଏବଂ ଶୋଇବା ସମୟରେ କୌଣସି କଥା ମୋର ମନେ ନ ଥିବାରୁ ମୁଁ କହୁଛି ଗତ ରାତିରେ ମୋର ଭଲ ନିଦ ହୋଇଥିଲା । ଏହା ସଂସ୍କାର ଓ ବିସ୍ମୃତିର ହିଁ ପରିଣାମ ଅଟେ ।

ସଂକ୍ଷେପରେ କହିବାକୁ ଗଲେ ଯଦି ଏ ଜଗତ ମିଥ୍ୟା, ମାୟା ଏବଂ ପ୍ରତୀତ ମାତ୍ର ତା ହେଲେ ବ୍ରହ୍ମ ମିଥ୍ୟା, ମାୟା ଓ ପ୍ରତୀତ ଭାବରେ ପ୍ରତିପାଦିତ ହୋଇ ପାରିବେ । ଯଦି ରଜ୍ଜୁକୁ ସର୍ପ ଭାବରେ ଦେଖିବା ସହିତ ଶଙ୍କର ଜଗତକୁ ମିଥ୍ୟା ଓ

ମାୟା ବଢ଼ିପାରନ୍ତି ତା ହେଲେ ତାଙ୍କର କଥାଟିକୁ ଓଲଟାଇ ମଧ୍ୟ ଆମେ କହିପାରିବୁ ଯେ ଜଗତ ମିଥ୍ୟା ପ୍ରତୀତ ହେଲେ ମଧ୍ୟ ଏହା ସତ୍ୟ ଯେପରି ରଜ୍ଜୁରେ ସର୍ପ ବା ସର୍ପରେ ରଜ୍ଜୁ ଦର୍ଶନ । ଯଦି "ଏକଂ ବ୍ରହ୍ମ ଦ୍ୱିତୀୟଂ ନାସ୍ତି" ହିଁ ସତ୍ୟ ତା ହେଲେ "ଅହଂ ବ୍ରହ୍ମାସ୍ମି ନେତରଃ" ମଧ୍ୟ ସତ୍ୟ ଅଟେ । ଏଥିରେ ପ୍ରଶ୍ନ ଉଠିବ କାହାକୁ କାହିଁକି ଆମେ ସ୍ତୁତି, ପ୍ରାର୍ଥନା ବା ଉପାସନା କରିବୁ ।

ଯଦି ଜୀବର ଅସ୍ତିତ୍ୱ ହିଁ ନାହିଁ ତା ହେଲେ ତା'ର କର୍ତ୍ତବ୍ୟ ପ୍ରଶ୍ନ କପରି ଉଠିବ ? ସେହି ଦୃଷ୍ଟିରୁ ଶଙ୍କରଙ୍କ ଅଦ୍ୱୈତ ସିଦ୍ଧାନ୍ତରେ ସଦାଚାରର ସ୍ଥାନ ନାହିଁ । ବୌଦ୍ଧ ଧର୍ମର ନାସ୍ତିକତା ବିରୁଦ୍ଧରେ ପ୍ରବଳ ତର୍କ ଦ୍ୱାରା ଆସ୍ତିକତା ସ୍ଥାପନ କରିବା ପରିବର୍ତ୍ତେ ସେ ନାସ୍ତିକ ପନ୍ଥା କଥା କହି ଗଲେନ୍ତି । ଶଙ୍କରବାଦୀଙ୍କ ମତରେ ଚେତନ ଧୀରେ ଧୀରେ ଜଡ଼ର ରୂପ ଧାରଣ କଲା । ନାସ୍ତିକମାନଙ୍କ ମତରେ ଜଡ଼ ଧୀରେ ଧୀରେ ଚେତନ ଅବସ୍ଥା ପ୍ରାପ୍ତ ହେଲା । ଏଣୁ ଆସ୍ତିକ ଓ ନାସ୍ତିକଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ପରିଲକ୍ଷିତ ହୁଏ ନାହିଁ । ସତେଯେପରି ସେମାନେ ଗୋଟିଏ ନୌକାରେ ଯାତ୍ରା କରୁଛନ୍ତି । ନାସ୍ତିକମାନଙ୍କପରି ଶଙ୍କରବାଦୀମାନେ ନୈତିକ ଅନୈତିକର ପାର୍ଥକ୍ୟ ଦେଖନ୍ତି ନାହିଁ । ନିଜକୁ ବ୍ରହ୍ମ ମନେ କରୁଥିବାରୁ ଆତ୍ମୋନ୍ନତି ପ୍ରତି ବିଶେଷ ଯତ୍ନଶୀଳ ହୋଇପାରନ୍ତି ନାହିଁ । ଭାବି ଭାବି ମୁଁ ଯଦି ବ୍ରହ୍ମ ହିଁ ହୋଇଯିବି ତେବେ ମୋର କର୍ମ କରିବାର ଆବଶ୍ୟକତା କ'ଣ ?

ଜଗତ ମିଥ୍ୟା ବା ମାୟା ନୁହେଁ । ଏହା ନିଚ୍ଛକ ସତ୍ୟ ଓ ବାସ୍ତବ । ପରମେଶ୍ୱରଙ୍କ ସୃଷ୍ଟି ଅଜର ଓ ଅମର । ଯଜୁର୍ବେଦ (୪୦.୮)ରେ କୁହାଯାଇଛି ଏ ଜଗତକୁ ପରମେଶ୍ୱର ଯଥାର୍ଥ ପଦାର୍ଥରେ ନିର୍ମାଣ କରିଛନ୍ତି । ପୁନଶ୍ଚ ଋଗବେଦ (୧.୧୫.୧) ଗୋଟିଏ ମନ୍ତ୍ରରେ ପରମେଶ୍ୱରଙ୍କୁ ସତ୍ୟ ସ୍ୱରୂପ କୁହାଯାଇ ତାଙ୍କର କାର୍ଯ୍ୟକୁ ମଧ୍ୟ ସତ୍ୟ ବୋଲି କୁହାଯାଇଛି ।

ସ୍ତୁ ଯାନ୍ତସ୍ୟ ମହତୋ ମହାନ୍ :

ସତ୍ୟା ସତ୍ୟସ୍ୟ କରଣାନି ବୋତମ୍ ॥

ପୁନଶ୍ଚ

ଯଚ୍ଚିକେତ ସତ୍ୟମିତ୍ତନ୍ନମୋଘଂ

ବା ସେହି ପରମେଶ୍ୱର ଯେଉଁ ପଦାର୍ଥ ସମୂହ ବା ଜଗତକୁ ପୂର୍ଣ୍ଣତଃ ଜାଣନ୍ତି ତାହା (ସତ୍ୟମ୍ ଇତ୍) ସତ୍ୟ ଅଟେ । (ନ ମୋଘମ୍) ବ୍ୟର୍ଥ ବା ଅସତ୍ୟ ନୁହେଁ । [୧୦.୫୫.୬] ଛାନ୍ଦୋଗ୍ୟ ଉପନିଷଦରେ ମଧ୍ୟ କୁହାଯାଇଛି [୬.୪.୪] ସାରା ସୃଷ୍ଟି ଏମୂଳ ସତ୍ତ୍ୱ ଓ ସତ୍ୟ ପରେ ହିଁ ସମସ୍ତ ଆଶ୍ରିତ । ଶଙ୍କରଙ୍କ ଜଗତ ମିଥ୍ୟା ସିଦ୍ଧାନ୍ତ ଯେ ବୈଦିକ ନୁହେଁ ତାହା ସୁସ୍ପଷ୍ଟ । ଗୌଡ଼ପାଦାଚାର୍ଯ୍ୟଙ୍କ ଦ୍ୱାରା ପ୍ରଭାବିତ ହୋଇ ଏହା ସେ କହିଛନ୍ତି ।

ମହର୍ଷି ବାଦରାୟଣ ବ୍ୟାସଙ୍କ ବେଦାନ୍ତ ଦର୍ଶନ ବା ବ୍ରହ୍ମ ସୂତ୍ରକୁ ବ୍ୟାଖ୍ୟା କରିବାକୁ ଯାଇ ଶଙ୍କର ତାଙ୍କର "ଶାରୀରକ ଭାଷ୍ୟ" ପ୍ରସ୍ତୁତ କଲେ, ରାମାନୁଜାଚାର୍ଯ୍ୟ "ଶ୍ରୀ ଭାଷ୍ୟ" ପ୍ରସ୍ତୁତ କଲେ । ବ୍ରହ୍ମସୂତ୍ର ସୂକ୍ଷ୍ମ ସଙ୍କେତ ଧର୍ମୀ ହୋଇ ଥିବା କାରଣରୁ ଏବଂ ସେ ସମୟରେ ଲିଖନ ପ୍ରଣାଳୀରେ ବିରାମ, ଅର୍ଦ୍ଧବିରାମ, ପୂର୍ଣ୍ଣ ବିରାମ ଆଦି ଚିହ୍ନ ଲଗାଇବା ନିୟମ ନ ଥିବାରୁ ପରବର୍ତ୍ତୀ ସମୟରେ ମନଇଚ୍ଛା ମତ ଅନୁକୂଳ ଭାଷ୍ୟ କରାଗଲା । ଯାହା ଫଳରେ ଶଙ୍କରଙ୍କ ମାୟାବାଦ, ରାମାନୁଜଙ୍କ ମାୟା—ମିଥ୍ୟାତ୍ୱବାଦ ବା ବିଶିଷ୍ଟା ଦ୍ୱୈତ, ନିମ୍ବାର୍କଙ୍କ ଦ୍ୱୈତା—ଦ୍ୱୈତ, ମାଧ୍ୱାଚାର୍ଯ୍ୟଙ୍କ ଦ୍ୱୈତ ଏବଂ ବଲ୍ଲଭାଚାର୍ଯ୍ୟଙ୍କ ଶୁଦ୍ଧାଦ୍ୱୈତବାଦ ସୃଷ୍ଟି ହୋଇଗଲା । ପରିଣାମତଃ ବ୍ରହ୍ମଙ୍କୁ ଜାଣିବାର ଇଚ୍ଛା କରି ଆମେ ବ୍ରହ୍ମ ହୋଇଯିବୁ ବୋଲି ଭାବିଲୁ । ଫଳତଃ ଆତ୍ମାର ସ୍ୱତନ୍ତ୍ରତା, ଅମରତା ପୁରୁଷାର୍ଥ ଏବଂ ମୋକ୍ଷର ସିଦ୍ଧାନ୍ତ ଖଣ୍ଡିତ ହୋଇଗଲା । ଶଙ୍କରଙ୍କ ମାୟାବାଦ ସମାଜକୁ ଭ୍ରାନ୍ତ, ନିଷ୍କର୍ମଣ୍ୟ ଓ ପଙ୍ଗୁ କରିଦେଲା । ଲୋକେ ବିଚାର କରିବାକୁ ଲାଗିଲେ ଆଚାର ଭୁଲିଗଲେ । ହିନ୍ଦୁ ସମାଜରେ ଅବତାରଗଣ ଜନ୍ମନେଲେ । ସେମାନେ ନିଜକୁ ଭଗବାନ କହିବାକୁ ଲାଗିଲେ । ଏହାର ପରିଣାମ ସ୍ୱରୂପ ନାସ୍ତିକବାଦ ବ୍ୟାପିଲା ଏବଂ ଲୋକଙ୍କ ବୁଦ୍ଧିରେ ଜଡ଼ତ୍ୱ ଆସିଗଲା ।



# ଉପନିଷଦର କଥାବସ୍ତୁ ଓ ଏହାର ପ୍ରଭାବ

ଗ୍ରୀସ୍‌ରେ ଥରେ ମାତ୍ର ପେରିକ୍ଲିସଙ୍କ ଯୁଗ ଆସିଥିଲା, ଯେଉଁ କ୍ଷେତ୍ରରେ ଭାରତ ଅନେକ ଗୁପ୍ତ ଯୁଗ ଭୋଗ କରି ସାରିଥିଲା । ଏ ପରିପ୍ରେକ୍ଷୀରେ ମୁଁ ଉପନିଷଦ ଯୁଗ କଥା କହୁଛି । ଯେଉଁ ଯୁଗର ସ୍ମରଣ ମାତ୍ରେ ହୃଦୟ ପବିତ୍ର ସ୍ନିଗ୍ଧତାରେ ପୁଲକିତ ହୋଇଉଠେ । ଅଶାନ୍ତମାନବ ସେ ଯୁଗକୁ ଫେରି ଯିବାକୁ ଇଚ୍ଛାକରେ । ସେ ଯୁଗକୁ ସୁବର୍ଣ୍ଣ ଯୁଗ କହିବା ଅପେକ୍ଷା ଶାନ୍ତି ଓ ଆତ୍ମତତ୍ତ୍ୱ ଉପଲବ୍ଧିର ଯୁଗ କହିବା ସମୀଚୀନ ହେବ । କାରଣ ସୁଖଶାନ୍ତିପୂର୍ଣ୍ଣ ଆଶ୍ରମ ବ୍ୟବସ୍ଥା ସମ୍ଭାଳି ମନୀଷୀ, ନିଷ୍ଠାବାନ ବ୍ରହ୍ମଚାରୀ, ସଦାଚାରୀ ଗୃହସ୍ଥ, ତ୍ୟାଗୀ ସନ୍ନ୍ୟାସୀ ଓ ଜ୍ଞାନୀ ବାନପ୍ରସ୍ଥୀ ହୋଇ ପାରିଥିଲେ । ତପସ୍ୱୀମାନଙ୍କ ତେଜରେ ତେଜସ୍ୱୀ ହୋଇ ଉଠିଥିଲା ବର୍ଣ୍ଣାଶ୍ରମ । ସତ୍ୟ, ଧର୍ମ ଓ ଅହିଂସା ବ୍ରତ ପାଳନ କରି ରାଜା ନାମକୁ ମାତ୍ର ଶାସକ ଥିଲେ । କହିବାକୁ ଗଲେ ରାଷ୍ଟ୍ରର ସେବକ ଭାବରେ ସେମାନେ ଥିଲେ ଜଣେ ଜଣେ ଭରତ । ଏଣୁ ବିଶ୍ୱର ଶ୍ରେଷ୍ଠ ମନୀଷୀମାନଙ୍କୁ ଥମାସ ମୂରଙ୍କ "ଉଟୋପିଆ" ଯେତେ ପ୍ରଭାବିତ କରିପାରି ନାହିଁ ତାହାଠାରୁ ଯଥେଷ୍ଟ ପ୍ରଭାବିତ କରିଛି ଉପନିଷଦଗୁଡ଼ିକ ।

ଉପନିଷଦଗୁଡ଼ିକ ସ୍ୱାଧ୍ୟାୟ କରିସାରିବା ପରେ ଜର୍ମାନ ଦାର୍ଶନିକ ସୋପେନହାର୍ ଏହାର ପ୍ରତ୍ୟେକ ପଦର ଗମ୍ଭୀର, ନୂତନ ଓ ଉଚ୍ଚ ବିଚାର ଆବିଷ୍କାର କରନ୍ତି । ଭାରତର ପୁରାତନ ବାୟୁମଣ୍ଡଳ ତାଙ୍କୁ ଘେରିଯାଏ । ନବପ୍ରକାଶର ନୂତନ ବିଚାର ତାଙ୍କ ଚତୁଃପାର୍ଶ୍ୱରେ ଥିବାସତ୍ତ୍ୱେ ସେ ଅନୁଭବ କରନ୍ତି ସମଗ୍ର ସଂସାରର ମୂଳତତ୍ତ୍ୱଗୁଡ଼ିକ ବାଦ ଦେଇ କୌଣସି ଅନ୍ୟ ବିଦ୍ୟାର ଅଭ୍ୟାସ ଏପରି ଉପଯୋଗୀ ଓ ହୃଦୟକୁ ଉଚ୍ଚକୁ ନେଇପାରେ ନାହିଁ, ଯେପରି ଉପନିଷଦ ନେଇପାରେ । ସେ କୁହନ୍ତି—ଏହା ମୋର ଜୀବନକୁ ଓ ମତେ ଶାନ୍ତି ଦେଇଛି, ମୃତ୍ୟୁ ସମୟରେ ମଧ୍ୟ ଶାନ୍ତି ଦେବ ।

ବ୍ୟକ୍ତିଗତରୂପରେ ଆନିବେସାନ୍ତ ଉପନିଷଦକୁ ମାନବ ଚେତନାର ସର୍ବୋଚ୍ଚ ଫଳ ବୋଲି ଗ୍ରହଣ କରନ୍ତି ଏବଂ ଉଚ୍ଛ୍ୱସିତ ଭାଷାରେ ଏହା ଦିବ୍ୟଜ୍ୟୋତିରେ ପ୍ରକାଶିତ ମନୁଷ୍ୟର ସର୍ବୋତ୍କୃଷ୍ଟ ବୁଦ୍ଧିର ପରିଣାମ ବୋଲି କୁହନ୍ତି ।

"ଭାରତ ଆମକୁ କ'ଣ ଶିକ୍ଷା ଦେଇପାରେ", ପୁସ୍ତକରେ ଜର୍ମାନ ଗବେଷକ ଅଧ୍ୟାପକ ମେକସ୍‌ମୁଲର ଲେଖିଛନ୍ତି—ମୃତ୍ୟୁ ଭୟରୁ ବଞ୍ଚିବା, ମୃତ୍ୟୁପାଇଁ ପୂର୍ଣ୍ଣଶକ୍ତିମନ୍ତ ନିଜକୁ ପ୍ରସ୍ତୁତ କରିବା ଏବଂ ସତ୍ୟକୁ ଜାଣିବାକୁ ଇଚ୍ଛୁକ ଜିଜ୍ଞାସୁଙ୍କ ପାଇଁ ଉପନିଷଦ ବ୍ୟତୀତ ଅନ୍ୟ କୌଣସି ଶ୍ରେଷ୍ଠମାର୍ଗ ମୋ ଦୃଷ୍ଟିରେ ପଡ଼ୁନାହିଁ । ଉପନିଷଦ ଜ୍ଞାନ ଦ୍ୱାରା ମୋ ଜୀବନ ଉତ୍କର୍ଷତା ଲାଭ କରିବାର ଅବସର ମିଳିଛି । ମୁଁ ଏହା ପାଖରେ ଋଣୀ ଅଟେ । ଏହି ଉପନିଷଦ ଆତ୍ମିକ ଉନ୍ନତି ପାଇଁ ବିଶ୍ୱର ଧାର୍ମିକ ସାହିତ୍ୟ ମଧ୍ୟରେ ଅତ୍ୟନ୍ତ ସମ୍ମାନପ୍ରଦ ରହିଛି ଓ ସଦା ରହିବ । ଏହି ଜ୍ଞାନ, ମହାନ ପ୍ରଜ୍ଞାର ପରିଣାମ ଅଟେ । ଦିନେ ନା ଦିନେ ଭାରତର ଏହି ଶ୍ରେଷ୍ଠ ବିଦ୍ୟା ସମଗ୍ର ୟୁରୋପରେ ପ୍ରକାଶିତ ହେବ ଏବଂ ସେଠାର ଆମର ଜ୍ଞାନ ଏବଂ ବିଶ୍ୱାସରେ ମହାନ ପରିବର୍ତ୍ତନ ଉପସ୍ଥିତ ହେବ ।

"ଡଗମାଜ୍ ଅଫ୍ ବୁଦ୍ଧିଜମ୍" ଗ୍ରନ୍ଥରେ ମି. ହ୍ୟୁମ ସକ୍ରେଟିସ୍, ଏରିଷ୍ଟୋଟଲ, ପ୍ଲାଟୋ ଆଦି ଦାର୍ଶନିକମାନଙ୍କ ଗ୍ରନ୍ଥ ଧ୍ୟାନପୂର୍ବକ ପଢ଼ି ମତ ଦିଅନ୍ତି ଯେ ଉପନିଷଦଗୁଡ଼ିକ ପରି ଶାନ୍ତିମୟ ଆତ୍ମବିଦ୍ୟା ସେ କେଉଁଠାରେ ଦେଖିବାକୁ ପାଇ ନାହାନ୍ତି । ଜର୍ମାନର ଦର୍ଶନ ଅଧ୍ୟାପକ ପଲ୍ ଡେଉସନ୍ ବାଇବେଲର—'ନିଜ ପରି ତୁମ ପ୍ରତିବେଶୀକୁ ପ୍ରେମକର' ବାକ୍ୟଟି ବାରମ୍ବାର ପଢ଼ି ବାରମ୍ବାର ବୁଝିବାକୁ ଚେଷ୍ଟାକରି ମଧ୍ୟ ବିଫଳ ହୋଇଥିଲେ । କର୍ମମୟ ଜୀବନରେ ଏହାର ପ୍ରୟୋଗ କରିବା ସମ୍ପର୍କରେ ସେ ଅନେକ ଚିନ୍ତା କରିବା ପରେ ହଠାତ୍ ଉପନିଷଦର ଗୋଟିଏ ବାକ୍ୟ ପଢ଼ି ଚମକି ପଡ଼ିଲେ । ଏବଂ ରୋମାଞ୍ଚିତ ଶରୀରରେ ସେ କହିଉଠିଲେ—ଆଜି ହେ ଉପନିଷଦ ! ତୁମ ପ୍ରାସାଦରୁ ମୁଁ ସେ ପଥର ସନ୍ଧାନ ପାଇଛି । "ଯସ୍ତୁ ସର୍ବେଷୁ ଭୂତେଷୁ ଆତ୍ମାନଂ ସର୍ବାଣି ଭୂତାନି ଚାତ୍ମସୁ ପଶ୍ୟତି ସତସ୍ମାନ୍ନ ବିଜୁଗୁପ୍ସତେ ।" ପ୍ରକୃତରେ କେହି କେବେ ଅନ୍ୟକୁ ଭଲପାଏ ନାହିଁ । ଲୋକେ ନିଜକୁ ହିଁ ଭଲ ପାଇଥାନ୍ତି । ଏହି ସୂକ୍ତିଟି ତାଙ୍କ ବହୁ ବର୍ଷର ସନ୍ଦେହ ଦୂର କରିଦେଲା । ଏହି ମନୋଭାବ ହିଁ ମନୁଷ୍ୟ ମନରୁ ଘୃଣା ଦୂରେଇ ଦିଏ ।

ଏହି ଉପନିଷଦ ଦିନେ ଆଉରଙ୍ଗଜେବଙ୍କ ବଡ଼ଭାଇ ଦାରାକୁ ପାଗଳ କରିଥିଲା । ୧୬୫୭ଠାରୁ ୧୬୭୩ ପର୍ଯ୍ୟନ୍ତ ଦୀର୍ଘ ସତର ବର୍ଷ ସଂସ୍କୃତ ଅଧ୍ୟୟନ କରି ଉପନିଷଦଗୁଡ଼ିକୁ ଫାରସୀ ଭାଷାରେ ଅନୁବାଦ କରିବାର ପ୍ରେରଣା ସେ ପାଇଥିଲେ । ଉପନିଷଦ ଅନୁବାଦ କରିସାରି ଭୂମିକାରେ ସେ ସ୍ୱୀକାର କଲେ ଯେ ଆତ୍ମବିଦ୍ୟାର ଅନେକ ଗ୍ରନ୍ଥ ପଢ଼ି ମଧ୍ୟ ପରମାତ୍ମାଙ୍କୁ ଅନ୍ୱେଷଣ କରିବାର ତୃଷ୍ଣା ତାଙ୍କର ମେଣ୍ଟିଲା ନାହିଁ । ହୃଦୟରେ ତାଙ୍କର ଅନେକ ଶଙ୍କା ଓ ସମସ୍ୟା ଉଠୁଥିଲା, ଯା'ର ସମାଧାନ ଐଶ୍ୱରୀୟ ଜ୍ଞାନ ଅତିରିକ୍ତ ଅନ୍ୟ କୌଣସି ପ୍ରକାର

ସମ୍ଭବ ନ ଥିଲା । ସେ କୁରାନ, ତୌରେତ, ବାଇବେଲ, ଜବୁର ଆଦି ପଢ଼ିଲେ ମାତ୍ର ଈଶ୍ୱର ସମ୍ବନ୍ଧୀ ଯେଉଁ ବର୍ଣ୍ଣନା ସେଥିରେ ଦେଖିଲେ ତାହା ତାଙ୍କ ମନର ତୃଷ୍ଣା ମେଣ୍ଟାଇ ପାରିଲା ନାହିଁ । ତା'ପରେ ସେ ହିନ୍ଦୁମାନଙ୍କର ଐଶ୍ୱରିକ ପୁସ୍ତକ ପଢ଼ିଲେ । ତନ୍ମଧ୍ୟରୁ ଉପନିଷଦର ଜ୍ଞାନ ଏ ପ୍ରକାର ଥିଲା ଯେଉଁଥିରେ ଆତ୍ମାର ଶାଶ୍ୱତ ଶାନ୍ତି ତଥା ସତ୍ୟ ଆନନ୍ଦ ପ୍ରାପ୍ତହେଲା । ତାଙ୍କ ମତରେ ହଜରତ ନବୀ ତାଙ୍କ 'ଆୟତ'ରେ ଏହି ପ୍ରାଚୀନ ରହସ୍ୟମୟ ପୁସ୍ତକ ସମ୍ବନ୍ଧରେ ସଙ୍କେତ କରିଛନ୍ତି । କୁହାଯାଏ ଦିନେ ଆଉରଙ୍ଗଜେବଙ୍କ କନ୍ୟା ଜେବୁନ୍ନିସା ନିଜ କକା ଦାରାଙ୍କୁ ଆନନ୍ଦରେ ମତ୍ତଥିବା ଅବସ୍ଥାରେ ଏହାର କାରଣ ପଚାରିଥିଲେ । ଦାରା ତାଙ୍କୁ କହିଲେ ଯେ ସେ ଉପନିଷଦ ପଢ଼ି ସାରି ଏହି ଆନନ୍ଦ ଲାଭ କରିଛନ୍ତି । ଏହା ଶୁଣି ଜେବୁନ୍ନିସା ନିଜ କକାଙ୍କ ପାଖରୁ ଉପନିଷଦ ଶୁଣିଲେ ଓ ଖୁବ୍ ପ୍ରଭାବିତ ହୋ'ଇଥିଲେ ।

ଦାରା ଉପନିଷଦ ଦ୍ୱାରା କି ପ୍ରକାର ପ୍ରଭାବିତ ହୋଇଥିଲେ ତାହା ତାଙ୍କର ଗୋଟିଏ ବାକ୍ୟରୁ ଜଣାପଡ଼େ । ସେ ଲେଖନ୍ତି — କିତାବେ କଦୀମ କି ବେଶକ ବ ସୁବହଃ ଅବ୍ବଲୀନ କିତାବେ ଶୁମାସ୍ତ ବ ସରଚଶମାଏ ତହକୀକ ବ ବହର ତୌହୀଦଃସ୍ତ'' ଅର୍ଥାତ୍ — ଏହି ପୁସ୍ତକ ଅନାଦି ଅଟେ ଏବଂ ଏଥିରେ ସନ୍ଦେହ ନାହିଁ ଯେ ଐଶ୍ୱରିକ ପୁସ୍ତକମାନଙ୍କ ମଧ୍ୟରେ ଏହା ପ୍ରାଚୀନତମ ଅଟେ । ଏହା ପରମ ସତ୍ୟର ସ୍ରୋତ ତଥା ବ୍ରହ୍ମଜ୍ଞାନର ସାଗର ଅଟେ ।

ଦାରାଙ୍କ ଅନୂଦିତ ଉପନିଷଦ ପାଶ୍ଚାତ୍ୟରେ ଏପରି ପ୍ରଭାବ ପକାଇଲା ଯେ ଏହାକୁ ପଢ଼ି ଫରାସୀ ବିଦ୍ୱାନ ଏନ୍କ୍ୱିଟିଲ୍ ଡ୍ୟୁ ପେରୋଁ ସଂସ୍କୃତ ଅଧ୍ୟୟନ କରିବାକୁ ବାଧ୍ୟ ହେଲେ ଏବଂ ଏହାର ଫ୍ରେନ୍ଚ ଅନୁବାଦ କରିଥିଲେ । ୧୮୦୧ ଖ୍ରୀଷ୍ଟାବ୍ଦରେ ତାଙ୍କ ଦ୍ୱାରା ଏହା ଲାଟିନରେ ଅନୁବାଦ ହେବା ଫଳରେ ପରବର୍ତ୍ତୀ ସମୟରେ ଇ. ରୋଅର, ମେକସମୂଲର, ଏଫ୍. ମିଶାଲ୍, ଓ. ବୋହ୍ଟଲିଙ୍କ୍ ତଥା ପଲ ଡୁସନ୍ଙ୍କ ପାଇଁ ପଥ ପ୍ରଶସ୍ତ କରିଦେଲା ।

କ'ଣ ଥିଲା ଏହି ଉପନିଷଦରେ ଯା'ର ପ୍ରଭାବ ବିଶ୍ୱରେ ମହାନ ଦାର୍ଶନିକ-ମାନଙ୍କୁ ଆକୃଷ୍ଟ କରି ପାରିଥିଲା ତାହା ଜାଣିବାକୁ ଆମର ଆଗ୍ରହ ଶତଗୁଣିତ ହୋଇପଡ଼େ । ଅତି ସରଳ ସୁନ୍ଦର ଭାବରେ ଉପନିଷଦ ମନୁଷ୍ୟକୁ ମାନସିକ ଦ୍ୱନ୍ଦ୍ୱରୁ ରକ୍ଷାକରି ଆତ୍ମଜ୍ଞାନ ବା ଆତ୍ମାନୁଭୂତିର ସହଜ ପନ୍ଥା ବତାନ୍ତି । ଗୁରୁଶିଷ୍ୟ ସମ୍ପର୍କର ପବିତ୍ର ଗଙ୍ଗୋତ୍ରୀ ଆମକୁ ଉପନିଷଦର ସାଗର ସମୀପକୁ ନେଇ ଯାଆନ୍ତି । ଆମେ ବିସ୍ମୟଜନକ ଭାବରେ ସଂସାରର ଦୁଃଖ ଯନ୍ତ୍ରଣା ଭୁଲି ଆତ୍ମ ସାକ୍ଷାତକାର କରୁଁ । ବ୍ରହ୍ମର୍ଷି ଆଚାର୍ଯ୍ୟଙ୍କ ସମୀପରେ ଯେପରି ବିନମ୍ରସହକାରେ ଶଙ୍କା ସମାଧାନ କରିଛନ୍ତି

ସେପରି କୌଣସି ଗ୍ରନ୍ଥରେ ଏତେ ହୃଦୟସ୍ପର୍ଶୀ ହୋଇନାହିଁ, ଯେତେ ଉପନିଷଦ-ଗ୍ରନ୍ଥରେ ହୋଇଛି । କେଉଁଠି ପଦ୍ୟାତ୍ମକ ତ କେଉଁଠି ଗଦ୍ୟାତ୍ମକ ଭାବରେ କଠିନରୁ କଠିନ ତତ୍ତ୍ୱକୁ ସରଳ ସୁବୋଧ ଓ ସ୍ୱାଦୃଷ୍ଟ ଭାବରେ ଉପନିଷଦରେ ବ୍ୟକ୍ତ ହୋଇଛି ।

ଗୁରୁଙ୍କ ସମୀପରେ ବସି ଶିଷ୍ୟ ଜ୍ଞାନଲାଭ କରୁଥିବାରୁ ଏହାର ନାମ ଉପନିଷଦ ହୋଇଛି । ଅନ୍ୟ ଅର୍ଥରେ ଏହା ଦୁଃଖରୁ ମୁକ୍ତି ପାଇବା ପାଇଁ ଉଦ୍ଦିଷ୍ଟ ବୋଲି ବୁଝାଯାଉଛି । ଅମରକୋଷରେ ଧାର୍ମିକ ରହସ୍ୟ ଅର୍ଥରେ ଏହା ପ୍ରୟୋଗ ହୋଇଛି ତ ଆଚାର୍ଯ୍ୟ ଶଙ୍କର ତୈତ୍ତିରୀୟ ଉପନିଷଦରେ ମନୁଷ୍ୟ ଗର୍ଭ, ଜନ୍ମ, ଜରା ଆଦି ଦୁଃଖ ନାଶ ସଙ୍ଗେ ସଙ୍ଗେ ବ୍ରହ୍ମସମୀପକୁ ଏହା ମାଧ୍ୟମରେ ଆମକୁ ନେଇଯାନ୍ତି ।

ଉପନିଷଦ ଶତାଧିକ ହେଲେ ମଧ୍ୟ ଏକାଦଶ ଉପନିଷଦ ଆଚାର୍ଯ୍ୟାଚିତ ଓ ବୈଦିକ ପରମ୍ପରାର ଏକ ଅତୁଟ ଶୃଙ୍ଖଳା ରକ୍ଷାକରନ୍ତି । ବିଭିନ୍ନ ଜଟିଳ ପ୍ରସଙ୍ଗ ନେଇ ପ୍ରଶ୍ନୋତ୍ତର ମାଧ୍ୟମରେ ଉପନିଷଦର ତତ୍ତ୍ୱଦର୍ଶୀ ଋଷି ଆମ ହୃଦୟସହ ମସ୍ତିଷ୍କକୁ ମଧ୍ୟ ଅଧିକାର କରି ନଅନ୍ତି । ପାଠକଙ୍କ ସୁବିଧା ଦୃଷ୍ଟିରୁ ଏକାଦଶ ଉପନିଷଦର ଏକ ସଂକ୍ଷିପ୍ତ ବିବୃତି ଏଠି ପ୍ରସ୍ତୁତ କରୁଛୁ ।

ସମଗ୍ର ସଂସାରରୂପୀ ସ୍ୱର୍ଣ୍ଣ ପାତ୍ରର ଚାକଚକ୍ୟରେ ମନୁଷ୍ୟ ଆତ୍ମହରା ହୋଇ ଆତ୍ମାକୁ ହରାଇ ବସିଛି । ଏ ଚାକଚକ୍ୟ ଜୀବନରୁ ନ ହଟାଇବା ପର୍ଯ୍ୟନ୍ତ ସେ ବ୍ରହ୍ମଙ୍କ ସାନ୍ନିଧ୍ୟଲାଭ କରିପାରିବ ନାହିଁ । ସଂସାରଟା ଏକ ବିଶାଳ ଜାଲ ଯେଉଁଠି ଆମେ ସବୁ ମକ୍ଷିକାତୁଲ୍ୟ ଅଜ୍ଞାତରେ ପଡ଼ି ନିଜ ସତ୍ତା ହରାଇ ବସୁଛୁଁ । ଏଣୁ ଈଶୋପନିଷଦରେ ପ୍ରାର୍ଥନା କରାଯାଇଛି—"ହେ ଜ୍ୟୋତିର୍ମୟ ବ୍ରହ୍ମ ! ତୁମର ଯେଉଁ ତେଜୋମୟ ଓ କଲ୍ୟାଣମୟ ରୂପ ଅଛି ତାହା ମୁଁ ଦେଖୁଛି ଓ ଅନୁଭବ କରୁଛି କାରଣ ମୁଁ ନିଜେ ଜ୍ୟୋତିମୟ ପୁରୁଷ ଅଟେ ।" ବ୍ରହ୍ମସହ ଏକାତ୍ମତା ମନୁଷ୍ୟର ଦୁଃଖ ନିବୃତ୍ତି କରିପାରେ ତାହାହିଁ ଈଶୋପନିଷଦର ମହାନ ଉପଦେଶ । ଏହା ଯଜୁର୍ବେଦର କାଣ୍ୱଶାଖାର ଚାଳିଶ ଅଧ୍ୟାୟରୁ ଆନିତ ।

ଯେଉଁ ଆତ୍ମା ଈଶୋପନିଷଦରେ 'ପୂଷନ' ବା ପୁଷ୍ଟି ବା ପୋଷଣ କରିବା ଅର୍ଥରେ ବ୍ୟବହୃତ ହୋଇଛି ସେହି ଆତ୍ମା କେନୋପନିଷଦରେ ପ୍ରାଣ ନାମରେ ଅଭିହିତ ହୁଅନ୍ତି । ପ୍ରାଣ ଶରୀରର ସର୍ବସ୍ୱ । ଆତ୍ମଜ୍ଞାନ, ଆତ୍ମାନୁଭୂତ ଓ ଆତ୍ମଦର୍ଶନ ଦ୍ୱାରା ମନୁଷ୍ୟ ଜୀବନ ସୁଖଶାନ୍ତିମୟ ହୋଇପାରିବ ଏଣୁ ଉପଦେଶ ଦିଆଯାଇଛି – ହେ ମନୁଷ୍ୟ, ଯଦି ତୁ ନିଜର ଆତ୍ମାକୁ ଓ ସ୍ୱଆତ୍ମା ଦ୍ୱାରା ପରମାତ୍ମାଙ୍କୁ

ଏଠି ଏ ଜନ୍ମରେ ଜାଣିନେଲ ତେବେ ତୁ ସତ୍ୟ ଓ ସଫଳତାକୁ ପ୍ରାପ୍ତ କରିନେବୁ । ଏଣୁ ଗର୍ବ ଓ ଅଭିମାନ ତ୍ୟାଗ କରି ଉନ୍ନତ ପଥର ଯାତ୍ରୀ ହୁଅ । ଏ କଥାକୁ ସ୍ପଷ୍ଟ କରିବାକୁ ଯାଇ ଋଷି ଆମ ଆଗରେ ଏକ ସୁନ୍ଦର ଆଖ୍ୟାୟିକା ପ୍ରସ୍ତୁତ କରିଛନ୍ତି । ଦେବଗଣଙ୍କ ଅସୁରଶକ୍ତି ଉପରେ ବିଜୟ ହେଲା । ସେମାନେ ଗର୍ବୀ ହୋଇ ଉଠିଲେ । ତାଙ୍କ ଗର୍ବ ଗଞ୍ଜନ ପାଇଁ ବ୍ରହ୍ମା ଏକ ଅଦ୍ଭୁତ ରୂପନେଇ ଉପସ୍ଥିତ ହେଲେ । ଦେବଗଣଙ୍କ ପରିଚୟ ପାଇବାକୁ ଅଗ୍ନିଙ୍କୁ ପଠାଇଲେ । ଅଗ୍ନିଙ୍କ ପାଖକୁ ଯାଇ ସ୍ୱଗୁଣ କୀର୍ତ୍ତନ କରିବା ସଙ୍ଗେ ସଙ୍ଗେ କହିଲେ ଯେ ସେ "ଜାତବେଦସ" ବା ଧନଦାତା ଓ ଇଚ୍ଛା କଲେ ସମଗ୍ର ବିଶ୍ୱ ଜାଳିଦେଇ ପାରିବେ । ବ୍ରହ୍ମା କହିଲେ "ତସ୍ମୈ ତୃଣଂ ନିଦଧୌ" ପ୍ରଥମେ ଏ ଶୁଷ୍କ ତୃଣକୁ ଭସ୍ମ କର । ଅଗ୍ନି ସେଥିରେ ଅସମର୍ଥ ହେଲେ । ତା'ପରେ ଦେବଗଣ ବାୟୁଙ୍କୁ ପଠାଇଲେ । ସେ ସଗର୍ବେ କହିଲେ ଯେ ସେ ସମସ୍ତ ପଦାର୍ଥ ଉଡ଼ାଇ ଦେବାରେ ଧୂରନ୍ଧର । ବ୍ରହ୍ମ କହିଲେ — "ଏତଦାଦତ୍ସ୍ୱ" ଏ ତୃଣକୁ ଉଡ଼ାଅ । ସେ ବ୍ୟର୍ଥ ହେଲେ । ତା'ପରେ ଇନ୍ଦ୍ର ଆସିଲେ ମାତ୍ର ବ୍ରହ୍ମ ସେତେବେଳେ ଅନ୍ତର୍ଦ୍ଧାନ ହୋଇ ସାରିଥିଲେ । ଇନ୍ଦ୍ର ଧ୍ୟାନରେ ସବୁ କଥା ଜାଣି ଖୁବ୍ ଲଜ୍ଜିତ ହେଲେ ଓ ଦେବତାମାନଙ୍କର ଗର୍ବ ଖର୍ବି ଗଲା । ଏହା ଅଥର୍ବବେଦୀୟ ଉପନିଷଦ ଅଟେ, ଯେଉଁଥିରେ ଶବ୍ଦର ରଚନା ପ୍ରକରଣରେ "କେନ" ଶବ୍ଦ ଶହେରୁ ଊର୍ଦ୍ଧ୍ୱ ବାର ପ୍ରୟୋଗ ହୋଇଛି ।

ତୃତୀୟ ଉପନିଷଦଭାବରେ କଠୋପନିଷଦ ଯଜୁର୍ବେଦୀୟ ବିଶ୍ୱର ପ୍ରଚାର କରନ୍ତି । ନଚିକେତା ଓ ଯମଙ୍କ ମଧ୍ୟରେ ଯେଉଁ ଶିକ୍ଷାପ୍ରଦ ଜ୍ଞାନତର୍କ ବା ବାର୍ତ୍ତାଳାପ ହୋଇଛି ସେହି ବିଶ୍ୱ ଶଙ୍କାମୟର ପରିଣାମ ହିଁ କଠୋପନିଷଦର ସାରମର୍ମ । ଶରୀର ରଥରେ ଆତ୍ମାସ୍ୱାମୀ ଓ ବୁଦ୍ଧି ସାରଥୀ । ମନର ଲଗାମ ନେଇ ଇନ୍ଦ୍ରିୟରୂପକ ଘୋଡ଼ା'ପରି ଦୌଡ଼ୁଥିବାର ଯେଉଁ ରୂପକ, ତାହା ମନୋଜ୍ଞ ଓ ସରଳଭାବରେ ମନୁଷ୍ୟକୁ ଶ୍ରେୟମାର୍ଗରେ ପରିଚାଳିତ କରେ । ସମ୍ପୂର୍ଣ୍ଣ ଜଗତକୁ ଅଶ୍ୱତ୍ଥ ବୃକ୍ଷସହ ତୁଳନାକରି ଋଷି କୁହନ୍ତି ଏ ବୃକ୍ଷର ମୂଳ ଊର୍ଦ୍ଧ୍ୱରେ ଓ ଶାଖା ନିମ୍ନରେ ବିଦ୍ୟମାନ । ଏହାକୁ ମନୁଷ୍ୟ ଶରୀରସହ ତୁଳନା କରି ଶରୀରରେ ଜୀବ ଓ ବ୍ରହ୍ମାଣ୍ଡରେ ବ୍ରହ୍ମତ୍ୱ ଉପଲବ୍ଧି କରିବାକୁ ଋଷି ଉପଦେଶ ଦିଅନ୍ତି ।

ଅଥର୍ବବେଦୀୟ ବ୍ରାହ୍ମଣ ଭାଗର ଅନ୍ତର୍ଗତ ପ୍ରଶ୍ନୋପନିଷଦରେ ଋଷି ପିପ୍ପଳାଦ ଶିଷ୍ୟଗଣଙ୍କ ବିଭିନ୍ନ ଶଙ୍କା ସମାଧାନ କରିଛନ୍ତି । ଶିଷ୍ୟ ପଚାରିଛନ୍ତି କିଏ ଶୁଏ ? କିଏ ଜାଗେ ? କିଏ ସ୍ୱପ୍ନ ଦେଖେ ଓ କିଏ ଏ ସବୁର ଆଧାର ? ଋଷି ଉତ୍ତର ଦେଉଛନ୍ତି — ଇନ୍ଦ୍ରିୟବୃତ୍ତିକୁ ମିଶାଇଦେବା ମନ ଶୁଏ, ପ୍ରାଣରୂପୀ ଅଗ୍ନି

ସବଦା ଜାଗେ, ମନ ସ୍ୱପ୍ନ ଦେଖେ, ଜୀବାତ୍ମା ସୁନ୍ଦରେ ଗେ । ଏ ସବୁ ଆତ୍ମାରେ ପ୍ରତିଷ୍ଠିତ ଓ ଆତ୍ମା ବ୍ରହ୍ମଦ୍ୱାରା ପ୍ରତିଷ୍ଠିତ । ଏହି ଆତ୍ମତତ୍ତ୍ୱ ନେଇ ପ୍ରଶ୍ନୋପନିଷଦର ଆରମ୍ଭ ଓ ଶେଷ ।

ମୁଣ୍ଡକ ଋଷିଙ୍କ ଦ୍ୱାରା ପ୍ରଣୀତ ମୁଣ୍ଡକଉପନିଷଦ ଅଥର୍ବବେଦୀୟ ବ୍ରହ୍ମବେଦ ଅଟେ । ଏହାର ତୃତୀୟ ମଣ୍ଡଳ ପ୍ରଥମ ଖଣ୍ଡରେ "ସତ୍ୟମେବ ଜୟତେ"ର ମହତ୍ତ୍ୱ ପ୍ରତିପାଦିତ ହୋଇଛି । ଋଷି ଅଙ୍ଗିର ଶୌନକଙ୍କର ପ୍ରଶ୍ନର ଉତ୍ତର ଦେବାକୁ ଯାଇ କହୁଛନ୍ତି ପରା ଓ ଅପରାଜ୍ଞାନଦ୍ୱାରା ସମସ୍ତ ବିଷୟ ଜାଣିହେବ । ଅପରାବିଦ୍ୟା ମଧ୍ୟରେ ବେଦ, ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ ଛନ୍ଦ ଓ ଜ୍ୟୋତିଷଶାସ୍ତ୍ର ଅନ୍ତର୍ଗତ ଏବଂ ପରାବିଦ୍ୟାଦ୍ୱାରା ବ୍ରହ୍ମଙ୍କୁ ଜାଣିବା ଦ୍ୱାରା ମଣିଷ ସତ୍ୟର ସାକ୍ଷାତକାର କରିପାରିବ । ସାମାଜିକ କର୍ମକାଣ୍ଡରୂପୀ ଭୁଟ୍ଟା ବିଦ୍ୟାର ନାଗପାଶରୁ ମୁକ୍ତିପାଇଁ ଋଷି ପରାବିଦ୍ୟାର ପ୍ରତିଷ୍ଠା କରନ୍ତି ।

ଏତରେୟ ଉପନିଷଦ ଋଗ୍‌ବେଦୀୟ ଅଟେ । ଏଥିରେ ସୃଷ୍ଟିର ଆଳଙ୍କାରିକ ବର୍ଣ୍ଣନା ଦେଖି ଆମେ ବିସ୍ମିତ ହୋଇ ଯାଉ । ଆତ୍ମା ପ୍ରଥମରେ ଏକାକୀ ଥିଲା । ତା'ପରେ ଏହା "ଈକ୍ଷଣ" ବା ସଂକଳ୍ପ ଶକ୍ତିଦ୍ୱାରା ଲୋକଲୋକ ସୃଷ୍ଟି କଲା । ଏହି ବିରାଟ ପୁରୁଷ ଅନୁରୂପରେ ପୁରୁଷ ସୃଷ୍ଟି ହେଲା । ଆତ୍ମା ସଂକଳ୍ପ କଲେ, ଈଶ୍ୱର ଇଚ୍ଛା କଲେ, ଓ ସବୁ ହୋଇଗଲା । ଏହି ବିରାଟ ପୁରୁଷ ଅନୁରୂପରେ ବାଇବେଲର ପୁରାତନ ନିୟମରେ ଆଦମକୁ ପରମେଶ୍ୱର ସୃଷ୍ଟି କରିବା କଥା ଓ ପରମେଶ୍ୱର 'ଆଲୋକ ହୁଅ, 'ଆଲୋକ ହୋଇଗଲା'ର ସଂକଳ୍ପ ଶକ୍ତି, ଏହି ଉପନିଷଦରୁ ନିଆ ହୋଇଛି ବୋଲି କେତେକ ଅନୁମାନ ଲଗାନ୍ତି ।

ତୈତ୍ତିରୀୟ ଉପନିଷଦ କୃଷ୍ଣ ଯଜୁର୍ବେଦୀୟ ଅଟେ । ଏଥିରେ ଋଷି ଉପଦେଶ ଦେଇଛନ୍ତି—

"ସତ୍ୟଂ ବଦ", "ଧର୍ମଂଚର", "ସ୍ୱାଧ୍ୟାୟାନ୍ମା ପ୍ରମଦଃ" । ସତ୍ୟ କୁହ, ଧର୍ମରେ ଚଳ, ସ୍ୱାଧ୍ୟାୟରୁ ନିବୃତ୍ତ ହୁଅ ନାହିଁ, ତେବେ ସୁଖୀ ହେବ । ପୁନଶ୍ଚ ଆସ୍ଥିତାନ ଋଷି ଉପଦେଶ ଦିଅନ୍ତି—"ମାତୃଦେବ ଭବ, ପିତୃଦେବ ଭବ । ଆଚାର୍ଯ୍ୟଦେବ ଭବ । ଅତିଥିଦେବ ଭବ । ଯାନ୍ୟନ ବଦ୍ୟାନିକର୍ମାଣି । ତାନି ସେବିତ ବ୍ୟାନି । ନୋ ଇତରାଣି ।" ମା, ବାପା, ଆଚାର୍ଯ୍ୟ ଓ ଅତିଥିଙ୍କ ପୂଜା କରିବା ସଙ୍ଗେ ସଙ୍ଗେ ଅନିନ୍ଦିତ କର୍ମର ଆଚରଣ କର । ଶ୍ରେଷ୍ଠ ଆଚରଣ ଅନୁସରଣ କର । ଋଷି ସ୍ୱାଧ୍ୟାୟ ଓ ପ୍ରବଚନର ମହତ୍ତ୍ୱ ଦେଇ ନିଜେ ସ୍ୱାଧ୍ୟାୟରତ ରହି ଅନ୍ୟକୁ ଉପଦେଶ ଦେବାକୁ ତପ ବୋଲି କହିଛନ୍ତି । "ବ୍ରହ୍ମାନନ୍ଦ ବଲ୍ଲୀ"ରେ ସେ ଅନ୍ନମୟ, ପ୍ରାଣ ମୟ, ମନୋମୟ, ବିଜ୍ଞାନମୟ ଓ ଆନନ୍ଦମୟ ଏହି ପାଞ୍ଚକୋଷକୁ ବ୍ୟାଖ୍ୟା କରି ଏହାର ବିଶ୍ୱସହିତ ସମ୍ବନ୍ଧ ବିଷୟରେ ଆଲୋଚନା

କରିଛନ୍ତି । ଅନ୍ନ ଉପରେ ଗୁରୁତ୍ୱ ଦେଇ ଋଷି କୃଷି କର୍ମଦ୍ୱାରା ମନୁଷ୍ୟର ସମସ୍ତ ଆର୍ଥିକ ଓ ମାନସିକ ସ୍ଥିତିର ସନ୍ତୁଳନ ହୋଇ ପାରିବାର ଆତ୍ମବିଶ୍ୱାସ ଜଗାଇଛନ୍ତି ।

ଛାନ୍ଦୋଗ୍ୟ ଉପନିଷଦରେ ବ୍ରହ୍ମବିଦ୍ୟାକୁ ଗୁପ୍ତ ରଖା ନ ଯାଇ ଏହାର ସାର୍ବଜନୀନ ସ୍ୱରୂପ ଦିଆଯାଇଛି । ଜନ୍ମଗତ ବୈଷମ୍ୟକୁ ଭୁଲି ଋଷି ବେଶ୍ୟା ପୁତ୍ରକୁ "ସତ୍ୟକାମ" ନାମକରଣ କରି ବ୍ରହ୍ମବିଦ୍ୟାର ପ୍ରସାର କରିଛନ୍ତି । ତତ୍କାଳୀନ ସାମାଜିକ ପରିବେଶ ସତ୍ୟର ଉନ୍ମୋଚନ ଏହି ଉପନିଷଦକୁ ଅଧିକ ଲୋକପ୍ରିୟ କରିଛି । କୈକେୟ ଦେଶର ରାଜା ଅଶ୍ୱପତିଙ୍କ ପାଖକୁ ବ୍ରହ୍ମବିଦ୍ୟା ଶିକ୍ଷା କରିବାକୁ ଋଷି ଯାଆନ୍ତି । ମାତ୍ର ରାଜାଙ୍କ ଦୂଷିତ ଅନ୍ନଭୋଜନ କରିବାକୁ ସେ ଅସ୍ୱୀକାର କରିଦିଅନ୍ତି । ଏଣୁ ରାଜା ତାଙ୍କୁ କହନ୍ତି :—

"ନମେ ସ୍ତେନୋ ଜନପଦେ,
ନ କଦର୍ଯ୍ୟୋ ନ ମଦ୍ୟପଃ
ନା ନା ହିତାଗ୍ନିର୍ନାବିଦ୍ୱାନ
ନ ସ୍ୱୈରିଣୀ କୁତଃ ?"

ମୋ ରାଜ୍ୟରେ କୌଣସି ଚୋର ନାହିଁ ନା ମଦ୍ୟପ, ନା କୌଣସି ବିନାଅଗ୍ନିହୋତ୍ର କରୁଥିବା ବ୍ୟକ୍ତି କିମ୍ବା ମୂର୍ଖ ବା ବ୍ୟଭିଚାରୀ ନାହାନ୍ତି । ବ୍ୟଭିଚାରିଣୀ କଥା ତ ଉଠୁନାହିଁ । ସେପରି ଆଉ ଏକ ଚିତ୍ର ଖୁବ୍ ମନୋଜ୍ଞ ହୋଇଛି । ଉଷସ୍ତିଙ୍କର ଅକାଳ ପଡିଥିବାରୁ ଦମ୍ପତି ନ ସ୍ୱଦେଶ ଛାଡ଼ି ଅନ୍ୟତ୍ର ଚାଲିଲେ । ଭୀଷଣ ଭୋକ, ଏ ସମୟରେ ଜଣେ ଅସ୍ପୃଶ୍ୟ କଚୁ ଖାଉଥିବାର ଦେଖି ତା ପାଖରୁ ଅନ୍ନ ଭିକ୍ଷାକଲେ । ଉଚ୍ଛିଷ୍ଟ ସେ କିପରି ଖାଇବାକୁ ଦେବ ? ମାତ୍ର ଋଷି ଖାଇବାକୁ ପ୍ରସ୍ତୁତ । ସେ ଉଚ୍ଛିଷ୍ଟ ଭୋଜନ କଲେ ମାତ୍ର ଖାଇସାରି ଜଳ ସ୍ପର୍ଶକଲେ ନାହିଁ । ଭୋକ ମେଣ୍ଟାଇବା ପାଇଁ ସେ ଯେତିକି ଖାଇଲେ ତା'ଠୁ ଟିକେ ଅଧିକ ଗ୍ରହଣ କଲେ ସେ ହେବ ଉଚ୍ଛିଷ୍ଟ । କି ମହାନ ସତ୍ୟାଚରଣ । ଯେତିକି ଦରକାର ସେଥିରୁ ଟିକେ ଅଧିକ ରଖିବା ପାପ ବା ଉଚ୍ଛିଷ୍ଟ ।

ବୃହଦାରଣ୍ୟକ ଉପନିଷଦ ସବୁଠାରୁ ବୃହତ ଏବଂ ଯଜୁର୍ବେଦୀୟ ଗ୍ରନ୍ଥ ଅଟେ । ଅରଣ୍ୟ ମଧ୍ୟରେ ଗୁରୁଶିଷ୍ୟ ଓ ତପସ୍ୱୀମାନଙ୍କ ଦ୍ୱାରା ଏହି ଗ୍ରନ୍ଥଟି ଲିଖିତ । ଋଷି ଯାଜ୍ଞବଲ୍କ୍ୟ ଗୃହସ୍ଥାଶ୍ରମରୁ ବିଦାୟ ନେବା ପୂର୍ବରୁ ପଚାରୁଛନ୍ତି । ମୈତ୍ରେୟୀ କହୁଛନ୍ତି :—"ଯେ ନାହଂ ନାମୃତା ସ୍ୟାଂ କିମହଂ ତେନ କୁର୍ଯ୍ୟାମ ।" ଯେଉଁଥିରେ ମୁଁ ଅମର ହୋଇ ପାରିବି ନାହିଁ ତାକୁ ନେଇ କ'ଣ କରିବି ?" ଏଠି ବାହ୍ୟବସ୍ତୁ ସହ ପ୍ରେମ ନାହିଁ ଅଛି ଏକ ଅନୁତ୍ତମ ଅସୀମ ଚିଦାନନ୍ଦ ଆତ୍ମାପ୍ରତି ଆତ୍ମସମର୍ପଣ । ପ୍ରଶ୍ନ ଉତ୍ତର ମାଧ୍ୟମରେ ଏଥିରେ ଜ୍ଞାନଭଣ୍ଡାର ଖୋଲି ଦିଆଯାଇଛି ।

ଏହା ପରେ ପରେ ଆମେ ଏକାଦଶ ଉପନିଷଦ "ଶ୍ୱେତାଶ୍ୱତର"ର ଛଅଟି ଅଧ୍ୟାୟ ମାଧ୍ୟମରେ କ୍ଷର, ଅକ୍ଷର, ବୀଜବ୍ରହ୍ମ, ପ୍ରାଣାୟାମ, ଯୋଗାଭ୍ୟାସ ଓ ଭଗବତ ଦର୍ଶନ ଆଦି ବିଷୟକୁ ଆସୁଁ । ଏଥିରେ ବ୍ରହ୍ମ ଦ୍ରଷ୍ଟା ଓ ଜୀବ ଭୋକ୍ତା ଭାବରେ ବର୍ଣ୍ଣିତ ହୋଇଛି । ଆତ୍ମତତ୍ତ୍ୱର ବିଭିନ୍ନ ଦିଗ ଦର୍ଶାଇବା ପରେ ଶେଷରେ ଜୀବ ବ୍ରହ୍ମଠାରୁ ଭିନ୍ନ ବୋଲି ପ୍ରତିପାଦିତ କରାଯାଇଛି । ଦର୍ଶନଶାସ୍ତ୍ରର ଜଟିଳତମ ପ୍ରସଙ୍ଗକୁ ସରଳତମ ଭାବରେ ଏହି ଉପନିଷଦରେ ବୁଝାଇବାରେ ଋଷି ସଫଳ ହୋଇଛନ୍ତି । ଏହା କୃଷ୍ଣ ଯଜୁର୍ବେଦାନ୍ତର୍ଗତ ଅଟେ ।

ଉପରୋକ୍ତ ଏକାଦଶ ଉପନିଷଦକୁ ଗ୍ରହଣ କଲେ ଆହୁରି ଅନେକ ଉପନିଷଦ ଅଛି ଓ ଲେଖା ହେଉଛି ଯାହା ବୈଦିକ ପରମ୍ପରା ବହିର୍ଭୂତ ହୋଇଥିବାରୁ ଗ୍ରହଣୀୟ ହୋଇପାରୁ ନାହିଁ । ଉପନିଷଦ 'ଗୀତା' ପରି କୌଣସି ସ୍ୱତନ୍ତ୍ର ପୁସ୍ତକ ନୁହେଁ । ଏହା ବେଦମନ୍ତ୍ରର ସରଳତମ ବ୍ୟାଖ୍ୟା ଯେପରି ଗୀତା ମହାଭାରତର ଏକ ଅଂଶ ବିଶେଷ । ମନୁଷ୍ୟ ଜୀବନର ଜଟିଳରୁ ଜଟିଳ ପ୍ରସଙ୍ଗକୁ କି ପ୍ରକାର ସରଳତମ ଉପାୟରେ ସମାଧାନ କରାଯାଇ ପାରିବ ତାହା ହିଁ ଉପନିଷଦଗୁଡ଼ିକର ଅଭିମୁଖ୍ୟ । ଏହି ବର୍ତ୍ତମାନ ଜଡ଼ବାଦୀ ଜଟିଳ ଦୁନିଆ ପାଇଁ ଅଧ୍ୟାତ୍ମବାଦୀ ଉପନିଷଦ ଶାସ୍ତ୍ରର ସୁସମାଧାନ କହିଲେ ଠିକ୍ ହେବ ।



# ବାଲ୍ମୀକି କ'ଣ ଦସ୍ୟୁ ଥିଲେ ?

ଏହା ଲୋକୋକ୍ତି ସ୍ତରରେ ବହୁପରିମାଣରେ ପ୍ରଚଳିତ ହୋଇଛି ଯେ ଆଦିକବି ବାଲ୍ମୀକି ବ୍ରାହ୍ମଣ କୁଳରେ ଜନ୍ମଲାଭ କରିଥିଲେ ଏବଂ ବ୍ରାହ୍ମଣ ସଂସ୍କାରରୁ ପତିତ ହୋଇ ସେ ଦସ୍ୟୁ ରତ୍ନାକର ନାମରେ କୁଖ୍ୟାତ ହେଲେ । ଦସ୍ୟୁ ବୃତ୍ତି କରି କରୁଁ ଥରେ ସେ ଦେବର୍ଷି ନାରଦଙ୍କୁ ଭେଟିଲେ । ତାଙ୍କ ସମ୍ପଦ ହରଣ କରିବାକୁ ଉଦ୍ୟତ ହୁଅନ୍ତେ, ନାରଦ ତାଙ୍କୁ ପ୍ରଶ୍ନକଲେ — ଯେଉଁ କୁଟୁମ୍ବ ପାଇଁ ତୁମେ ପାପକାର୍ଯ୍ୟ କରୁଛ ତାଙ୍କୁ ପଚାରି ଆସ, ପ୍ରକୃତରେ ସେମାନେ କ'ଣ ତୁମ ପାପରେ ଭାଗୀହେବେ ? ଦସ୍ୟୁ ରତ୍ନାକର ପ୍ରଶ୍ନଟି ନେଇ ନିଜ ଗୃହ କୁଟୁମ୍ବଙ୍କ ପାଖକୁ ଚାଲିଗଲା । ନାରଦ ଇତ୍ୟବସରରେ କୁଆଡ଼େ ଚାଲିଯାଇ ପାରନ୍ତି, ଏଣୁ ତାଙ୍କୁ ଗୋଟିଏ ବୃକ୍ଷରେ ବାନ୍ଧି ପକାଇଲା । ଆତ୍ମୀୟ ସ୍ୱଜନଙ୍କ ପାଖରୁ ସେ ଯେଉଁ ଉତ୍ତର ପାଇଲା, ତାହା ଅତ୍ୟନ୍ତ ନୈରାଶ୍ୟଜନକ ଥିଲା । ସେମାନେ ଧନରେ ଭାଗୀ ମାତ୍ର ପାପରେ ଭାଗୀ ନୁହଁନ୍ତି ବୋଲି ତାଙ୍କୁ ମନାକରି ଦେଇଥିଲେ । ସେହି କଥା ହିଁ ତାଙ୍କ ମନରେ ବୈରାଗ୍ୟ ସୃଷ୍ଟି କଲା । ସେ ନାରଦଙ୍କ ପାଖକୁ ଫେରିଆସି ତାଙ୍କ ଶିଷ୍ୟତ୍ୱ ଗ୍ରହଣ କଲେ ଓ ତାଙ୍କ କୃତକର୍ମ ପାଇଁ ପଶ୍ଚାତ୍ତାପ ମଧ୍ୟ କଲେ ।

ନାରଦଙ୍କ ଉପଦେଶ ଅନୁସାରେ ସେ ନିରନ୍ତର ରାମନାମ ଜପ କରିବାକୁ ବସିଲେ । ମାତ୍ର ଅତ୍ୟନ୍ତ ପାପ ହେତୁ ଭଗବାନ ରାମଙ୍କ ନାମ ଉଚ୍ଚାରଣ କରିବାରେ ସେ ଅସମର୍ଥ ଥିଲେ । ତେଣୁ ମରା ମରା ଜପକରିବାରେ ସେ ବସିଗଲେ । ଅନେକ ବର୍ଷ ବିତିଗଲା । ତାଙ୍କ ଦେହରେ ଉଇ ଚରିଗଲା । ବାଲ୍ମୀକ ଭିତରେ ହିଁ ସେ ତପସ୍ୟା କରୁଥିବାରୁ ସେ ବାଲ୍ମୀକି ନାମରେ ଜଗତ ବିଖ୍ୟାତ ହେଲେ । ସ୍କନ୍ଦପୁରାଣ ଓ ଆଧ୍ୟାତ୍ମ ରାମାୟଣର ଏହି କିମ୍ବଦନ୍ତୀଟି ଏତେ ଲୋକପ୍ରିୟ ଯେ ସମସ୍ତେ ବାଲ୍ମୀକିଙ୍କ ସମ୍ପର୍କରେ ଏହି କଥା ହିଁ କହିଥାନ୍ତି ।

ଏହା କହିବା ଦ୍ୱାରା ସେମାନେ ସମାଜର ନିମ୍ନଶ୍ରେଣୀର ପାପଗ୍ରସ୍ତ ଲୋକଙ୍କୁ ଏକ ଆଶା ଓ ଆଶ୍ୱାସନାର ବାଣୀ ଶୁଣାନ୍ତି ଯେ ମଣିଷଗତ ଜୀବନର ଦୁଷ୍କୃତି ପାଇଁ ଅନୁତାପ କରି ବର୍ତ୍ତମାନକୁ ସଜାଡ଼ି ପାରିଲେ ବାଲ୍ମୀକିଙ୍କ ପରି ମହର୍ଷି ପଦବାଚ୍ୟ ହୋଇପାରିବ । ଏହି ଶିକ୍ଷାଟି ଦେବାକୁ ଯାଇ ସେମାନେ ମହର୍ଷି ବାଲ୍ମୀକିଙ୍କୁ ଦସ୍ୟୁଭାବରେ ଚିତ୍ରଣ କରିବା ମଧ୍ୟରେ ସମାଜର ବୃହତ୍ତମ ସ୍ୱାର୍ଥ ନିହିତ ଥାଇପାରେ,

ମାତ୍ର ଏଥିରେ ଐତିହାସିକ ସତ୍ୟ ନାହିଁ ? ଆମେ ଏ ପ୍ରବଚନକାରଙ୍କ କଥା ବିଶ୍ୱାସ କରିବୁ ନା ସ୍ୱୟଂ ବାଲ୍ମୀକିଙ୍କ କଥା ବିଶ୍ୱାସ କରିବୁ ? କେବଳ ବାଲ୍ମୀକି ରାମାୟଣର ଉତ୍ତରକାଣ୍ଡ [ ୯୬. ୧୮. ୧୦ ]ରେ ଶ୍ରୀରାମଚନ୍ଦ୍ରଙ୍କ ଦ୍ୱାରା ପରିତ୍ୟକ୍ତା ସୀତାଙ୍କ ନିର୍ଦ୍ଦୋଷତା ଉପରେ କହିବାକୁ ଯାଇ ସେ ନିଜର ପରିଚୟ ଦିଅନ୍ତି —

"ପ୍ରଚେତସୋଽହଂ ଦଶମଃ ପୁତ୍ରୋ ରାଘବନନ୍ଦନ ।
ନ ସ୍ମରାମ୍ୟନୃତଂ ବାକ୍ୟମିମେ ତୁ ତବ ପୁତ୍ରକୌ ॥
ବହୁବର୍ଷ ସହସ୍ରାଣି ତପଶ୍ଚର୍ଯ୍ୟା ମୟାକୃତା ।
ନୋ ପାଶ୍ନୀୟାଂ ଫଲଂ ତସ୍ୟା ଦୁଷ୍ଟେୟଂ ମୈଥିଲୀ ॥
ମନସା କର୍ମଣା ବାଚା ଭୂତପୂର୍ବଂ ନ କିଲ୍ବିଷମ୍ ।
ତସ୍ୟାହଂ ଫଲମଶ୍ନାମି ଅପାପା ମୈଥିଲୀ ଯଦି ॥

ଅର୍ଥାତ୍ — ହେ ରଘୁନନ୍ଦନ ! ମୁଁ ପ୍ରଚେତସ ମୁନିଙ୍କ ଦଶମ ପୁତ୍ର । ମୁଁ କେବେ ଅନୃତ (ମିଥ୍ୟା) ଭାଷଣ କରିଛି ତାହା ମୋର ମନେ ପଡ଼ୁନାହିଁ । ଏ [ଲବ କୁଶ] ତୁମର ପୁତ୍ର । ଏ ମୈଥିଲୀ [ସୀତା] ଯଦି ଦୋଷଯୁକ୍ତା ହୋଇଥାନ୍ତି ତା' ହେଲେ ଅନେକ ବର୍ଷ ପର୍ଯ୍ୟନ୍ତ ମୁଁ ଯେଉଁ ତପ କରିଛି, ତା'ର ଫଳ ମତେ ପ୍ରାପ୍ତ ନ ହେଉ । ମୈଥିଲୀ ଯଦି ପାପ ରହିତା, ତା' ହେଲେ ଶାରୀରିକ, ବାଚିକ ଓ ମାନସିକ ପାପରହିତ ଫଳ ମତେ ପ୍ରାପ୍ତ ହେଉ ।

ଉପରୋକ୍ତ କଥନ ଉପରେ ଯୋର ଦେଇ କୁହାଯାଇ ପାରିବ ଯେ, ବାଲ୍ମୀକି ଜଣେ ତପସ୍ୱୀ ଥିଲେ ଯଦି ସେ ଦସ୍ୟୁ ହୋଇଥାନ୍ତେ ତା' ହେଲେ ତାହା ସେ ଏଠାରେ ଅବଶ୍ୟ ସ୍ୱୀକାର କରିଥାନ୍ତେ ଏବଂ ଅନୃତଭାଷଣ କରିଥିବା କଥା ସେ ଜାଣିନାହାନ୍ତି ଏହା ଦୃଢ଼ତା ସହକାରେ ଶ୍ରୀରାମଚନ୍ଦ୍ରଙ୍କ ସମ୍ମୁଖରେ କହିପାରି ନଥାନ୍ତେ । ସେ ଋଷି ଥିଲେ । ଯଦି ସେ ଋଷି ଥିଲେ ତା' ହେଲେ ତାଙ୍କ ସ୍ମରଣଶକ୍ତି ଲୋପ ହୋଇ ନଥିଲା ତେବେ ସେ ଅବଶ୍ୟ ରାମଚନ୍ଦ୍ରଙ୍କୁ କହିପାରିଥାନ୍ତେ ଯେ ସେ ଜଣେ ଦସ୍ୟୁ ଥିଲେ ଏବଂ ତପସ୍ୟା ଫଳରେ ସେ ଋଷି ହୋଇ ପାରିଛନ୍ତି । ସେ ଯଦି ଦସ୍ୟୁ ହୋଇଥାନ୍ତେ ତେବେ ସେ ମିଥ୍ୟାଚରଣ କରିଥାନ୍ତେ । କାରଣ ଦସ୍ୟୁବୃତ୍ତି ମଧ୍ୟ ଏକପ୍ରକାର ମିଥ୍ୟାଦ୍ୱାରା ପରିଚାଳିତ ବୃତ୍ତି । ଜଣେ ଋଷି ସ୍ୱଭାବରେ ସେସବୁ ମନେ ପକାଇ ପାରିଥାନ୍ତେ । ମାତ୍ର ସେ ଦସ୍ୟୁ ନଥିଲେ । ଏଣୁ ଅନୃତ ବା ମିଥ୍ୟା-ଭାଷଣ କରିବାର ଅବସର ତାଙ୍କୁ ମିଳି ନଥିଲା । ଯଦ୍ଦ୍ୱାରା ନିଜର ତପୋମୟ ଜୀବନର ଦୃଷ୍ଟାନ୍ତ ସେ ଭଗବାନ ଶ୍ରୀରାମଚନ୍ଦ୍ରଙ୍କ ସମ୍ମୁଖରେ ଉପସ୍ଥାପିତ କରି ପାରିଥିଲେ ।

# ରାମାୟଣ : କିଛି ପ୍ରଶ୍ନ, ଅନେକଙ୍କ ଉତ୍ତର

ବିଶ୍ୱର ବିଭିନ୍ନ ଭାଷାରେ ଲିଖିତ ବିଶ୍ୱକୋଟୀର ମହାକାବ୍ୟମାନଙ୍କ ମଧ୍ୟରେ ରାମାୟଣ ହିଁ ସର୍ବାଧିକ ପ୍ରାଚୀନ ଓ ଶ୍ରେଷ୍ଠ ଐତିହାସିକ କାବ୍ୟ । କେତେକ ଆଲୋଚକ ରାମାୟଣ ସହ ଇଲିୟଡ଼ ଓ ଓଡ଼େସୀର ତୁଳନା କରି ଏହା ମଧ୍ୟରେ ଥିବା ଭାବଗତ ସାମଞ୍ଜସ୍ୟ ଦେଖାଇଥାନ୍ତି । ଇଲିୟଡ଼ ଓ ଓଡ଼େସୀରେ ମହାକାବ୍ୟର ଧର୍ମ ଯଥାଯଥ ଭାବରେ ରକ୍ଷା କରାଯାଇଛି ସତ୍ୟ, ମାତ୍ର ଆଧ୍ୟାତ୍ମିକତା ବା ନୈତିକତା ଦୃଷ୍ଟିରୁ ଏହାର ସ୍ଥାନ କେଉଁଠି ? ଏଇଥିପାଇଁ ତାହା ଧର୍ମଗ୍ରନ୍ଥ ନହୋଇ କେବଳ ମହାକାବ୍ୟ ଭାବରେ ବିଶ୍ୱବିଦ୍ୟାଳୟର ବୌଦ୍ଧିକ ସ୍ତର ମଧ୍ୟରେ ସୀମିତ ହୋଇ ରହି ଯାଇଛି । ସାର୍ ଥମାସ୍ ମୁରଙ୍କ "ୟୁଟୋପିଆ" ଯେଉଁମାନେ ପଢ଼ିଥିବେ ଏବଂ ସେପରି ନାହିଁ ନଥିବା ରାଜ୍ୟ ସମ୍ପର୍କରେ ଯେଉଁମାନେ ଭାବୁଥିବେ, ସେହିମାନେ ହିଁ ରାମରାଜ୍ୟରେ ତାର ଏକ ବାସ୍ତବ ରୂପ ଦେଖିପାରିବେ ।

ରାମାୟଣ କେବଳ ଭାରତୀୟମାନଙ୍କ ଧର୍ମ ସମ୍ପର୍କିତ ଗ୍ରନ୍ଥ ନୁହେଁ, ବରଂ ଏହା ବିଶ୍ୱର ସମ୍ପତ୍ତି ଭାବରେ କି ହିନ୍ଦୁ, କି ମୁସଲମାନ, କି ଖ୍ରୀଷ୍ଟିୟାନ ସମସ୍ତଙ୍କ ପାଇଁ ଆଦର୍ଶ ହୋଇ ରହିଛି । ଦିନେ ଏହା ସମ୍ରାଟ ଆକବରଙ୍କୁ ଆକୃଷ୍ଟ କରିଥିଲା । ସେ ରାମାୟଣର ଫାରସୀ ଅନୁବାଦ କରାଇ ଥିଲେ । ବଦାୟୁନୀ ଏହି ଅନୁବାଦ କାର୍ଯ୍ୟ କରିଥିଲେ । ଜାହାଙ୍ଗୀରଙ୍କ ସମୟରେ ମୁଲ୍ଲା ମସୀହଙ୍କ "ମସୀହୀ ରାମାୟଣ" ରାମଚନ୍ଦ୍ରଙ୍କ ପ୍ରତି ମୁସଲମାନଙ୍କର କିପରି ଶ୍ରଦ୍ଧା ରହିଛି, ତାହା ସୂଚାଇ ଦିଏ । କେବଳ ଭାରତରେ ନୁହେଁ, ସମଗ୍ର ବିଶ୍ୱରେ ଆଜି ରାମାୟଣର ଲୋକପ୍ରିୟତା ବଢ଼ି ଚାଲିଛି । "ପୂର୍ବ ଜାର୍ମ ନିଉଜ୍ ଲେଟର"ରେ ସରକାର ଏ ପ୍ରକାର ମନ୍ତବ୍ୟ ଦେଇଛନ୍ତି ଯେ, ରାମାୟଣ ଜନସାଧାରଣ, ବିଶିଷ୍ଟ ଲୋକ ଓ ବୁଦ୍ଧିଜୀବୀଙ୍କ ପାଇଁ ସମାନ ରୂପେ ଉଦ୍ଦିଷ୍ଟ । ଏହାର କଥା ସରଳ ଓ ସୁନ୍ଦର । ଏତଦ୍‌ବ୍ୟତୀତ ଏହି ସାର କାବ୍ୟଟି ସମସ୍ତ ସାହିତ୍ୟିକ ଗୁଣସମ୍ପନ୍ନ ଅଟେ । ...ଏହା ଦୈବୀ ଶକ୍ତିର ଆସୁରିକ ଶକ୍ତି ଉପରେ ବିଜୟର କାହାଣୀ ।

ଇଣ୍ଡୋନେସିଆରେ ଆଜି ଅନ୍ତର୍ଜାତୀୟ ରାମାୟଣ ମହୋତ୍ସବ ହେଉଛି । ସେଠାକାର ଦଶମ ଶତାବ୍ଦୀର କବି ଯୋଗେଶ୍ୱର ତାଙ୍କ ରଚିତ ରାମାୟଣର ପ୍ରାରମ୍ଭରେ ଲେଖିଛନ୍ତି :

"ପିରତ ନିବଜମପିତା ପିନକବକ ମନ୍ଦାର ବିଷ୍ଣୁ ମଂଜମ୍ମ ।
ଇନଜନକଂ ଭୂବନକବେଃସ୍ୟୁଃ ଜୋନର ଝମିତ୍ତନଂ ଜନ୍ମ ॥"

ଅର୍ଥାତ୍—ସାରା ଜଗତର, ସମସ୍ତ ଭୁବନର ମଙ୍ଗଳମୟ ନିବଜମଙ୍କ ଅବତରଣ ହୋଇଛି । ଭଗବାନ ବିଷ୍ଣୁ ଜନ୍ମ ନେଇଛନ୍ତି ।

ଏସବୁ ଜାଣିବା ପରେ ଆମ ମନରେ ସ୍ୱାଭାବିକ ପ୍ରଶ୍ନ ଉଠେ—କିଏ ସେ ରାମଚନ୍ଦ୍ର, ଯାହାଙ୍କ ବିଷୟରେ କହିବାକୁ ଯାଇ ନିରନ୍ତ ସ୍ୱାଧ୍ୟାୟଶୀଳ ମହର୍ଷି ବାଲ୍ମୀକି ବିଦ୍ୱାନ ମୁନି ନାରଦଙ୍କୁ ପଚାରନ୍ତି : "ହେ ଭଗବାନ ! ସମ୍ପ୍ରତି ଏ ଲୋକରେ କିଏ ବେଶୀ ଗୁଣବାନ, ବିଶେଷ ପରାକ୍ରମୀ, ଧାର୍ମିକ, ସତ୍ୟବାଦୀ, ଦୃଢ଼ବ୍ରତୀ, ହିତକାରୀ, ଜ୍ଞାନୀ, ଜିତକ୍ରୋଧ, ତେଜସ୍ୱୀ ଓ ଚରିତ୍ରବାନ ?" ମୁନିଶ୍ରେଷ୍ଠ ନାରଦ ଉତ୍ତର ଦେବାକୁ ଯାଇ କହନ୍ତି . "ସେ ହେଉଛନ୍ତି ସର୍ବ ଗୁଣସମ୍ପନ୍ନ ଶ୍ରୀରାମଚନ୍ଦ୍ର ଯେ 'ସମୁଦ୍ରଇବ ଗାମ୍ଭୀର୍ଯେଁ ଧୈର୍ଯେଁଣ ହିମବାନିବ' । ପରାକ୍ରମରେ ବିଷ୍ଣୁ ରାଜା ସଦୃଶ, ପ୍ରିୟଦର୍ଶନରେ ଚନ୍ଦ୍ରମା ତୁଲ୍ୟ, କ୍ରୋଧରେ କାଳରୂପୀ ଅଗ୍ନି ପରି ଓ କ୍ଷମାରେ ପୃଥିବୀ ସଦୃଶ" । ସେହି ପ୍ରଶ୍ନକର୍ତ୍ତା ମହର୍ଷି ବାଲ୍ମୀକିଙ୍କ ସମ୍ପର୍କରେ କହିବାକୁ ଯାଇ ଋଷି ଅରବିନ୍ଦ ଉଚ୍ଛ୍ୱସିତ ଭାଷାରେ କହିଛନ୍ତି, ସେ ମହାକବି ଦା'ନ୍ତେଙ୍କ କବିତ୍ୱରେ ମୁଗ୍ଧ ହୋଇଥିଲେ । ହୋମରଙ୍କ ଇଲିୟଡ଼ ପଢ଼ି ପରିତୃପ୍ତ ହୋଇଥିଲେ । ୟୁରୋପୀୟ ସାହିତ୍ୟରେ ସେଗୁଡ଼ିକ ଅତୁଳନୀୟ । କିନ୍ତୁ ତାଙ୍କ ଦୃଷ୍ଟିରେ ବାଲ୍ମୀକି ହେଲେ ସର୍ବଶ୍ରେଷ୍ଠ । ରାମାୟଣତୁଲ୍ୟ ମହାକାବ୍ୟ ପୃଥିବୀରେ ଖଣ୍ଡିଏ ବି ନାହିଁ ।

ଏ ସମସ୍ତ ସତ୍ତ୍ୱେ ରାମାୟଣ ଏକ ବିବାଦମାନ ଗ୍ରନ୍ଥ ଓ ଶ୍ରୀରାମଚନ୍ଦ୍ର ଜଣେ ବିବାଦମାନ ବ୍ୟକ୍ତିତ୍ୱ । ତାଙ୍କ ଉପରେ ଆକ୍ଷେପ ଯଥେଷ୍ଟ ଓ ଆକ୍ଷେପକାରୀ ଅନେକ । ଧୋବା-ଧୋବଣୀ ସ୍ତରରେ ସେ ଯେପରି ଆଲୋଚିତ, ବୌଦ୍ଧିକ ସ୍ତରରେ ସେ ଠିକ୍ ସେହିପରି ଅମୀମାଂସିତ । କିଛିବର୍ଷ ତଳେ ମାନ୍ଦ୍ରାଜରେ ଦ୍ରାବିଡ଼ କଜଗମ ଦଳ ନିଜକୁ ରାବଣର ବଂଶଧର କହି ରାମ, ସୀତା ଓ ଲକ୍ଷ୍ମଣଙ୍କ ପ୍ରତିକୃତିକୁ ସାର୍ବଜନୀନ ସ୍ଥାନରେ ଦାହ କଲେ । ସେମାନେ ରାବଣର ବଂଶଧର ହୋଇଥିବା କାରଣରୁ ରାମଚନ୍ଦ୍ର ଜଣେ ଆକ୍ରମଣକାରୀ ଶତ୍ରୁ ବୋଲି ଭାଷଣମାନ ଦିଆଗଲା । ସମଗ୍ର ଦେଶରେ ରାମଲୀଳା ପରି ରାବଣ ଲୀଳା ହେଟି ଆମର ଅଭିଧାନକୁ ଆସିଲା । ତଥାପି ରାମ ମଲେନାହିଁ । କାରଣ ଏହି ଆନ୍ଦୋଳନ ଆଉଜଣେ ରାମ [ସ୍ୱର୍ଗତ ରାମସ୍ୱାମୀ ନାୟକର]ଙ୍କ ଦ୍ୱାରା ଆରମ୍ଭ ହୋଇଥିଲା । ସେହିପରି ଜୈନମୁନି ଆଚାର୍ଯ୍ୟ ତୁଳସୀ, ସୀତାଙ୍କ ସତୀତ୍ୱ ଉପରେ ସନ୍ଦେହ କରି ଏକ କାବ୍ୟ ଲେଖିଥିବା ବୃହାମଣାରେ ରାଜସ୍ଥାନରେ ଯେଉଁ ତୁମୂଳ କାଣ୍ଡ ଘଟିଥିଲା, ତାହା ଏବେ ମଧ୍ୟ ବିସ୍ମୃତ

ହୋଇ ନାହିଁ । ଯେବେ କହିବାକୁ ଆରମ୍ଭ କରିଦେଲେ, ଜଣେ ତୁଳସୀ (ଦାସ) ରାମାୟଣକୁ ନିଜ ଭାଷାରେ ଲେଖି ଗୋଟିଏ ଯୁଗ ସୃଷ୍ଟି ଆଉ ଗୋଟିଏ ଯୁଗର ଯୋଗଚିହ୍ନ ଦେଇଦେଲେ ତ ଆଉ ଜଣେ ତୁଳସୀ (ଜୈନମୁନି) ସୀତାଙ୍କ ସମ୍ବନ୍ଧ ଉପରେ ସନ୍ଦେହ କରି ଏହାର ସତ୍ୟତା ପ୍ରତିପାଦନ କରିପାରିଲେ ନାହିଁ ।

ଇତିହାସ କ୍ଷେତ୍ରରେ ମଧ୍ୟ ଏହି ସମସ୍ୟା ରହିଛି । କେତେକ ଏହାକୁ କାଳ୍ପନିକ ବୋଲି କହି ବାକ୍ୟ ପ୍ରମାଣ ଚାହୁଁଛନ୍ତି ତ ଆଉ କେତେକ ଭୌଗୋଳିକ ପ୍ରସଙ୍ଗ ନେଇ ବିଭିନ୍ନ ବିଭ୍ରାନ୍ତିକର ପ୍ରଶ୍ନ ଉଠାଉଛନ୍ତି । ଉତ୍କଳର ନବୀନ ସାହୁ ଏ ପ୍ରକାର ଏକ ଦ୍ୱନ୍ଦ୍ୱ ଆମ ମନରେ ସୃଷ୍ଟି କରିଥିଲେ । ସେ କହିବାକୁ ଆରମ୍ଭ କଲେ ଯେ, ବଲାଙ୍ଗୀରର ସୋନପୁର ହିଁ ଲଙ୍କା । ସେଠାରେ "ଲଙ୍କେଶ୍ୱରୀ ଦେବୀ" ଅବସ୍ଥିତ । ସ୍ୱର୍ଣ୍ଣ ଲଙ୍କାର ସ୍ୱର୍ଣ୍ଣପୁର ବା ସୋନପୁର ଇତ୍ୟାଦି । ସୋନପୁରର ଲଙ୍କେଶ୍ୱରୀ ଦେବୀ ଦେଖି ଲଙ୍କାକୁ ପ୍ରମାଣ କରିବା ବା ସୋନପୁର ନାମର ସାମଞ୍ଜସ୍ୟ ସ୍ୱର୍ଣ୍ଣପୁର ଲଙ୍କା ସହ ଯୋଡ଼ିବା ଦେଖିଲେ କୋରାନରେ ଆକବର ଶବ୍ଦରେ ମହାନ ଆକବରଙ୍କୁ ଆବିଷ୍କାର କରିବା ପରି ଏକ ଅଣ ଐତିହାସିକ ତତ୍ତ୍ୱ ଅଟେ । ଐତିହାସିକମାନେ ଯଦି ଜନଶ୍ରୁତି ବିଶ୍ୱସ୍ତ ନ ହୁଅନ୍ତି, ତା'ହେଲେ ଧୋବା-ଧୋବଣୀଙ୍କ ଆକ୍ଷେପ ହିଁ ସତ୍ୟବୋଲି ପ୍ରମାଣିତ ହେବ ।

ଲୌକିକ ସ୍ତର ପରି ବୌଦ୍ଧିକ ସ୍ତରରେ ତାଙ୍କ ନାମରେ ଅନେକ ଅଭିଯୋଗ । ସ୍ୱ ଧର୍ମପତ୍ନୀ ସୀତାଙ୍କ ପାଇଁ ସୁଗ୍ରୀବ ସହ ସନ୍ଧି କରିବା ଏବଂ ତା' କହିବା ଅନୁସାରେ ବାଳୀକୁ ଅନ୍ୟାୟ ଯୁଦ୍ଧରେ ବଧ କରିବା, ପୁନଶ୍ଚ ଜନେ ଜାଣିଶୁଣି ମଧ୍ୟ ଲୋକ ନିନ୍ଦାକୁ ଭୟ କରି ସୀତାଙ୍କୁ ବନବାସ ପଠାଇବା ପରି ଆହୁରି ଅନେକ କଥା ରହିଛି । ବିଶ୍ୱକବି ରବୀନ୍ଦ୍ରନାଥ ତ ତାଙ୍କ "ଉପେକ୍ଷିତା ନାୟିକା"ରେ ଏ ପ୍ରକାର ଏକ ପ୍ରଶ୍ନ ଉଠାଇଲେ ଯେ, ବାଲ୍ମୀକି ଉର୍ମିଳାଙ୍କୁ ଉପେକ୍ଷା କରିଛନ୍ତି । ପ୍ରତ୍ୟେକ ପ୍ରଶ୍ନ ଆଜି ଆଧୁନିକ ସମାଲୋଚକଙ୍କ ପାଇଁ ରାମ ବା ରାମାୟଣ ପ୍ରତି ଅଙ୍ଗୁଳି କରିବାର ସୁଯୋଗ ଆଣି ଦେଇଛି, ଯାହା ଫଳରେ ତାମିଲନାଡ଼ୁରେ ପ୍ରାଦେଶିକ ଉଗ୍ରବାଦ ସହ ରାବଣ ଲୀଳା ଏକ ରାଜନୈତିକ ସ୍ତର ଭାବରେ ଆମର ସାଂସ୍କୃତିକ ସୂତ୍ରକୁ ଛିନ୍ନ କରି ରାମଚନ୍ଦ୍ରଙ୍କୁ ଜଣେ ବିଦେଶୀ ଆକ୍ରମଣକାରୀ ଭାବରେ ପ୍ରତିପାଦନ କରିଛି ।

ପ୍ରତ୍ୟେକ ଅଭିଯୋଗ ପଛରେ ଯେ ତର୍କଶୁଦ୍ଧ ଚିନ୍ତା ଓ ଚେତନା ରହିଛି, ଏହା କହିବା ଠିକ୍ ହେବନାହିଁ । ଭାରତର ପରମ୍ପରା, ଇତିହାସ, ଐତିହ୍ୟ, ସମାଜ ଓ ପରିସ୍ଥିତି ଦୃଷ୍ଟିରୁ ରାମାୟଣକୁ ବିଚାର କରାଯିବା ଉଚିତ । ବ୍ୟକ୍ତିଗତ ଭାବରେ

ଚରିତ୍ର ବିଚାର କରିବାକୁ ଯାଇ ଯେତେବେଳେ ଏହାର ଭଲ ଓ ମନ୍ଦ ପକ୍ଷ ମୁଁ ଚିନ୍ତାକରି ଦେଖେଁ, ରାବଣ ଲୀଳା ଯେ ଏକ ଆଦର୍ଶ, ଏହା ମୋର ମନେ ହୁଏନାହିଁ । ରାବଣ ଲୀଳା ପଛରେ ତର୍କ ଦୁର୍ବଳ, ଚିନ୍ତା ବିକ୍ଷିପ୍ତ ଓ ପରିଶ୍ରମ ଅକାରଣ । ପ୍ରକୃତ କଥା ହେଲା ଇଂରେଜମାନଙ୍କର ମାନସ ପୁତ୍ର ଭାବରେ ଦକ୍ଷିଣ ଭାରତରେ ବ୍ରାହ୍ମଣ ଓ ହିନ୍ଦୁଧର୍ମ ବିରୁଦ୍ଧରେ ଯେଉଁ ଜଷ୍ଟିସ୍ ପାର୍ଟି ଗଢ଼ା ହୋଇଥିଲା, ତାହା ସ୍ୱାଧୀନ ଭାରତରେ ଦ୍ରାବିଡ଼ ମୁନେତ୍ର କଜାଗମ ନାମରେ ରୂପାନ୍ତରିତ ହୋଇ ଭାରତର ଜାତୀୟ ସଂହତି ବିରୁଦ୍ଧରେ ତା'ର କାର୍ଯ୍ୟକଳାପ ଆରମ୍ଭ କରି ଦେଇଥିଲେ । ରାଜନୈତିକ କ୍ଷମତା ଲାଳସାରେ ସେମାନେ ପ୍ରଥମେ ହିନ୍ଦୀକୁ ବିରୋଧ କରୁଥିଲେ । ଏହା ବିଫଳ ହେବା ପରେ ରାବଣ ଲୀଳା କରିବା ବିନା ଅନ୍ୟ ଉପାୟ ନଥିଲା ।

ସେମାନେ କିପରି ରାବଣର ବଂଶଧର ହେଲେ, ତାହା ଆମେ ଜାଣୁନା । ରାବଣର ବଂଶ ପରମ୍ପରା କହିବାକୁ ଯାଇ ଐତିହାସିକ ବାଲ୍ମୀକୀ ତାଙ୍କ ରାମାୟଣ [୭ : ୯, ୧୧-୨୫]ରେ କହିଛନ୍ତି : ରାବଣ ପୁଲସ୍ତ୍ୟଙ୍କ ମାନସ ପୁତ୍ର ଓ ବିଶ୍ରବାଙ୍କ ଔରସର ପୁତ୍ର ଥିଲା । ମହର୍ଷି ପୁଲସ୍ତ୍ୟ ବେଦ ଅଧ୍ୟୟନ କରୁଥିବା ସମୟରେ ରାଜର୍ଷି ତୃଣବିନ୍ଦୁଙ୍କ କନ୍ୟା ତାହା ମନଧ୍ୟାନ ଦେଇ ଶ୍ରବଣ କରୁଥିଲା ଏବଂ ତାଙ୍କୁ ସେବାରେ ସନ୍ତୁଷ୍ଟ କରିଥିବାରୁ ସେ ସ୍ୱ-ଅନୁରୂପ ଏକ ପୁତ୍ରର ଜନନୀ ହେବେ ବୋଲି ଆଶୀର୍ବାଦ ଦେଇଥିଲେ, ଯାହାଙ୍କ ନାମ ବିଶ୍ରବା ବା ବୈଶ୍ରବଣ ହେଲା । ଏକଦା ସୁମାଳୀ ନିଜ କନ୍ୟା କୈକେଶୀ ସହ ବିଚରଣ କରୁଥିବା ସମୟରେ ବିଶ୍ରବାଙ୍କୁ ଦେଖି ସ୍ୱ-କନ୍ୟାକୁ ତାଙ୍କୁ ବରଣ କରିବାକୁ ଆଦେଶ ଦେଲା । ପିତାଙ୍କ ଆଦେଶ ପାଇ କୈକେଶୀ ବିଶ୍ରବାଙ୍କ ସମ୍ମୁଖରେ ଉପସ୍ଥିତ ହେଲା । ବିଶ୍ରବା ତା'ର ଅଭିପ୍ରାୟ ବୁଝିପାରି ତାକୁ କହିଲେ : "ତୁମେ ଏ ଦାରୁଣ ସମୟରେ ମୋ ପାଖକୁ ଆସିଲ, ଏଣୁ କ୍ରୂର ସ୍ୱଭାବଯୁକ୍ତ ପୁତ୍ରକୁ ଜନ୍ମ ଦେବ ।" ତାଙ୍କ ବଚନ ଶୁଣି କୈକେଶୀ ଏକ ଶ୍ରେଷ୍ଠ ପୁତ୍ର ପାଇଁ ପ୍ରାର୍ଥନା କଲା । ଏଣୁ ତା'ର କନିଷ୍ଠ ପୁତ୍ର ଶ୍ରେଷ୍ଠ ହେବବୋଲି ସେ କହିଲେ ।

ରାବଣ ଯଦିଓ ଜନ୍ମ ଦୃଷ୍ଟିରୁ ବ୍ରାହ୍ମଣ ଔରସରୁ ଜାତ ହୋଇଥିଲା, ତଥାପି ସେ ତା' ମା'ର ଆସୁରୀ ପ୍ରଭାବରେ ପ୍ରଭାବିତ ହୋଇ ଆର୍ଯ୍ୟ ସଂସ୍କୃତି ଓ ଋଷି ପରମ୍ପରା ବିରୁଦ୍ଧରେ ଅନେକ ପ୍ରକାର ଷଡ଼ଯନ୍ତ୍ରାତ୍ମକ କାର୍ଯ୍ୟ କରୁଥିଲା । ସେ ଦଣ୍ଡକାରଣ୍ୟସ୍ଥିତ ବିଶ୍ୱାମିତ୍ରଙ୍କ ଯାଗଯଜ୍ଞ ନଷ୍ଟ କରିବାକୁ ମାରୀଚ, ସୁବାହୁ ଓ ତାଡ଼କାଦି ରାକ୍ଷସୀଙ୍କୁ ନିୟମିତ ଭାବରେ ପ୍ରେରଣ କରୁଥିଲା । ସେମାନେ ବିଧିବଦ୍ଧ ଭାବରେ ବିଶ୍ୱାମିତ୍ରଙ୍କ ଯଜ୍ଞରେ ରକ୍ତ ମାଂସ ଆଦି ଫିଙ୍ଗି ଯାଗଯଜ୍ଞ ଅପବିତ୍ର କରି ଦେଉଥିଲେ । ସେମାନଙ୍କ ସହିତ ଆଉ ଏକ ଦଳରେ ଥିଲେ ରାବଣର ଭଗ୍ନୀ

ମୂର୍ପଣଖା, ରାଜ ଖର ଓ ଦୂଷଣ । ଏମାନେ ଭାରତବର୍ଷବିରୋଧୀ ଅଧାର୍ମିକ କାର୍ଯ୍ୟରେ ଲିପ୍ତ ରହୁଥିଲେ । ଆର୍ଯ୍ୟ ଓ ଅସୁରମାନଙ୍କ ମଧ୍ୟରେ ପ୍ରବୃତ୍ତିଗତ ଭିନ୍ନତା ଦୃଷ୍ଟିରୁ ଲଙ୍କା ଏକ ସ୍ୱତନ୍ତ୍ର ରାଷ୍ଟ୍ର ଥିଲା । ରାବଣର ପରାଜୟ ପରେ ସ୍ୱର୍ଣ୍ଣମୟୀ ଲଙ୍କା ଯଦିଓ ଭାରତର ଏକ ଅଂଶ ଭାବରେ ଧରାଗଲା, ତଥାପି ରାମଚନ୍ଦ୍ର ଲଙ୍କାକୁ ରାବଣର ଅନୁଜ ବିଭୀଷଣ ହସ୍ତରେ ଅର୍ପଣ କରି ଚାଲି ଆସିଲେ ।

ତତ୍କାଳୀନ ଇତିହାସ କହେ, ରାବଣ ଦ୍ରାବିଡ଼ ନଥିଲା, ଥିଲା ଦସ୍ୟୁ । ଆର୍ଯ୍ୟମାନଙ୍କର ଦସ୍ୟୁ ସହ ସଂଗ୍ରାମ ହେଉଥିଲା, ଦ୍ରାବିଡ଼ମାନଙ୍କ ସହ ନୁହେଁ । 'ଦ୍ରମିଡ଼' ମୂଳ ରେ 'ଦ୍ରମ' ଅର୍ଥାତ୍ ଗତୌ ବା ଗତି ଅର୍ଥରେ ଜ୍ଞାନ, ଗମନ ଓ ପ୍ରାପ୍ତି ମାଧ୍ୟମରେ ପ୍ରୟୋଗ ହୁଏ । ପୁନଶ୍ଚ ଦବଣ ଅର୍ଥ ଧନ । ତେଣୁ ଆର୍ଯ୍ୟମାନଙ୍କର ଦ୍ରାବିଡ଼ମାନଙ୍କ ସହ ଯୁଦ୍ଧ ନ ହୋଇ ଦସ୍ୟୁମାନଙ୍କ ସହ ଯୁଦ୍ଧ ହେଉଥିଲା । ଦକ୍ଷିଣ ଭାରତୀୟମାନେ ବିଭିନ୍ନ ଦେଶରେ ବାଣିଜ୍ୟ କରି ଧନରତ୍ନ ବୋହି ଆଣୁଥିଲେ । ସେହି କାରଣରୁ ସେମାନଙ୍କୁ ଦ୍ରାବିଡ଼ କୁହାଗଲା—ଯେଉଁ ଶବ୍ଦରୁ ଦ୍ରମିଳ ବା ତାମିଲ ଭାଷାର ଉତ୍ପତ୍ତି ହେଲା । ଭାରତ ଇତିହାସରୁ ଜଣାଯାଏ ଯେ, ପଞ୍ଚଗୌଡ଼ ଓ ପଞ୍ଚଦ୍ରାବିଡ଼ ଭାରତର ଭୌଗୋଳିକ ବିଭାଗର ମଧ୍ୟ ନାମ ଥିଲା । ପଞ୍ଚ ଦ୍ରାବିଡ଼ ମଧ୍ୟରେ ମହାରାଷ୍ଟ୍ର, ଆନ୍ଧ୍ର, କର୍ଣ୍ଣାଟକ ଓ ଗୁର୍ଜର ଅନ୍ତର୍ଗତ ଥିବ । ସମସ୍ତେ ମୂଳତଃ ଆର୍ଯ୍ୟ ଥିଲେ । ଏସବୁ କାରଣରୁ ନିଜକୁ ରାବଣର ବଂଶଧର କହିବା ଦ୍ରାବିଡ଼ ଜାତି ପ୍ରତି ଅବମାନନା କରିବା ସଙ୍ଗେ ସମାନ । ଏ ପ୍ରକାର ଯଦି ଚିନ୍ତା ବିଭ୍ରାଟ ରହେ, ସମୟ ଆସିବ ରାବଣ ଲୀଳା ପରି ଆଫ୍‌ଜଲ ଖାଁ ଲୀଳା ମଧ୍ୟ ଏ ଦେଶରେ ପାଳିତ ହେବ । କେତେ ଲୋକ 'ଏପରି ବାହାରିବେ, ଯେଉଁମାନେ ଆଫ୍‌ଜଲ ଖାଁଙ୍କୁ ନିଜର ପୂର୍ବପୁରୁଷ କହି ପଣ୍ଡିତ ନେହେରୁଙ୍କ ପ୍ରତିକୃତିକୁ ଦାହ କରିବେ ଜମ୍ମା ମାଓଙ୍କୁ ନିଜର ପୂର୍ବପୁରୁଷ କହି ଶାସ୍ତ୍ରୀଙ୍କ ମୂର୍ତ୍ତିକୁ ଅପମାନ ଦେବେ । ସମସ୍ତ ଚନ୍ଦରେ ଆଉରେଙ୍ଗଜେବ ମହାପୁରୁଷ ହୋଇଯିବେ ଓ ଶିବାଜୀଙ୍କୁ ଖଳନାୟକ ଭାବରେ ଚିତ୍ରଣ କରାଯିବ । ଏସବୁ କାରଣରୁ ଇତିହାସର ସତ୍ୟତା ଉପରେ ବିଶ୍ୱସ୍ତ ହୋଇ ଅଣ ଐତିହାସିକ ଚିନ୍ତାର ମଧ୍ୟ ସ୍ପଷ୍ଟୀକରଣ ହେବା ବିଧେୟ ।

ରାବଣ ଲୀଳା ପ୍ରକୃତରେ ଏକ ବିକୃତିପୂର୍ଣ୍ଣ ମନୋରଞ୍ଜନ । ଲୌକିକ ସ୍ତରରେ ଯେଉଁ ପ୍ରକାର ଚିନ୍ତା ବିଭ୍ରାଟ ରହିଛି, ବୌଦ୍ଧିକ ସ୍ତରରେ ଠିକ୍ ସେ ପ୍ରକାର ସମସ୍ୟାମାନ ଦେଖା ଦେଉଛି । ଆଜି ଏକ ସମସ୍ୟା ହେଲା, ବୌଦ୍ଧିକ ସ୍ତରରେ ରାମାୟଣରେ ଆଲୋଚନା ଓ ତଥ୍ୟ, ଇତିହାସ ସ୍ତରରୁ ଆହୁରି ଊର୍ଦ୍ଧ୍ୱକୁ ଉଠିଯିବା ଫଳରେ ରାମଚନ୍ଦ୍ର ଓ ସୀତାଙ୍କ ଚରିତ୍ର ଅପେକ୍ଷା ରାବଣ, ମେଘନାଦ, କୈକେୟୀ, ଊର୍ମିଳା, ମନ୍ଥରା ଆଦି ଚରିତ୍ର ଆମର ସହାନୁଭୂତିର ଅଧିକାରୀ ହୋଇ

ଯାଇଛନ୍ତି । ଉଦାହରଣ ସ୍ୱରୂପ ମାଇକେଲ ମଧୁସୂଦନ ଦତ୍ତଙ୍କ 'ମେଘନାଦ ବଧ' ବା ରବୀନ୍ଦ୍ରଙ୍କ 'ଉପେକ୍ଷିତା ନାୟିକା' ନିଆଯାଇ ପାରେ । ବିଶ୍ୱକବି ଆମକୁ ପ୍ରଶ୍ନ ପଚାରନ୍ତି – ଅଯୋଧ୍ୟାରେ ଉର୍ମିଳାର ଚଉଦ ବର୍ଷର ବିରହ ବେଦନା କ'ଣ ସୀତା ରାମଙ୍କ ସହ ବନବାସ ସମୟରେ ବଣରେ ସହ୍ୟ କରିଛନ୍ତି କି ? ତେବେ ସୀତା କାହିଁକି ଶ୍ରେଷ୍ଠା, ଊର୍ମିଳା କାହିଁକି ନୁହେଁ ? ରବୀନ୍ଦ୍ରଙ୍କ ମତରେ ବାଲ୍ମୀକି ଊର୍ମିଳାଙ୍କ ପ୍ରତି ଅବିଚାର କରିଛନ୍ତି । ଅସ୍ତୁ ! ପ୍ରଶ୍ନ ଉପରେ ପ୍ରଶ୍ନ ପଚାରିବାକୁ ଯାଇ ବ୍ରଜରଦ୍ଧାସ ତାଙ୍କ 'ଚନ୍ଦ୍ରା'ରେ ଲେଖିଲେ : 'ଯଥାର୍ଥରେ ଊର୍ମିଳା କ'ଣ ସୀତାଙ୍କ ଅପେକ୍ଷା ବେଶୀ ତ୍ୟାଗଶାଳିନୀ ? ଅଗ୍ନି ପାଖରେ ରହି ଅଗ୍ନିର ଉତ୍ତାପକୁ ଧୈର୍ଯ୍ୟ ପୂର୍ବକ ସହ୍ୟ କରିବା ବେଶୀ ଶାଳୀନତାର ଲକ୍ଷଣ ନା ଅଗ୍ନିଠାରୁ ବହୁ ଦୂରରେ ରହି ଅଗ୍ନିର ଉତ୍ତାପକୁ ଉପେକ୍ଷା କରିବା ବେଶୀ ତ୍ୟାଗର ଲକ୍ଷଣ' ? ଅର୍ଥାତ୍ ସେ କହିବାକୁ ଚାହାଁନ୍ତି, ସୀତା ପତି ରାମଚନ୍ଦ୍ରଙ୍କ ସହ ରହି ମଧ୍ୟ ତପସ୍ୱିନୀ ଜୀବନଯାପନ କରିବା କଷ୍ଟ ନା ପତିଙ୍କଠାରୁ ଦୂରରେ ରହି ତ୍ୟାଗମୟ ଜୀବନଯାପନ କରିବା କଷ୍ଟ ? ଏକଥା କିଏ ନଜାଣେ ଯେ ସୀତା ଚଉଦବର୍ଷ ବନବାସରେ ସଂଯମ ଓ ବ୍ରହ୍ମଚର୍ଯ୍ୟ ବ୍ରତରେ ରହି ଅଯୋଧ୍ୟାକୁ ଫେରିବା ପରେ ହିଁ ଅନ୍ତଃସତ୍ତ୍ୱା ହୋଇଥିଲେ ।

ଦୀର୍ଘ ଚଉଦ ବର୍ଷ ସ୍ୱାମୀଙ୍କ ସହ ରହି ମଧ୍ୟ ସୀତା ଯେ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିଥିବେ, ତା' ଆମର ବିଶ୍ୱାସ ହୁଏନାହିଁ । ପତି ସହ ରହି ପତ୍ନୀ ଯେ ଏତେଗୁଡ଼ାଏ ବର୍ଷ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିଥିବେ, ତାହା କିପରି ବିଶ୍ୱାସ କରାଯାଇ ପାରିବ ? ପ୍ରକୃତରେ ସୀତା ଚଉଦ ବର୍ଷ ବନବାସରେ ଥିବା ସମୟରେ ସଂଯମ ପୂର୍ବକ ରହିପାରିବେ, ତାହା ରାମଙ୍କ ପାଇଁ ମଧ୍ୟ ସନ୍ଦେହର ବିଷୟ ଥିଲା ! ତା' ଜାଣିପାରି ବନ ଗମନ ପୂର୍ବରୁ ସ୍ୱାମୀଙ୍କ ସନ୍ଦେହ ମୋଚନ କରିବାକୁ ଯାଇ ଅଙ୍ଗୀକାର ପୂର୍ବକ ସୀତା କହିଥିଲେ :

ଶୁଶ୍ରୂଷମାଣା ତେ ନିତ୍ୟଂ ନିୟତା ବ୍ରହ୍ମଚାରିଣୀ ।
ସହ ରଂସ୍ୟେ ତ୍ୱୟା ବୀର ବନେଷୁ ମଧୁଗନ୍ଧିଷୁ ॥

"ହେ ବୀର ! ମୁଁ ନିତ୍ୟନିୟମ ପୂର୍ବକ ବ୍ରହ୍ମଚର୍ଯ୍ୟ ବ୍ରତ ଧାରଣକରି ଆପଣଙ୍କ ସଙ୍ଗରେ ସେହି ମଧୁର ଗନ୍ଧଯୁକ୍ତ ବନରେ ବିଚରଣ କରିବି ।"

ଏହା ଶୁଣିବା ପରେ ହିଁ ରାମଚନ୍ଦ୍ର ତାଙ୍କୁ ତାଙ୍କ ସହିତ ଯିବାପାଇଁ ଅନୁମତି ଦେଲେ । ଏଠାରେ ଆଉ ଏକ କଥା ବିଚାର କରିବା ଉଚିତ ଯେ, କାମ ବାସନା, ସାତ୍ତ୍ୱିକ ଫଳମୂଳ ଆହାରରେ ଜାଗ୍ରତ ହୁଏନାହିଁ, ହୁଏ ରାଜପ୍ରାସାଦର ବ୍ୟସନ ବାସନାରେ । ଏ ଦୃଷ୍ଟିରୁ ରବୀନ୍ଦ୍ରନାଥ ସୀତାଙ୍କ ସଂଯମ ଓ ସତୀତ୍ୱକୁ ଆଲୋଚନା

ପରସ୍ତ୍ରୀଙ୍କୁ ଅଣି ନାହାନ୍ତି । ବାଲ୍ମୀକି ଯେ ଊର୍ମିଳାଙ୍କୁ ଉପେକ୍ଷା କରିଛନ୍ତି, ଏକଥା ନ କହି ସେ ସୀତାଙ୍କ ସଂଘର୍ଷମୟ ଜୀବନକୁ ଅଗ୍ନି ପରୀକ୍ଷାର ସମ୍ମୁଖୀନ କରାଇଛନ୍ତି କହିଥିଲେ ଅଧିକ ଭଲ ହୋଇଥାନ୍ତା ।

ବାଳିଙ୍କୁ ଅନ୍ୟାୟ ଭାବରେ ବଧ କରିବା ରାମଚନ୍ଦ୍ରଙ୍କ ଉପରେ ଅନ୍ୟ ଏକ ଆକ୍ଷେପ । ସୀତା ହରଣ ପରେ ସୀତାଙ୍କୁ ପାଇବା ପାଇଁ ରାମଚନ୍ଦ୍ର ସୁଗ୍ରୀବ ସହ ବନ୍ଧୁତା କଲେ । ସୁଗ୍ରୀବର ଶତ୍ରୁ ଥିଲା ବାଳୀ । ଅନ୍ତରାଳରେ ରହି ସେ ବାଳୀକୁ ନିହତ କରିବା ପରେ ପରେ ମୃତ୍ୟୁ ପୂର୍ବରୁ ବାଳୀ କର୍କଶ ଓ କ୍ରୋଧରେ ରାମକୁ କହିଲା—"ଯଦି ସୁଗ୍ରୀବ ସୀତାଙ୍କ ପ୍ରାପ୍ତିରେ ସାହାଯ୍ୟ କରିବା କାରଣରୁ ମୋତେ ହତ୍ୟା କରାଯାଇଛି, ତେବେ ତୁମେ ମସ୍ତବଡ଼ ଭୁଲ୍ କରିଛ । ଏକଥା ପୂର୍ବରୁ ଯଦି ତୁମେ ମୋତେ କହିଦେଇଥାନ୍ତ, ତାହାହେଲେ ଗୋଟିଏ ଦିନରେ ମୈଥିଳୀଙ୍କୁ ମୁଁ ତୁମ ଆଗରେ ଉପସ୍ଥିତ କରାଇ ଦେଇଥାନ୍ତି ଏବଂ ତତ୍ ସଙ୍ଗେ ସଙ୍ଗେ ଦୁଷ୍ଟ ଦୁରାତ୍ମା ରାବଣର କେଶଧରି ଦଣ୍ଡ ଦେବା ନିମନ୍ତେ ତୁମକୁ ଅର୍ପଣ କରିଦେଇଥାନ୍ତି"

ବାଳୀ କିଛି ଭୁଲ୍ କହି ନଥିଲା । ତା'ର ଶିଷ୍ଟତାପୂର୍ଣ୍ଣ କଥା ଆମକୁ ଆକୃଷ୍ଟ କରି ପକାଏ । ତା' ପ୍ରତି ଆମେ ସହାନୁଭୂତିଶୀଳ ହୋଇପଡ଼ି ରାମଚନ୍ଦ୍ରଙ୍କୁ ଅନ୍ୟାୟୀ, ସ୍ୱାର୍ଥପର ଆଦି ଶବ୍ଦରେ ଭର୍ତ୍ସନା କରିବାକୁ ଆରମ୍ଭ କରିଦେଉ । ଏଠି ଗୋଟିଏ କଥା ମନେ ରଖିବା ଉଚିତ ଯେ, ବାଳୀକଥା ଶୁଣିବା ପରେ ରାମଚନ୍ଦ୍ରଙ୍କ କଥା ମଧ୍ୟ ଆମେ ଶୁଣିବା ଉଚିତ । ବାଳୀକୁ ଉତ୍ତର ଦେବାକୁ ଯାଇ ରାମଚନ୍ଦ୍ର କହିଛନ୍ତି :

ତଦେତତ୍ କାରଣଂ ପଶ୍ୟ ଯଦର୍ଥଂ ତ୍ୱଂ ମୟାହତଃ ।
ଭ୍ରାତୁର୍ବର୍ତ୍ତସି ଭାର୍ଯ୍ୟାୟାଂ ତ୍ୟକ୍ତ୍ୱାଧର୍ମଂ ସନାତନଃ ॥
ଅସ୍ୟ ତ୍ୱଂ ଧରମାଣସ୍ୟ ସୁଗ୍ରୀବସ୍ୟ ମହାତ୍ମନଃ ।
ରୁମାୟାଂ ବର୍ତ୍ତସେ କାମାତ୍ ସ୍ନୁଷାୟାଂ ପାପକର୍ମବତ୍ ॥

"ଯେଉଁଥିପାଇଁ ମୁଁ ତତେ ବଧ କରିଛି, ତା'ର କାରଣ ତୁ ଠିକ୍ ବୁଝିନେ । ସନାତନ ଆର୍ଯ୍ୟଧର୍ମ ତ୍ୟାଗ କରି ନିଜର ଶ୍ରେଷ୍ଠ ଭାଇର ସ୍ତ୍ରୀ ସହ ତୁ ବ୍ୟଭିଚାର କରିଛୁ । ତୁ ନିଜର ଲଘୁ ଭ୍ରାତା ଧର୍ମାତ୍ମା ସୁଗ୍ରୀବର ରୁମା ନାମକ ସ୍ତ୍ରୀକୁ କାମାନ୍ଧ ହୋଇ ନିଜ ଘରେ ବାଧ୍ୟ ବଳାତ୍କାରରେ ବନ୍ଦୀ କରିଛୁ ।"

ଆର୍ଯ୍ୟ ଧର୍ମର ଆଚାର ସଂହିତା ବା ଦଣ୍ଡନୀତି ଅନୁସାରେ ଯେଉଁ ମନୁଷ୍ୟ ସ୍ୱ-କନ୍ୟା, ଭଗ୍ନୀ, ପୁତ୍ରବଧୂ ବା ଲଘୁଭ୍ରାତାର ସ୍ତ୍ରୀ ସହ ବ୍ୟଭିଚାର କରେ, ସେ ମୃତ୍ୟୁ ଦଣ୍ଡର ଅଧିକାରୀ । ଏ ଦୃଷ୍ଟିରୁ ବ୍ୟଭିଚାରୀ ବାଳୀକୁ ହତ୍ୟା କରି ଶ୍ରୀରାମଚନ୍ଦ୍ର

ନ୍ୟାୟ ପ୍ରତିଷ୍ଠା କରିଥିଲେ । ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ଜଣେ ଅନ୍ୟାୟୀକୁ ତା'ର କୃତକର୍ମ ପାଇଁ ଦଣ୍ଡଦେବା କ'ଣ ଅନ୍ୟାୟ ?

ବାଲୀବଧ ପରେ ରାମଚନ୍ଦ୍ର ବାନର ନାମକ ବନବାସୀ ଜାତିକୁ ସୁସଙ୍ଗଠିତ କରି ଲଙ୍କା ବିଜୟ କରିଥିଲେ । ଅଗ୍ନି ପରୀକ୍ଷାରେ ସୀତା ସତୀ ବୋଲି ପ୍ରମାଣିତ ହେବା ପରେ ତାଙ୍କୁ ଗ୍ରହଣ କରି ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ସ୍ୱ ରାଜ୍ୟରେ ପହଞ୍ଚିବାର ଦୁଇବର୍ଷ ପରେ ସୀତା ଅନ୍ତଃସତ୍ତ୍ୱା ହୋଇଥିଲେ । ସେବେ ରାଜ୍ୟରେ ଧୋବା ଧୋବଣୀ କଳହ ଲାଗିବା ସମୟରେ ଧୋବଣୀ ସୀତାଙ୍କ ସତୀତ୍ୱ ଉପରେ ସନ୍ଦେହ କରିବା କଥା ପ୍ରଜାରଞ୍ଜକ ରାଜା ରାମଚନ୍ଦ୍ରଙ୍କ ପାଖରେ ପହଞ୍ଚିଛି । ରାଜ୍ୟରେ ଜଣେ ସାଧାରଣ ପ୍ରଜାର ଆକ୍ଷେପର ପ୍ରତିକାର ସ୍ୱରୂପ ସେ ସୀତାଙ୍କୁ ବନବାସ ପଠାଇବାକୁ ସ୍ଥିର କରିଥିଲେ । ରାଜ୍ୟର ଜଣେ ସାଧାରଣ ଧୋବଣୀ କଥାରେ ସୀତା ସତୀ, ଏହା ଜାଣିବା ସତ୍ତ୍ୱେ ମଧ୍ୟ ସୀତାଙ୍କୁ ବନବାସ ଦେବା କ'ଣ ନ୍ୟାୟସଙ୍ଗତ ? ସୀତା ରାମଚନ୍ଦ୍ରଙ୍କ ସ୍ତ୍ରୀ ହୋଇ ପାରନ୍ତି, ମାତ୍ର ସେ ମଧ୍ୟ ରାଜ୍ୟର ଜଣେ ପ୍ରଜା । ଏ ଦୃଷ୍ଟିରୁ ଜଣେ ବାହାରର ଜଣକ କଥାରେ ସୀତାଙ୍କୁ ବନବାସ ପଠାଇବା ନିଶ୍ଚିତ ଅନ୍ୟାୟ । ଏଣୁ ରାମ ଜଣେ ଅନ୍ୟାୟୀ ରାଜା ଥିଲେ ।

ଜଣେ ଶାସକ ହିସାବରେ ରାମଚନ୍ଦ୍ରଙ୍କର କର୍ତ୍ତବ୍ୟ ଥିଲା, ସେ ଏକ ସାକ୍ଷୀମାନ ସଭା ଡକାଇ, ସେଥିରେ ତ୍ରିଜଟା, ମନ୍ଦୋଦରୀ, ସରମା, ବିଭୀଷଣ, ହନୁମାନ ଆଦିଙ୍କୁ ସାକ୍ଷୀରଖି ଧୋବା-ଧୋବଣୀଙ୍କୁ ପଚାରିଥାନ୍ତେ – ସେମାନେ ଏଠାରୁ ଦୁଇ ହଜାର ମାଇଲ ଦୂରରୁ କେଉଁ ଦୂରବୀକ୍ଷଣ ଯନ୍ତ୍ର ନେଇ ବସି ଦେଖୁଥିଲେ ଯେ, ସୀତା ଅସତୀ, ତା'ର ପ୍ରମାଣ ଦିଅନ୍ତୁ । ନଚେତ୍ ସେମାନେ ମାନହାନି ଦଣ୍ଡରେ ଦଣ୍ଡିତ ହେବେ । କିନ୍ତୁ ତାହା ସେ କଲେ ନାହିଁ । କାରଣ ସେ ସମୟରେ ଏ ପ୍ରକାର ନିୟମ କାନୁନ ନଥିଲା । ଯଦ୍ୟପି ଥିଲା, ପରିସ୍ଥିତି ଅଲଗା ପ୍ରକାର ହୋଇଯାଇ ଥିଲା । ଯଦ୍ୟପି ଧୋବଣୀ କଥାରେ ରାମଚନ୍ଦ୍ର ସୀତାଙ୍କୁ ବନବାସ ପଠାଇଥିଲେ ବୋଲି ନଗରରେ ପ୍ରଚାରିତ ହୋଇଥିଲା, ତଥାପି ସୀତାଙ୍କ ଇଚ୍ଛାନୁସାରେ ରାଷ୍ଟ୍ରପିତା ବାଲ୍ମୀକିଙ୍କ ଆଶ୍ରମରେ ରହିବା ପାଇଁ ସେ ଚିନ୍ତା କରିଥିଲେ । ରାଜପ୍ରାସାଦରେ ବାତାବରଣ ସ୍ୱାଭାବିକ ଭାବରେ ଦୂଷିତ ଥାଏ । ଅଯୋଧ୍ୟା ପରି ଜନବହୁଳର ବାତାବରଣ ମଧ୍ୟ ରାଜସିକ ଥିଲା । ଏହା ତାଙ୍କ ଭାବି ସନ୍ତାନଙ୍କ ଉପରେ କୁପ୍ରଭାବ ପକାଇ ପାରେ ବୋଲି ରାମଚନ୍ଦ୍ର ଭାବୁଥିଲେ ।

ଅନ୍ୟ ଏକ କାରଣ ଥିଲେ ଭରତ ! ରାମଚନ୍ଦ୍ର ଚାହୁଁଥିଲେ, ଯୁବରାଜ ଭରତଙ୍କ ପରେ ତାଙ୍କ ପୁତ୍ର ରାଜ୍ୟ ଲାଭ କରୁ । ରାମଚନ୍ଦ୍ର ଆଶଙ୍କା କରୁଥିଲେ ଯେ ଭବିଷ୍ୟତରେ ତାଙ୍କ ପୁତ୍ର ରାଜ୍ୟ ପାଇଁ ଭରତଙ୍କ ପୁତ୍ର ସହ କଳହ କରିପାରେ ।

ନୈୟଷ୍ଟ ପୂତ୍ରର ସ୍ୱତ ସ୍ୱଭାବରେ ଏ ପ୍ରଶ୍ନ ଉଠିବ । ଅସମ୍ଭବ ନୁହେଁ । ସେହେତୁ ଲବ, କୁଶଙ୍କୁ ରାଜପୁତ୍ର ବୋଲି କୁହାଯାଉ ନଥିଲା । ରାମଚନ୍ଦ୍ର ଲବ, କୁଶଙ୍କୁ ଋଷି ତାଙ୍କରେ ଗଢ଼ିବାକୁ ଚାହୁଁଥିଲେ । ବନବାସ ପଠାଇବା ପୂର୍ବରୁ ବନବାସର ସମସ୍ତ ଆୟୋଜନ ରାମ ଓ ସୀତାଙ୍କ ମଧ୍ୟରେ ସ୍ଥିର ହୋଇ ସାରିଥିଲା । ବନବାସ ପୂର୍ବରୁ ପରିସ୍ଥିତି କ'ଣ ଥିଲା, ତାହା ବାଲ୍ମୀକିଙ୍କ ଭାଷାରେ :

ଅବ୍ରବୀଚ୍ଚ ବରାରୋହାଂ ସୀତାଂ ସୁରସୁତୋପମାମ୍ ।
ଅପତ୍ୟଲାଭୋ ବୈଦେହି ତ୍ୱୟ୍ୟୟଂ ସମୁପସ୍ଥିତଃ ॥
କିମିଚ୍ଛସି ବରାରୋହେ କାମଃ କିଂ କ୍ରିୟତାଂ ତବ ।
ସ୍ମିତଂ କୃତ୍ୱା ତୁ ବୈଦେହୀ ରାମଂ ବାକ୍ୟମଥାବ୍ରବୀତ୍ ॥
ତପୋବନାନି ପୁଣ୍ୟାନି ଦ୍ରଷ୍ଟୁମିଚ୍ଛାମି ରାଘବ ।
ଗଙ୍ଗାତୀରୋପବିଷ୍ଟାନାମୃଷୀଣାମୁଗ୍ରତେଜସାମ୍ ॥
ଫଲମୂଲାଶିନାଂ ଦେବ ପାଦମୂଲେଷୁ ବର୍ତ୍ତିତୁମ୍ ।
ଏଷ ମେ ପରମଃ କାମୋ ଯନ୍ମୂଫଲ ଭୋଜିତାମ୍ ॥
ଅପ୍ୟେକରାତ୍ରଂ କାକୁତ୍ସ୍ଥ ନିବସେୟଂ ତପୋବନେ ।
ତଥେତି ଚ ପ୍ରତିଜ୍ଞାତଂ ରାମେଣାକ୍ଲିଷ୍ଟକର୍ମଣା ।
ବିସ୍ରବ୍ଧା ଭବବୈଦେହି ଶ୍ୱୋ ଗମିଷ୍ୟସ୍ୟସଂଶୟମ୍ ॥

ଅର୍ଥାତ୍ : — ସେଦିନ ରାମଚନ୍ଦ୍ର ଜାନକୀଙ୍କ ଗର୍ଭର ମଙ୍ଗଳମୟ ଚିହ୍ନଯୁକ୍ତ ଥିବା ଦେଖି ପ୍ରସନ୍ନତା ସହ ଦେବକନ୍ୟାତୁଲ୍ୟା ସୀତାଙ୍କୁ କହିଲେ — ହେ ବୈଦେହୀ ! ଏହା ତୁମର ପୁତ୍ର ପ୍ରାପ୍ତି ସମୟ । ପ୍ରିୟେ, କୁହ ତୁମର କି ଅଭିଳାଷ ଅଛି । ମୁଁ ତାହା ପୂର୍ଣ୍ଣ କରିବି । ସୀତା ସ୍ମିତହାସ୍ୟ ସହ କହିଲେ — ରଘୁନନ୍ଦନ, ଗଙ୍ଗା ତଟସ୍ଥିତ ପବିତ୍ର ଆଶ୍ରମ ଦେଖିବାକୁ ମୋର ଇଚ୍ଛା ଅଛି । ପୁଣ୍ୟକର୍ମା ରାମ ତାଙ୍କୁ ସ୍ୱୀକୃତି ଦେଲେ ଓ କହିଲେ — ବୈଦେହୀ ଅଚିନ୍ତାରେ ରୁହ । କାଲି ତୁମେ ନିଶ୍ଚୟ ସେଠାକୁ ଯାଇ ପାରିବ ।

ଲୌକିକ ସ୍ତରରେ ବା ବୌଦ୍ଧିକ ସ୍ତରରେ ରାମାୟଣ ଉପରେ ଅନେକ ପ୍ରକାର ଚିନ୍ତା ଉଦ୍ଭାଟ ହେବାର କାରଣ ଥାଇ ପାରେ । ମାତ୍ର ସତ୍ୟକଥା ହେଲା — ମୂଳ ବାଲ୍ମୀକୀୟ ରାମାୟଣକୁ ଏକମାତ୍ର ଆଧାର ମାନି ଚାଲୁ ନଥିବାରୁ ବିଭିନ୍ନ ଶାସ୍ତ୍ରୀୟ ସମସ୍ୟା ଆମ ମନକୁ ଘେରିଯାଏ । ଏହାଅର୍ଥ ଅନ୍ୟାନ୍ୟ ଭାଷାରେ ଓ କାଳରେ ରଚିତ ରାମାୟଣ ନିରର୍ଥକ ବୋଲି ମୁଁ କହୁନାହିଁ । କିନ୍ତୁ ରାମାୟଣ ହେଉ ବା ରାମ ରଚିତ ମାନସ ହେଉ, ସବୁଥିରେ ପର୍ଯ୍ୟାପ୍ତ କାବ୍ୟାତ୍ମକ ଅଭିବ୍ୟକ୍ତି ଓ କଳ୍ପନା ରହିଛି । ଜଣେ ବାଲ୍ମୀକୀ ଏଥିରୁ ବ୍ୟତିକ୍ରମ ନଥିଲେ । ତେବେ ପ୍ରଥମେ ସେ ଜଣେ କବି ତା' ପରେ

ଐତିହାସିକ । ସେ ଦୃଷ୍ଟିରୁ ତାଙ୍କ କାଳ୍ପନିକ ବର୍ଣ୍ଣନାଗୁଡ଼ିକୁ ଆଲଙ୍କାରିକ ଭାବରେ ଗ୍ରହଣ କଲେ, ଅନେକ ସମସ୍ୟା ଦୂର ହୋଇପାରିବ । ଅନ୍ୟ ପକ୍ଷରେ ବାଲ୍ମୀକୀଙ୍କୁ ଐତିହାସିକ ଦୃଷ୍ଟିରୁ ଓ ଅନ୍ୟାନ୍ୟ ମାନଙ୍କୁ କବିଭାବରେ ବିଚାରକୁ ନେଲେ ଆଲୋଚନାଟି ନିଃସ୍ପକ୍ଷ ହୋଇ ପାରିବ । କୌଣସି ପ୍ରକାର ବିରୋଧ ମତ ସମ୍ପର୍କରେ ଉତ୍‌କ୍ଷିପ୍ତ ହେବାର କିଛି ନାହିଁ । ମନ୍ଥରା ଓ ଧୋବଣୀଙ୍କ ପରି ପ୍ରଜା ମଧ୍ୟ ସମାଜରେ ରହିବେ । ତେବେ ସେମାନଙ୍କ ସମାଲୋଚନା ବା ବ୍ୟଙ୍ଗ ସହ୍ୟକରିବାକୁ ହେଲେ, ଏ ସମାଜ ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ରଙ୍କ ପରି ଶାନ୍ତ ଓ ଧୈର୍ଯ୍ୟବାନ ହେବା ଉଚିତ୍ ।



# ଭାରତ ଇତିହାସରେ ମହାଭାରତ : ଦୁଇଟି ଦୃଷ୍ଟିଭଙ୍ଗୀ

ମହାଭାରତ କୃଷ୍ଣ ଦ୍ୱୈପାୟନ ବେଦବ୍ୟାସଙ୍କ ମାନସପୁତ୍ରୀ ନା ଦ୍ୱାପର ଯୁଗର ଇତିହାସ, ଏ ସମ୍ପର୍କରେ ଅଧୁନାତନ ବୌଦ୍ଧିକ ମାନସ ସନ୍ଦିଗ୍ଧମନା । ଗୋଟିଏ ଦୃଷ୍ଟିରେ ଏହା କେବଳ ମାତ୍ର କାବ୍ୟ ତ ଆଉ ଏକ ଦୃଷ୍ଟିରେ ଏହା ଇତିହାସ । ଗାନ୍ଧିଙ୍କ ଦୃଷ୍ଟିରେ ମହାଭାରତ କେବେ ମଧ୍ୟ ଐତିହାସିକ ଗ୍ରନ୍ଥ ହୋଇ ନ ପାରେ । ସନାତନ ସତ୍ୟର ଆଳଙ୍କାରିକ କାବ୍ୟରୂପରେ ସେ ମହାଭାରତକୁ ଦେଖନ୍ତି । ବ୍ରହ୍ମାଙ୍କୁ ବ୍ୟାସ କହନ୍ତି, "ମୁଁ ଏକ କାବ୍ୟ ରଚନା କରିଛି ।" ଏହାର ଉତ୍ତରରେ ବ୍ରହ୍ମା କହନ୍ତି, "ଯେହେତୁ ତୁମେ ସ୍ୱୟଂ ଏହାକୁ କାବ୍ୟ କହୁଛ ତେଣୁ ଏହାକୁ କାବ୍ୟ ହିଁ କୁହାଯିବ ।"[1]

କେବଳ କାବ୍ୟ ନୁହେଁ । ବ୍ୟାସ ଏହାକୁ ଧର୍ମଶାସ୍ତ୍ର, ଅର୍ଥଶାସ୍ତ୍ର, ମୋକ୍ଷଶାସ୍ତ୍ର ଏବଂ କାମଶାସ୍ତ୍ର ବୋଲି କହନ୍ତି ।[2] ପୁନଶ୍ଚ ମହାଭାରତର ପ୍ରତ୍ୟେକ ଅଧ୍ୟାୟ ଶେଷରେ ଏହାକୁ "ସହିତା"[3] ବୋଲି କୁହାଯାଇଛି । ସହିତା ଅର୍ଥ ସଂଗ୍ରହ । ଏଥିରୁ ଏହା ସ୍ପଷ୍ଟ ହୋଇଯାଏ ଯେ ଏହା ପୂର୍ବ ପ୍ରଚଳିତ କଥାର ସଂଗ୍ରହ ମାତ୍ର । ତେଣୁ ବ୍ୟାସ ଏହାର କେବଳ ରଚୟିତା ନୁହନ୍ତି ବରଂ ସଂଗ୍ରାହକ ଅଟନ୍ତି ।

ଇତିହାସଠାରୁ ବିଚ୍ଛିନ୍ନ ହେଲାଭଳି ଏଥିରେ ରହିଛି ଅନେକ ଉଦାହରଣ । ଯେପରି ମହାରାଜା ଶଶବିନ୍ଦୁଙ୍କ ଏକ ଲକ୍ଷ ରାଣୀ ହେବା, ପୁନଶ୍ଚ ପ୍ରତ୍ୟେକ ରାଣୀଙ୍କ ଏକ ହଜାର ପୁତ୍ର ହେବା, ଏରୂପେ ସର୍ବମୋଟ ରାଜାଙ୍କ ଦଶ କୋଟି ପୁତ୍ର ଜନ୍ମ ହେବା, ରାଜା ଏକ ଯଜ୍ଞ କରି ପ୍ରତ୍ୟେକ ପୁତ୍ରଙ୍କୁ ପ୍ରତ୍ୟେକ ବ୍ରାହ୍ମଣଙ୍କୁ ଦାନଦେବା ଏବଂ ପ୍ରତ୍ୟେକ ପୁତ୍ରଙ୍କସହ ଏକ ଶହ ରଥ ଏବଂ ଏକ ଶହ ହାତୀ ଏବଂ ପ୍ରତ୍ୟେକ ପୁତ୍ରଙ୍କସହ ଶହେ ଯୁବତୀଙ୍କୁ ଦାନ ଦେବା, ଏହିରୂପେ ସର୍ବମୋଟ ଦଶ ଅର୍ବ ରଥ ଓ ଦଶ ଅର୍ବ ହାତୀସହ ଦଶ ଅର୍ବ ଯୁବତୀ ଦାନ କରିବା ଇତ୍ୟାଦି[4] କଣ ବିଶ୍ୱାସ-ଯୋଗ୍ୟ ?

ତାଙ୍କ ପରି ଆଉ ଜଣେ ରାଜା ପ୍ରତର୍ଦ୍ଦନ ଏକଲକ୍ଷ ଷାଠିଏ ହଜାର ଗାଈ, ଦଶ ହଜାର ଘୋଡ଼ା ଏବଂ ଏକ ଲକ୍ଷ ସ୍ୱର୍ଣ୍ଣମୁଦ୍ରା ଶହେ ବର୍ଷ ଯାଏଁ ସବୁ ଦାନ

ଭିଅନ୍ତି[5] ତେବେ ସେ ଏକ ଲକ୍ଷ ଷାଠିଏ ହଜାରକୁ ଦିନ ଶବ୍ଦ ପର୍ଯ୍ୟାୟରେ ଗୁଣି ପୁନଶ୍ଚ ଶତେରେ ଗୁଣିଲେ ଯାହା ଗୁଣନ ଫଳ ହେବ ସେତିକି ଗାଈ ଏମାନେ ଦାନ କରୁଥିଲେ । ସେହିପରି ୧୦୦୦ × ୩୬୫ × ୧୦୦ = ୩୬୫୦୦୦୦୦୦ ଘୋଡ଼ା ତଥା ୧୦୦୦୦୦ × ୩୬୫ × ୧୦୦ = ୩୬୫୦୦୦୦୦୦୦ ସ୍ୱର୍ଣ୍ଣମୁଦ୍ରା ଦାନ କରୁଥିଲେ । ଏହା ବିଶ୍ୱାସ କରି ହୁଏ ନାହିଁ ।

ମହାଭାରତ ଯୁଦ୍ଧରେ ଯୋଗ ଦେଇଥିବା ସେନା ସଂଖ୍ୟା ଆଉ ଏକ ଅବିଶ୍ୱାସନୀୟ ବିଷୟ ଅଟେ । କୋହାଯାଇଛି ଯୁଦ୍ଧରେ ଅଠର ଅକ୍ଷୌହିଣୀ ସୈନ୍ୟ ଯୋଗଦେଇଥିଲେ । ଏକ ଅକ୍ଷୌହିଣୀରେ ୨୧୮୭୦ ରଥ, ୨୧୮୭୦ ହାତୀ, ୬୫୬୧୦ ଅଶ୍ୱାରୋହୀ ଏବଂ ୧୦୯୩୫୦ ପଦାତିକ ରହନ୍ତି । ଏହାକୁ ୧୮ରେ ଗୁଣିଲେ ପ୍ରାୟତଃ ୪ ଲକ୍ଷ ରଥ, ୪ ଲକ୍ଷ ହାତୀ, ୧୨ ଲକ୍ଷ ଅଶ୍ୱାରୋହୀ ଏବଂ ୨୦ ଲକ୍ଷ ପଦାତିକ ହୋଇଯାନ୍ତି । କୁରୁକ୍ଷେତ୍ରର କ୍ଷେତ୍ରଫଳ ଦେଖିଲେ ଏ ସଂଖ୍ୟା ପ୍ରତି ଅବିଶ୍ୱାସ ଆସିବା ସ୍ୱାଭାବିକ ।

ପାଣ୍ଡବଙ୍କ ପ୍ରଧାନ ସେନାପତି ଧୃଷ୍ଟଦ୍ୟୁମ୍ନ ଏବଂ ମହାଭାରତ ନାୟିକା ଦ୍ରୌପଦୀଙ୍କ ଯଜ୍ଞକୁଣ୍ଡରୁ[6] ବ୍ୟାସଙ୍କ ମାତା ସତ୍ୟବତୀଙ୍କ ଉତ୍ପତ୍ତି ଏକ ମତ୍ସ୍ୟ ଉଦରରୁ, ଋଷ୍ୟଶୃଙ୍ଗ ଏକ ମୃଗୀ ଉଦରରୁ[7] ଦ୍ରୋଣାଚାର୍ଯ୍ୟ ଏକ ଯଜ୍ଞ କଳସରୁ ଜାତ ହେବା[8] କୌଣସି ଚିନ୍ତାଶୀଳ ବ୍ୟକ୍ତି ପାଇଁ ଅବିଶ୍ୱାସର କାରଣ ହେବାରେ ଆଶ୍ଚର୍ଯ୍ୟ କିଛି ନାହିଁ ।

ଭାରତୀୟମାନଙ୍କ ଉପରେ ସବୁଠାରୁ ବଡ଼ ଆକ୍ଷେପ ହେଉଛି ସେମାନେ ମୌଳିକତାପୂର୍ବକ କେବଳ ମଧ୍ୟ ଇତିହାସ ଲେଖିବା ପାଇଁ ଧ୍ୟାନ ଦେଇ ନାହାନ୍ତି । ଅଲ୍‌ବରୁନୀ ମନ୍ତବ୍ୟ କରୁଥିଲେ ଯେବେ ମଧ୍ୟ ହିନ୍ଦୁମାନଙ୍କୁ ଇତିହାସ ସମ୍ପର୍କରେ କିଛି ପଚରାଯାଏ ସେମାନେ କୌଣସି ଏକ କାହାଣୀ ଶୁଣେଇବା ଆରମ୍ଭ କରି ଦିଅନ୍ତି । ସମସ୍ତେ କହିବାକୁ ଚାହାନ୍ତି ଯେ ହିନ୍ଦୁମାନେ ଇତିହାସ ଲେଖିବା ଜାଣି ନଥିଲେ ଏଣୁ ରାମାୟଣ ବା ମହାଭାରତକୁ କେବେ ମଧ୍ୟ ଇତିହାସ କୁହାଯାଇ ପାରିବ ନାହିଁ । ଏହା ହିନ୍ଦୁମାନଙ୍କର ମହାକାବ୍ୟ, କବି ମାନସର କଳ୍ପନା ଅଟେ ।

ଏହା ଯଦି ସମ୍ପୂର୍ଣ୍ଣ କାଳ୍ପନିକ ଗ୍ରନ୍ଥ ହୋଇଥାନ୍ତା ତେବେ ଏହାକୁ "ଜୟ" ନାମକ ଇତିହାସ ବୋଲି ବ୍ୟାସ କହି ନ ଥାନ୍ତେ ।[9] ହିନ୍ଦୁମାନେ ଯଦି ଇତିହାସ ଲେଖିବା ଜାଣି ନ ଥାନ୍ତେ ତେବେ ଉପନିଷଦରେ ଇତିହାସ ଏବଂ ପୁରାଣକୁ ପଞ୍ଚମବେଦ ବୋଲି କୁହାଯାଇ ନ ଥାନ୍ତା ।[10]

ସଂଖ୍ୟାଗତ ବା ବିଷୟଗତ ଅତିଶୟୋକ୍ତିର ଉଦାହରଣ ଦ୍ୱାରା ମହାଭାରତର ଐତିହାସିକତ୍ୱକୁ ଖଣ୍ଡନ କରାଯାଇ ନ ପାରେ । ଏଠି ଆଲୋଚକ ଭୁଲିଯିବା ଅନୁଚିତ

ଯେ ବ୍ୟାସ ଭକ୍ତ ଥିବାରୁ ଇତିହାସକୁ ଦେଇଛନ୍ତି କାବ୍ୟରୂପ । ବ୍ରହ୍ମା ଏକଥା ଜାଣିଥିଲେ ଯେ ବ୍ୟାସ ଇତିହାସ ରଚନା କରିଛନ୍ତି ମାତ୍ର ବ୍ୟାସଙ୍କ ଭକ୍ତ ପ୍ରତିଭାକୁ ସମ୍ମାନ ଦେବାକୁ ଯାଇ ବ୍ରହ୍ମା "ଏହାକୁ କାବ୍ୟ ହିଁ କୁହାଯିବ" ବୋଲି କହିଲେ ।

ମହାଭାରତ ଅଧ୍ୟୟନ କଲେ ଜଣାପଡ଼େ ଏହା ଚନ୍ଦ୍ରବଂଶୀ ଦୁଇ ପରିବାରର ଯୁଦ୍ଧ ବୃତ୍ତାନ୍ତ ଅଟେ । କେବଳ ଘଟଣାଗୁଡ଼ିକର ସମାହାରତା ଏଥିରେ ନାହିଁ ବରଂ ଘଟଣା ସହିତ ପରିଣାମର ଓ କାର୍ଯ୍ୟକାରଣ ସମ୍ପର୍କ ମଧ୍ୟ ଏଥିରେ କାବ୍ୟାଧାରରେ ରଚିତ ହୋଇଛି । ଏଥିପାଇଁ ଅନ୍ୟ ପୁରାଣ ସଦୃଶ ଏହା ଇତିହାସର ସୀମା ଲଙ୍ଘନ କରିବା ପରି ମନେ ହୁଏ ।

ଇତିହାସ କହିଲେ ଘଟଣା ବା କାଳର ଗତିବିଧି ହିଁ ବୁଝାଯାଏ । ଯେଉଁ-ଥିରେ ଘଟଣା ସହିତ ଏହାର ପରିଣାମ ଉଲ୍ଲେଖ ଥାଏ ତାହା ଇତିହାସଠାରୁ ମଧ୍ୟ ଅଧିକ ମନାଯିବା ଉଚିତ୍ । ଏ କ୍ଷେତ୍ରରେ ଇତିହାସ ସହିତ କାଳ୍ପନିକ ପ୍ରସଙ୍ଗଗୁଡ଼ିକର ଉଲ୍ଲେଖ ତାତ୍ପର୍ଯ୍ୟପୂର୍ଣ୍ଣ । କଳ୍ପନା ଯେ ଏକାନ୍ତ ମିଥ୍ୟା ତାହା କିପରି କୁହାଯାଇ ପାରିବ ? ଭାରତୀୟ ଦର୍ଶନ ଅନୁସାରେ ଅନୁମାନ ବା କଳ୍ପନାକୁ ଆଧାର କରି ଆମେ ସତ୍ୟରେ ପହଞ୍ଚି ପାରୁଁ । ଯେପରି ଧୂମକୁ ଦେଖି ଆମେ ଅଗ୍ନିର କଳ୍ପନା କରିନେଉଁ । ଅଗ୍ନି ବିନା ଧୂମର କଳ୍ପନା ବା କିପରି କରାଯାଇ ପାରିବ ? ଅନୁମାନ ବା କଳ୍ପନା ସତ୍ୟାଶ୍ରୟୀ ହେଲେ ଯେପରି ସତ୍ୟର ରୂପ ଧାରଣ କରିନିଏ ଏବଂ ମିଥ୍ୟାଶ୍ରୟୀ ହେଲେ ମିଥ୍ୟାର ସେପରି ରୂପ ଧାରଣ କରିନିଏ । ବିନା ଅଗ୍ନିରେ ଧୂମର କଳ୍ପନା କରାଯାଇ ନ ପାରେ । ଏହା ଅର୍ଥ ନୁହେଁ ଧୂମ ବିନା ଅଗ୍ନି ରହି ପାରିବ ନାହିଁ । ଏ ଦୃଷ୍ଟିରୁ ଧୂମ ବିନା ଅଗ୍ନିର କଳ୍ପନା ଗୋଟିଏ କ୍ଷେତ୍ରରେ ସତ୍ୟ ହେଲେ, ଅଗ୍ନି ସହ ଧୂମର କଳ୍ପନା ଆଉ ଗୋଟିଏ କ୍ଷେତ୍ରରେ ମିଥ୍ୟା ହୋଇପାରେ । ମହାଭାରତରେ ଇତିହାସର ବ୍ୟାଖ୍ୟା ଏପ୍ରକାର ଏକ ଦାର୍ଶନିକ ଭିତ୍ତିଭୂମିରୁ ହିଁ ହୋଇଛି । ଏଥିରେ ଥିବା ଅତି ଆଶ୍ଚର୍ଯ୍ୟ ଓ ଅବିଶ୍ୱାସ୍ୟ କଥନ ଓ ସଂଖ୍ୟାଗତ ଅତିଶୟୋକ୍ତି ଆଧାରରୁ ସବୁ ମନେକରି ତତ୍କାଳୀନ ସାମାଜିକ, ଧାର୍ମିକ ଓ ଐତିହାସିକ ମୂଲ୍ୟବୋଧକୁ "କିଛି ନୁହେଁ" ବୋଲି ଦେଖାଇବା ଉଚିତ୍ ହେବ ନାହିଁ ।

ଆସନ୍ତୁ ଏଥର କୁରୁକ୍ଷେତ୍ର କଥା ବିଚାର କରିବା । ଆଜିର କୁରୁକ୍ଷେତ୍ର ଦେଖି ମହାଭାରତର କୁରୁକ୍ଷେତ୍ରକୁ ଅନୁମାନ କରାଯାଇ ପାରିବ ନାହିଁ । ଆଜିର କୁରୁକ୍ଷେତ୍ର ଗୋଟିଏ ରେଳଷ୍ଟେସନଯୁକ୍ତ ଛୋଟ ସ୍ଥାନ ସହିତ ହରିୟାଣାର ଏକ ଜିଲ୍ଲା ହୋଇ ରହିଯାଇଛି । ଦିନେ ଏହା ଏକ ବିଶାଳ ଭୂମିଖଣ୍ଡ ଥିଲା । ଏହା ସରସ୍ୱତୀର

ଦକ୍ଷିଣ ଏବଂ ଦୃଷଦ୍ୱତୀର ଉତ୍ତର ଖଣ୍ଡକୁ କୁରୁକ୍ଷେତ୍ର କୁହାଯାଉଥିଲା । [11] ଏହା ୨୦ ଯୋଜନବ୍ୟାପୀ ବା ପ୍ରାୟତଃ ୧୬୦ ମାଇଲବ୍ୟାପୀ ଥିଲା । ଏଣୁ ଜିନ୍ଦ ଏବଂ କରନଲ ମଧ୍ୟଭାଗ ଭୂମି ହିଁ କୁରୁକ୍ଷେତ୍ର ନାମରେ ଉଦନେ ଖ୍ୟାତ ଥିଲା । [12] ଆର୍କୋଲଜିକାଲ ସର୍ଭେ ରିପୋର୍ଟ ଅନୁସାରେ କୁରୁକ୍ଷେତ୍ରର ସୀମା ଅମ୍ବାଲାର ଦକ୍ଷିଣ ଆଡ଼କୁ ୪୦ ମାଇଲ ପର୍ଯ୍ୟନ୍ତ ବିସ୍ତୃତ ଥିଲା । [13] ପ୍ରତ୍ନତତ୍ତ୍ୱ ଖନନ ପରେ ଏ ସମସ୍ତ ଜଣାପଡ଼ିଛି ଯେ ବିସ୍ତୃତ କୁରୁକ୍ଷେତ୍ରର ବହୁ ପ୍ରାଚୀନ ଐତିହ୍ୟ ମଧ୍ୟ ଥିଲା । [14] ଏଣୁ କିପରି କୁହାଯାଇ ପାରିବ ଯେ ଏହା ଖୁବ୍ କ୍ଷୁଦ୍ର ଭୂମି ଖଣ୍ଡ ଥିଲା ଏବଂ ଅଠର ଅକ୍ଷୌହିଣୀ ସୈନ୍ୟଙ୍କ ପାଇଁ ଏହା ପର୍ଯ୍ୟାପ୍ତ ନ ଥିଲା ବୋଲି ? ଏଠି ଆଉ ଗୋଟିଏ କଥା ମନେ ରଖିବା ଉଚିତ୍ ଯେ ଯୁଦ୍ଧରେ କେଉଁ ରଥରେ କେତୋଟି ଘୋଡ଼ା ଲାଗୁଥିଲେ, ଯେପରି ଅର୍ଜୁନଙ୍କ ରଥରେ କେଉଁ ରଥର ଦୁଇପାଖରେ ଦୁଇ ଜଣ ଯୋଦ୍ଧା ମଧ୍ୟ ଯୁଦ୍ଧ କରୁଥିଲେ । ରଥ, ଘୋଡ଼ା, ହାତୀ ଓ ସୈନ୍ୟଙ୍କୁ ଅଲଗା ଅଲଗା ବିଚାର କରିବାର କୌଣସି ଅର୍ଥ ହୁଏନା ।

ଅନ୍ୟାନ୍ୟ ଗବେଷକଙ୍କସହ ମୁଁ ଏକମତ ଯେ ଗୋଟିଏ କଥାରେ ଶତସାହାସ୍ରୀ ମହାଭାରତ ବ୍ୟାସ, ବୈଶଂପାୟନ ଏବଂ ଉଗ୍ରଶ୍ରବା ସୌତିଙ୍କ ଦ୍ୱାରା ଲିଖିତ ଓ ସମ୍ପାଦିତ ହୋଇଥିଲା । ମୂଳ ମହାଭାରତ ୮୮୦୦ ଶ୍ଲୋକଯୁକ୍ତ "ଜୟ" ନାମରେ ଖ୍ୟାତ ଥିଲା । [15] ଏହାପରେ ବୈଶଂପାୟନ ଏଥିରେ ୧୫୨୦୦ ଶ୍ଲୋକ ଯୋଗ କରି ଏହାକୁ ୨୪୦୦୦ ଶ୍ଲୋକଯୁକ୍ତ "ଭାରତ ସଂହିତା" କରି ଦେଲେ । [16] ପରିଶେଷରେ ଉଗ୍ରଶ୍ରବା ସୌତି ଏହାକୁ ୧୬୪୪ ଶ୍ଲୋକ ଦ୍ୱାରା ମଣ୍ଡିତ କରି ଏହି ବିଶାଳକାୟ ଗ୍ରନ୍ଥଟିର ନାମ 'ମହାଭାରତ' ରଖି ଦେଲେ । [17] ବ୍ୟାସଙ୍କ ଶିଷ୍ୟ ସଂପ୍ରଦାୟ ଅନ୍ତର୍ଗତ ହୋଇଥିବାରୁ ବୈଶଂପାୟନ ଓ ଉଗ୍ରଶ୍ରବା ସୌତି ବ୍ୟାସଙ୍କ ଲିଖିତ ଐତିହାସିକ ତତ୍ତ୍ୱର ଯେ କିଛି ବ୍ୟତିକ୍ରମ କରିଥିବେ ତାହା ଆଶା କରାଯାଇ ନ ପାରେ । ମାତ୍ର ମେଗାସ୍ଥିନିସ୍ ତାଙ୍କ "ଇଣ୍ଡିକା" ନାମକ ଗ୍ରନ୍ଥରେ ୨୦ ବା ୨୪ ହଜାର ଶ୍ଲୋକାତ୍ମକ ଏକ ମହାଭାରତ ଲେଖିଥିବା କଥା ଯାହା କହନ୍ତି [18] ତାହା ବିଶ୍ୱାସ ଯୋଗ୍ୟ ନୁହେଁ । ହୋଇପାରେ ସେ ଏକ ସଂକ୍ଷିପ୍ତ ମହାଭାରତ ଦେଖିଥିବେ ଯେପରି ଗୀତା ମହାଭାରତର ଅଂଶ ବିଶେଷ ହେଲେ ମଧ୍ୟ ଏହାକୁ ଏକ ସ୍ୱତନ୍ତ୍ର ଗ୍ରନ୍ଥ ଭାବରେ ବର୍ତ୍ତମାନ ଛପାଯାଉଛି ।

ଶ୍ଲୋକ ସଂଖ୍ୟାର କ୍ରମବର୍ଦ୍ଧିଷ୍ଣୁ ରୂପ ଦେଖି କେତେକଙ୍କ ସଂଶୟ ଜାତ ହୁଏ । ଇତିହାସର ଗୋଟିଏ ଘଟଣାକୁ ଯେତେ ଜଣ ଯେତେ ବଡ଼ ଗ୍ରନ୍ଥରେ ମଧ୍ୟ ଲେଖି ପାରନ୍ତି । ଏହା ଦ୍ୱାରା ଇତିହାସ, ଘଟଣାର ସୀମାରୁ ପାର ହୋଇ

ବିଶ୍ଳେଷଣ ଓ ବର୍ଣ୍ଣନାର ସ୍ତରକୁ ଚାଲି ଆସେ । ମହାଭାରତରେ ସେଇଆହିଁ ହୋଇଛି । ଯଦିଓ ବ୍ୟାସ ମହାଭାରତକୁ କାବ୍ୟ, ଧର୍ମଶାସ୍ତ୍ର, ଅର୍ଥଶାସ୍ତ୍ର, ମୋକ୍ଷଶାସ୍ତ୍ର ଏବଂ କାମଶାସ୍ତ୍ର ବୋଲି କହିଛନ୍ତି ଏହାକୁ ଆଉ ଏକ ସ୍ଥାନରେ ଇତିହାସ [19] ବୋଲି ମଧ୍ୟ କହିବାକୁ ଭୁଲି ନାହାନ୍ତି । ପରଂପରାକ୍ରମେ ରାମାୟଣ ଓ ମହାଭାରତକୁ ଇତିହାସ ବୋଲି ହିନ୍ଦୁମାନେ ମାନି ଆସିଛନ୍ତି । ଇତିହାସର ସ୍ରୋତ ପରଂପରାରୁ ମଧ୍ୟ ପ୍ରାପ୍ତ ହୋଇଥାଏ ।

ପାଶ୍ଚାତ୍ୟ ଐତିହାସିକଗଣ ଭାରତ ଇତିହାସର ରାମାୟଣ ଓ ମହାଭାରତ ପରେ ସ୍ୱର୍ଣ୍ଣଯୁଗକୁ "ଡାର୍କ ଏଜ୍" ବା "ଅନ୍ଧକାର ଯୁଗ" କହିବା କେବଳ ଅଜ୍ଞତାର କାରଣ ନୁହେଁ ବରଂ ଏପ୍ରକାର ନାହିଁ ନ ଥିବା ଯୁଗ ସମ୍ପର୍କରେ ଅବବୋଧର ଅଭାବ । ଭାରତ ଇତିହାସ ଅଧ୍ୟୟନ କରିବାକୁ ହେଲେ ଅନ୍ୟୂନ ତିନୋଟି ବଂଶ ସମ୍ପର୍କରେ ଧାରଣା ରଖିବା ଏକାନ୍ତ ଆବଶ୍ୟକ । ସେମାନେ ହେଲେ—

୧ । ମନୁ ବୈବସ୍ୱତଙ୍କ ସୂର୍ଯ୍ୟବଂଶ

୨ । ସୋମପୁତ୍ର ପୁରୁରବସ୍ ଏଲଙ୍କ ସୋମବଂଶ

୩ । ସ୍ୱୟଂଭୁବ ମନୁଙ୍କ ସ୍ୱୟଂଭୁବ ବଂଶ

ପୁନଶ୍ଚ ସୂର୍ଯ୍ୟବଂଶ, ସମ୍ଭୁତ ଇକ୍ଷାକୁବଂଶ, ନମିବଂଶ, ଦିଷ୍ଟବଂଶ, ଶର୍ଯ୍ୟାତିବଂଶ, ନୃଗବଂଶ, ଏବଂ ନାରଷ୍ୟତ ବଂଶର ଇତିହାସ ଅନ୍ୱେଷଣ କରିବା ଦରକାର । ସୋମବଂଶର ଇତିହାସ ପୌରବ ଶାଖା, ଯାଦବ ଶାଖା, ଅନୁଶାଖା, ଦ୍ରୁହ୍ୟଶାଖା, ତୁର୍ବସୁଶାଖା ଏବଂ କାଶ୍ୟଶାଖାରୁ ହିଁ ଜାଣି ହେବ । ଏବଂ ସ୍ୱାୟମ୍ଭୁବ ମନୁଙ୍କ ବଂଶାବଳୀ ଉତ୍ତାନପାଦ ବଂଶ, ନାଭିବଂଶ ଓ ପ୍ରିୟବ୍ରତ ବଂଶରୁ ହିଁ ଜ୍ଞାତ ହୋଇ ପାରିବେ । ଏ ଦୃଷ୍ଟିରୁ ସିଦ୍ଧେଶ୍ୱରଶାସ୍ତ୍ରୀ ଚିତ୍ରାବଙ୍କ ସଂକଳିତ "ଭାରତ ବର୍ଷୀୟ ଚରିତକୋଷ" [20] ଏକ ବହୁମୂଲ୍ୟ ତଥ୍ୟପୂର୍ଣ୍ଣ ଗ୍ରନ୍ଥ ଅଟେ । ସଂକ୍ଷିପ୍ତରେ ସୂର୍ଯ୍ୟ ଓ ସୋମବଂଶୀୟ ରାଜାମାନଙ୍କର ଏକ ସୂଚୀ ଏଠି ପ୍ରସ୍ତୁତ କରାଯାଇ ପାରେ :

# ସୂର୍ଯ୍ୟ ଓ ସୋମବଂଶ


ବୈବସ୍ୱତମନୁ
ଇକ୍ଷାକୁ
ନାଭିନେଦିଷ୍ଟ
ଶର୍ଯ୍ୟାତି
ନରିଷ୍ୟନ୍ତ
ନଭଗ
ନୃଗ
ଇଳା
ଆୟୁ
ଅମାବସୁ
ନହୁଷ
କ୍ଷତ୍ରବର୍ଦ୍ଧନ
ଅନେନସ୍


ଯଯାତି
ତୁର୍ବସୁ
ପୁରୁ
ଦ୍ରୁହ୍ୟ
ଯଦୁ
ଅନୁ
ସହସ୍ରଜିତ୍
କ୍ରୋଷ୍ଟୁ
ଅନ୍ଧକ
ଉଶୀନର
ତିତକ୍ଷୁ
ଅଙ୍ଗ
ବଙ୍ଗ
ପୁଣ୍ଡ୍ର
ସୁହ୍ମ
କଳିଙ୍ଗ
ଭରତ
ହସ୍ତିନ
ଅଜମୀଢ଼
ଦ୍ୱିମୀଢ଼
ଋକ୍ଷ
ବୃହଦ୍ବସୁ
ନୀଳ
କୁରୁ
ମାପ
ଦ୍ରୁପଦ
କୌରବ ଏବଂ ପାଣ୍ଡବ
ବାସବ

ମହାଭାରତ ଯୁଦ୍ଧର କାଳ ନିରୂପଣ କରିବାକୁ ଯାଇ ବୈଜ୍ଞାନିକାର ବିଦ୍ୱାନ ଏହାକୁ ଖ୍ରୀ ପୂ ୮୦୦ରୁ ୧୪୦୦ ମଧ୍ୟରେ ଘଟିଥିବା ଅନୁମାନ କରନ୍ତି ।[21] ତେବେ ମହାଭାରତ ଯୁଗରେ ଭାରତର ରୋମ ସାମ୍ରାଜ୍ୟ ସହ ସଂପର୍କ,[22] ଲୌହ ଅସ୍ତ୍ରଶସ୍ତ୍ରର ପ୍ରୟୋଗ ଏବଂ ଦ୍ୱନ୍ଦ୍ୱଯୁଦ୍ଧର ଆଧାର ଉପରେ ଡଃ ସାଙ୍କଳିଆ ପ୍ରମାଣ କରିବାକୁ ଚାହାଁନ୍ତି ଯେ ରାମାୟଣ ଓ ମହାଭାରତ ହୁଏତ ଖ୍ରୀ. ପୂ. ୧୫୦୦ ବର୍ଷଠାରୁ ଅଧିକ ପୁରୁଣା ହୋଇ ନ ଥିବ ।[23] ଖ୍ରୀ. ପୂ. ୧୫୦୦ ବର୍ଷର ବ୍ୟାପାରିକ ସମ୍ପର୍କକୁ ନେଇ ଡଃ ସାଙ୍କଳିଆ ଏହା ସାଟ୍ୟନ୍ତ ଭଲ ପାରିବେ ନାହିଁ ଯେ ସେ ସମୟରେ ରୋମ ସହ ଭାରତର ବ୍ୟାପାର ଚାଲିଥିଲା ଏବଂ ସେଥିରୁ ସ୍ୱର୍ଣ୍ଣମୁଦ୍ରା ଭାରତକୁ ଚାଲି ଆସୁଥିବା ଦେଖି ରୋମ ସିନେଟରେ ଏହାର ବିରୋଧ ହେଲା । ଏ ବିରୋଧର କୌଣସି ପରିଣାମ ନ ହେବା କାରଣରୁ ରୋମ ସ୍ୱର୍ଣ୍ଣମୁଦ୍ରାରେ ସୁନାର ମାତ୍ରା କମ କରିବାକୁ ପଡ଼ିଥିଲା ।[24] ଭାରତର ସାଂସ୍କୃତିକ ସାମ୍ରାଜ୍ୟ ଯେ ଖ୍ରୀ. ପୂ. ହଜାର ହଜାର ବର୍ଷ ପୂର୍ବରୁ ବିଶ୍ୱର ବିଭିନ୍ନ ଦେଶରେ ଥିଲା ତାହା ମାୟା, ଆଜଟେକ୍ ଏବଂ ଇନ୍‌କାମାନଙ୍କ ସଭ୍ୟତାରୁ ବର୍ତ୍ତମାନ ପ୍ରମାଣିତ ହୋଇ ସାରିଲାଣି ।[25] ସେହିପରି ଲୌହ ଶବ୍ଦ ଦେଖି ଏହାକୁ ଲୌହଯୁଗର ବୋଲି କଳନା କପଟ କରାଯାଇ ପାରିବ । ଗୋଟିଏ ଉଦାହରଣ ନିଅନ୍ତୁ । କୌଣସି ଗୋଟିଏ ଶିକାରୀ ବନ୍ଧୁକ ନେଇ ଶିକାର କରିବା ପାଇଁ ଗଲା । ସେଠି ଜଣେ ବନବାସୀ ସହ ତାର ଦେଖା ହେଲା । ବନବାସୀର ପାଖରେ ଦୁଇଟି ପଥର ଥିଲା । ଯାହାକୁ ଘଷି ସେ ନିଆଁ ବାହାର କରୁଥିଲା । ବନବାସୀର ଦୁଇଟି ପଥର ସହ ବନ୍ଧୁକଟିକୁ ଗୋଟିଏ ଜାଗାରେ ରଖିଛନ୍ତି ହଠାତ୍ ଭୂମିକମ୍ପରେ ମାଟିତଳକୁ ଖସିଗଲା । କେତେ ହଜାର ବର୍ଷ ପରେ ପ୍ରତ୍ନତତ୍ତ୍ୱବିତ୍‌ମାନେ ଯେତେବେଳେ ମାଟି ଖୋଳିବେ, ସେମାନେ ନିଆଁ ବାହାର କରୁଥିବା ଦୁଇଟି ପଥର ସହ ବନ୍ଧୁକଟିକୁ ଆବିଷ୍କାର କରିବେ । ଏସବୁ ପ୍ରାଚୀନ ପ୍ରସ୍ତରଯୁଗ କୁହାଯିବ ନା ଲୌହଯୁଗ କୁହାଯିବ ? ଏହି ସମସ୍ୟାକୁ ସାଙ୍କଳିଆ ଚିନ୍ତା କରିନାହାନ୍ତି । ଦ୍ୱନ୍ଦ୍ୱଯୁଦ୍ଧର ମଧ୍ୟ ପ୍ରଚଳନ ମହାଭାରତ ଯୁଗରେ ଥିବାରୁ ସେ ସମୟରେ ଅନ୍ୟ ଯୁଦ୍ଧ ପ୍ରଣାଳୀ ସହ ଯୋଦ୍ଧାମାନେ ଅଭ୍ୟସ୍ତ ନ ଥିଲେ କହିବା ମଧ୍ୟ ଏକ ହଠଧର୍ମୀ ହୋଇପଡ଼ୁଛି ।

ମହାଭାରତ ଯୁଦ୍ଧର କାଳନିରୂପଣ ବହୁ ବିଦ୍ୱାନଙ୍କ ଦ୍ୱାରା କରାଯାଇଥିଲେ ମଧ୍ୟ ଜ୍ୟୋତିର୍ବିଦ ବୃଦ୍ଧଗର୍ଗ ଏବଂ ବରାହମିହିର ଏହି ଯୁଦ୍ଧକୁ ଖ୍ରୀ: ପୂ. ୨୪୪୯ ମାନିଲେ, ବରାହମିହିରଙ୍କ କିଛି ଅନୁଗାମୀ, ଏହାକୁ ଖ୍ରୀ: ପୂ: ୨୬୦୪ ମାନନ୍ତି । ମାଧ ଶ୍ରୀ ମୋଦକ ଗ୍ରହବିଦ୍ୟା ସମ୍ବନ୍ଧୀୟ ସଂକେତଗୁଡ଼ିକର ଆଧାର ଉପରେ ଏହି ଯୁଦ୍ଧକୁ ଖ୍ରୀ:ପୂ ୫୦୨୫ ପ୍ରମାଣ କରନ୍ତି । ବର୍ତ୍ତମାନ ମହାଭାରତ ଯୁଦ୍ଧର ସମୟ ନିମ୍ନ ରୂପେ କୁହାଯାଇ ପାରିବ । ଯୁଦ୍ଧରେ ବିଜୟୀ ହେବା ପରେ ମହାରାଜ

ଯୁଧିଷ୍ଠିର ୩୭ ବର୍ଷ ରାଜ୍ୟ ଶାସନ କଲେ । ରାଜ୍ୟ ଶାସନର ୩୭ ବର୍ଷରେ ଭଗବାନ୍ ଶ୍ରୀକୃଷ୍ଣ ଦେହ ତ୍ୟାଗ କଲେ ଏବଂ ସେହି ବର୍ଷ ପାଣ୍ଡବମାନେ ମହାପ୍ରସ୍ଥାନରେ ଗଲେ । ସେହି ଯୁଗଠାରୁ କଳିଯୁଗ ଆରମ୍ଭ ହେଲା । ଏଣୁ କଳିଯୁଗର ୩୭ ବର୍ଷ ପୂର୍ବରୁ ମହାଭାରତ ଯୁଦ୍ଧ ହୋଇଥିଲା ।[26] କଳିଯୁଗର ଆରମ୍ଭ ଖ୍ରୀ: ପୂ ୩୧୦୨ ବର୍ଷ ପୂର୍ବରୁ ହେଲା । ଏଥିରେ ୩୭ ବର୍ଷ ଯୋଡ଼ିଲେ ମହାଭାରତ ଯୁଦ୍ଧର ସମୟ ଖ୍ରୀ: ପୂ ୩୧୩୯ ବର୍ଷ ହୁଏ ।

ଯୁଧିଷ୍ଠିରଙ୍କ ପରେ ରାଜ୍ୟଭାର ଗ୍ରହଣ କଲେ ଅର୍ଜ୍ଜୁନଙ୍କ ପୌତ୍ର ପରୀକ୍ଷିତ । ପରୀକ୍ଷିତଙ୍କ ଜନ୍ମ ଯୁଦ୍ଧ ସମୟରେ ହିଁ ହୋଇଥିଲା । ପରୀକ୍ଷିତଙ୍କ ଜନ୍ମ ତଥା ମହାପଦ୍ମାନନ୍ଦଙ୍କ ରାଜ୍ୟାଭିଷେକ ମଝିରେ ୧୫୦୧ ବର୍ଷ ରହିଯାଏ । ତେବେ ନନ୍ଦ ବଂଶ ପୂର୍ବରୁ ଯେଉଁମାନେ ଶାସନ କରୁଥିଲେ ସେମାନେ ହେଲେ :

ବୃହଦ୍ରଥ ବଂଶର ୩୨ ରାଜା ୧୦୦୧ ବର୍ଷ ରାଜ୍ୟ କଲେ ।
ପ୍ରଦ୍ୟୋତ ବଂଶର ୫ ରାଜା ୧୩୮ ବର୍ଷ ରାଜ୍ୟ କଲେ ।
ଶିଶୁନାଗ ବଂଶର ୧୨ ରାଜା ୩୬୨ ବର୍ଷ ରାଜ୍ୟ କଲେ ।

ଏହିପ୍ରକାରେ ତିନି ରାଜବଂଶର ୪୯ ରାଜା । ୧୫୦୧ ବର୍ଷ ରାଜ୍ୟ କରିଥିଲେ । ବିଭିନ୍ନ ପୁରାଣରେ ପରୀକ୍ଷିତଙ୍କ ପରେ ଯେଉଁ ରାଜବଂଶଗଣ ଶାସନ କରୁଥିଲେ ସମାନେ ହେଲେ ଜନ୍ମେଜୟ, ଶତାନୀକ, ସହସ୍ରାନୀକ, ଅଶ୍ୱମେଧଦତ୍ତ, ଅଧିସୀମ କୃଷ୍ଣ, ନଚକ୍ଷୁ ହସ୍ତି, ଚିତ୍ରରଥ, ଶୁଚଦ୍ରଥ, ବୃଷ୍ଟିମାନ୍, ସୁଷେଣ, ସୁନୀଥ, ରୁଚ, ନୃଚକ୍ଷୁ ସୁଖୀବଳ, ପରିପ୍ଲବ, ସୁନୟ, ମେଧାବୀ, ନୃପଂଜୟ, ଦୁର୍ବ, ତିମ୍ମାତ୍ମା, ବୃହଦ୍ରଥ, ବସୁଦାନ, ଶତାନୀକ, ଉଦୟନ, ବହୀନର, ଦଣ୍ଡପାଣି, ନିରମିତ୍ର, କ୍ଷେମକ ।[27]

କୋଶଳ ରାଜା ବୃହଦବଳ ଭାରତ ଯୁଦ୍ଧରେ ନିଧନ ହେଲେ । ତାଙ୍କ ମୃତ୍ୟୁପରେ ତାଙ୍କ ବଂଶର ଯେଉଁମାନେ ଶାସନ କରୁଥିଲେ ସେମାନଙ୍କର ସୂଚୀ ଏହିପ୍ରକାର—"ବୃହତ୍‌କ୍ଷତ୍ର, ଉରୁକ୍ଷୟ, ବତ୍ସବ୍ୟୂହ, ପ୍ରତିବ୍ୟୋମ, ଦିବାକର, ସହଦେବ, ବୃହଦଶ୍ୱ, ଭାନୁରଥ, ପ୍ରତିତାଶ୍ୱ, ସୁପ୍ରତୀକ, ମରୁଦେବ, ସୁନକ୍ଷତ୍ର, କିନ୍ନରାଶ୍ୱ, ଅନ୍ତରିକ୍ଷ, ସୁଷେଣ, ଅମିତ୍ରଜିତ୍, ବୃହଦ୍ ଭ୍ରାଜ, ଧର୍ମୀ, କୃତଞ୍ଜୟ, ରଣଞ୍ଜୟ, ସଂଜୟ, ପ୍ରସେନଜିତ୍, କ୍ଷୁଦ୍ରକ, କୁଳକ, ସୁରଥ ଓ ସୁମିତ୍ର" । ଇକ୍ଷ୍ୱାକୁ ବଂଶର କ୍ରମାଗତ ରାଜ୍ୟ ସୁମିତ୍ରଙ୍କ ପରେ ପରେ ସମାପ୍ତ ହୋଇଗଲା ।[28]

ମଗଧ ରାଜ୍ୟର ସ୍ଥାପନା ମହାଭାରତ ଯୁଦ୍ଧର ୧୬୧ ବର୍ଷ ପୂର୍ବରୁ ମହାରାଜ ବୃହଦ୍‌ରଥଙ୍କ ଦ୍ୱାରା ହୋଇଥିଲା । ବୃହଦ୍ରଥଙ୍କ ଦଶମ ପିଢ଼ିରେ ଥିଲେ ମହାରାଜା ଜରାସନ୍ଧ । ସେ ଚକ୍ରବର୍ତ୍ତୀ ସମ୍ରାଟ୍ ହେବା ପାଇଁ ତତ୍କାଳୀନ ୧୦୧ ରାଜବଂଶ ମଧ୍ୟର

୮୬ ରାଜାଙ୍କୁ ପରାଜିତ କରିଥିଲେ । ମାତ୍ର ଭୀମଙ୍କ ସହିତ ଦ୍ୱନ୍ଦ୍ୱ ଯୁଦ୍ଧରେ ତାଙ୍କର ମୃତ୍ୟୁ ହେଲା । ଏହାପରେ ମଗଧର ରାଜା ହେଲେ ସହଦେବଙ୍କ ପୁତ୍ର ମହାରାଜା ମାର୍ଜାରି । ମାର୍ଜାରିଙ୍କ ବଂଶ ପରମ୍ପରାରେ ଆସନ୍ତି ଶ୍ରୁତଶ୍ରବା, ଅପ୍ରତୀପ, ନିରମିତ୍ର, ସୁକ୍ଷତ୍ର, ବୃହତ୍କର୍ମା, ସେନାଜିତ୍, ଶ୍ରୁତଂଜୟ, ବିଭୁଶୁଚି, କ୍ଷେମ, ସୁବ୍ରତ, ଧର୍ମନେତ୍ର, ନିବୃତ୍ତି, ତ୍ରିନେତ୍ର (ସୁବ୍ରତ), ଦୃଢସେନ, ସୁମତି, ସୁବଳ, ସୁନେତ୍ର, ସତ୍ୟଜିତ୍, ବୀରଜିତ୍, ରିପୁଂଜୟ (ଅରିଂଜୟ), ମାର୍ଜାରିଙ୍କଠାରୁ ରିପୁଞ୍ଜୟଙ୍କ ପର୍ଯ୍ୟନ୍ତ ସର୍ବମୋଟ ୧୦୦୩ ବର୍ଷ ପର୍ଯ୍ୟନ୍ତ ଶାସନ କରିଥିଲେ ।[29] ଯେହେତୁ ମାର୍ଜାରିଙ୍କ ରାଜ୍ୟ ଆରମ୍ଭ ହେବାର ୩୭ ବର୍ଷ ପୂର୍ବରୁ ହିଁ କଳିଯୁଗ ଆରମ୍ଭ ହୋଇ ଯାଇଥିଲା । ସେହେତୁ ରିପୁଞ୍ଜୟଙ୍କ ରାଜ୍ୟ ସମାପ୍ତି (୧୦୦୬-୩୭) କଳି ସଂବତ୍ ୯୬୯ ଅର୍ଥାତ୍ (୩୧୩୯-୧୦୦୬) ୨୧୩୩ ଖ୍ରୀ. ପୂ. ହୁଏ ।

ରିପୁଞ୍ଜୟଙ୍କୁ ଶୁନକ ହତ୍ୟା କଲେ ଏବଂ ପ୍ରଦ୍ୟୋତଙ୍କୁ ରାଜା କଲେ । ପ୍ରଦ୍ୟୋତଙ୍କ ବଂଶରେ ପାଳକ, ବିଶାଖଯୂପ, ରାଜକ ଏବଂ ନନ୍ଦିବର୍ଦ୍ଧନ ରାଜ୍ୟ କରିଥିଲେ । ସେମାନେ ସର୍ବସୁଦ୍ଧା ୧୩୮ ବର୍ଷ ରାଜ୍ୟ କଲେ, ଯାହା (୯୬୯+୧୩୮) କଳି ସଂବତ୍ ୧୧୦୭ ଅର୍ଥାତ୍ (୨୧୩୩-୧୩୮)=୧୯୯୫ ବର୍ଷ ଖ୍ରୀ. ପୂ.ରେ ସମାପ୍ତ ହୁଏ । ଏହି ବଂଶ ପରେ ଶୈଶୁନାଗ ବଂଶର ସ୍ଥାପନା ହୁଏ । ସେହି ବଂଶର ଦଶଟି ରାଜା ୩୦୦ ବର୍ଷ ଶାସନ କରନ୍ତି । ସେମାନେ ହେଲେ : ଶିଶୁନାଗ, କାକବର୍ଣ୍ଣ, କ୍ଷେମଧର୍ମା, କ୍ଷତ୍ରୌଜା, ବିମ୍ବିସାର, ଅଜାତଶତ୍ରୁ, ଦର୍ଶକ, ଉଦୟୀ, ନନ୍ଦିବର୍ଦ୍ଧନ ଏବଂ ମହାନନ୍ଦୀ । ଏହି ବଂଶର ରାଜ୍ୟ ସମାପ୍ତି ହୁଏ (୧୧୦୭+୩୬୦) କଳି ସଂବତ୍ ୧୪୬୭ ଅର୍ଥାତ୍ (୧୯୯୫ – ୩୬୦)=୧୬୩୫ ବର୍ଷ ଖ୍ରୀ. ପୂ. ।[30]

ଆଇନ୍-ଇ-ଆକବରୀରେ ଉଲ୍ଲେଖ ଅଛି ଆକବରଙ୍କୁ ଯେତେବେଳେ ୪୦ ବର୍ଷ ହୋଇଥିଲା[31] ଅର୍ଥାତ୍ ୧୫୯୫ ଖ୍ରୀ.ରେ ତାହା ଯୁଧିଷ୍ଠିରଙ୍କ ସମୟଠାରୁ ୪୬୯୩ ବର୍ଷ ବିତିଯାଇଥିଲା । ଏହି ପ୍ରକାର ଏକ କାଳ ଗଣନା କରାଯିବା ସତ୍ତ୍ୱେ ମହାଭାରତ ଯୁଦ୍ଧକୁ ଏକ କାଳ୍ପନିକ ଯୁଦ୍ଧ ବୋଲି କହିବା କେତେଦୂର ଯୁକ୍ତିସଂଗତ ତାହା ବିଚାର୍ଯ୍ୟ ।

ପାଦଟୀକା

1. ଆଦି ୧: ୬୧, ୭୨.
2. ଆଦି ୬୨: ୨୩; ୨: ୮୩.
3. ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାମ୍ ।
4. ଦ୍ରୋଣ ୬୫; ଶାନ୍ତି ୨୦୩.

5. ସେହି
6. ଋଗ୍ବେଦ ୧୫୭. ୧୩; ୬୬: ୩୯ ୪୪.
7. ବନ ୧୧୦.
8. ଆଦି ୧୨୯.
9. ଆଦି ୬୨· ୨୦.
10. ଛାନ୍ଦୋଗ୍ୟ ଉପନିଷଦ ୭: ୧.
11. ବନ ୮୩୧୩: ୨୦୪-୨୦୫.
12. U. V. Singh, "Ancient Relics from the Kurukshetra Region," *Indian History, Congress*, XLIII Session *Souoenir*, (Kurukshetra Kurukshetra University, 1982) p. 5.
13. ଡଃ ପାଣ୍ଡୁରଙ୍ଗ ବାମନ କାଣେ, ଧର୍ମଶାସ୍ତ୍ରକା ଇତିହାସ. ଭାଗ ୩ ଅନୁ. ଅର୍ଜ୍ଜୁନ ଚୌବେ କାଶ୍ୟପ, (ଲକ୍ଷନଉ : ହିନ୍ଦୀ ସମିତି ସୂଚନା ବିଭାଗ, ୧୯୬୬) ପୃ-୧୩୭୪.
14. U. V. Singh, p. 5.
15. ଆଦି ୧: ୧୧୭.
16. ଆଦି ୧: ୬୮.
17. ଆଦି ୧: ୩୦୦.
18. ବର୍ତ୍ତମାନ 'ଇଣ୍ଡିକା' ଗ୍ରନ୍ଥଟି ଲୁପ୍ତ ହୋଇଯାଇଥିଲେ ମଧ୍ୟ ଐତିହାସିକମାନେ ଏହାର ଉଦ୍ଧୃତ କରିଛନ୍ତି ।
**ସଂକ୍ଷିପ୍ତ ଓଡ଼ିଆ ଜ୍ଞାନକୋଷ**
୪ର୍ଥ ଖଣ୍ଡ (ଭୁବନେଶ୍ୱର: ଉତ୍କଳ ବିଶ୍ୱବିଦ୍ୟାଳୟ, ୧୯୬୫)ପୃ-୩୯.
19. 'ଜୟୋ ନାମେତିହାସୋୟମ' (ଆଦି ୬୨. ୨୦)
20. ସିଦ୍ଧେଶ୍ୱରଶାସ୍ତ୍ରୀ ଚିତ୍ରାବ, ଭାରତବର୍ଷୀୟ ପ୍ରାଚୀନ ଚରିତ୍ରକୋଷ (ପୁନା: ଭାରତୀୟ ଚରିତ୍ରକୋଶ ମଣ୍ଡଳ, ୧୯୬୪) ପୃ-୧୧୪୪
21. *The New Encyclopedia Britannica,* 1978ed vol. 9 p.346.
22. ଭୀଷ୍ମ ୭: ୮: ୧୩.
23. ଡଃ ହସମୁଖ ଧୀ ସାଙ୍କଲିୟା, 'ମହାଭାରତ କା ଯୁଦ୍ଧ ଔର୍ ଲୌହଯୁଗ' (୨), ଧର୍ମଯୁଗ,(୫ ଡିସେମ୍ବର ୧୯୭୭)ପୃ-୨୪, ୨୫
24. ସାଙ୍କଲିୟା, ପୃ-୨୫

25. R. N. Goldern, "Challenge to Isolationists," in *Hindu America*, by Chamanlal (Delhi: Chaman Lal 1966). Intro P B. ଏବଂ
Walter Gardine. "Asiatic Influences on Pre-Columbian Cultures, trans. Rosanna Rowland Diogenes, 87 (Fall, 1974), pp, 106-125.

26. ଶ୍ରୀମଦ୍ ଭାଗବତ ପୁରାଣ ୧୨: ୨, ୩୩.

27. ଡା: ଦେବସହାୟ ତ୍ରିବେଦ, ଭାରତ କା ନୟା ଇତିହାସ (ପୁଣେ ନାନା ପାଲକର ସ୍ମୃତି ସମିତି,-) ପୃ-୮.

28. ମାଧବାଚାର୍ଯ୍ୟ, ଭାରତୀୟ ଇତିହାସ କା ସିଂହାବଲୋକନ୍ (ଲକ୍ଷ୍ନଉ: ଲୋକହିତ ପ୍ରକାଶନ,-) ପୃ-୨୧.

29. ସେହି ପୃ-୨୧-୨୨.

30. ସେହି ପୃ-୨୨.

31. K. N. Kapoor Age of Mahabharat War, *Vedic Light* (Nov. 1985), p. 6.



# ମହାଭାରତ ଏକ ରୂପକ ନା ଇତିହାସ

ମହାଭାରତ ମୁଁ ଯେତେବାର ପଢ଼ିଛି, ସେଥିରେ ଥିବା ଆଧ୍ୟାତ୍ମିକ ଓ ଐତିହାସିକ ପକ୍ଷ ନେଇ ମୁଁ ସେତେ ସନ୍ଦେହୀ ହୋଇପଡ଼ିଛି । ସେଥିରେ ବର୍ଣ୍ଣିତ ହୋଇଥିବା ପାତ୍ରପାତ୍ରୀଙ୍କ ନାମକରଣ ଓ କାର୍ଯ୍ୟକାରଣ ମଧ୍ୟରେ ଏକ ଅପୂର୍ବ ସମନ୍ୱୟ ମତେ ପ୍ରଭାବିତ କରିଛି । ଏହାହିଁ ମହାଭାରତର ଐତିହାସିକ ତତ୍ତ୍ୱକୁ ଖଣ୍ଡନ କରି କୃଷ୍ଣ, ଅର୍ଜୁନ, ଧୃତରାଷ୍ଟ୍ର, ଦୁର୍ଯ୍ୟୋଧନଙ୍କୁ ଗୁଣବାଚକ ମାନବୀୟ ପ୍ରବୃତ୍ତି ଭାବରେ ତୋଳି ଧରିଛି ।

ମହାଭାରତ ସମର ହେଉଛି ଧୃତରାଷ୍ଟ୍ର ଓ ହୃତରାଷ୍ଟ୍ରଙ୍କ ମଧ୍ୟରେ ହୋଇଥିବା ସମରର ଇତିକଥା । ଧୃତରାଷ୍ଟ୍ର ହେଉଛନ୍ତି ରାଷ୍ଟ୍ରକୁ ଧାରଣ କରୁଥିବା କୌରବ ପକ୍ଷ ତ ଅନ୍ୟ ପକ୍ଷରେ ସଂଗ୍ରାମରତ ହୃତରାଷ୍ଟ୍ର ପାଣ୍ଡବଗଣ ଯେଉଁମାନଙ୍କ ହାତରୁ ରାଷ୍ଟ୍ର ଛଡ଼ାଇ ନିଆ ଯାଇଛି । ଏଣୁ ଗୀତାର ପ୍ରଥମ ଅଧ୍ୟାୟରେ ଧୃତରାଷ୍ଟ୍ରଙ୍କ ଚିନ୍ତା ହେଉଛି, "ମାମକାଃ ପାଣ୍ଡବାଶ୍ଚୈବ କିମକୁର୍ବତ ସଞ୍ଜୟ" ବା ମୋର ଏବଂ ପାଣ୍ଡୁପୁତ୍ରଙ୍କ ମଧ୍ୟରେ ହୋଇଥିବା ସମରରେ ସମବେତ ହୋଇ ସେମାନେ କ'ଣ କଲେ ?

ଧୃତରାଷ୍ଟ୍ରଙ୍କ ଅନ୍ୟାୟ ତାଙ୍କୁ ଅନ୍ଧ କରି ଦେଇଥିଲା । ସେ ସ୍ୱକ୍ଷମତାରେ ଅନ୍ଧ ଥିଲେ । ଅନ୍ୟର ସର୍ବସ୍ୱ ଅପହରଣ କରିବାକୁ ସେ ଅନ୍ୟାୟ ବୋଲି ଭାବୁ ନ ଥିଲେ ଏବଂ ତାଙ୍କ ସ୍ତ୍ରୀ ଗାନ୍ଧାରୀ ମଧ୍ୟ ତାଙ୍କ କାର୍ଯ୍ୟକଳାପକୁ ନିଜ ଆଖିରେ ଅନ୍ଧପଟ୍ଟି ଦେଇ ସହ୍ୟକରି ନେଉଥିଲେ ଯଦିଓ ତାଙ୍କ ଇଚ୍ଛା ଥିଲା—ଅନ୍ୟାୟ ହେଉ ପୁଣ୍ୟ ଜଗତେ ଧର୍ମର ହେଉ ଜୟ । ଯଦି ସେ ଇଚ୍ଛା କରିଥାନ୍ତେ ତା'ହେଲେ କୌରବ ପକ୍ଷକୁ ଏ ଅନ୍ୟାୟ କାର୍ଯ୍ୟରୁ ନିବର୍ତ୍ତାଇ ପାରିଥାନ୍ତେ । ମାତ୍ର ତାହା ସେ କଲେ ନାହିଁ । ଧୃତରାଷ୍ଟ୍ରଙ୍କ ସହଧର୍ମିଣୀ ହିସାବରେ ନିଜର ଆଖି ପାପପୁଣ୍ୟ ପ୍ରତି ଉଦାସୀନ ରହି ବନ୍ଦ କରି ଦେଇଥିଲେ । କେତେକ କୃଷ୍ଣଙ୍କୁ ଈଶ୍ୱର, ଅର୍ଜୁନଙ୍କୁ ଜୀବ ଏବଂ ଧାର୍ତ୍ତରାଷ୍ଟ୍ରଗଣଙ୍କୁ ରିପୁସକଳ ବା ପ୍ରକୃତି ଭାବରେ ମଧ୍ୟ ଚିହ୍ନିତ କରନ୍ତି ।

ସେହିପରି ମହାଭାରତକୁ ଅଷ୍ଟାଦଶ ପର୍ବରେ ବର୍ଣ୍ଣନ କରି ଭଗବତଗୀତାକୁ ଅଷ୍ଟାଦଶ ଅଧ୍ୟାୟରେ ବିଭକ୍ତ କରିବାର ବିଶେଷ ତାତ୍ପର୍ଯ୍ୟ :ମହାଭାରତ ଯୁଦ୍ଧ ଅଠର

ଦିନ ଧରି ଅଠର ଅକ୍ଷୌହିଣୀ ସୈନ୍ୟଙ୍କ ସହ ହୋଇଥିବାର ଯୋଜନ୍ତି । କୁହାଯାଏ ଅଠର ଏକ ପବିତ୍ର ସଂଖ୍ୟା । ଛାନ୍ଦୋଗ୍ୟ ଉପନିଷଦରେ କୁହାଯାଇଛି—"ପୁରୁଷୋ ଏବ ଯଜ୍ଞ ।" ମନୁଷ୍ୟ ଯଜ୍ଞହେଲେ ଏଥିରେ ଅଠର ଋତ୍ୱିକ ରହନ୍ତି । ଏ ଋତ୍ୱିକଗଣ ହେଲେ—ଦୁଇ ଆଖି, ଦୁଇ କାନ, ଦୁଇ ଫୋଡ଼ାନାକ, ତ୍ୱଗେନ୍ଦ୍ରିୟ, ଦୁଇହାତ, ଦୁଇପାଦ, ମୂତ୍ରେନ୍ଦ୍ରିୟ, ଗୁହ୍ୟେନ୍ଦ୍ରିୟ, ମୁଖ, ବାଗିନ୍ଦ୍ରିୟ, ମନ, ଚିତ୍ତ ଏବଂ ଅହଂକାର । ଏ ପ୍ରକାର ଯଜ୍ଞମୟ ଶରୀରରେ ଏହି ଅଠର ଋତ୍ୱିକ କର୍ମ କରି ଚାଲିଛନ୍ତି । ବେଦମୂର୍ତ୍ତି ପଣ୍ଡିତ ସାତବଲେକରଙ୍କର ମତ ମଧ୍ୟ କିଛିଟା ଏ ପ୍ରକାର । ଏଠି ଅଠର ସଂଖ୍ୟାର କିଛି ବିଶେଷ ମହତ୍ତ୍ୱ ସେ ବୁଝାଇବାକୁ ଚାହାନ୍ତି । ମାତ୍ର ମୋ ମତରେ ମହାଭାରତକାର ଏ ସଂଖ୍ୟାକୁ ପ୍ରତିପାଦନ କରିବା ପାଇଁ ଅଯଥା ଚେଷ୍ଟାକରି ନାହାନ୍ତି । ଏହା ପୂର୍ବ ପରିକଳ୍ପିତ ସଂଖ୍ୟା ନୁହେଁ । ଏହାକୁ ଆକସ୍ମିକ ସଂଖ୍ୟା ଭାବରେ ନିଆ ଯାଇପାରେ ଯାହାର ଏକ ଅପୂର୍ବ ମିଳନ ଅନେକ କ୍ଷେତ୍ରରେ ରହିଛି । ଏଣୁ ଉପମା ପାଇଁ ନାକଟା ଉଚ୍ଚ କରାଯାଇଛି କହିବା ଯେପରି କଥା ସେପରି ଅଠର ସଂଖ୍ୟା ପବିତ୍ରସଂଖ୍ୟା ଥିବାରୁ ମହାଭାରତ ସେ ଅନୁସାରେ ସଜାଯାଇଛି କହିବା ମଧ୍ୟ ସେପରି ଅନୈତିହାସିକ ତତ୍ତ୍ୱ ।

ମାତ୍ର ମହାଭାରତ ବନ୍‌ୟନଙ୍କ ଲିଖିତ "ସ୍ୱର୍ଗ ଯାତ୍ରୀଙ୍କ ବୃତ୍ତାନ୍ତ" ନୁହେଁ ଯେଉଁଠି ଗୁଣବାଚକ କାଳ୍ପନିକ ନାମରେ ପ୍ରୟୋଗ ହୋଇଛି । ପ୍ରଥମରେ ଏହା ଐତିହାସିକ ତା'ପରେ ରୂପକ । ବିଶ୍ୱ ଇତିହାସର ବରେଣ୍ୟ ପୃଷ୍ଠାରେ ମହାଭାରତ ଭାରତର ବୌଦ୍ଧିକ ବିକାଶର ଏକ ଚରମ ପରିଚୟ । ରାମାୟଣ ଯୁଗର ସରଳ ପ୍ରାଞ୍ଜଳ ସ୍ତର ସମାଜର ଦୁର୍ଦ୍ଧାନ୍ତ ପରିସ୍ଥିତିରେ କିପରି ନଗ୍ନ ଓ ବୀଭତ୍ସ ହୋଇ ଉଠିଛି । କାବ୍ୟିକ ଛଳମୟ ଶ୍ଳୋକ ମଧ୍ୟରେ ଇତିହାସର ଯେଉଁ ଭ୍ରୂଲେଚ ରହିଛି ତାକୁ ଅସ୍ୱୀକାର କରିବାର ରାସ୍ତା କାହିଁ ? ଏହା ବିଶ୍ୱର ବିଭିନ୍ନ ଧର୍ମଶାସ୍ତ୍ରଗୁଡ଼ିକଠାରୁ ମଧ୍ୟ ପ୍ରାଚୀନ ହୋଇଥିବାରୁ ଏହାର କାଳ ନିର୍ଣ୍ଣୟ କରିବାରେ ଗବେଷକମାନଙ୍କ ମଧ୍ୟରେ ବିବାଦ ଚାଲିଛି ସତ୍ୟ ମାତ୍ର ଇତିହାସକୁ ଅସ୍ୱୀକାର କରାଯାଇ ପାରି ନାହିଁ ।

ମହାଭାରତ ନିଜ ସମ୍ପର୍କରେ କୁହନ୍ତି କି ଯେ ପ୍ରକାର ଦହିରେ ଲହୁଣୀ, ମନୁଷ୍ୟଙ୍କ ମଧ୍ୟରେ ବ୍ରାହ୍ମଣ; ବେଦରେ ଆରଣ୍ୟକ, ଔଷଧରେ ଅମୃତ, ଜଳାଶୟରେ ସମୁଦ୍ର ଏବଂ ଚତୁଷ୍ପଦରେ ଗୌ ଶ୍ରେଷ୍ଠ, ସେହିପରି ସମସ୍ତ ଇତିହାସରେ "ଭାରତ" ହେଉଛି ଶ୍ରେଷ୍ଠ । ବ୍ୟାକରଣୀ ପାଣିନୀଙ୍କ ମତରେ ଭାରତ ଅର୍ଥ "ମହାଯୁଦ୍ଧ ।"

କୌଟିଲ୍ୟ ଅର୍ଥଶାସ୍ତ୍ରରେ ଚାଣକ୍ୟ ମତ ଦିଅନ୍ତି ଯେ ବ୍ରହ୍ମାଦିପୁରାଣ, ରାମାୟଣ ମହାଭାରତାଦି ଇତିହାସ, ବୃହତ୍କଥାଦି ଆଖ୍ୟାୟିକା, ମୀମାଂସାଦି ଉଦାହରଣ, ମନୁ ଯାଜ୍ଞବାଲ୍କ୍ୟାଦି ଧର୍ମଶାସ୍ତ୍ର ଅଟେ ।

ମହାଭାରତ ଛଅଥର, ଛଅଜଣ ବକ୍ତାଙ୍କ ଦ୍ୱାରା ଛଅ ପ୍ରକାର ଶ୍ରୋତାଙ୍କୁ ଶୁଣା ଯାଇଛି । ବ୍ୟାସଦେବ ବୈଶମ୍ପାୟନ ନାମକ ଜଣେ ଶିଷ୍ୟଙ୍କୁ ଏକଥା ଶୁଣାଇ ଥିଲେ । ବୈଶମ୍ପାୟନ ନାଗଯଜ୍ଞର ଅବସରରେ ଏକଥା ଆଉ ଥରେ ଶୁଣାଇଲେ । ତୃତୀୟ ଥର ସୂତପୁତ୍ର ଶୌନକ ଋଷିଗଣଙ୍କୁ ଏହା ଶୁଣାଇଲେ । ଏମନ୍ତ ସାରା ମହାଭାରତ ଜନ୍ମେଜୟଙ୍କ ସମ୍ବାଦ ରୂପରେ କୁହାଗଲା ।

କଥାରେ କୁହନ୍ତି, ଯାହା ନାହିଁ ଭାରତେ, ତାହା ନାହିଁ ଭାରତେ — ଏକଥା ସତ୍ୟ । ଏହା ମଧ୍ୟରେ ରହିଛି ସୁନ୍ଦର ସୁନ୍ଦର ଆଖ୍ୟାୟିକା । ଶକୁନ୍ତଳା, ଯଯାତି, ନହୁଷ, ନଳ, ହରିଶ୍ଚନ୍ଦ୍ର, ବହୁଳା, ସାବିତ୍ରୀ ଆଉ କେତେ ଯେ କ'ଣ ! ଏହା ଦେଖି କେତେକ ପାଶ୍ଚାତ୍ୟ ଆଲୋଚକ ଏହାକୁ "ଇପିକ୍ ଉଇଦନ୍ ଇପିକ୍" ବା ମହାକାବ୍ୟ ମଧ୍ୟରେ ମହାକାବ୍ୟର ଭ୍ରମ ପ୍ରଣିତ କରନ୍ତି ।

୧୮୧୩ରେ ଯେବେ ଏଫ୍. ବପ୍ପ ନଳ ଦମୟନ୍ତୀ ଆଖ୍ୟାୟିକାଟିକୁ ଲାଟିନ୍‌ରେ ଅନୁବାଦ କଲେ ତାହା ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରିଦେଲା । ଶ୍ଲିଗେଲଙ୍କପରି ମନୀଷୀ ଏହା ପାଠକରି ଉଚ୍ଛ୍ୱସିତ କଣ୍ଠରେ କହି ଉଠିଲେ — ମୁଁ କେବଳ ଏଡିକ କହିବି କି ମୋର ବୁଝିବାରେ କରୁଣା ତଥା ଭାବନାର ଦୃଷ୍ଟିରେ ଓ ଭାବର କୋମଳତା ଓ ବିମୋହନ ଶକ୍ତିରେ ନଳଦମୟନ୍ତୀ ଉପାଖ୍ୟାନ ଅଦ୍ୱିତୀୟ । ଏହାର ରଚନା ଏପରି ଶୈଳୀରେ କରାଯାଇଛି ଯେ ତାହା ସମସ୍ତଙ୍କୁ ଆକର୍ଷିତ କରେ ସେ ବୃଦ୍ଧ ହୁଅନ୍ତୁ ବା ଯୁବକ । ଉଚ୍ଚବର୍ଣ୍ଣର ହୁଅନ୍ତୁ ବା ନୀଚ, ରସଜ୍ଞ ଆଲୋଚକ ହୁଅନ୍ତୁ ବା ସହଜ ବୁଦ୍ଧିରେ ବିଷୟକୁ ପସନ୍ଦ କରିବା ବ୍ୟକ୍ତି ହୁଅନ୍ତୁ ।

ପାଠକ ମହାଭାରତ ପଢ଼ିବା ସମୟରେ ଏକ ଦାରୁକାଷ୍ଠ ଅରଣ୍ୟରେ ପ୍ରବେଶ କରେ । ଯେଉଁଠି ବିପଦ ନିଶ୍ଚୟ ରହିଛି ମାତ୍ର ଭୟ ନାହିଁ । ଅସଫଳତା ଅଛି ମାତ୍ର ନିରାଶା ନାହିଁ । ଜୀବନରେ ତ୍ରୁଟିବିଚ୍ୟୁତି ଅଛି; ମାତ୍ର ଅନୁତାପ ନାହିଁ । ସରଳତେଜ, ଅକୃତ୍ରିମ ଦର୍ପ, ନିର୍ଭିକ ବୀରତ୍ୱ, ବିବେକଯୁକ୍ତ କର୍ତ୍ତବ୍ୟ ଏବଂ ଅକପଟ ଆଚରଣ ମହାଭାରତୀୟ ବୀରଗଣଙ୍କ ଚରିତ୍ରର ସ୍ୱର ଅଟେ । ବିଭିନ୍ନ ପ୍ରକାର ଚରିତ୍ର ଓ ଚରିତ୍ରରେ ମହାଭାରତ ଭରପୂର ହୋଇଥିବାରୁ ଏହାକୁ କାବ୍ୟାନ୍ତରରେ ସୀମିତ କରି ଦେବାପାଇଁ ହ୍ୱିଲର୍, ପିଗଟ, ଗାର୍ଡନ ଆଦି ପାଶ୍ଚାତ୍ୟ ବିଦ୍ୱାନ ଏକମତ ହୋଇ ଉଠନ୍ତି । କାରଣ ଜନଶ୍ରୁତିକୁ ଇତିହାସର ସାଧନ ରୂପରେ ସେମାନେ ସ୍ୱୀକାର କରନ୍ତି ନାହିଁ । ଏଥିରେ ଯେ ଐତିହାସିକ ଅନୁଶ୍ରୁତି ନାହିଁ ତାହା କପରି କୁହାଯିବ ? ଜନଶ୍ରୁତି ଅଛି ଯେ ହସ୍ତିନାପୁର ନଦୀବଢ଼ିରେ ନଷ୍ଟ ପାଇ ଯାଇଥିଲା । ସେହି କାରଣରୁ ସେଠାର ରାଜା ନିଚକ୍ଷୁ ହସ୍ତିନାପୁରଠାରୁ ଯାଇ କୌଶାମ୍ବୀରେ ସ୍ୱ ନୂତନ ରାଜଧାନୀ ନିର୍ମାଣ କରିଥିଲେ, ହସ୍ତିନାପୁର ଖନନ ପରେ ଏହା ହିଁ ପ୍ରମାଣିତ ହୋଇଗଲା ଯେ ସେଠାରେ ଭୟଙ୍କର ନଦୀବଢ଼ି ହୋଇଥିଲା ।

ତେବେ କେଉଁ ଆଧାର ଉପରେ ମହାଭାରତ ଯୁଦ୍ଧ ଜନଶ୍ରୁତ ? ଏକଥା ମଧ୍ୟ ଧ୍ୟାନ ରଖିବା ଉଚିତ ଯେ ଜନଶ୍ରୁତ କେବଳ ଗୋଟିଏ ଦୁଇଟି ଗ୍ରନ୍ଥ ଅଥବା କିଛି କାଳ ପାଇଁ ସୀମିତ ରହେ ନାହିଁ ବରଂ ଏହା ସହସ୍ର ବର୍ଷଠାରୁ ଅକ୍ଷୁର୍ଣ୍ଣଭାବରେ ଚାଲି ଆସୁଛି ! ପ୍ରତ୍ୟେକ ଯୁଗର ଭାରତୀୟ ଗ୍ରନ୍ଥକାରଗଣ ଏହାକୁ ସ୍ୱୀକାର କରିଛନ୍ତି ।

ପ୍ରାଚୀନ ସାଂଖ୍ୟରେ ଆଶ୍ୱାଳାୟନ ଗୃହ୍ୟସୂତ୍ର ଓ ସାଂଖ୍ୟାୟନ ଶ୍ରୌତ ସୂତ୍ରରେ ଏ ଯୁଦ୍ଧର ବର୍ଣ୍ଣନା ହୋଇଛି । ପାଣିନି ଏ ଯୁଦ୍ଧ ସମ୍ପର୍କରେ ସୂଚନା ଦେଉଛନ୍ତି । ସେଇକି ନୁହେଁ, ଚୀନଯାତ୍ରୀ ହୁଏନ୍‌ସାଂ ମଧ୍ୟ ଏ ଯୁଦ୍ଧ ସମ୍ପର୍କରେ ଉଲ୍ଲେଖ କରି କହନ୍ତି ଯେ ସେଦିନଠାରୁ ପୃଥିବୀ ହାଡ଼ହାଡ଼ ପରିପୂର୍ଣ୍ଣ ହୋଇଥିଲା ।

ପ୍ରଶ୍ନଉଠୁଛି ଏକଲକ୍ଷ ଶ୍ଳୋକ ଏବଂ ଜଣେ ମହର୍ଷି ବ୍ୟାସ । କିପରି ଲେଖିଲେ ଏ ବିଶାଳ ମହାଭାରତ ? ହିନ୍ଦୁ ଧର୍ମର ସମସ୍ତ ଶାସ୍ତ୍ର ତାଙ୍କ ଦ୍ୱାରା ରଚିତ । ତାଙ୍କ ଦ୍ୱାରା ରଚିତ ନ କହି ତାଙ୍କ ନାମରେ ରଚିତ କହିଲେ ଉଚିତ ହେବ । ମହାଭାରତ ନିଜ ସମ୍ପର୍କରେ ସାକ୍ଷୀ ଦିଅନ୍ତି । ଏହାର ଆଦି ପର୍ବରେ ଏକଥା ସ୍ପଷ୍ଟ ଜଣାପଡ଼େ ଯେ ବ୍ୟାସ କେବଳ ଆଠ ହଜାର ଶ୍ଳୋକ ରଚନା କରିଥିଲେ । ବୋଧହୁଏ ଏ ମୂଳ ମହାଭାରତ "ଜୟ" ନାମରେ ଖ୍ୟାତ ଥିଲା । ସମୟ ଓ ପରିସ୍ଥିତିରେ ରାଜ୍ୟ ଶାସକଗଣଙ୍କର ଅପୂର୍ବ ପ୍ରଭାବରେ ଭରତବଂଶୀୟଙ୍କ ଅନେକ ବୃତ୍ତାନ୍ତ ଏଠାରେ ଯୋଡ଼ି ଦିଆଗଲା । ତା'ପରେ "ଜୟ" ହେଲା ମହାଭାରତ । ତେବେ ବିଷୟବସ୍ତୁ ଐତିହାସିକ ତତ୍ତ୍ୱର ଦୂରରେ ନଥିଲା । ବରଂ ପରବର୍ତ୍ତୀ ସଂସ୍କରଣଗୁଡ଼ିକରେ ଆଲଙ୍କାରିକ ବର୍ଣ୍ଣନା ଏହାକୁ କାବ୍ୟମୟ କରି ଦେଇଥିଲା ।

ଅନ୍ୟ ଏକ ସମସ୍ୟା ହେଲା ମହାଭାରତର କାଳ ନିରୂପଣ । ଏଥିପାଇଁ ବିଭିନ୍ନ ତଥ୍ୟ ମିଳେ । ଏହାର ପ୍ରମୁଖ କାରଣ ହେଲା ଆମ ପ୍ରାଚୀନ ଲେଖକଗଣଙ୍କ କାଳକ୍ରମର ଉପେକ୍ଷା । ଏହି କାରଣରୁ ମୌର୍ଯ୍ୟ କାଳ ପୂର୍ବର ଇତିହାସରେ ବିଭିନ୍ନ ମତ ପୋଷଣ କରୁଥିବା ଐତିହାସିକ ବାହାରିଲେ । ସ୍ୱୟଂ ମହାତ୍ମା ବୁଦ୍ଧ ଓ ମହାବୀରଙ୍କର ନିର୍ଣ୍ଣିତ ତଥ୍ୟ ମିଳେ ନାହିଁ । ଏହି ଆଧାର ଉପରେ ତାଙ୍କର ଐତିହାସିକତାକୁ ଅସ୍ୱୀକାର କରାଯାଇ ପାରେ ନା ।

ପୁରାଣ ବିବରଣୀରୁ ଜଣାଯାଏ ଯେ ମନୁ, ବୈବସ୍ୱତ ଓ ମହାଭାରତ ଯୁଦ୍ଧ ମଧ୍ୟରେ ୯୫ ବଂଶାବଳୀ । ପ୍ରସିଦ୍ଧ ବିଦ୍ୱାନ ଏ. ଡ଼ି. ପୁସାଲ୍କର ମନୁବୈବସ୍ୱତଙ୍କୁ ୩୧୦୦ ଖ୍ରୀଷ୍ଟପୂର୍ବର ବୋଲି ମାନନ୍ତି । ଯଦି ପ୍ରତ୍ୟେକ ବଂଶାବଳୀକୁ ସାମାନ୍ୟ ରୂପରେ ୨୦ ବର୍ଷ ସ୍ୱୀକାର କରାଯାଏ ତେବେ ମନୁବୈବସ୍ୱତ ଓ ମହାଭାରତ

ମଝିରେ ୯୫ X ୨୦ = ୧୯୦୦ ବର୍ଷ ବ୍ୟବଧାନ ପଡ଼େ । ଏ ସ୍ଥିତିରେ ମହାଭାରତ ଯୁଦ୍ଧକୁ ୩୧୦୦ — ୧୯୦୦ = ୧୨୦୦ ଖ୍ରୀଷ୍ଟପୂର୍ବ ପାଖାପାଖି ରଖାଯାଏ ।

ଅନ୍ୟପ୍ରକାରେ ପୁରାଣ ଅନୁସାରେ ଯୁଧିଷ୍ଠିର ଓ ଚନ୍ଦ୍ରଗୁପ୍ତଙ୍କ ମଝିରେ ୩୬ ବଂଶାବଳୀ ଶାସନ । ୩୬ ବଂଶାବଳୀ ଅନୁମାନତଃ ୩୬ X ୨୦ = ୭୨୦ ବର୍ଷ । ଚନ୍ଦ୍ର ଗୁପ୍ତମୌର୍ଯ୍ୟ ୩୨୨ ଖ୍ରୀଷ୍ଟପୂର୍ବ ସିଂହାସନାସୀନ ଥିଲେ । ଏଣୁ ଯୁଧିଷ୍ଠିରଙ୍କ କାଳ ୭୨୦ + ୩୨୨ = ୧୦୪୨ ଖ୍ରୀଷ୍ଟପୂର୍ବ ରଖାଯାଇପାରେ । ସ୍ଥୂଳରୂପରେ ଏହା କୁହାଯାଇ ପାରେ କି ମହାଭାରତ ଯୁଦ୍ଧ ୧୨୦୦ ଖ୍ରୀ.ପୂ. ମଝିରେ କେବେ ହୋଇଥିଲା । ଏ କ୍ଷେତ୍ରରେ ପୁରାଣଗୁଡ଼ିକୁ ମଧ୍ୟ ପ୍ରମାଣ ଉଦ୍ଦେଶ୍ୟରେ ଉଦ୍ଧୃତ କରା ଯାଇଛି । ଯଦ୍ୟପି ପୁରାଣ କଳ୍ପନା ପ୍ରସୂତ ତଥାପି ଇତିହାସର ଅନେକ କଥା ଏଥିରେ ସଂଗୃହିତ ହୋଇ ରହିଛି ।



# ମହାଭାରତ ସଂପର୍କରେ ଏକ ବିଚାରଣୀୟ ତଥ୍ୟ

ଆଜକୁ ପାଞ୍ଚହଜାର ବର୍ଷ ପୂର୍ବେ ଭାରତବର୍ଷ ଧର୍ମ, ଦର୍ଶନ, ଓ ବିଜ୍ଞାନରେ ଏକ ଚରମ ଅବସ୍ଥାରେ ପହଞ୍ଚି ସାରିଥିଲା । ଏ ଦେଶରେ ଜନର ଅଭାବ ନ ଥିଲା, ଧନର ଅଭାବ ନ ଥିଲା, ଶକ୍ତିର ଅଭାବ ନ ଥିଲା, ସାହସର ଅଭାବ ନ ଥିଲା, କଳା ଏବଂ କୌଶଳର ଅଭାବ ମଧ୍ୟ ନ ଥିଲା । ସବୁ ଥିଲା । ତେବେ ମଧ୍ୟ ଲୋକେ ଅକର୍ମଣ୍ୟ ହୋଇ ସ୍ୱ ସ୍ୱ ବର୍ଣ୍ଣାଶ୍ରମ ଧର୍ମ ଅନୁସାରେ କର୍ମ କରିବାକୁ ଭୁଲି ଯାଇଥିଲେ । ଠିକ ଏହି ପ୍ରକାର ଏକ ଘଡ଼ିସନ୍ଧି ସମୟରେ ଭଗବାନ ଶ୍ରୀକୃଷ୍ଣଙ୍କର ଜନ୍ମ ହୋଇଥିଲା । ସିଏ ଏହି ମୋହାଚ୍ଛନ୍ନ ଆର୍ଯ୍ୟ ଜାତିକୁ ମନେ ପକାଇ ଦେଇଥିଲେ, "ଚତୁର୍ବର୍ଣ୍ଣ ମାୟାସୃଷ୍ଟମ୍ ଗୁଣକର୍ମ ବିଭାଗ ଶଃ" ଅର୍ଥାତ୍ ଚତୁର୍ବର୍ଣ୍ଣ ଗୁଣକର୍ମ ସ୍ୱଭାବ ଅନୁସାରେ ମୁଁ ହିଁ ସୃଷ୍ଟି କରିଛି । ଏଣୁ ହେ ଆର୍ଯ୍ୟଜାତି "କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ" ଅର୍ଥାତ୍ ତୁମେ ସ୍ୱ ସ୍ୱ ଧର୍ମରକ୍ଷା ପୂର୍ବକ ଫଳରେ ଆଶା ନ ରଖି କର୍ମ କରିଯାଅ ।

ବିଶ୍ୱରେ ବିଭିନ୍ନ ସମୟରେ ବିଭିନ୍ନ ମହାପୁରୁଷ ଆସିଛନ୍ତି । କିଏ ଧର୍ମ ପ୍ରବର୍ତ୍ତକ ହେଲେ କିଏ ଧର୍ମ ସଂସ୍କାରକ । ଏହି ପ୍ରକାର ମହାପୁରୁଷମାନଙ୍କର ଆଗମନ ଫଳରେ ଆଦର୍ଶହୀନ ବ୍ୟକ୍ତିମାନେ ନିଷ୍ପ୍ରଭ ହୋଇ ପଡ଼ନ୍ତି, ଇତିହାସର କ୍ରମ ସ୍ତବ୍ଧ ହୋଇଯାଏ ଏବଂ ପୃଥିବୀ ଶାନ୍ତିର ଶ୍ୱାସ ନିଏ । ପୃଥିବୀରେ ଯେତେ ରାଜନୀତିଜ୍ଞଙ୍କର ଜନ୍ମ ହୋଇଛି ସେ ସମସ୍ତଙ୍କ ମଧ୍ୟରେ ଭଗବାନ ଶ୍ରୀକୃଷ୍ଣ ହିଁ ଚରମ ଆଦର୍ଶର ଅଭିବ୍ୟକ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଆର୍ଯ୍ୟ ଜୀବନଧାରାର ସେ ଥିଲେ ଏକ ଚରମ ପରିଣତି । ଏପରି କୌଣସି କ୍ଷେତ୍ର ନଥିଲା ଯେଉଁଥିରେ ତାଙ୍କର ପ୍ରବେଶ ନ ଥିଲା । ଏପରି କୌଣସି କାର୍ଯ୍ୟ ସେ କରି ନ ଥିଲେ ଯେଉଁଥିରେ ସଫଳତା ମିଳି ନ ଥିଲା । ଗୋଟିଏ ପକ୍ଷରୁ ସେ କ୍ରାନ୍ତିକାରୀ, ରାଜନୀତିଜ୍ଞ ଓ ନବୀନ ସାମ୍ରାଜ୍ୟର ପ୍ରତିଷ୍ଠାତା ଥିଲେ ତ ଅନ୍ୟପକ୍ଷରେ ସେ ଆଧ୍ୟାତ୍ମିକ ସାଧନାରେ ଥିଲେ ମହାନ ଯୋଗେଶ୍ୱର ।

ଆଜିର ଦ୍ୱିଖଣ୍ଡିତ ଭାରତବର୍ଷ କଥା ଭାବିଲେ ଆମ ମନ ଦୁଃଖରେ ପରିପୂର୍ଣ୍ଣ ହୋଇଯାଏ । ଯଦି ଆମ୍ଭେ ସେ ସମୟର ଭାରତବର୍ଷ କଥା ଚିନ୍ତାକରୁ ଆମେ ଆଶ୍ଚର୍ଯ୍ୟ ନ ହୋଇ ରହିପାରୁନା ଯେ ଭାରତବର୍ଷର ସୀମା ଗାନ୍ଧାରଠାରୁ

ଆରମ୍ଭ କରି ସତ୍ୟାଦ୍ରି ପର୍ବତମାଳା ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଭାରତ କେବଳ ଦ୍ୱିଖଣ୍ଡିତ ହୋଇ ନ ଥିଲା, ବହୁ ଖଣ୍ଡରେ ଏହା ବିଭକ୍ତ ହୋଇ ସାରିଥିଲା । ମଥୁରାରେ କଂସ, ମଗଧରେ ଜରାସନ୍ଧ, ଚେଦିରେ ଶିଶୁପାଳ ଏବଂ ହସ୍ତିନାପୁରରେ କୌରବମାନେ ଶାସନ କରୁଥିଲେ । ଯେଉଁମାନେ କୃଷ୍ଣ ପ୍ରଜା ଉତ୍ପୀଡ଼କ ବିଳାସୀ ଏବଂ ଦୁରାଚାରୀ ଥିଲେ, ସେମାନେ ଭାରତବର୍ଷକୁ ଶ୍ରେଷ୍ଠ ରାଜ୍ୟରେ ଭାଗକରି ପରସ୍ପର ଲଢ଼େଇ କରୁଥିଲେ । ଏହିପ୍ରକାର ଅନ୍ଧକାର ସମୟରେ ଭଗବାନ କୃଷ୍ଣଙ୍କର ଜନ୍ମ ହୋଇଥିଲା । ସେ ନିଜର ଅଦ୍ଭୁତ ପରାକ୍ରମ ବଳରେ ଏହି ଦୁରାଚାରୀ ରାଜାମାନଙ୍କୁ ପରାଭୂତ କରାଇ ଧର୍ମରାଜ୍ୟ ସ୍ଥାପନ କରିଥିଲେ ।

ଭଗବାନ ଶ୍ରୀକୃଷ୍ଣ କେବଳ ଜଣେ ଧର୍ମନେତା ବା ରାଜନେତା ନ ଥିଲେ । ଜଣେ ସମାଜ ସଂସ୍କାରକ ଭାବରେ ସ୍ତ୍ରୀ ବୈଶ୍ୟ ଏବଂ ଶୂଦ୍ରମାନଙ୍କର ଛଡ଼ାଇ ନିଆଯାଇଥିବା ଅଧିକାରର ପୁନଃପ୍ରତିଷ୍ଠା କରି ସେ ବର୍ଣ୍ଣ ବ୍ୟବସ୍ଥାର ସଂସ୍ଥାପନ କରିଥିଲେ । ସେ ସମୟରେ ବର୍ଣ୍ଣଭେଦ ବା ଜାତିଭେଦ ଏପରି ଏକ ଭୟଙ୍କର ପରିସ୍ଥିତି ସୃଷ୍ଟି କରିଦେଇଥିଲା, ଯଦ୍ଦ୍ୱାରା ଅର୍ଜ୍ଜୁନଙ୍କୁ ମହାଭାରତ ଯୁଦ୍ଧ ଦ୍ୱାରା ବର୍ଣ୍ଣସଂକର ହେବାର ସମସ୍ୟା ଦେଖାଦେଇଥିଲା । କ୍ଷତ୍ରିୟ ରାଜକୁମାରମାନେ ସ୍ୱ ଆଭିଜାତ୍ୟ ପାଇଁ ଗର୍ବ କରୁଥିଲେ । ଭୀମ କର୍ଣ୍ଣର ଅପମାନ ଏଥିପାଇଁ କରିଥିଲେ ଯେ ସେ ସୂତପୁତ୍ର ଥିଲା । ଏହି କ୍ଷତ୍ରିୟମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଏକଲବ୍ୟଙ୍କ ପରି ଶସ୍ତ୍ରବିଦ୍ୟାପ୍ରେମୀ ଶୂଦ୍ର କୁଳରେ ଉତ୍ପନ୍ନ ହୋଇଥିବା କାରଣରୁ ଶସ୍ତ୍ର ଶିକ୍ଷାରୁ ବଞ୍ଚିତ ହେବାକୁ ପଡ଼ିଥିଲା । ଭୀଷ୍ମଙ୍କ ପରି ଧର୍ମପରାୟଣ ପୁରୁଷ ଦୁର୍ଯ୍ୟୋଧନର ଅନ୍ନରେ ପ୍ରତିପାଳିତ ହୋଇ ଅଧର୍ମର ପକ୍ଷ ଗ୍ରହଣ କରିବାକୁ ପଛେଇ ନଥିଲେ । ଭଗବାନ କୃଷ୍ଣଙ୍କୁ ଏହା ହିଁ ସବୁଠାରୁ ବଡ଼ ଦୁଃଖ ଦେଇଥିଲା । ସେ ପୀଡ଼ିତ, ଶୋଷିତବର୍ଗଙ୍କ ପାଇଁ ସମସ୍ତ ପ୍ରକାର ପ୍ରତିଷ୍ଠା ତ୍ୟାଗ କରି ଗୋପାଳମାନଙ୍କର ସଖା ହେଲେ । ସମ୍ରାଟ ଦୁର୍ଯ୍ୟୋଧନଙ୍କର ଆତିଥ୍ୟକୁ ଅସ୍ୱୀକାର କରି ଦାସୀପୁତ୍ର ବିଦୁରଙ୍କର ଆତିଥ୍ୟ ସ୍ୱୀକାର କଲେ ।

ବାଲ୍ୟାବସ୍ଥାରୁ ଜୀବନର ଅନ୍ତିମ କ୍ଷଣ ପର୍ଯ୍ୟନ୍ତ ଭଗବାନ କୃଷ୍ଣ କର୍ମ ହିଁ କରିଯାଇଛନ୍ତି । ତାଙ୍କର ଶାରୀରିକ ବଳ ଏବଂ ସୂକ୍ଷ୍ମମନ ସମସ୍ତଙ୍କ ପାଇଁ ଅନୁକରଣୀୟ । ବାଲ୍ୟାବସ୍ଥାରୁ ସେ ଅନେକ ହିଂସ୍ର ଜନ୍ତୁଙ୍କୁ ବଧ କରିଥିଲେ । କିଶୋର ଅବସ୍ଥାରେ ସେ ରଣନୀତି ଏବଂ ଯୁଦ୍ଧକୌଶଳ ଶିକ୍ଷା କଲେ । ଅର୍ଜ୍ଜୁନ ଏବଂ ସାତ୍ୟକିଙ୍କପରି ବୀରଙ୍କୁ ସେ ଯୁଦ୍ଧ ବିଦ୍ୟା ଶିକ୍ଷା ଦେଇଥିଲେ । ଶାରୀରିକ ବଳ ସଙ୍ଗେ ସଙ୍ଗେ ତାଙ୍କର ମାନସିକ ବା ଆଧ୍ୟାତ୍ମିକ ବଳଥିଲା ଅଦ୍ଭୁତ ପ୍ରକାର । ବେଦବେଦାଙ୍ଗ ଉପରେ ତାଙ୍କର ଗଭୀର ପ୍ରବେଶ ଥିବା କଥା ଆମେ ଭୀଷ୍ମଙ୍କ

ଉକ୍ତିରୁ ଜାଣିପାରୁ । ଚିକିତ୍ସା ଶାସ୍ତ୍ରରେ ମୃତପ୍ରାୟ ଉତ୍ତରାର ବାଳକଙ୍କୁ ଜୀବନ ପ୍ରଦାନ କରିବା ଉଦାହରଣରୁ ଜାଣିହୁଏ । ବଂଶୀବାଦନ କରି ସେ କିପରି ଜନମନ ମୋହିତ କରିଦେଉଥିଲେ ସେଥିରୁ ତାଙ୍କର ସଙ୍ଗୀତ ଜ୍ଞାନର ପରିଚୟ ମିଳେ । ଏକ ପତ୍ନୀ ବ୍ରତ ପାଳନ କରି ମଧ୍ୟ ସେ ସପତ୍ନୀକ ବାର ବର୍ଷ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିଥିଲେ । ତାହାପରେ ତାଙ୍କର ପ୍ରଦ୍ୟୁମ୍ନ ପରି ରୂପଗୁଣରେ ପରିପୂର୍ଣ୍ଣ ଏକ ପୁତ୍ରଲାଭ ହୋଇଥିଲା ।

ପଦ୍ମପତ୍ରର ନୀରବିନ୍ଦୁ ସେ ସଂସାରୀ ହୋଇମଧ୍ୟ ସାଂସାରିକ ମୋହ ମମତାରେ ବନ୍ଧା ନଥିଲେ । ଯେଉଁ କାର୍ଯ୍ୟ ଦ୍ୱାରା ଜଗତର ମଙ୍ଗଳ ହେବ ସେହି କାର୍ଯ୍ୟ ପାଇଁ ସେ ସଦାସର୍ବଦା କାର୍ଯ୍ୟ କରିପାରୁଥିଲେ । କଂସ ତାଙ୍କର ମାମୁଁ ଥିଲା । ମାମୁଁ ହେଲେ କଣହେବ ସେ ଏକ ଦୁରାତ୍ମା ରାଜା ଥିବାରୁ ତା ନିଧନ ହିଁ ପ୍ରଜାଙ୍କ ପାଇଁ ଏକାନ୍ତ କାମ୍ୟଥିଲା । ଏଣୁ ପ୍ରଜାଙ୍କ ହିତ ପାଇଁ ସେ ମାମୁଁଙ୍କ ବିନାଶ କଲେ । କଂସ ମରିବା ପରେ ପରେ ଜରାସନ୍ଧ ଆକ୍ରମଣ କରିଦେଲା । ଜରାସନ୍ଧ ମଧ୍ୟ ତାର ଜାମାତାର ପଥ ଅନୁସରଣ କଲା । ଏହା ପରେ ଶ୍ରୀକୃଷ୍ଣ ଭାବିଲେ ଯେ ଶୂରସେନ ପ୍ରଦେଶ ସୁରକ୍ଷା ଦୃଷ୍ଟିରୁ ଅଧିକ ସୁଦୃଢ଼ ନୁହେଁ । ତେଣୁ ସେ ଯାଦବ ଜାତିର ସୁରକ୍ଷା ପାଇଁ ଦ୍ୱାରକା ପରି ଭୌଗୋଳିକ ଦୃଷ୍ଟିରୁ ଏକ ସୁଦୃଢ଼ ସ୍ଥାନ ଖୋଜି ବାହାର କଲେ ।

ଶ୍ରୀକୃଷ୍ଣଙ୍କ ଚରିତ୍ରର ସବୁଠୁ ବଡ଼ କୃଷ୍ଣ ପକ୍ଷ ହେଉଛି ଗୋପୀ ଓ ରାଧା ପ୍ରସଙ୍ଗ । ଷୋଳ ସହସ୍ର ଗୋପୀଙ୍କ ସହ ରମଣ କରିବା ପୁନଶ୍ଚ ରାଧାଙ୍କ ସହ ପରକୀୟା ପ୍ରୀତି ରଖିବା ଦ୍ୱାରା ଇତିହାସ କଳଙ୍କିତ ହୋଇଛି । ବିଷ୍ଣୁ ପୁରାଣରେ ଏହି ଗୋପୀମାନଙ୍କର ସହ ଶ୍ରୀକୃଷ୍ଣର ଭାବକୁ ପବିତ୍ର ଭାବରେ ଦର୍ଶାଯାଇଛି । ହରିବଂଶ ପୁରାଣରେ ଏହାକୁ ବିଳାସିତ ଅବସ୍ଥା ଭାବରେ ଚିତ୍ରଣ କରାଯାଇଛି । ଭାଗବତରେ ଏହା ବିସ୍ତୃତି ଲାଭ କରିଛି ଏବଂ ବ୍ରହ୍ମବୈବର୍ତ୍ତ ପୁରାଣରେ ଏହି ପ୍ରସଙ୍ଗଟି ଏପରି ଚର୍ଚ୍ଚିତ ହୋଇଛି ଯେତେ ଯେପରି ମନେ ହେବ ଶ୍ରୀକୃଷ୍ଣ ଜଣେ ସଂଯମୀ ପୁରୁଷ ନଥିଲେ ବରଂ ବିଳାସ ବ୍ୟସନରେ ମତ୍ତ ରହୁଥିବା ଜଣେ ଶଠ ପୁରୁଷ ଥିଲେ । ଏଠି ଆଶ୍ଚର୍ଯ୍ୟ ନହୋଇ ରହିହୁଏନା ଏହିପରି ଜଣେ ଗୋପୀପ୍ରେମୀ, ରାଧାପ୍ରେମୀ ଶ୍ରୀକୃଷ୍ଣଙ୍କର ସାଧାରଣ ସୂଚନା ମହାଭାରତରେ ନପାଇ ଯଦି ସେ ଜଣେ ଜାର ପୁରୁଷ ଥିଲେ ତେବେ ତାଙ୍କର ଉଲ୍ଲେଖ ତ ମହାଭାରତରେ ନିଶ୍ଚୟ ହୋଇଥାନ୍ତା । ସଭାପର୍ବରେ ରାଜସୂୟ-ଯଜ୍ଞ ଅବସରରେ ଶିଶୁପାଳ ଶ୍ରୀକୃଷ୍ଣଙ୍କୁ ଭୟଙ୍କର ନିନ୍ଦା କରିଛି । ବାଲ୍ୟକାଳରୁ ଯୌବନ କାଳ ପର୍ଯ୍ୟନ୍ତ ସବୁ କଥାର ଉଲ୍ଲେଖ କରି କୌଣସି ତ୍ରୁଟି କଥାଟିକୁ ମଧ୍ୟ ସେ ଛାଡ଼ିଯାଇ ନାହିଁ । ଶ୍ରୀକୃଷ୍ଣ ଯଦି ରାଧା ଏବଂ ଗୋପୀମାନଙ୍କ ସହ କୁସମ୍ପର୍କ ରଖିଥାଆନ୍ତେ

ତାହାହେଲେ ଶିଶୁପାଳ ସେ ଘଟଣାଟିକୁ ଉଲ୍ଲେଖ କରିବାକୁ ଭୁଲିଯାଇ ନଥାନ୍ତା । ଯେଉଁ ଶିଶୁପାଳ ମୁହଁରେ ଝଙ୍କୁରୁ ବ୍ୟାସଦେବ ଏତେ କଥା ଉଚ୍ଚାରଣ କରାଇଥିଲେ ସେ ଗୋପୀ ବା ରାଧା ପ୍ରସଙ୍ଗଟିକୁ ଉଲ୍ଲେଖ କରିବାକୁ ଭୁଲିଯିବା ଏକ ବିସ୍ମରଣର କଥା ହୋଇନପାରେ । ମହାଭାରତ ପାଠ କଲେ ଜଣାଯାଏ ଯେ କେବଳ ଗୋଟିଏ ସ୍ଥାନରେ "ଗୋପୀ" ଶବ୍ଦଟି ଦ୍ରୌପଦୀଙ୍କ ଦ୍ୱାରା କୁହାଯାଇଛି । ଦ୍ରୌପଦୀଙ୍କ କେଶାକର୍ଷଣ ସମୟରେ ବିବଶ ଅବସ୍ଥାରେ ସେ ଯେତେବେଳେ ପ୍ରାର୍ଥନା କରିଛନ୍ତି:—

ଆକୃଷ୍ୟମାଣେ ବସନେ ଦ୍ରୌପଦ୍ୟା ଚିନ୍ତିତୋ ହରିଃ
ଗୋବିନ୍ଦ ଦ୍ୱାରକାବାସିନ୍ କୃଷ୍ଣ ଗୋପୀଜନ ପ୍ରିୟ ॥

[ସଭା ୬୮.୪୧]

ଉପରୋକ୍ତ ଶ୍ଳୋକରୁ ଶ୍ରୀକୃଷ୍ଣଙ୍କ ସହ ଗୋପୀମାନଙ୍କର କୌଣସି ଜାର ସମ୍ପର୍କ ଉଲ୍ଲେଖ ନାହିଁ ବରଂ ଶ୍ରୀକୃଷ୍ଣ ଗୋପର ଗୋପାଳ ଗୋପ ଲଳନାମାନଙ୍କର ଯେ କେତେ ପ୍ରିୟ ଥିଲେ ତାହାହିଁ ସୂଚିତ ହୁଏ । ଏହି ଶ୍ଳୋକଟିରୁ ଗୋପନବାସୀ ନରନାରୀଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଥିବା ବାତ୍ସଲ୍ୟ ମମତାର ସୂଚନା ମିଳେ । ଏତଦ୍‌ବ୍ୟତୀତ ଯଦି ବିଚାର କରାଯାଏ ତେବେ ମହାଭାରତରେ କୌଣସି ରାସକ୍ରୀଡ଼ାର ବର୍ଣ୍ଣନା ମଧ୍ୟ ନାହିଁ । ମନେହୁଏ ମହାଭାରତକାର ବ୍ୟାସ ଶ୍ରୀକୃଷ୍ଣଙ୍କର ଓଠରେ ବଂଶୀ ନଦେବାକୁ ମଧ୍ୟ ପଣ କରିନେଇଛନ୍ତି । ମହାଭାରତରେ ଶ୍ରୀକୃଷ୍ଣ ଚକ୍ରଧର, ଗଦାଧର ଏବଂ ଅସିଧର ମାତ୍ର ବଂଶୀଧର ନୁହନ୍ତି ।

ଗୋପୀଙ୍କ ସହ କୃଷ୍ଣଙ୍କ ନାମ ଯୋଡ଼ିବା ଯେପରି ଗୋଟିଏ କଥା ସେହିପରି ରାଧାଙ୍କ ସହ ଶ୍ରୀକୃଷ୍ଣଙ୍କ ନାମ ଯୋଡ଼ିବା ଆଉ ଏକ କଥା । ଆଜି ଜଣେ ସାଧାରଣ ହିନ୍ଦୁ ରାଧାଙ୍କ ବ୍ୟତୀତ ଶ୍ରୀକୃଷ୍ଣଙ୍କ କଳ୍ପନା କରି ନ ପାରେ । ରାଧା ଏବଂ ଶ୍ରୀକୃଷ୍ଣଙ୍କର ବାହ୍ୟିକ ସମ୍ପର୍କକୁ ଯେଉଁମାନେ ସ୍ୱୀକାର କରିବାକୁ ଲଜ୍ଜା ଅନୁଭବ କରନ୍ତି ସେହିମାନେ ଶ୍ରୀକୃଷ୍ଣଙ୍କୁ ପୁରୁଷ ଏବଂ ରାଧାଙ୍କୁ ପ୍ରକୃତି ହିସାବରେ ଚିତ୍ରଣ କରିଥାଆନ୍ତି । କେତେକ ଏହି ଦୁଇଟି ଶବ୍ଦର ବ୍ୟାଖ୍ୟା କରିବାକୁ ଯାଇ କୁହନ୍ତି; "ଆକର୍ଷୟତି ଯଃ ସ କୃଷ୍ଣ" ଏବଂ "ଆରାଧୟତି ଯଃ ସ ରାଧା" ଏସବୁ ଦୃଷ୍ଟିକୋଣରୁ ଆଧ୍ୟାତ୍ମିକ ବା ପରମାର୍ଥିକ ଦୃଷ୍ଟିକୋଣରୁ ବିଚାର କରିବାର ସମୟ ଆଜି ନାହିଁ । ଇତିହାସ ଏବଂ ଶାସ୍ତ୍ରୀୟ ପ୍ରମାଣ ଦ୍ୱାରା ଏହା ବିବେଚନା କରାଯିବା ଉଚିତ । ମାତ୍ର କେବଳ ବ୍ରହ୍ମବୈବର୍ତ୍ତ ପୁରାଣକୁ ବାଦଦେଲେ ଆଉ କୌଣସି ଶାସ୍ତ୍ରରେ ରାଧାଙ୍କ ପ୍ରସଙ୍ଗଟି ଉଲ୍ଲେଖ ହୋଇଥିବା ଦେଖିଲେ ସନ୍ଦେହ ହୁଏ ଯେ ଏହି ବ୍ରହ୍ମବୈବର୍ତ୍ତ ପୁରାଣ ଲେଖିଲା କିଏ ? ଭାଗବତରେ ମଧ୍ୟ ରାଧା ପ୍ରସଙ୍ଗଟି ଉଲ୍ଲେଖ ନାହିଁ, ମହାଭାରତ କଥା ଛାଡ଼ନ୍ତୁ । ବୈଷ୍ଣବମାନେ ଭାଗବତରେ ରାଧାଙ୍କୁ ନ ପାଇ ରାସପଞ୍ଚାଧ୍ୟାୟୀରେ ଯେଉଁଟି

କୃଷ୍ଣ କୌଣସି ଏକ ବିଶେଷ ଗୋପୀଙ୍କ ସାଙ୍ଗରେ ନେଇ ଅନ୍ତର୍ଦ୍ଧାନ ହୋଇଯାଆନ୍ତି । ସେହି ଅଭିପ୍ରାୟରେ ସେହି ବିଶେଷ ଗୋପୀଙ୍କୁ ରାଧା ବୋଲି ପାଦଟୀକାରେ ଉଲ୍ଲେଖ କରିଥାନ୍ତି । ମାତ୍ର କୃଷ୍ଣଙ୍କ ଗୋପୀବିଶେଷ ସହ ଅନ୍ତର୍ଦ୍ଧାନ ହୋଇଥିବା ରାଧାଙ୍କ ଅସ୍ତିତ୍ୱକୁ ପ୍ରମାଣ କରେ ନାହିଁ । ଯଦି ରାଧା ନାମକ କୌଣସି ଚରିତ୍ର ଶ୍ରୀକୃଷ୍ଣଙ୍କ ଜୀବନ କାଳରେ ଥିଥାନ୍ତେ ତେବେ ସେହି ପ୍ରସଙ୍ଗଟି ମହାଭାରତ, ହରିବଂଶ, ଭାଗବତ ଏବଂ ବିଷ୍ଣୁ ପୁରାଣରେ ଉଲ୍ଲେଖ ହେବା ଉଚିତ । ଲେଖକଙ୍କ ମତରେ ଯେହେତୁ ବ୍ରହ୍ମବୈବର୍ତ୍ତ ପୁରାଣରେ ପ୍ରଥମଥର ପାଇଁ ରାଧାପ୍ରସଙ୍ଗଟି ଉଲ୍ଲେଖ ହୋଇଛି ଏବଂ ଏହି ପୁରାଣଟି ପ୍ରଫେସର ଉଇଲସନଙ୍କ ମତରେ ସମ୍ପୂର୍ଣ୍ଣ ନବୀନ ତେଣୁ ଏହା ଅନୁମାନ କରି ହେବ ଯେ ଏହା ଜଣେ ମଠାଧୀଶଙ୍କ ଦ୍ୱାରା ଲିଖିତ ଏବଂ ରାଧା ହୁଏତ ଏହି ମଠାଧୀଶଙ୍କର ଜଣେ ମାନସକନ୍ୟା ହୋଇଥିବେ ।

ପୁରାଣକାରଙ୍କ ମତରେ ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ ଥିଲେ । ସେ ଧର୍ମର ରକ୍ଷା ଅଧର୍ମର ବିନାଶ ପାଇଁ ଅବତାରୀ ପୁରୁଷ ଭାବରେ ଜନ୍ମ ନେଇଥିଲେ । ସେ ଏକ-ପତ୍ନୀବ୍ରତ ଦ୍ୱାରା ସନ୍ତୁଷ୍ଟ ନ ହୋଇ ଅନେକ ପତ୍ନୀ ଗ୍ରହଣ କରିଥିଲେ । ଭାଗବତ ଅନୁସାରେ ରୁକ୍ମିଣୀଙ୍କ ବ୍ୟତୀତ ତାଙ୍କର ଆଉ ସାତଟି ପାଟରାଣୀ ଥିଲେ । ସେମାନେ ହେଲେ ସତ୍ୟଭାମା, ଜାମ୍ବବତୀ (ଯାହାଙ୍କୁ ବିଷ୍ଣୁ ପୁରାଣରେ ରୋହିଣୀ ବୋଲି କୁହାଯାଇଛି), କାଳିନ୍ଦୀ, ସତ୍ୟା ଲକ୍ଷ୍ମଣା, ମିତ୍ରବିନ୍ଦା ଏବଂ ଭଦ୍ରା । ଏଥିରେ ମଧ୍ୟ ସେ ସନ୍ତୁଷ୍ଟ ନ ହୋଇ ଆଉ ଷୋଳସହସ୍ର ରାଣୀ ଗ୍ରହଣ କରିଥିଲେ ।

ଭାଗବତରେ ବର୍ଣ୍ଣନା ଅଛି ଯେ ପ୍ରାଗ୍‌ଜ୍ୟୋତିଷ (ଆସାମ ପ୍ରଦେଶର) ରାଜା ନରକାସୁର ଖୁବ ଅତ୍ୟାଚାରୀ ଥିଲା । ସେ ଷୋଳସହସ୍ର ରାଜକୁମାରୀଙ୍କୁ ବଳାତ୍କାର କରି ସ୍ୱ ପତ୍ନୀଭାବରେ ନିଜ ରାଜଭବନରେ ବନ୍ଦୀ କରିଥିଲା । ଇନ୍ଦ୍ର ଦ୍ୱାରକାରେ ଶ୍ରୀକୃଷ୍ଣ ତାକୁ ବଧ କରିବାକୁ ଅନୁରୋଧ କରିଥିଲେ । ଶ୍ରୀକୃଷ୍ଣ ସତ୍ୟଭାମା ସହ ସେଠି ପହଞ୍ଚି ନରକାସୁରର ସେନାପତି ମୁରକୁ ପ୍ରଥମେ ବଧକଲେ ଏବଂ ସେହି ଦିନଠାରୁ ମୁରାରି ନାମ ପାଇଲେ । ତାପରେ ସେ ନରକାସୁରକୁ ବଧକଲେ ଏବଂ ଷୋଳସହସ୍ର ନାରୀଙ୍କୁ ମୁକ୍ତକରି ସେମାନଙ୍କୁ ସ୍ୱ ପତ୍ନୀରୂପେ ଗ୍ରହଣ କଲେ । ପଣ୍ଡିତ ଶ୍ରୀପାଦ ଦାମୋଦର ସାତବଲେକର ଏହି ଘଟଣାଟିର ସୁନ୍ଦର ବ୍ୟାଖ୍ୟା କରନ୍ତି । ତାଙ୍କ ମତରେ ଶ୍ରୀକୃଷ୍ଣ ନରକାସୁରକୁ ବଧକରି ଏହି ନାରୀମାନଙ୍କୁ ନିଜ ଅନ୍ତଃପୁରରେ ସ୍ତ୍ରୀରୂପେ ସ୍ଥାନ ଦେଇ ଏକ ଅପୂର୍ବ ଆଦର୍ଶ ଉପସ୍ଥିତ କରି ଯାଇଛନ୍ତି । ସାତବଲେକର ଶ୍ରୀକୃଷ୍ଣଙ୍କ ଦୃଷ୍ଟାନ୍ତ ଦେଇ ହିନ୍ଦୁମାନଙ୍କୁ କହିବାକୁ ଚାହାନ୍ତି ଯେ ଏପରି କୌଣସି ହିନ୍ଦୁ ଅଛନ୍ତି ଯେ ପାକିସ୍ଥାନରୁ ନିର୍ଯାତିତ ଏବଂ ବିତାଡ଼ିତ ସ୍ତ୍ରୀମାନଙ୍କୁ (ସେମାନଙ୍କ ସଂଖ୍ୟା ଷୋଳହଜାର ହେଉ ବା ବତିଶ ହଜାର ହେଉ) ପତ୍ନୀରୂପରେ ଗ୍ରହଣକରି କଳିଯୁଗରେ କୃଷ୍ଣଙ୍କ

ଆଦର୍ଶ ଉପସ୍ଥାପିତ କରି ଅପହୃତାଙ୍କ ସମସ୍ୟା ସମାଧାନ କରି ପାରିବେ ? ସାତବଳେକରଙ୍କ ପରି ବିଦ୍ୱାନଙ୍କର ଏହି ଅଭ୍ୟୁତ ତର୍କ ଶୁଣି ଆଶ୍ଚର୍ଯ୍ୟ ନ ହୋଇ ରହି ହୁଏନା । ଶ୍ରୀକୃଷ୍ଣଙ୍କ ପରି ଜଣେ ବିଜ୍ଞ ମହାପୁରୁଷ ଏହି ଅପହୃତା ଷୋଳସହସ୍ର ନାରୀଙ୍କୁ ପୁଣି ଥରେ ମୁକ୍ତ ନାମରେ ଅପହରଣ କରି ଅଣିବା ଏବଂ ନିଜ ରାଜପ୍ରାସାଦରେ ପୁଣି ଥରେ ବନ୍ଦୀକରି ନେବା କି ଅପୂର୍ବ ଆଦର୍ଶ ! ଯେହି ନାରୀମାନଙ୍କୁ ନେଇ ଏକ ପୃଥକ ଆଶ୍ରମ ନିର୍ମାଣ କରିବା କିମ୍ବା ସେମାନଙ୍କର ପୁନର୍ବିବାହର ବ୍ୟବସ୍ଥା କରିଥିଲେ କଣ ପରି ହୋଇ ଥାଆନ୍ତା ? ସାତବଳେକରଜୀ ଭଗବାନ ଶ୍ରୀକୃଷ୍ଣଙ୍କୁ ବୋଧହୁଏ ହାଇଦ୍ରାବାଦର ନିଜାମ କିମ୍ବା ଲକ୍ଷ୍ନୌର ନବାବ ବୋଲି ଭାବିଲେ । ଏତେଗୁଡ଼ିଏ ସ୍ତ୍ରୀଙ୍କୁ ଗ୍ରହଣ କରିବା ଦ୍ୱାରା ଶ୍ରୀକୃଷ୍ଣ ବହୁବିବାହ ପରି ଏକ ଜଘନ୍ୟ କାର୍ଯ୍ୟର ପ୍ରତିପାଦକ ହୋଇ-ଯାଆନ୍ତି ନାହିଁ କି ?

ପ୍ରକୃତରେ ଶ୍ରୀକୃଷ୍ଣ ଏକପତ୍ନୀକ ଥିଲେ । ତାଙ୍କର ପତ୍ନୀ ରୁକ୍ମଣୀଙ୍କର ବ୍ୟତୀତ ଅନ୍ୟ କେହି ନ ଥିଲେ । ରୁକ୍ମଣୀଙ୍କ ବିବାହ ପ୍ରଥମରେ ଶିଶୁପାଳ ସହିତ ନିଶ୍ଚିତ ହୋଇଯାଇଥିଲା । ମାତ୍ର ରୁକ୍ମଣୀ ଶ୍ରୀକୃଷ୍ଣଙ୍କସହ ବିବାହ ହେବା ପାଇଁ ଜଣେ ବୃଦ୍ଧ ବ୍ରାହ୍ମଣ ହାତରେ ସମ୍ବାଦ ପ୍ରେରଣା କରିଥିଲେ । ଶିଶୁପାଳ ହାତରୁ ରକ୍ଷା ପାଇବା ପାଇଁ ସେ ଶ୍ରୀକୃଷ୍ଣଙ୍କୁ ତାଙ୍କୁ ଅପହରଣ କରିନେବା ପାଇଁ ମଧ୍ୟ ସୂଚନା ଦେଇଥିଲେ । ନିର୍ଦ୍ଦିଷ୍ଟ ଦିନ ଶ୍ରୀକୃଷ୍ଣ ସ୍ୱ ରଥରେ ରୁକ୍ମଣୀଙ୍କୁ ନେଇ ଆସିଲେ । ନେଇ ଆସିବା ସମୟରେ ଶିଶୁପାଳ ସହିତ ତାଙ୍କର ଘୋର ଯୁଦ୍ଧ ହେଲା । ଶିଶୁପାଳ ପରାସ୍ତ ହେଲା । ରୁକ୍ମଣୀଙ୍କସହ ସେ ଦ୍ୱାରକାରେ ପତ୍ନୀଙ୍କୁ ବୈଦିକ ବିଧିରେ ପାଣିଗ୍ରହଣ କରିଥିଲେ । ଏହା ବଳକ୍ରାର ବିବାହ ମଧ୍ୟ ନ ଥିଲା । କାରଣ ରୁକ୍ମଣୀ ଶ୍ରୀକୃଷ୍ଣଙ୍କୁ ଅନ୍ତରସହ ଗ୍ରହଣ କରିନେଇ ସାରିଥିଲେ । ଏହି ରୁକ୍ମଣୀ ହିଁ ଶ୍ରୀକୃଷ୍ଣଙ୍କର ଏକମାତ୍ର ପତ୍ନୀ ଥିଲେ । ଏହି ରୁକ୍ମଣୀଙ୍କ ଗର୍ଭରୁ ପ୍ରଦ୍ୟୁମ୍ନଙ୍କ ପରି ପୁତ୍ର ବାରବର୍ଷ ବ୍ରହ୍ମଚର୍ଯ୍ୟାବ୍ରତ ପାଳନପରେ ଜାତ ହୋଇଥିଲେ । ଯେଉଁମାନେ ଶ୍ରୀକୃଷ୍ଣଙ୍କୁ ଲମ୍ପଟରୂପରେ ଚିତ୍ରଣ କରନ୍ତି ସେମାନେ ମହାଭାରତ ଅବଶ୍ୟ ପଢ଼ିବା ଉଚିତ୍ । ଶ୍ରୀକୃଷ୍ଣଙ୍କ ପରି ଜିତେନ୍ଦ୍ରିୟ, ସଂଯମୀ ଭାରତ ଇତିହାସରେ ବିରଳ । ପୁରାଣଗୁଡ଼ିକରେ ଶ୍ରୀକୃଷ୍ଣ ଚରିତ୍ର ସମ୍ପର୍କରେ ଏଭଳି ଅନେକ ବିଭ୍ରାନ୍ତିକର ତଥ୍ୟ ପରିବେଷଣ ହୋଇଥିବାରୁ ଆମେ ବୃଥାରେ ସନ୍ଦେହ କରି ବସୁ ।

ଶ୍ରୀକୃଷ୍ଣଙ୍କ ଚରିତ୍ର ସମ୍ପର୍କରେ ଯେତେ ମତ ଓ ମତାନ୍ତର ଥାଉନା କାହିଁକି ସମସ୍ତେ ଶ୍ରୀକୃଷ୍ଣଙ୍କୁ ଜଣେ ଐତିହାସିକ ପୁରୁଷ ହିସାବରେ ବର୍ଣ୍ଣନା କରିଛନ୍ତି । କେତେକ ପାଶ୍ଚାତ୍ୟ ବିଦ୍ୱାନମାନଙ୍କର ମତ କିନ୍ତୁ ଭିନ୍ନ ପ୍ରକାର । ସେମାନଙ୍କ ମତରେ ମହାଭାରତ ଏକ ମହାକାବ୍ୟ ଏବଂ ଶ୍ରୀକୃଷ୍ଣ ଜଣେ କାଳ୍ପନିକ ଚରିତ୍ର । ଏହି କୁରୁପାଣ୍ଡବ ଯୁଦ୍ଧ ପାଣ୍ଡବ କବିମାନଙ୍କର କଳ୍ପନା ମାତ୍ର । ହୁଲର ସାହେବ କୃଷ୍ଣ ଏବଂ

ପାଣ୍ଡବମାନଙ୍କର ସହିତ ଯେ କୌଣସି ଘନିଷ୍ଠ ଯୋଗାଯୋଗ ଥିଲା ସେଥିରେ ସନ୍ଦେହ ଜନ୍ମ ଦେଉନ୍ତି । କାରଣ ଦ୍ୱାରକାରୁ ହସ୍ତିନାପୁର ମଧ୍ୟରେ ଚଉଦ ଶହ ମାଇଲର ବ୍ୟବଧାନ । ଫରାସୀ ବିଦ୍ୱାନ୍ ବୋରନଫ୍ ଶ୍ରୀକୃଷ୍ଣଙ୍କର ଐତିହାସିକତାକୁ ଅସ୍ୱୀକାର କରନ୍ତି । ତାଙ୍କ ମତରେ ଯେହେତୁ ମହାଭାରତର ଉଲ୍ଲେଖ ବୌଦ୍ଧ ଶାସ୍ତ୍ରଗୁଡ଼ିକରେ ନାହିଁ ତେଣୁ ଏହା କାଳ୍ପନିକ । ବୋରନଫ୍ ଏକଥା ଭୁଲି ଯାଆନ୍ତି ଯେ ବୌଦ୍ଧମାନେ ବୈଦିକ ଧର୍ମର ବିରୋଧୀ ଥିଲେ । ସେମାନଙ୍କର ମହାଭାରତର ଉଲ୍ଲେଖ କରିବା ବା ଆବଶ୍ୟକତା କଣ ? ଆଉ କେତେକ ବିଦେଶୀ ବିଦ୍ୱାନ ମହାଭାରତକୁ ଶ୍ଳୋକବଦ୍ଧ ମହାକାବ୍ୟ ଭାବରେ ଦେଖି ଏହାର ଐତିହାସିକ ତଥ୍ୟକୁ ଅବମୂଲ୍ୟାୟନ କରିଛନ୍ତି । ସେମାନେ ଭୁଲିଯାଇଛନ୍ତି ଯେ ଭାରତର ଗଣିତ, ଜ୍ୟୋତିଷ, ବିଜ୍ଞାନ, ଆୟୁର୍ବେଦ ଭାଷାକୋଷ ଓ ଦର୍ଶନ ଆଦି ଗ୍ରନ୍ଥଗୁଡ଼ିକ ଶ୍ଳୋକବଦ୍ଧ ଭାବରେ ଲେଖା ଯାଇଛି । ଏପରିକି ସଂସ୍କୃତ ବାଙ୍ମୟର ଅଧିକାଂଶ ଛନ୍ଦ ଅନୁଷ୍ଟୁପ ଛନ୍ଦରେ ଲେଖାଯାଇଅଛି । ମହର୍ଷି ବ୍ୟାସ ସେଦିନ ଇତିହାସ ଲେଖିଛନ୍ତି ତଥାପି ସେ ଯେ ଜଣେ କବି ତାହା କିପରି ଅସ୍ୱୀକାର କରାଯାଇପାରେ ? ଇତିହାସକୁ କୌଣସି କୌଣସି ସ୍ଥାନରେ ଆଳଂକାରିକ ଭାବରେ ବର୍ଣ୍ଣନା କରାଯାଇଥିବାରୁ ଆମେ ଭାବି ବସୁଁ ଯେ ସାରା ମହାଭାରତଟି ଆଳଂକାରିକ ଢଙ୍ଗରେ ବର୍ଣ୍ଣିତ ହୋଇଛି । ଏହିପ୍ରକାର ଅଳଂକାର ତତ୍ତ୍ୱରେ ଆମେ ଏତେ ପ୍ରଭାବିତ ଯେ ଭୌଗୋଳିକ ସ୍ଥାନ ଓ ଐତିହାସିକ ପୁରୁଷମାନଙ୍କୁ ମଧ୍ୟ ଆମେ କାଳ୍ପନିକ ପ୍ରମାଣ କରିବାରେ ବ୍ୟସ୍ତ । ବିଦେଶୀମାନଙ୍କର କଥା ଛାଡ଼ନ୍ତୁ, ଯେଉଁମାନେ ପ୍ରାଚୀନ ପ୍ରସ୍ତରଯୁଗ ଛଡ଼ା ଅନ୍ୟ କୌଣସି ଏକ ସୁସଭ୍ୟତାର ଯୁଗଥିଲା ତାହା ମାନିବାପାଇଁ ପ୍ରସ୍ତୁତ ନୁହନ୍ତି । ସେମାନେ ରାମାୟଣ ଏବଂ ମହାଭାରତ ପଢ଼ି ଏହା କଳ୍ପନା କରିପାରନ୍ତି ନାହିଁ ଯେ ଏହିପ୍ରକାର ଏକ ସ୍ୱର୍ଣ୍ଣ ଯୁଗ ଭାରତରେ ଆସିଥିଲା । କାରଣ ସେହି ସମୟରେ ଇଉରୋପବାସୀମାନେ ବଣରୁ ଫଳମୂଳ ସଂଗ୍ରହ କରି ନଗ୍ନ ଭାବରେ ଜୀବନଯାପନ କରୁଥିଲେ । ସେ କ୍ଷେତ୍ରରେ ସେମାନେ କିପରି ମାନିପାରିବେ ଯେ ଭାରତରେ ଏକ ସମୁଜ୍ଜ୍ୱଳ ସଭ୍ୟତା ଥିଲା । ସେତିକି କହିଥିଲେ ତ କିଛି ଭାବିବାର ନ ଥିଲା । ଯାହା ଆମର ଇତିହାସ ତାକୁ ମିଥ୍ୟା ଓ କାଳ୍ପନିକ କହି ଉଡ଼ାଇ ଦେବା ଏବଂ ଯାହା ଆମର କୁସଂସ୍କାର ତାକୁ ସତ୍ୟ ବୋଲି ପ୍ରମାଣିତ କରି ପ୍ରଚାର କରିବାରେ ସେମାନେ ପଛୁଆ ନ ଥିଲେ । ଗୋଟିଏ ପକ୍ଷରୁ ସେମାନେ ପାଣ୍ଡବମାନଙ୍କୁ କାଳ୍ପନିକ କହି ଆମ ଆଗରେ ତର୍କ ଉପସ୍ଥାପିତ କରିବା ସମୟରେ ଅନ୍ୟ ପକ୍ଷରେ ଦ୍ରୌପଦୀଙ୍କର ପାଞ୍ଚପତି ଥିଲେ ଏହା ସତ୍ୟ ବୋଲି ପ୍ରଚାର କରିବା ମଧ୍ୟରେ ସେମାନେ କହିବାକୁ ଚାହାନ୍ତି ଯେ ଭାରତ-ବର୍ଷରେ ବହୁ ବିବାହ ପରି କଳଙ୍କିତ ପ୍ରଥା ମଧ୍ୟ ଥିଲା । ସେମାନେ ବାରମ୍ବାର ପ୍ରଚାର କରିଥିବା ମିଥ୍ୟା ଆମ ପାଖରେ ସତ୍ୟଭାବରେ ପ୍ରତିଭାତ ହେଲା । ଆଜକୁ ପାଞ୍ଚ ହଜାର ବର୍ଷ ପୂର୍ବେ ମହାଭାରତ ପରି ଏକ ସମୃଦ୍ଧ ସୁସଭ୍ୟ ସମାଜ ଯେ ଦିନେ

ଥିଲା ତାହା ସେମାନେ ସ୍ୱୀକାର କରିବା ପାଇଁ ଚାହୁଁ ନ ଥିଲେ । ଏହା କେବେ ମଧ୍ୟ ପାଁଚହଜାର ବର୍ଷ ତଳେ ନୁହେଁ । ଏଥିପାଇଁ ସେମାନେ ମେଘାସ୍ଥିନିସଙ୍କ ପରବର୍ତ୍ତୀ ବୋଲି ପ୍ରମାଣ କରିବାକୁ ଗଲେ । ବେବର ସାହେବ ଗ୍ରୀକ୍ ରାଜଦୂତ ମେଘାସ୍ଥିନିସ୍ ପ୍ରଣୀତ ପୁସ୍ତକରେ ମହାଭାରତ କଥା ଉଲ୍ଲେଖ ନ ଥିବା ଦେଖି ଏହାକୁ ମେଘାସ୍ଥିନିସ ଏବଂ କ୍ରିସ୍ତୋଟମ୍ (କୌଣସି ୟୁରୋପୀୟ ଯାତ୍ରୀ ଯିଏ କୌଣସି ଏକ ନାବିକ ପାଖରୁ ମହାଭାରତ କଥା ଶୁଣିଥିଲେ)ଙ୍କ ସମୟର ମଧ୍ୟରେ ବୋଲି ମାନନ୍ତି । ଆଶ୍ଚର୍ଯ୍ୟ ଲାଗେ ଜଣେ ସାଧାରଣ ନାବିକ ଯଦି ମହାଭାରତ ସମ୍ପର୍କରେ ଜ୍ଞାନ ରଖିପାରେ ମେଘାସ୍ଥିନିସଙ୍କ ପରି ଜଣେ ବିଜ୍ଞ ପରିବ୍ରାଜକ କପରି ବହୁ ଚର୍ଚ୍ଚିତ ଏକ ଗ୍ରନ୍ଥ ସମ୍ପର୍କରେ କିଛି ସୂଚନା ଦେଲେ-ନାହିଁ । ଏଠି ଆଉ ଗୋଟିଏ କଥା ଭୁଲିଯିବା ଅନୁଚିତ ଯେ ମେଘାସ୍ଥିନିସ୍‌ଙ୍କ ସମ୍ପୂର୍ଣ୍ଣ ଭାରତ ବୃତ୍ତାନ୍ତ ବର୍ତ୍ତମାନ ମିଳୁନାହିଁ । ବିଭିନ୍ନ ଗ୍ରନ୍ଥରୁ ସଂଗୃହୀତ ତଥ୍ୟଗୁଡ଼ିକ ଆଧାର ଉପରେ "ମେଘାସ୍ଥିନିସ୍‌ଙ୍କ ଭାରତ ବୃତ୍ତାନ୍ତ" ଲେଖାଯାଇଛି । ମୂଳଗ୍ରନ୍ଥଟି ନ ପାଇ ବେବର ସାହେବ ଏପ୍ରକାର ମନ୍ତବ୍ୟ ଦେବା କେତେଦୂର ଯୁକ୍ତି-ସଙ୍ଗତ ତାହା ବିଚାରଣୀୟ । ଏତଦ୍‌ବ୍ୟତୀତ ଏଠି ସେ ଭୁଲିଯିବା ଅନୁଚିତ ଯେ ମେଘାସ୍ଥିନିସ୍ ଭାରତର ପ୍ରସିଦ୍ଧ ଦେବତାଙ୍କ ବର୍ଣ୍ଣନା କରିବାକୁ ଯାଇ ତାଙ୍କୁ ହରକ୍ଲିଜ ବୋଲି କହିଛନ୍ତି ଏବଂ ଏହା ମଧ୍ୟ ଉଲ୍ଲେଖ କରନ୍ତି ଯେ ହରକ୍ଲିଜଙ୍କ ପୂଜା ଶୌରସେନୀ ଲୋକେ କରନ୍ତି ଯେଉଁମାନେ ମିଥୋରା (ମଥୁରା) ନାମକ ସହରରେ ବାସ କରନ୍ତି । ଏଥିରୁ ଏହା ସୁସ୍ପଷ୍ଟ ଯେ ହରକ୍ଲିଜ ହରିକୃଷ୍ଣଙ୍କ ବ୍ୟତୀତ ଆଉ କେହି ନୁହନ୍ତି ।

ଏଠି ମହାଭାରତର ଚରିତ୍ରଗୁଡ଼ିକୁ କୃତ୍ରିମ ବା କାଳ୍ପନିକ ବୋଲି ପ୍ରମାଣ କରୁଥିବା ଭାରତୀୟ ବିଦ୍ୱାନଙ୍କର ମଧ୍ୟ ଅଭାବ ନାହିଁ । ଉଦାହରଣ ସ୍ୱରୂପ ମହାତ୍ମା-ଗାନ୍ଧୀଙ୍କ କଥା ନିଆଯାଉ । ରାଜନୈତିକ ଏବଂ ଧାର୍ମିକ କ୍ଷେତ୍ରରେ ସେ ଯାହା କହିଛନ୍ତି ସେସବୁର ପ୍ରେରଣା ତାଙ୍କୁ "ଶ୍ରୀମଦ୍‌ଭଗବଦ୍ ଗୀତା"ରୁ ପ୍ରାପ୍ତ ହୋଇଥିଲା । ତାଙ୍କ ସମଗ୍ର ଜୀବନର ପ୍ରେରଣାର ସ୍ରୋତ ଏହି ଗୀତା ହିଁ ଥିଲା । ଗୀତାକୁ ସେ ମା ହିସାବରେ ଗ୍ରହଣ କରିଥିଲେ । ମାତୃତ୍ୱର ମମତା ଓ ନିରାଶାର ଆଶା ହିଁ ତାଙ୍କ ପାଇଁ ଥିଲା ଭଗବଦ୍‌ଗୀତା । ଏହା ସତ୍ତ୍ୱେ ରାମାୟଣ ଏବଂ ମହାଭାରତର ପାତ୍ର ପାତ୍ରୀ ସବୁ କିନ୍ତୁ ତାଙ୍କୁ କାଳ୍ପନିକ ମନେ ହେଉଥିଲା । ୧୮୮୮-୮୯ ସାଲରେ ସେ ଯେବେ ଗୀତାପାଠ କରିବାର ସୁଯୋଗ ପାଇଲେ ତାଙ୍କୁ ଏପରି ମନେ ହେଲା ଯେ ଏହା କେବେ ମଧ୍ୟ ଐତିହାସିକ ଗ୍ରନ୍ଥ ହୋଇ ନ ପାରେ । ଏଥିରେ ଭୌତିକ ଯୁଦ୍ଧକୁ ନିମିତ୍ତ ରଖାଯାଇ ମନୁଷ୍ୟ ହୃଦୟରେ ସଦାସର୍ବଦା ଚାଲୁଥିବା ଦ୍ୱନ୍ଦ୍ୱର ବର୍ଣ୍ଣନା ହିଁ ରହିଛି ବୋଲି ତାଙ୍କର ଧାରଣା ହେଲା । ସେ କହିବାକୁ

ଆରମ୍ଭ କରିଦେଲେ ଯେ ଗୀତାର କୃଷ୍ଣ ମୂର୍ତ୍ତିମନ୍ତ ଶୁଦ୍ଧ ସମ୍ପୂର୍ଣ୍ଣ ଜ୍ଞାନ ଅଟନ୍ତି । ପରନ୍ତୁ ସେ ସଂପୂର୍ଣ୍ଣ କାଳ୍ପନିକ । କୌରବ ଏକ ଅସୁର ପ୍ରକୃତି ଏବଂ ପାଣ୍ଡବ ଦୈବ ପ୍ରକୃତି । ଏହି ଦୁଇ ପ୍ରକୃତିଙ୍କ ମଧ୍ୟରେ ଆମ ମନରେ ସଦାସର୍ବଦା ଯୁଦ୍ଧ ଲାଗିଆସିଛି । ଏହା କହିବା ପଛରେ ଗାନ୍ଧିଜୀଙ୍କର କିଛି ଉଦ୍ଦେଶ୍ୟ ରହିଛି । ଯାହା ତାଙ୍କର ସ୍ୱୟଂକଳ୍ପିତ ଅହିଂସା ନୀତିରୁ ଜଣାପଡ଼େ । ତାଙ୍କର ଅହିଂସା ବୌଦ୍ଧ ଏବଂ ଜୈନମାନଙ୍କ ଠାରୁ ଯେତେ ବ୍ୟାପକ ହେଉନା କାହିଁକି ଏହା ପ୍ରାଚୀନ ବେଦ, ଉପନିଷଦ, ଗୀତା, ମନୁସ୍ମୃତି ପ୍ରତିପାଦିତ ଅହିଂସା ନୁହେଁ । ଯଦି ସେ କହିଥାନ୍ତେ ଯେ ମହାଭାରତ ଯୁଦ୍ଧ ଏକ ଐତିହାସିକ ଘଟଣା ତେବେ ତାଙ୍କୁ ଏହା ସ୍ୱୀକାର କରିବାକୁ ପଡ଼ିବ ଯେ ତାଙ୍କର ଆରାଧ୍ୟ ଦେବତା ଶ୍ରୀକୃଷ୍ଣ ମଧ୍ୟ ଯୁଦ୍ଧ ବା ହିଂସା ଆଚରଣ କରୁଥିଲେ, ଯାହା ସେ ବ୍ୟକ୍ତିଗତ ଭାବରେ ସ୍ୱୀକାର କରି ନ ପାରନ୍ତି । କିନ୍ତୁ ଏଠି ମହାତ୍ମାଗାନ୍ଧୀ ଭୁଲିଯିବା ନ ଥିଲା ଯେ ସେ ଯେଉଁ ଅହିଂସା କଥା କହିଛନ୍ତି ତାହା ସନ୍ନ୍ୟାସୀ ଓ ପରିବ୍ରାଜକଙ୍କ ପାଇଁ ଭୂତଦୟା, ବିଶ୍ୱମୈତ୍ରୀ ଏବଂ ପୂର୍ଣ୍ଣ ଅହିଂସା ଅଟେ । ପରନ୍ତୁ ଜଣେ ସାଧାରଣ ମଣିଷ ଏବଂ ଶାସକବର୍ଗଙ୍କ ପାଇଁ ଅତ୍ୟାଚାରୀମାନଙ୍କ ପାଖରୁ ନିଜେ ବଞ୍ଚିବା ଏବଂ ଅନ୍ୟକୁ ବଞ୍ଚାଇବା ପାଇଁ ଶସ୍ତ୍ର ଧାରଣ କରିବାର ଆଦେଶ ରହିଛି । ଗାନ୍ଧିଜୀ ଏହି ସାଧୁ ପରିବ୍ରାଜକ ଏବଂ ଯୋଗୀଙ୍କ ଅହିଂସାକୁ ସର୍ବତ୍ର ପ୍ରଚଳିତ କରିବାକୁ ଚାହୁଁଥିଲେ । ଏଣୁ କୁରୁପାଣ୍ଡବ ଯୁଦ୍ଧକୁ କାଳ୍ପନିକ ଭିନ୍ନ ଅନ୍ୟ ରାସ୍ତା ନ ଥିଲା ।

ଏ ସମସ୍ତ ପ୍ରମାଣ ମହାଭାରତକୁ ମିଥ୍ୟା କପୋଳକଳ୍ପିତ ବା ଅଳଙ୍କାର ଭାବରେ ପ୍ରମାଣ କରି ନ ପାରେ । ମହାଭାରତ ସତ୍ୟ ନା କାଳ୍ପନିକ ଏହାକୁ ଜାଣିବାକୁ ହେଲେ ଇଂରାଜୀ ଅଭିଧାନ ଖୋଲି ଦେଖିବାର ଆବଶ୍ୟକତା ବା କ'ଣ ? ମେଘାସ୍ଥିନିସ୍ ମହାଭାରତର ଉଲ୍ଲେଖ କରି ନାହାନ୍ତି, ବେବର ସାହେବ ଏହାକୁ ପ୍ରାଚୀନ ବୋଲି ମାନୁନାହାନ୍ତି କିମ୍ବା ଭାରତର ମହାନ ବିଭୂତି ମହାତ୍ମାଗାନ୍ଧୀ ଏହାକୁ କାଳ୍ପନିକ ବୋଲି ଚିନ୍ତା କରିଛନ୍ତି ଏହିସବୁ ପ୍ରମାଣଯୋଗ୍ୟ ନୁହେଁ । ଏହା ଯଦି ଏକ ଐତିହାସିକ ଗ୍ରନ୍ଥ ତା'ହେଲେ ଏହାର ପ୍ରମାଣ ଅନ୍ୟାନ୍ୟ ଭାରତୀୟ ଶାସ୍ତ୍ରରେ ମିଳିବା ଉଚିତ । ବେଦ ଏବଂ ରାମାୟଣ ଏହା ପୂର୍ବରୁ ରଚିତ ହୋଇ-ଥିବାରୁ ସେଥିରେ ମହାଭାରତର କୌଣସି ଉଲ୍ଲେଖ ଖୋଜାଯାଇ ପାରିବ ନାହିଁ । ତେବେ ମହାଭାରତର ପରବର୍ତ୍ତୀ ସମୟରେ ଯେଉଁ ଗ୍ରନ୍ଥଗୁଡ଼ିକ ରଚିତ ହୋଇଛି ସେଥିରେ ଏହାର ଉଲ୍ଲେଖ ହେବା ଉଚିତ । ମୁଁ ଏଠି ସ୍ୱୀକାର କରୁଛି ଯେ ବହିଃଆକ୍ରମଣ ଫଳରେ ଅନେକ ଗ୍ରନ୍ଥାଳୟ ଧ୍ୱଂସ କରି ଦିଆଯାଇଛି । ସେଥିରେ ସଂଗୃହିତ ଗ୍ରନ୍ଥଗୁଡ଼ିକର ହୁଏତ କିଛି ତଥ୍ୟ ପ୍ରାପ୍ତହୋଇ ପାରିଥାଆନ୍ତା । ତେବେ

ଆଉ କିଛି ଗ୍ରନ୍ଥ ଯାହା ଆମ ପାଖରେ ବିଦ୍ୟମାନ ଅଛି ସେଥିରେ ଏହାର ବର୍ଣ୍ଣନା ରହିଛି, ଯେଉଁଥିରୁ ଏହା ପ୍ରମାଣ ହୋଇପାରେ ଯେ ଏହା କେବେ ମଧ୍ୟ ଅଣ-ଐତିହାସିକ ନୁହେଁ । ଉଦାହରଣ ସ୍ୱରୂପ ପାଣିନୀଙ୍କ ଅଷ୍ଟାଧ୍ୟାୟୀ ଦେଖାଯାଇପାରେ । ଇଉରୋପୀୟ ବିଦ୍ୱାନ ଗୋଲ୍‌ଡଷ୍ଟକର ପାଣିନୀଙ୍କୁ ଖ୍ରୀଷ୍ଟପୂର୍ବ ୧୦୦୦ରୁ ୧୧୦୦ ବର୍ଷ ବୋଲି ମାନନ୍ତି । ପଣ୍ଡିତ ଯୁଧିଷ୍ଠିର ମୀମାଂସକ ସ୍ୱ "ବୈଦିକ ବାଙ୍ଗ୍‌ମୟର ଇତିହାସ-୨ୟ ଭାଗ"ରେ ଏହା ପ୍ରମାଣ କରିଦିଅନ୍ତି ଯେ ପାଣିନୀ ଆହୁରି ଅଧିକ ପ୍ରାଚୀନ ଥିଲେ । ଯେହେତୁ ପାଣିନୀଙ୍କ ସୂତ୍ରରେ "ଭାରତ" [୬: ୨: ୩୮] ଶବ୍ଦ ଆସେ । ଯୁଧିଷ୍ଠିରଙ୍କ ସମ୍ପର୍କରେ ସେ "ଗାବି ଯୁଧିଭ୍ୟାଂ ସ୍ଥିରଃ" [୬: ୩: ୯୫] କୁନ୍ତୀଙ୍କ ସମ୍ପର୍କରେ "ସ୍ତ୍ରିଭ୍ୟାମବନ୍ତି କୁନ୍ତି କୁରୁଭ୍ୟଶ୍ଚ" [୪: ୧: ୧୭୬] ସେହି ପ୍ରକାର ନକୁଳ ଓ ଦ୍ରୋଣଙ୍କ ଉଲ୍ଲେଖ କ୍ରମଶଃ ୬: ୩: ୭୫ ଓ ୪: ୧: ୧୦୩ ଏବଂ କୃଷ୍ଣ ଓ ଅର୍ଜ୍ଜୁନଙ୍କ ଉଲ୍ଲେଖ ୪: ୧: ୮ ସୂତ୍ରରେ "ବାସୁଦେବାର୍ଜ୍ଜୁନାଭ୍ୟାଂ ବୁନ୍" ବୋଲି କୁହାଯାଇଛି ।

ଉପନିଷଦ କାଳ ମଧ୍ୟ ପାଣିନୀଙ୍କଠାରୁ ପ୍ରାଚୀନ ଥିଲା । ବ୍ରାହ୍ମଣଗ୍ରନ୍ଥର ସଂପାଦନ ମହାଭାରତର ସମକାଳୀନ ଥିଲା । ଏବଂ ଉପନିଷଦଗୁଡ଼ିକ ବ୍ରାହ୍ମଣ ଗ୍ରନ୍ଥଗୁଡ଼ିକର ଅଂଶ ଥିଲା । ଯେହେତୁ ଛାନ୍ଦୋଗ୍ୟ ଉପନିଷଦରେ ଦେବକୀପୁତ୍ର କୃଷ୍ଣ ଏବଂ ତାଙ୍କ ଗୁରୁ ଘୋର ଅଙ୍ଗିରସ ନାମକ ଋଷିଙ୍କ ଉଲ୍ଲେଖ ଏ ପ୍ରକାର ହୋଇଛି: "ଅଥୈତଦ୍ ଘୋର ଅଙ୍ଗିରସଃ କୃଷ୍ଣାୟ ଦେବକୀପୁତ୍ରାୟ ଉକ୍ତ୍ୱା ଉବାଚ" [୩: ୧୭: ୬] କୌଷୀତକୀ ବ୍ରାହ୍ମଣ ନିଶ୍ଚୟ ଛାନ୍ଦୋଗ୍ୟ ଉପନିଷଦଠାରୁ ପ୍ରାଚୀନ ସେଥିରେ ମଧ୍ୟ ଦେବକୀପୁତ୍ର କୃଷ୍ଣ ଏବଂ ଘୋର ଅଙ୍ଗିରସଙ୍କ ବର୍ଣ୍ଣନା ଦେଖିବାକୁ ମିଳେ । ଏଥିରୁ ଏହା ପ୍ରମାଣିତ ଯେ ମହାଭାରତ ଭାରତ ଇତିହାସର ଏକ ସ୍ୱର୍ଣ୍ଣଯୁଗ ଥିଲା । ସମାଜ ଏ ସମୟରେ ସର୍ବାଙ୍ଗୀନ ଉନ୍ନତି କରିସାରିଥିଲା । ଏ ଯୁଗକୁ କିଛି ନୁହେଁ ବୋଲି କହି ଆମେ ଫାଙ୍କିଦେଇ ପାରିବୁ ନାହିଁ ।

ଆଜି ସମୟ ଆସିଛି ଆମେ ଏହି ମୃତ ଇତିହାସ ପୃଷ୍ଠାକୁ ଆଗାମୀ କାଳ ପାଇଁ ସଂଗ୍ରହ କରି ରଖିବା ଉଚିତ୍ ଓ ଏଥିରୁ ମିଳିଥିବା ରତ୍ନଗୁଡ଼ିକ ଅତ୍ୟାବଶ୍ୟକୀୟ ଦ୍ରବ୍ୟ ଭାବରେ ଆମେ ବିଭୂଷଣ କରି ରଖିବା ବିଧେୟ ।



# ଭଗବାନ ଅବତାର ଧାରଣ କରନ୍ତି କି ?

ଭଗବାନ ତିନୋଟି କାରଣ ପାଇଁ ଅବତାର ନିଅନ୍ତି ବୋଲି ଗୀତାରେ କୁହାଯାଇଛି ।

୧ । ସାଧୁମାନଙ୍କୁ ରକ୍ଷା କରିବା ପାଇଁ ।
୨ । ଦୁଷ୍ଟମାନଙ୍କୁ ବିନାଶ କରିବା ପାଇଁ ।
୩ । ଧର୍ମ ସଂସ୍ଥାପନ କରିବା ପାଇଁ ।

ଯଦି ସମଗ୍ର ମାନବ ସମାଜର ଇତିହାସ ପର୍ଯ୍ୟାଲୋଚନା କରାଯାଏ ତେବେ ଦେଖିବାକୁ ମିଳିବ ଏ ପର୍ଯ୍ୟନ୍ତ ଏ ଜଗତରେ ଏପରି କୌଣସି ମହାପୁରୁଷ ଜନ୍ମ ହୋଇନାହାନ୍ତି ଯେ ଏ ତିନୋଟି ସର୍ତ୍ତ ପୂରଣ କରିବାରେ ସମର୍ଥ ହୋଇଛନ୍ତି । ପୌରାଣିକମାନେ ଦାବୀ କରନ୍ତି ଭଗବାନ ରାମ ଏବଂ ଶ୍ରୀକୃଷ୍ଣ ଏ ଧରାଧାମରେ ଏହି ତିନୋଟି ସର୍ତ୍ତ ପୂରଣ କରିବାପାଇଁ ଜନ୍ମଗ୍ରହଣ କରିଥିଲେ । ସ୍ୱୟଂ ବିଷ୍ଣୁ ରାମ ଓ କୃଷ୍ଣ ରୂପେ ଧରା ଧାମରେ ଅବତୀର୍ଣ୍ଣ ହୋଇଥିଲେ । ଏହା କେତେଦୂର ସତ୍ୟ, ଶୁଦ୍ଧ ତର୍କଦ୍ୱାରା ଏହାର ବିବେଚନା ହେବା ଆବଶ୍ୟକ । ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ର ଓ ଯୋଗେଶ୍ୱର ଶ୍ରୀକୃଷ୍ଣଚନ୍ଦ୍ର ଭାରତ ଇତିହାସର ଦୁଇଟି ଦେଦୀପ୍ୟମାନ ଜ୍ୟୋତିଷ୍କ ଥିଲେ । ତାଙ୍କର ମହତ୍ତ୍ୱକର୍ମ ଏବଂ ଆର୍ଯ୍ୟୋଚିତ ଜୀବନ ପ୍ରତ୍ୟେକ ଭାରତୀୟଙ୍କୁ ଏ ପର୍ଯ୍ୟନ୍ତ ପ୍ରେରଣା ଯୋଗାଇ ଆସିଛି ଏବଂ ଚିର କାଳ ପାଇଁ ପ୍ରେରଣା ଯୋଗାଉଥିବ । ପ୍ରଶ୍ନ ହେଉଛି ସେମାନେ ବାସ୍ତବରେ କ'ଣ ଭଗବାନ ବିଷ୍ଣୁଙ୍କର ଅବତାର ଥିଲେ କି ? ବିଷ୍ଣୁ କ'ଣ ସ୍ୱୟଂ ପରମେଶ୍ୱର । ପରମେଶ୍ୱର ନିରାକାର ହୋଇଥିବା କାରଣରୁ ସେ ଅବତାର ନେଇ ନ ପାରନ୍ତି । ସେ ସର୍ବବ୍ୟାପକ ହୋଇଥିବା କାରଣରୁ ଗୋଟିଏ ଶରୀର ମଧ୍ୟରେ ସୀମିତ ହୋଇ ନ ପାରନ୍ତି ଏବଂ ସେ କାଳାତୀତ ହୋଇଥିବା କାରଣରୁ କୌଣସି ଗୋଟିଏ ଯୁଗପାଇଁ ଜନ୍ମ ନେଇ ନ ପାରନ୍ତି । ଜନ୍ମମୃତ୍ୟୁର ଚକ୍ରରେ ଜୀବାତ୍ମା ପଡ଼ନ୍ତି ପରମାତ୍ମା ନୁହେଁ ।

ଶ୍ରୀରାମଙ୍କ ଜୀବନ ଚରିତ ପାଠ କଲେ ଜଣାଯାଏ ଯେ ବନଗମନ, ସୀତା-ହରଣ ଓ ରାବଣ ମରଣ ପ୍ରସଙ୍ଗଟି ଯଦି ରାମାୟଣରେ ଆସି ନ ଥାନ୍ତା ; ତାହେଲେ ରାମଚନ୍ଦ୍ର ଅଯୋଧ୍ୟାର ଜଣେ ନ୍ୟାୟବନ୍ତ ରାଜାଛଡ଼ା ଆଉ କ'ଣ କୁହାଯାଇଥାନ୍ତେ ?

ଶ୍ରୀକୃଷ୍ଣଙ୍କ କଂସବଧ ଓ ପାଣ୍ଡବମାନଙ୍କ କଲ୍ୟାଣ କାମନାରୁ ହୋଇଥିଲା । ପୁରାଣ ସାହିତ୍ୟ ଅନୁସାରେ ଯେତେ ଅବତାର ଏ ଜଗତକୁ ଆସିଛନ୍ତି ସବୁଥିରେ ସେମାନେ ଛଳ କପଟର ଆଶ୍ରୟ ନେଇ କାର୍ଯ୍ୟସିଦ୍ଧି କରିଛନ୍ତି । ବିଷ୍ଣୁ, ବାମନ ଅବତାରରେ ଯେପରି ଛଳ ଓ କପଟ କରି ବଳିଙ୍କୁ ପାତାଳଗାମୀ କରାଇଥିଲେ ତାହା ସମସ୍ତଙ୍କୁ ବିଦିତ । ବିଷ୍ଣୁ, ପରଶୁରାମ ଅବତାରରେ ଏକୋଇଶ ଥର ଭୂତଳକୁ ନିଃକ୍ଷତ୍ର କଲେ । ରାମ ଓ ପରଶୁରାମ ଗୋଟିଏ ଯୁଗର ଦୁଇଟି ଅବତାର । ଆଶ୍ଚର୍ଯ୍ୟ ନ ହୋଇ ରହି ହୁଏନା ଜଣେ ଅବତାର ଆଉ ଜଣେ ଅବତାରଙ୍କୁ ଚିହ୍ନି ନ ପାରି ଯୁଦ୍ଧ ପାଇଁ ପ୍ରସ୍ତୁତ ହେବାକୁ ପଛେଇ ନ ଥିଲେ । ପୁନଶ୍ଚ କୃଷ୍ଣ, ବଳରାମ ଓ ବ୍ୟାସ ଗୋଟିଏ ଯୁଗରେ ତିନ ତିନଟି ଅବତାର । ଗୋଟିଏ ଯୁଗପାଇଁ ବିଷ୍ଣୁ, ତିନୋଟି ଅବତାର ନେବାର ଆବଶ୍ୟକତା କ'ଣ ଥିଲା ?

କୁହାଯାଏ ସତ୍ୟରେ ବିଷ୍ଣୁ ଚାରୋଟି ଅବତାର ନେଲେ, ତ୍ରେତାରେ ତିନୋଟି ଏବଂ ଦ୍ୱାପରରେ ଦୁଇଟି, ମାତ୍ର ଘନଘୋର କଳିଯୁଗରେ ଗୋଟିଏ ମଧ୍ୟ ଅବତାର ନେଇ ଜନ୍ମ ହେଉନାହାନ୍ତି କାହିଁକି ? ପୌରାଣିକମାନଙ୍କ ମତରେ କଳିଯୁଗ ସବୁଠାରୁ ବେଶୀ କଳଙ୍କିତ ଯୁଗ ହୋଇଥିବା କାରଣରୁ । ମୁଁ ପ୍ରଶ୍ନ କରେ ରାବଣ ସମେତ କେତେକ ଅସୁରଙ୍କ ପାଇଁ ଭଗବାନ ରାମ ଜନ୍ମ ନେଇପାରନ୍ତି, କେତେକ ଅସୁର ସମେତ କୌରବ ଶତପୁତ୍ରଙ୍କ ପାଇଁ ଭଗବାନ କୃଷ୍ଣ ଜନ୍ମ ନେଇପାରନ୍ତି ମାତ୍ର ଯେଉଁ ଯୁଗରେ ସହସ୍ର ସହସ୍ର ମନ୍ଦିର ଆକ୍ରମଣକାରୀଙ୍କ ଦ୍ୱାରା ଲୁଣ୍ଠିତ ହୋଇପାରେ, ଲକ୍ଷ ଲକ୍ଷ ହିନ୍ଦୁ ରମଣୀଙ୍କ ସତୀତ୍ୱ ନଷ୍ଟ କରାଯାଇ ପାରେ, ପ୍ରତ୍ୟହ ଲକ୍ଷ ଲକ୍ଷ ଗାଈ ନିଃସଙ୍କୋଚରେ ବଧ କରାଯାଇପାରେ, କୋଟି କୋଟି ହିନ୍ଦୁଙ୍କୁ ସାହାଯ୍ୟ ଓ ପ୍ରଲୋଭନ ଦେଇ ଅନ୍ୟ ଧର୍ମରେ ଦୀକ୍ଷିତ କରାଯାଇ-ପାରେ, ପୁନଶ୍ଚ ଦେବୋପମ ଭାରତବର୍ଷକୁ ଖଣ୍ଡ ଖଣ୍ଡ କରାଯାଇପାରେ, ଏ ସମସ୍ତ ଦୁଷ୍କୃତ ସମଗ୍ର ଭାରତବର୍ଷରେ ବ୍ୟାପ୍ତ ଥିବା ସତ୍ତ୍ୱେ ଭଗବାନ ଅବତାର ନ ନେଇ କ୍ଷୀର ସମୁଦ୍ରରେ ଅନନ୍ତ ଶଯ୍ୟାରେ ଯଦି ଶୟନ କରି ରହନ୍ତି ତେବେ କିଏ କିପରି ବିଶ୍ୱାସ କରିପାରିବ ଯେ ଭଗବାନ ସାଧୁମାନଙ୍କୁ ରକ୍ଷା କରିବାପାଇଁ ଦୁଷ୍ଟମାନଙ୍କୁ ବିନାଶ କରିବାପାଇଁ ଓ ଧର୍ମ ସଂସ୍ଥାପନ ପାଇଁ ଧରାରେ ଅବତାର ନିଅନ୍ତି ବୋଲି ।

ମୋ ମତରେ ଯୋଗେଶ୍ୱର କୃଷ୍ଣ ଏକଥା କେବେ ମଧ୍ୟ ଅର୍ଜୁନଙ୍କୁ ଗୀତାରେ କହି ନ ଥିବେ । ବେଦ ଓ ବେଦାଙ୍ଗର ଜଣେ ମର୍ମଜ୍ଞ ସ୍ୱାଧ୍ୟାୟୀ ଭାବରେ ଶ୍ରୀକୃଷ୍ଣ ଏପରି ଏକ କଥା ଯେ ଗୀତାରେ କହିଥିବେ ତାହା ବିଶ୍ୱାସ ହୁଏନା । ଗୀତାର ସେହି ଶ୍ଳୋକଦ୍ୱୟ "ଗୀତା ମାହାତ୍ମ୍ୟ"ର ଲେଖକଙ୍କ ଦ୍ୱାରା ଯେ ରଚିତ ହୋଇଥିବ ତାହା ନିଃସନ୍ଦେହ । ଏଣୁ ଗୀତାରେ ଏହା ନିଶ୍ଚିତ ପ୍ରକ୍ଷେପ । ଅବତାର ବାଦ ପ୍ରଚଳନ ହେବା ପରେ ନିଶ୍ଚୟ ଏହା ଗୀତା ମଧ୍ୟକୁ ଅଣାଯାଇଛି ।

●

# ସ୍ତ୍ରୀ ଜଣେ ପୁରୁଷର ଦୃଷ୍ଟିକୋଣରୁ

ଗ୍ରୀସ ଓ ରୋମ ! ଏ ଦୁଇଟି ରାଷ୍ଟ୍ର ଦିନେ କଳା, ସାହିତ୍ୟ, ଦର୍ଶନ ଓ ଭାସ୍କର୍ଯ୍ୟରେ ସମଗ୍ର ବିଶ୍ୱକୁ ବିସ୍ମିତ କରିଥିଲା । ଯାହାର ପଦାଙ୍କ ଅନୁସରଣ କରି ପାଶ୍ଚାତ୍ୟ ସାହିତ୍ୟ ଓ ଦର୍ଶନ କ୍ଷେତ୍ରରେ ନବଜାଗରଣ ଆସିଲା । ତେବେ କ'ଣ ଥିଲା ସେ ଦେଶର ସଂସ୍କୃତିରେ, ଯେଉଁ ବଳପଥରେ ଗ୍ରୀକ ଯବନ ଓ ରୋମୀୟମାନେ ଏକ ଶ୍ରେଷ୍ଠ ସଭ୍ୟତାର ପ୍ରତିଷ୍ଠାତା ହୋଇ ପାରିଥିଲେ ? ତାହା ହିଁ ବିଶ୍ଳେଷଣ କରିବାର ଅବସର ଆଜି ଏହି ପବିତ୍ର ଆନ୍ତଃରାଷ୍ଟ୍ରୀୟ ମହିଳା ସମ୍ବତ୍ସରରେ ଆସିଛି ।

ଆମେ ଏପରି ଏକ ଯୁଗରେ ବାସ କରୁଛୁଁ, ଯେଉଁ ଯୁଗ ପ୍ରାଚୀନ ବୋଲି କ୍ଷମା ଦେବା ବା ଅର୍ବାଚୀନ ବୋଲି ନିନ୍ଦା କରିବାକୁ ଆମକୁ ବାରଣ କରେ । ବାସ୍ତବରେ ପ୍ରାଚୀନ ବା ଅର୍ବାଚୀନର ମୂଲ୍ୟ ବା କ'ଣ ଅଛି ? କେବଳ କଳା, ସାହିତ୍ୟ, ଦର୍ଶନ ବା ସ୍ଥାପତ୍ୟରେ ଶ୍ରେଷ୍ଠତ୍ୱ ହାସଲ କଲେ କ'ଣ ଗୋଟିଏ ରାଷ୍ଟ୍ର ଆଦ୍ୟସ୍ଥାନ ହୁଏ ? ଉପନ୍ୟାସ କହି ଉଠେ ସେ ଦେଶର ଇତିହାସ, ବସ୍ତୁତଃ ପକ୍ଷରେ ସେ ଦେଶର ଏ ପ୍ରକାର ବର୍ଣ୍ଣନାକୁ । ମନୁଷ୍ୟ ଏ ପ୍ରକାର ମିଥ୍ୟା ଆତ୍ମସମ୍ମାନ ନେଇ କେତେଦିନ ବଞ୍ଚି ପାରିବ ? ଇତିହାସର ମାର୍ଗ ଦେଇ ଆସନ୍ତୁ ଗ୍ରୀସ୍ ଓ ରୋମକୁ, ଦେଖିବେ ସେ ଦେଶର ନାରୀ ସମାଜର ସ୍ଥିତି । ଭଙ୍ଗ ପ୍ରବଣ କାଚ ବା ଦୃଢ଼-ସ୍ୱର୍ଣ୍ଣ ଭଳି ହୃଦୟହୀନ ଜୀବନରେ ମଧ୍ୟବିଧାର ଉଚ୍ଚସ୍ତରର ଯୁବଗୋଷ୍ଠୀ ନାରୀଙ୍କୁ ଦିନେ ପଣ୍ୟଦ୍ରବ୍ୟ ଭଳି କିଣାବିକା କରୁଥିଲେ । ଆଉ ସଂସ୍କୃତିର ପ୍ରତୀକ ନାରୀ ? ଏକ ବ୍ୟସ୍ତବ୍ୟସ୍ତ ଜୀବନରେ ଗଣିକା ସାଜି ପ୍ରେମ ଓ ପ୍ରଣୟ ପାଶରେ ନିଜର ମାଦକେନ୍ଦ୍ର-ବେଳାକୁ ଲଙ୍ଘି ଗାଇ ଉଠୁଥିଲା କାମନାମୟ ଯୌନ ସଂଗୀତ ।

ଯେଉଁ ନାରୀ ଯୁଗେ ଯୁଗେ ଜନନୀ ଓ ଜାୟା ଭାବରେ ପୂଜ୍ୟା ଓ ବରେଣ୍ୟା ସେ ସୃଷ୍ଟିକାରିଣୀ ହୋଇ ମଧ୍ୟ ଥିଲା ଚିର ବନ୍ଦୀ । ଅବଳା କହି ଆମେ ତାକୁ ଦାସତ୍ୱର ଦୁଇମୁଠା ଶଙ୍ଖା ଶୃଙ୍ଖଳରେ ବାନ୍ଧି ଦେବାକୁ ଚାହୁଁ । ବିଶ୍ୱର ପ୍ରଥମ ଓ ପ୍ରଧାନ ଆଇନଦାତା ମହାରାଜ ମନୁ ମଧ୍ୟ ନାରୀକୁ ସ୍ୱାତନ୍ତ୍ର୍ୟ ନ ଦେବା ପକ୍ଷରେ ସମର୍ଥନ କରି କହନ୍ତି—କୌମାର୍ଯ୍ୟାବସ୍ଥାରେ ପିତା, ଯୁବତୀ ଅବସ୍ଥାରେ ପତି ଓ ବୃଦ୍ଧାବସ୍ଥାରେ ପୁତ୍ର, ହାତରେ ନାରୀ ରହିବେ । "ନ ସ୍ତ୍ରୀ ସ୍ୱାତନ୍ତ୍ର୍ୟ ମର୍ହତି ।"

ରୋମରେ ନାରୀଙ୍କୁ ନୀଚ ଦୃଷ୍ଟିରେ ଦେଖିବା ପାପ ନ ଥିଲା । ପ୍ରସିଦ୍ଧ ବକ୍ତାନ ଶିଶିରୋ ସ୍ୱ ପତ୍ନୀ ଟେରେନ୍ତିଆଙ୍କୁ ତ୍ୟାଗପତ୍ର ଦେଲେ । ଏଥିରେ ହରଟେନ୍‌ସସ୍ ସ୍ୱ ଭଗିନୀ ସହ ତାଙ୍କୁ ବିବାହ କରିବାକୁ ଅନୁରୋଧ କଲେ । ଶିଶିରୋ କହି ଉଠିଲେ "ଦର୍ଶନ ଶାସ୍ତ୍ର ଓ ସ୍ତ୍ରୀ ଏ ଦୁହେଁ କେବେ ମଧ୍ୟ ଏକ ସାଙ୍ଗରେ ଚାଲି ନ ପାରନ୍ତି ।" "ପାରଡୋକସ୍!"ରେ ଯେ, "ଯା' ପାଖରେ ସ୍ତ୍ରୀ ଅଛି ସେ କେବେ ସ୍ୱତନ୍ତ୍ର ରହି ନ ପାରେ" ବୋଲି ଅନେକ ଯୁକ୍ତି ବାଢ଼ିଛନ୍ତି । ନାରୀଙ୍କୁ ନର୍କର ଦ୍ୱାର ଓ ବ୍ୟଭିଚାରର ବୀଜବୋଲି ରୋମ୍ ବାସୀ ଭାବୁଥିଲେ । ଏପରି କି ପ୍ରସିଦ୍ଧ ରୋମୀୟ ଦାର୍ଶନିକ ସିନେକା (୨ୟ) ଏ କଥା ଲେଖି ପାରିଲେ ଯେ, ବିବାହର ବଡ଼ ମୂର୍ଖତା ହେଲା, ସ୍ୱ ସମ୍ପତ୍ତିର ଉତ୍ତରାଧିକାର ପାଇଁ ଓ ସ୍ୱ ବୃଦ୍ଧାବସ୍ଥାରେ ଭରଣ ପୋଷଣ ପାଇଁ କିମ୍ବା ସ୍ୱ ବଂଶ ରକ୍ଷା ଲୋଭରେ ସନ୍ତାନ ଉତ୍ପତ୍ତି କରିବାପାଇଁ ବିବାହ କରିବା !

ରୋମରେ ନାରୀ ସ୍ୱପତିର ଲମ୍ପଟତାରେ ମଧ୍ୟ ପ୍ରତିବାଦ କରିବାର ଅଧିକାର ପାଇ ନ ଥିଲା । ପ୍ଲୁଟସ୍ ଲେଖିଛନ୍ତି—ଜଣେ ସ୍ତ୍ରୀ ସ୍ୱ ପିତା ଆଗରେ ପତିର ଲମ୍ପଟତାର ଅଭିଯୋଗ ବାଢ଼ିଲା । ପିତା କହିଲେ, ମୁଁ ତତେ କହି ରଖୁଛି ଯେ ତୁ ପତିକୁ ସମ୍ମାନ କର । ସେ କେଉଁଠିକି ଯାଉଛି କ'ଣ କରୁଛି, କ'ଣ ଭାବୁଛି, ସେଥିରେ ତୋର କହିବାର କ'ଣ ଅଛି ? ଝିଅଟି ପୁନର୍ବାର ଅଭିଯୋଗ କଲା । ଏଥିରେ ପିତା ଉତ୍ତର ଦେଲେ, ଅଚ୍ଛା, ତୁ ତୋର ପତି ଉପରେ ଏତେ କଡ଼ା ନଜର କାହିଁକି ରଖିଛୁ ? ଯଦି ଏପରି କରୁ ତା'ହେଲେ ମୁଁ ତାର ଲମ୍ପଟତାର ପକ୍ଷପାତି ହୋଇଯିବି । ସେ ତ ତୋତେ ଅଳଙ୍କାର, ବସ୍ତ୍ର, ଭୋଜନ ଏବଂ ଗୃହକର୍ତ୍ତ୍ରୀ ଆଦିରେ ଅସୁବିଧା କରିନାହିଁ । ତେବେ ଆଉ ତୋର କ'ଣ ଦରକାର ?

ଇହୁଦୀ ଧର୍ମ ପ୍ରବର୍ତ୍ତକ ମୋଶା ତାଙ୍କ ଆଦି ପୁସ୍ତକରେ ଲେଖିଲେ—ଶୟତାନର ପ୍ରବଞ୍ଚନାରେ ପଡ଼ି ପ୍ରଥମେ ହାୱା ଜ୍ଞାନଦାୟକ ନିଷିଦ୍ଧ ଫଳ ଆସ୍ୱାଦନ କଲା ଏବଂ ସ୍ୱ ସ୍ୱାମୀ ଆଦମଙ୍କୁ ମଧ୍ୟ ଏ ଫଳ ଦେଇ ଈଶ୍ୱର ଆଜ୍ଞା ଲଙ୍ଘନ କରାଇଲା । ଏହି ଜ୍ଞାନଦାୟକ ଫଳ ହିଁ ସେମାନଙ୍କ ପ୍ରେମ ଓ ପ୍ରଣୟରେ ବୁଣିଦେଲା ବିପର୍ଯ୍ୟୟର ବୀଜ । ନିରପରାଧୀ ଆଦମଙ୍କୁ ମଧ୍ୟ ଅଭିଶାପ ସହ୍ୟ କରିବାକୁ ପଡ଼ିଲା । ଏହାକୁ କେନ୍ଦ୍ର କରି ଇହୁଦୀଗଣ ନାରୀଜାତିକୁ ନୀଚତର ଦୃଷ୍ଟିରେ ଦେଖିବାକୁ ଲାଗିଲେ ଶ୍ରୀଯୁକ୍ତ ମାରଗାଙ୍କ "ସେକ୍ସଇନ୍ ରିଲିଜନ୍"ରେ ଲେଖିଲେ—ଇହୁଦୀ ପୁରୁଷ ସ୍ୱ ପ୍ରାର୍ଥନାରେ ଭଗବାନଙ୍କୁ ଧନ୍ୟବାଦ ଦେଉଥିଲେ ଯେ ସେ ତାଙ୍କୁ ସ୍ତ୍ରୀ କରି ଜନ୍ମଦେଇ ନାହାନ୍ତି ।

ନଗ୍ନତାକୁ ଠିକ ଠିକ ବିଶ୍ଳେଷଣ କରି ପ୍ରାଚୀନ ଫରାସୀ ଜାତି ଏ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ ନାରୀ ଦର୍ଶନ ମଧ୍ୟ ପାପ । ସେଥିପାଇଁ ଧନୀ ଥିଲେ ସେମାନେ ରାସ୍ତାରେ ଆଖି ବନ୍ଦକରି ଚାଲିବାରେ ଅଭ୍ୟସ୍ତ ଥିଲେ । କାଳେ କୌଣସି ନାରୀ ତାଙ୍କ ଝାମ୍ପୁଡ଼ରେ ପଡ଼ିଯିବ ।

ନାରୀ ଜୀବନରେ ବା ଆଉ କ'ଣ ଥିଲା ? ହୋମରଙ୍କ ମତରେ ସେ ଯୁଗ ଆଉ ନାହିଁ, ଯେବେ ଶୁଦ୍ଧ ବିବାହ ହେଉଥିଲା ଏବଂ ଶୁଦ୍ଧ ସନ୍ତାନ ଉତ୍ପନ୍ନ ହେଉଥିଲେ । ଏବେ ତ ଏପରି ବହୁ କୁମାରୀ ମିଳିବେ ଯେଉଁମାନେ କୁମାରୀ ହୋଇ ପ୍ରେମ କରିବା ଓ ଯୌନ ସୁଖ ଭୋଗ କରିବାକୁ ପାପ ମନେ କରନ୍ତି ନାହିଁ । ବିବାହିତା ସ୍ତ୍ରୀ, ଯେବେ ତା'ର ପତି ମଦ୍ୟପାନରେ ବ୍ୟସ୍ତ, ବାହାରର କୌଣସି ଖାଟ ପୁରୁଷର ଲୁଳାୟିତ ଇଙ୍ଗିତମାନେ ଅନ୍ଧକାର ପ୍ରକୋଷ୍ଠରୁ ଅନ୍ତର୍ଦ୍ଧାନ ହୋଇ-ଯାଉଥିଲା । ପତି ଘୁଣ୍ଟି ବସିଥିଲା ଓ ସେ କୌଣସି ପ୍ରେମାସ୍ପଦ ପାଖରେ ତନୁ ବନ୍ଧକ କରି ଚାଲି ଆସୁଥିଲା । ପ୍ରାଟ୍‌ଟିୟସ୍‌ଙ୍କ ଏକ କବିତାରେ ଲେଖାଅଛି ପ୍ରେମ ପାଇଁ ଏହା ବଡ଼ ସୌଭାଗ୍ୟର କଥା ହେବ ଯଦି ଜଣେ ସଚ୍ଚରିତ୍ରା ସ୍ତ୍ରୀ ମିଳିଯିବ ।

ଗ୍ରୀସ୍ ଇତିହାସରୁ ଜଣାଯାଏ ଯେ ସେଠାରେ ପ୍ରସିଦ୍ଧ କାମଦେବୀଙ୍କ ମନ୍ଦିର ବାର୍ଷିକୋତ୍ସବରେ ବେଶ୍ୟା ତା'ର ବାର୍ଷିକ ଆୟ ସମର୍ପଣ କରି ଦେଉଥିଲା । ଆଉ ସଧବା ? ବର୍ଷରେ ଥରେ କାମଦେବୀଙ୍କ ମନ୍ଦିରକୁ ଯାଇ ତା'ର ଲବଣୀ କୋମଳ ତନୁ ବଲ୍ଲରୀରେ ସହ୍ୟ କରୁଥିଲା କାମାର୍ତ୍ତ କୁପୁରୁଷମାନଙ୍କର ରୁକ୍ଷ ନିର୍ମମ ନଖର ଆଘାତ । ସେହି ଖାଟ ପୁରୁଷଙ୍କଠାରୁ ଅର୍ଜିତ ଅର୍ଥ ସେ ମନ୍ଦିରର ମହୋତ୍ସବକୁ ଆହୁରି କମନୀୟ କରି ତୋଳିଦେଇ ଫେରି ଆସୁଥିଲା ସ୍ୱ-ଗୃହକୁ । ତାହାହିଁ ଥିଲା ସେ ସମୟରେ ଗ୍ରୀସ୍‌ରେ ପୁଣ୍ୟ କାର୍ଯ୍ୟ ।

ନାରୀ ପ୍ରତି କି କଠୋରତା, କି ଅବିଚାର ଇତିହାସରେ ହୋଇ ନାହିଁ ? ପାଶ୍ଚାତ୍ୟ ପରି ପ୍ରାଚ୍ୟରେ ରାମାୟଣ ଯୁଗଠାରୁ ଆରମ୍ଭକରି କଳିଯୁଗ ପର୍ଯ୍ୟନ୍ତ ନାରୀତ୍ୱର ଅପମାନ କରାଯାଇଛି । ଭାରତର ଗୌରବୋଜ୍ଜ୍ୱଳ ଇତିହାସରେ ନାରୀ କିଏ ? ତାର ଜନ୍ମ, କର୍ମ ଓ ଜୀବନ ପର୍ଯ୍ୟାଲୋଚନା କଲେ ଲଜ୍ୟାକର ମନେ ହେବ । ପୁଷ୍ପାନ୍ୱିତା ବ୍ରତଧାରୀ ଶୁଚିସ୍ମିତା ନାରୀର ଜୀବନରେ ଘାତ-ପ୍ରତିଘାତ ତା'ର ଜୀବନକୁ କଳଙ୍କିତ କରିଛି । ବାଲ୍ୟ ବିବାହ ଓ ସତୀଦାହ ପ୍ରଥା ପରି କଳଙ୍କମୟ ପ୍ରଥା ପ୍ରଚଳନ କରି ପୌରାଣିକ ପଣ୍ଡିତ ଗଣ ଭାରତୀୟ ଶାସ୍ତ୍ରଗୁଡ଼ିକରେ ଅନର୍ଥ କରିଛନ୍ତି । ପୂର୍ଣ୍ଣ ଉଲଗ୍ନ ବିଭତ୍ସ ପୁରୁଷର ତୀକ୍ଷ୍ଣ କଟାକ୍ଷରେ ସାଜିଛି ଦାଣ୍ଡର ଦ୍ରୌପଦୀ, ସେ ହୋଇଛି ଅହଲ୍ୟା, ତାରା, ମନ୍ଦୋଦରୀ ଆଉ

ଲାଞ୍ଛିତା ସୀତା । ଜଗତ ବିଖ୍ୟାତ "ରାମଚରିତ ମାନସ"ରେ ଗୋସ୍ୱାମୀ ତୁଳସୀ ଦାସ ନାରୀକୁ ତାଡ଼ନର ଅଧିକାରୀ ବୋଲି କହିବାକୁ ଯାଇ ଉଦାହରଣ ପ୍ରସ୍ତୁତ କରିଛନ୍ତି—

"ଢୋଲ ଗମାର ଶୂଦ୍ର ପଶୁ ନାରୀ
ଏ ସବ ତାଡ଼ନକେ ଅଧିକାରୀ ।"

ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ର ସ୍ୱ ପତ୍ନୀ ନିଷ୍ପାପ ଏକଥା ଜାଣି ସୁଦ୍ଧା ଗର୍ଭାବସ୍ଥାରେ ତାଙ୍କୁ ବଣକୁ ପଠାଇ ଦେଇଥିଲେ । ମହାଭାରତର ମହତ୍ତ୍ୱପୂର୍ଣ୍ଣପାତ୍ର କର୍ଣ୍ଣ ସୂର୍ଯ୍ୟଙ୍କ ପୁତ୍ର ହେବାସତ୍ତ୍ୱେ ତାଙ୍କ ଜୀବନ ଅନ୍ଧକାରମୟ ହୋଇ ରହିଲା । କୁମାରୀ ମାତା ସମାଜର ଲାଞ୍ଛନା ସହ୍ୟ କରି ନପାରି ସ୍ୱପୁତ୍ରକୁ ମଧ୍ୟ ପାଦରେ ଠେଲି ଦେଲେ ।

ଅହଲ୍ୟା ଓ ରେଣୁକା ପତିବ୍ରତା ଥିବା ସତ୍ତ୍ୱେ ତାଙ୍କ ଜୀବନ ଅଭିଶପ୍ତ ହୋଇ ଉଠିଛି । ପୁରୁଷ ପାପକୁ ପଣ୍ଡିତପୁଅ ମାର୍କଣ୍ଡ ମାରିଲେ ଦୋଷ ନାହିଁ ପରି କ୍ଷମା ଦିଆ ଯାଇଛି ଓ ନାରୀକୁ ସାଧାରଣ ଦୋଷ ଓ ନିର୍ଦ୍ଦୋଷରେ ସମାନ ଦଣ୍ଡିତ କରିଛି । ପ୍ରକୃତରେ ଆମ ପୁରୁଷ ଜାତିଟା କ'ଣ ଏତେ ନିଷ୍କଳଙ୍କ, ପବିତ୍ର ଓ ନିର୍ମଳ ? ଅହଲ୍ୟାକୁ ନଷ୍ଟ କରିବା ପୁରୁଷ ଥିଲା ଇନ୍ଦ୍ର ଓ ତା'ର ଅଭିଶାପ ଦାତା ଥିଲେ ତା'ର ପତି ଗୌତମ । ସେ ବି ଜଣେ ପୁରୁଷ । କିନ୍ତୁ ଏଥିରେ ଆଶ୍ଚର୍ଯ୍ୟ କିଛି ନାହିଁ ଯେ ତା'ର ଉଦ୍ଧାର କର୍ତ୍ତା ମଧ୍ୟ ଥିଲେ ଜଣେ ପୁରୁଷ (ଶ୍ରୀ ରାମଚନ୍ଦ୍ର) ଯେ ସ୍ୱପତ୍ନୀଙ୍କୁ ବିନା ଦୋଷରେ ବନବାସ ଦେଇଥିଲେ ।

ରାଜର୍ଷି ବିଶ୍ୱାମିତ୍ର ମେନକା ସହ ଶୃଙ୍ଗାର ପ୍ରଣୟ କରି ମଧ୍ୟ ତାଙ୍କ ଅପତ୍ୟ ଶକୁନ୍ତଳାକୁ ଆଡେ଼ଇ ଦେଇ ବଣକୁ ଚାଲିଗଲେ । ଗାନ୍ଧର୍ବ ବିବାହ ପରେ ଦୁଷ୍ମନ୍ତ ତାଙ୍କୁ ପ୍ରତାରିତ କଲେ । ଆମ ପୁରୁଷ ଜାତିର ଶ୍ରେଷ୍ଠ ପ୍ରତିନିଧି ହେଉଛନ୍ତି ଦୁଷ୍ମନ୍ତ । ଆଉ ରେଣୁକା······ଯାର ପାତିବ୍ରତ୍ୟରେ ବାଧା ହୋଇ ଛିଡ଼ା ହେଲା ହୈହୟ ରାଜା କାର୍ତ୍ତବୀର୍ଯ୍ୟ ସହସ୍ରାର୍ଜ୍ଜୁନ ତାଙ୍କୁ ମୃତ୍ୟୁଦଣ୍ଡ ଦେବାପାଇଁ କୁଡ଼୍‌ଗହସ୍ତ ପୁତ୍ର ପର୍ଶୁରାମଙ୍କୁ ନିର୍ଦ୍ଦେଶ ଦେବାକୁ ପଡ଼ିଲା, ପୁରୁଷ ଜମଦଗ୍ନିଙ୍କୁ । ଏ ସମସ୍ତ ଦୃଷ୍ଟାନ୍ତ ପର୍ଯ୍ୟାପ୍ତ ନୁହେଁ । ଭୁଲିଯାଏ ମଧ୍ୟକାଳୀନ ଭାରତ ପୌରାଣିକ ପରମ୍ପରାରେ ଏତେ ଅନ୍ଧ ହୋଇ ପଡ଼ିଥିଲା ଯେ କୌଣସି ପୁସ୍ତକରେ "ନାରୀ" ଶବ୍ଦ ପରେ ଦାଣ୍ଡି ଲଗାଇଦେବା ଧାର୍ମିକତା'ରୂପେ ଗଣନା କରି ଯାଉଥିଲା । ପାଶ୍ଚାତ୍ୟରେ ପାଦ୍ରୀଗଣ ତ ନାରୀ ମଧ୍ୟରେ ଯେ ଆତ୍ମା ଅଛି ଏ କଥାକୁ ପ୍ରମାଣ ସହ ଅସ୍ୱୀକାର କରିବାକୁ ଲାଗି ପଡ଼ିଥିଲେ । ମାତୃତ୍ୱକୁ ପାପ ବୋଲି ଧରିଯାଉ ଥିଲା । ଏ ପ୍ରକାର ଏକ ଦୟନୀୟ ପରିସ୍ଥିତିରେ ନାରୀ ବଞ୍ଚିଥିଲା ।

ଏହାତ ଗୋଟିଏ ପକ୍ଷର କଥା, ଯାହା ଆଲୋଚନାର ଅଭାବରେ ଇତିହାସରୁ ଧୀରେ ଧୀରେ ବିଦାୟ ନେଲାଣି । ଏତଦ୍‌ବ୍ୟତୀତ ଅନ୍ୟ ଏକ ପକ୍ଷ ମଧ୍ୟ ରହିଛି ଯାହା ନ ଲେଖିଲେ ପ୍ରବନ୍ଧଟି ଏକଦେଶଦର୍ଶୀ ହୋଇ ଯାଇପାରେ । ନାରୀଙ୍କର ସେହି ପ୍ରକାଶମୟୀ ପକ୍ଷ ମଧ୍ୟ ଏହି ଆଲୋଚନାର ଅନ୍ତର୍ଗତ ।

ଭାରତୀୟ ସଂସ୍କୃତି ଯେ ନାରୀକୁ ସ୍ୱାତନ୍ତ୍ର୍ୟ ଓ ସମ୍ମାନ ଦେଇବା ଶିଖି ନାହିଁ, ଏହା କହିବା ଠିକ୍ ହେବ ନାହିଁ । କାରଣ ଏହା ନାରୀପ୍ରଧାନ ସଂସ୍କୃତି, ସୀତାରାମ, ରାଧାକୃଷ୍ଣ, ଗୌରୀଶଙ୍କର କହୁଥିବା ସଂସ୍କୃତି । ଯେ ନାରୀଜାତିକୁ ଉପଯୁକ୍ତ ସମ୍ମାନ ଦେଇ ଶିଖିନାହିଁ ଏହା କପରି କୁହାଯାଇ ପାରିବ ? ଯେଉଁ ମହର୍ଷି ମନୁ ନାରୀ ସ୍ୱାତନ୍ତ୍ର୍ୟକୁ ପୂର୍ଣ୍ଣତଃ ସମର୍ଥନ ଜଣାଇପାରି ନ ଥିଲେ ସେ ଏକଥା କହିବାକୁ ଭୁଲିଯାଇ ନଥିଲେ—"ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତାଃ" ଯେଉଁଠାରେ ନାରୀର ପୂଜା ହୁଏ ସେଠି ଦେବତାଗଣ ରମଣ କରନ୍ତି । ପୁନଶ୍ଚ ସେ ଚେତାବନୀ ମଧ୍ୟ ଦିଅନ୍ତି—"ଶୋଚନ୍ତି ଜାମୟୋ ଯତ୍ର ବିନଶ୍ୟତ୍ୟାଶୁତତ୍କୁଳମ୍ ।" ଯେଉଁ କୁଳରେ ନାରୀ ଦୁଃଖ ପାଏ ସେ କୁଳ ନଷ୍ଟ ହୋଇଯାଏ । ଯେଉଁ କ୍ଷେତ୍ରରେ ଆଜି ଆମେ ନାରୀକୁ ଯଥେଷ୍ଟ ସ୍ୱାଧୀନତାର ପ୍ରଲୋଭନ ଦେଇ ହୋଟେଲ, କ୍ଲବ ଆଦିରେ ନଗ୍ନନୃତ୍ୟରେ ତାକୁ ଏକ ଉପଭୋଗର ସାମଗ୍ରୀ କରିବାକୁ ଚାହୁଁ ।

ଭାରତୀୟ ସୌନ୍ଦର୍ଯ୍ୟଶାସ୍ତ୍ର କୁହେ ନାରୀ ମାନେ ସୁନ୍ଦରୀ, ଲଜ୍ୟା ତାକୁ ଆବୃତ୍ତ ମଞ୍ଜୁଳତର ଚୋଳ ଧରେ ଓ ସେଥିରେ ଗୁଣର ପରିପ୍ରକାଶ ତାକୁ ଦେବୀତ୍ୱରେ ଅଭିଷିକ୍ତ କରେ । ଆମ ଶାସ୍ତ୍ରରେ କୁହାଯାଇଛି "ମାତା ନମୀତା ଭବତି" । ବେଦରେ ନାରୀକୁ "ପୁରନ୍ଧ୍ରୟୋଷା" ବା ସୃଷ୍ଟିକୁ ଧାରଣ କର୍ତ୍ତ୍ରୀ ଶକ୍ତି ବୋଲି ସମ୍ମାନିତ କରା ଯାଇଛି । ଋଗ୍‌ବେଦ (୧୦-୮୫-୪୬)ରେ "ସମ୍ରାଜ୍ଞୀ ଶ୍ୱଶୁରେ ଭବ" ବା ସ୍ତ୍ରୀକୁ ଗୃହର ସାମ୍ରାଜ୍ଞୀ ବୋଲି ଘୋଷଣା କରାଯାଇଛି । ଅଥର୍ବ ବେଦର ଆଦେଶ ହେଲା—"ବ୍ରହ୍ମଚର୍ଯ୍ୟେଣ କନ୍ୟା ଯୁବାନଂ ବିନ୍ଦତେ ପତିମ୍" ବା ବ୍ରହ୍ମଚର୍ଯ୍ୟ ପୂର୍ବକ ବିଦ୍ୟାଧ୍ୟୟନ କରି କନ୍ୟା ଗୃହସ୍ଥ ହୁଅନ୍ତୁ ବୋଲି କୁହାଯାଇଛି ।

ବେଦ ମନ୍ତ୍ର ଦ୍ରଷ୍ଟା ଭାବରେ ଋଷିଗଣଙ୍କ ସହ ବିଶ୍ୱବାରା, ଅପାଳା ଆଦି ଅନେକ ବ୍ରହ୍ମବାଦିନୀଙ୍କ ନାମ ଆମକୁ ସୂଚାଇ ଦିଏ ଯେ ନାରୀର ସ୍ଥାନ ଆର୍ଯ୍ୟ ସଂସ୍କୃତିରେ ଅତି ଉଚ୍ଚରେ ଥିଲା । ବଶିଷ୍ଠ, ଅତ୍ରି, ଯାଜ୍ଞବଲ୍କ୍ୟ, ସ୍ୱାୟମ୍ଭୁବ ମନୁ, ଗୌତମ ଆଦି ଋଷିଙ୍କ ସହଯୋଗିନୀ ଭାବରେ ଅରୁନ୍ଧତୀ, ଅନୁସୂୟା, ଗାର୍ଗୀ, ମୈତ୍ରେୟୀ, ଶତରୂପା ଓ ଅହଲ୍ୟା ଆଦି ବିଦୁଷୀ ଆମ ପାରିବାରିକ ଜୀବନାଦର୍ଶ ପ୍ରସ୍ତୁତ କରନ୍ତି । କୁନ୍ତୀ, ଦ୍ରୌପଦୀ, ଗାନ୍ଧାରୀ, ସାବିତ୍ରୀ, ଶୈବ୍ୟା, ଦମୟନ୍ତୀ ଆଦି ନାରୀଙ୍କୁ

ତାଙ୍କ ପଢଙ୍କ ଅପେକ୍ଷା ଯଥେଷ୍ଟ ଗୁରୁତ୍ୱ ପ୍ରଦାନ କରା ଯାଇଛି । ବୀରାଙ୍ଗନା ରୂପେ କୌଶଲ୍ୟା, ପ୍ରଭାବତୀ, ଝାନ୍‌ସୀରାଣୀ ଏ ସମସ୍ତଙ୍କର ମାତା ଓ କର୍ମୀଭାବରୂପେ ନମସ୍ୟା ।

ଆର୍ଯ୍ୟ ପରମ୍ପରାରେ ନାରୀ, କନ୍ୟା, ଭଗିନୀ, ଜାୟା ଓ ଜନନୀ ରୂପେ ଆମର ସାମାଜିକ, ସାଂସ୍କୃତିକ, ଧାର୍ମିକ ଓ ଆତ୍ମିକ ଶକ୍ତି ରୂପେ ପୂଜା ପାଇ ଆସିଛନ୍ତି । ଶ୍ରୀ ରାମଚନ୍ଦ୍ର ସ୍ୱୟଂ ନାରୀଜାତିର ଅପମାନକୁ ସହ୍ୟକରି ନପାରି ରାବଣର ସର୍ବସ୍ୱ ଧ୍ୱଂସ କରିଥିଲେ । ତାଙ୍କ ଆଗରେ ସୀତା ସ୍ୱକୀୟା ଏ ଭାବ ନଥିଲା ବରଂ ସୀତା ନାରୀଜାତିର ଏକ ସଦସ୍ୟା ଥିଲେ । ଯଦି ସେ ସ୍ୱକୀୟା ଭାବ ସ୍ତ୍ରୀ ପାଇଁ ଯୁଦ୍ଧ କରିଥାନ୍ତେ ତା'ହେଲେ ସେ ଭାବ ସୀତା ବନବାସ ସମୟରେ ନିଶ୍ଚୟ ଆସିଥାନ୍ତା ।

ଏକଥା ମଧ୍ୟ କୁହାଯାଇ ପାରିବ ନାହିଁ ଯେ ରାମଚନ୍ଦ୍ର ସୀତାଙ୍କୁ ବନବାସ ଦେଇ ନାରୀଜାତି ପ୍ରତି ନିର୍ଦ୍ଦୟତା ପ୍ରଦର୍ଶନ କରିଥିଲେ । ସୀତାଙ୍କ ସତୀତ୍ୱ ଉପରେ ସନ୍ଦେହ ପ୍ରକଟକାରୀ ରଜକକନ୍ୟା ମଧ୍ୟ ଜଣେ ନାରୀ ଥିଲା । ଗଣତାନ୍ତ୍ରିକ ପରମ୍ପରା ପରେ ବିଶ୍ୱାସ କରୁଥିବା ଜଣେ ରାଜା ହିସାବରେ ତା' କଥାକୁ ମଧ୍ୟ ଗୁରୁତ୍ୱ ଦେଇ ସେ ନାରୀଜାତିର ସମ୍ମାନ ଓ ଇଚ୍ଛାକୁ ଅକ୍ଷୁଣ୍ଣ ରଖିଥିଲେ ଏବଂ ପ୍ରାଣପ୍ରିୟା ଜାନକୀଙ୍କୁ ସ୍ୱ ଅନିଚ୍ଛାସତ୍ତ୍ୱେ ବନବାସ ଦେଇଥିଲେ । ମାତ୍ର ସୀତା ବନବାସ ସୀତା ନିର୍ବାସନ ନଥିଲା । ମୂଳ ବାଲ୍ମୀକି ରାମାୟଣ ଅନୁସାରେ ରାମ ଯେତେବେଳେ ଜାଣିଲେ ଯେ ସୀତା ଗର୍ଭବତୀ, ସେ ସମୟରେ ତାଙ୍କର ଯଦି କୌଣସି ମନୋରଥ ଥାଏ ତାହା ପ୍ରକଟ କରିବା ପାଇଁ କହିଲେ । ସୀତା ଆଶ୍ରମରେ ରହିବା ଇଚ୍ଛା ବ୍ୟକ୍ତ କରିଥିଲେ । ରାମଚନ୍ଦ୍ର ମଧ୍ୟ ଏହା ଚାହିଁଥିଲେ ଯେ ତାଙ୍କ ସନ୍ତାନମାନଙ୍କ ଉପରେ ଆଶ୍ରମ ଜୀବନର ପ୍ରଭାବ ପଡ଼ୁ । ଏ ପରିସ୍ଥିତିରେ ରଜକକନ୍ୟା ସେ ସୁଯୋଗକୁ ଉପଯୋଗିତ କରିଦେଲା । ଏ ଦୃଷ୍ଟିରୁ ରାମଚନ୍ଦ୍ର କପରି ସୀତାଙ୍କ ପ୍ରତି ଅବିଚାର କଲେ ତାହା ବିଚାର୍ଯ୍ୟ ।

ଏବଂ ତୁଳସୀଦାସ ? ଯଦିଓ "ପଶୁ ନାରୀ"ଙ୍କୁ ତାଡ଼ନର ଅଧିକାରୀ ବୋଲି ଲେଖିଲେ ତାଙ୍କୁ କେନ୍ଦ୍ରକରି ଆମେ ଜଣେ ମହାନ ସଂସ୍କାରବାଦୀଙ୍କୁ ନାରୀ ବିରୋଧୀ ବୋଲି ପ୍ରମାଣ କରିବାକୁ ପଚ୍ଛାଇଲୁ ନାହିଁ । ବାସ୍ତବରେ ଯଦି ସେ ନାରୀମାନେ ତାଡ଼ନର ଅଧିକାରୀ ବୋଲି ମତପୋଷଣ କରିଥାନ୍ତେ ତା'ହେଲେ ରାମଚରିତ-ମାନସରେ ନାରୀ ସୀତାଙ୍କ ଚରିତ୍ରକୁ ଏତେ ପବିତ୍ର ଓ ସାତ୍ତ୍ୱିକତାରେ ତୋଳିଧରି ନ ଥାନ୍ତେ । ତାଙ୍କର ପତ୍ନୀ ରତ୍ନାବଳୀ ତାଙ୍କର ମାର୍ଗ ପ୍ରଦର୍ଶିକା ଥିଲେ ।

ମହାଭାରତ କାଳୀନ ସମାଜ ଥିଲା ନାରୀପ୍ରଧାନ । ଦ୍ରୌପଦୀଙ୍କ ବସ୍ତ୍ର ହରଣକାରୀ ପୁରୁଷ ଥିଲା ଦୁର୍ଯୋଧନ ଓ ତାଙ୍କ ଲଜ୍ୟା ନିବାରଣକାରୀ ପୁରୁଷ ଥିଲେ ସ୍ୱୟଂ ଶ୍ରୀକୃଷ୍ଣ । କୁରୁକ୍ଷେତ୍ର, ନାରୀ ନାଲିକୁ ବିବସ୍ତ୍ର କରିଥିବା କୌରବ ବଂଶର ଶେଷ ରକ୍ତରେ ଏ ନାରୀ ବେଣୀ ବାନ୍ଧିନଥିଲେ କାହିଁକି ?

ଯେଉଁ ନାରୀ ପୁରୁଷର ଆଘାତରେ କ୍ଷତ ବିକ୍ଷତ ହୋଇଛି, ହୋଇଛି ଲାଞ୍ଛିତ ଓ ଅପମାନିତ ସେଇମାନଙ୍କୁ ନେଇ ଏ ଦେଶର ରାମାୟଣ, ମହାଭାରତ, ଉପନିଷଦ ଓ ପୁରାଣ ଆଦି ଧର୍ମଶାସ୍ତ୍ର ଲେଖା ଯାଇଛି । ଗୁରୁ କୂଳକୁ ଯିବା ପୂର୍ବରୁ ସତ୍ୟକାମ ମା'କୁ ପଚାରିଛି "କିଂଗୋତ୍ରନ୍ୱହମସ୍ମୀତି" । ମା ଜାଣେ ସେ ମାତୃତ୍ୱର ମୂଲ୍ୟ । ପୁଣି ଜାଣେ ଯୌବନର ପ୍ରତାପ । ଯୌନ ଉନ୍ମାଦନାକୁ ସେ ଅସ୍ୱୀକାର କରିପାରି ନାହିଁ, ନା ମାତୃତ୍ୱର ଇଚ୍ଛାକୁ ସେ ଚାପି ଦେବାକୁ ଚାହେଁ ନାହିଁ । ସେଥିପାଇଁ ସେ ତାର ଯୌବନାବସ୍ଥାରେ ତା' ଦେହ, ମନ ଓ ସଦ୍ୟ ଯୌବନକୁ ଅନେକ ପୁରୁଷଙ୍କ ପାଖରେ ଅର୍ପଣ କରିଛି । ଏକଥା ମା ତୃପ୍ତାନରେ ମଧ୍ୟ ସ୍ୱ ପୁତ୍ରକୁ କହିବାକୁ ସେ ଲଜ୍ୟା, ସଂକୋଚ ଓ ଭୟ କରି ନାହିଁ । ଏଣୁ ସେ ପୁତ୍ରକୁ ବୁଝାଇ ଦେଇଛି—"ନାହମେତଦ୍ୱେଦ ତାତ୍ ।" ପୁତ୍ର; ମୁଁ ତୋର ପିତା କିଏ ଜାଣେନା ? ବହୁ ପରିଚର୍ଯ୍ୟା କରି ମୁଁ ଯୁବତୀ ପରିଚାରିଣୀ ଭାବରେ ଯୌବନାବସ୍ଥାରେ ପାଇଛି । ଏଣୁ ତୋର ଗୋତ୍ର ମଧ୍ୟ ମୁଁ ଜାଣି ନାହିଁ । ତେବେ ଏ ସମ୍ପର୍କରେ ଯଦି କିଏ ତତେ କିଛି ପଚାରେ ତୁ କହିବୁ— "ସତ୍ୟକାମ ଏବ ଜ ବାଲବ୍ରବଥା ଇତି" ମୁଁ ଜାବାଳ ପୁତ୍ର ସତ୍ୟକାମ ।

ଧନ୍ୟ ଏ ନାରୀତ୍ୱ ! ମାତୃତ୍ୱର ନିଷ୍ଠାରେ ସେ ସୌଭାଗ୍ୟବତୀ ହୋଇଛି ଉପନିଷଦର ତପୋନିଷ୍ଠ ଆଲୋକରେ । ମନରେ ପ୍ରଶ୍ନ ଉଠେ, ତା' ମା ଏ ସତ୍ୟକଥା ନ କହିଥିଲେ କଣ ଚଳି ନଥା'ନ୍ତା ? ଚାହିଁଥିଲେ ସିଏ ମିଛକଥା କହି ସେ ନିଜ ପୁତ୍ର ପାଖରେ ନିଜର ସତୀତ୍ୱର ପରିଚୟ ଦେଇପାରି ଥାନ୍ତା । କିନ୍ତୁ ସେ ତାହା କଲା ନାହିଁ କାହିଁକି ? କାରଣ ସେ ବନବାସୀ ହେବା ସଙ୍ଗେ ସଙ୍ଗେ ଆର୍ଯ୍ୟ-ନାରୀ । ସେ ସତ୍ୟର ମହତ୍ତ୍ୱ ଜାଣେ । ଗୋଟିଏ ଗ୍ଲାନିକର ପାପକୁ ଲୁଚାଇ ସେ ଅନ୍ୟ ଏକ ମସ୍ତବଡ଼ ପାପକୁ ମୁଣ୍ଡାଇ ନେବାକୁ ଚାହେଁ ନାହିଁ । ସତ୍ୟକଥା କହିବାରେ ସେ ଯେପରି ଭୁଲ କରିନାହିଁ, ପୁତ୍ରଟିଏ ପାଇଁ ଅନେକ ପୁରୁଷର ସହଚର୍ଯ୍ୟା କରିବାକୁ ମଧ୍ୟ ସେ ପାପ ଭାବିନାହିଁ । ଜଣେ ନିଃସହାୟ ନାରୀ, ଯା'ର ନା ଅଛି ଧନବଳ ନା ଜନବଳ । ସଂସାରରେ ସେ ଏକାନ୍ତ ଭାବେ ଏକାକୀ । ଆଗରେ ପଡ଼ିଛି ବିସ୍ତୀର୍ଣ୍ଣ ଜୀବନ ଏବଂ ସେ ବିସ୍ତୀର୍ଣ୍ଣ ଭବିଷ୍ୟତ ଆଗରେ କିଛି ନାହିଁ—ଅଛି କେବଳ

ମାଇଲ ମାଇଲ ବ୍ୟାପୀ ଶୂନ୍ୟ ଓ ଅନ୍ଧକାର । ଏ ଅବସ୍ଥାରେ ଅନ୍ୟର ପରିଚର୍ଯ୍ୟାରେ ଯେ ଯଦି ଏକ ସ୍ୱର୍ଗଲାଭ କରେ ସେଥିରେ ପାପ ରହିଲା କେଉଁଠି ? ଏଣୁ ଆଜିର ମୂଲ୍ୟାଙ୍କନରେ ଏପରି ଏକ ପତିତା ବେଶ୍ୟା ବାରବଧୂ କୁଳଟାକୁ ନେଇ ଉପନିଷଦ ପବିତ୍ର ହୋଇଛି । ପଂଚକନ୍ୟା ପଂଚ ଚିନ୍ତା ଓ ଚରିତ୍ର ନେଇ ଆମର ପ୍ରାତଃସ୍ମରଣୀୟ ହୋଇ ଆଜି ମଧ୍ୟ ଆମଦ୍ୱାରା ସମ୍ମାନିତ । ଏଣୁ ଆମେ ସ୍ତୁତି କରୁଛୁଁ :—

ଅହଲ୍ୟା ଦ୍ରୌପଦୀ ତାରା
କୁନ୍ତୀ ମନ୍ଦୋଦରୀ ତଥା
ପଂଚକନ୍ୟା ସ୍ମରେନ୍ନିତ୍ୟମ୍
ମହା ପାତକ ନାଶନମ୍ ॥



# ପୁରାଣକାରଙ୍କ ମାନସ କନ୍ୟା ଶ୍ରୀରାଧା

ଭାରତୀୟ ପୁରାଣ ସାହିତ୍ୟରେ ରାଧା ଏକ ଅନବଦ୍ୟ ସୃଷ୍ଟି । ଯୁଗ ଯୁଗ ଧରି ଏ ଚରିତ୍ରଟିର ମାଦକତାରେ ରସିକ, ଭକ୍ତ, ସାହିତ୍ୟିକ ଏବଂ କବି ମନ୍ତ୍ରମୁଗ୍ଧ ହୋଇଛନ୍ତି । ଏହି ଚରିତ୍ରଟିର ସୌନ୍ଦର୍ଯ୍ୟରେ ପ୍ରମତ୍ତ ହୋଇ ଭାବୁକଗଣଙ୍କ ଅନନ୍ତ ରୂପପିପାସା ମେଣ୍ଟାଇ ଦେଇଛି ଜୀବନ୍ତ ଦେହର ଅନନ୍ତ କ୍ଷୁଧା ।ଏହି ଅତୁଳନୀୟ ପ୍ରେମ ତୁଳନାରେ ଦ୍ୱାରକାର ରାଜୈଶ୍ୱର୍ଯ୍ୟ ଶ୍ରୀକୃଷ୍ଣଙ୍କ ପାଇଁ ତୁଚ୍ଛ ମନେ ହୋଇଛି । ରୁକ୍ମଣୀ ଆଦି ପଟ୍ଟମହିଷୀମାନଙ୍କ ଦ୍ୱାରା ସେବିତ ଓ ବେଷ୍ଟିତ ହୋଇ ମଧ୍ୟ ଶ୍ରୀକୃଷ୍ଣ ରାଧାଙ୍କ ବିନା ନିଜକୁ ଏକାନ୍ତ ଅସହାୟ ମନେ କରନ୍ତି । ଭକ୍ତମାନଙ୍କ ମତରେ ଏ ପ୍ରେମର ସ୍ୱରୂପ ମାନବେନ୍ଦ୍ରିୟ ଦ୍ୱାରା ଉପଭୋଗ୍ୟ ନୁହେଁ । ଏହା ଜ୍ଞାନଚକ୍ଷୁ ଦ୍ୱାରା ବା ପରମଜ୍ଞାନ ରୂପ ଇନ୍ଦ୍ରିୟ ଦ୍ୱାରା ହିଁ କିଞ୍ଚିତ ଅନୁଭବ କରାଯାଇପାରେ । ଏଣୁ କୁହାଯାଏ ଏହା "ଦେହ ମଧ୍ୟ ଦେଇ ବିଦେହର ଅନୁଭୂତି, ରୂପମଧ୍ୟ ଦେଇ ଅପରୂପର ଉପଲବ୍ଧି" ଅଟେ ।

ଇନ୍ଦ୍ରିୟବୃତ୍ତିକୁ ଘୃଣା କରୁଥିବା, ପୁନଶ୍ଚ ସ୍ୱ ସ୍ତ୍ରୀ ଭିନ୍ନ ଅନ୍ୟ ସ୍ତ୍ରୀର ମୁଖଦର୍ଶନ ମଧ୍ୟ ପାପ ବୋଲି ମନେ କରୁଥିବା ଚୈତନ୍ୟ ଏବଂ ହିନ୍ଦୀକାବ୍ୟର କାହ୍ନୁଖୀ ଧାରା ପ୍ରବାହିତ କରିଥିବା ସୁରଦାସ ମଧ୍ୟ ରାଧା-କୃଷ୍ଣଙ୍କର ପରକୀୟା ପ୍ରୀତିକୁ ଅଭିନ୍ନ ପ୍ରେମ, ମାୟାରୂପିଣୀ, ଆହ୍ଲାଦିନୀ ଶକ୍ତି ଭାବରେ ଚିତ୍ରାଙ୍କିତ ରାଧାଙ୍କୁ ଯେଭଳି ସ୍ୱାଭାବିକ ମାନବୀୟ ରୂପରେ ଚର୍ଚ୍ଚିତ କରିଛନ୍ତି ତାହା ପଢ଼ି ଆମେ ଭାବବିହ୍ୱଳ ହୋଇପଡ଼ୁ । ଏହି ପ୍ରେମ ଜୟଦେବ, ବିଦ୍ୟାପତି ଏବଂ ଚଣ୍ଡୀଦାସଙ୍କ କାବ୍ୟକବିତା ଉପରେ ଯେପରି ପ୍ରଭାବ ବିସ୍ତାର କରିଛି ତା' ତୁଳନାରେ ଓମରଖାୟମ୍ଙ୍କ ରୁବାୟତ ଅତି ତୁଚ୍ଛ ଏବଂ ନଗଣ୍ୟ ମନେହେବ ।

ଶହ ଶହ ବର୍ଷର ଏହି ଅତୁଟ ପ୍ରେମ ପରମ୍ପରା ଦ୍ୱାରା ଆମେ ଏତେ ପ୍ରଭାବିତ ହୋଇପଡ଼ିଛୁ ଯେ, ରାଧାଙ୍କ ବିନା କୃଷ୍ଣଙ୍କ କଳ୍ପନା ସୁଦ୍ଧା ଆମେ କରିପାରୁନା । ଏଇଥିପାଇଁ ତ ଦୋଳଯାତ୍ରା ଚନ୍ଦନଯାତ୍ରା ଏବଂ ଝୁଲଣ ଯାତ୍ରା । ପୁନଶ୍ଚ ଭାଦ୍ରବ ଶୁକ୍ଳ ଅଷ୍ଟମୀ ଦିନ ରାଧାଷ୍ଟମୀ ବ୍ରତ ଘରେ ଘରେ ପାଳିତ ହୁଏ । ଶ୍ରୀକୃଷ୍ଣଙ୍କ ବୁଢ଼ା ନାହିରୀ ବେଶରେ ଗଉଡୁଣୀ ରାଧାଙ୍କୁ ଘାଟପାର-କରିବା ପ୍ରସଙ୍ଗକୁ ନେଇ ଆମେ ହିଁ ତ ରଚିଛୁ "ନାବକେଳି" ।

ରାଧା ଓ କୃଷ୍ଣଙ୍କୁ ରାଧାବଲ୍ଲଭ ମତବାଦୀ ପ୍ରକୃତି ଓ ପୁରୁଷ ଭାବରେ ଗ୍ରହଣ କରନ୍ତି । ନିତ୍ୟ ବିହାରୀ ଶ୍ରୀକୃଷ୍ଣ ଏକମାତ୍ର ପୁରୁଷ ଏବଂ ତାଙ୍କ ନିଜରୂପା "ହ୍ଲାଦିନୀ" ପ୍ରେମଶକ୍ତି ରାଧା ପରମପ୍ରକୃତି ଅଟେ । ରାଧା ହିଁ ଜଡ଼- ଓ ଜୀବ ଏହି ଦୁଇ ପ୍ରକାର ପ୍ରକୃତିରେ ସର୍ବତ୍ର ବ୍ୟାପ୍ତ । ଏହି ଦୃଷ୍ଟିରୁ ବୈଷ୍ଣବ ସମ୍ପ୍ରଦାୟର ରାଧା ହିଁ ସାଂଖ୍ୟବାଦୀଙ୍କ ମୂଳ ପ୍ରକୃତି ଅଟନ୍ତି । ସାଂଖ୍ୟସମର୍ଥିତ ପ୍ରକୃତି ଓ ପୁରୁଷର ଦ୍ୱୈତଭାବ ହିଁ ରାଧାକୃଷ୍ଣଙ୍କ ଯୁଗ୍ମ ରୂପକ ଅଟେ । ତାଙ୍କୁ କେବଳ ପୁରୁଷ ଓ ପ୍ରକୃତି ଭାବରେ ଚିନ୍ତନ କରି ବୈଷ୍ଣବଗଣ କ୍ଷାନ୍ତ ହୋଇ ନାହାନ୍ତି । ସେ ରସ ଓ ରତି ଭାବରେ ମଧ୍ୟ ପୁରୁଷ ଓ ସ୍ତ୍ରୀ ରୂପରେ ଯେବେ କାମଭାବରେ ଲୀନ ହୋଇଯାଆନ୍ତି ତାଙ୍କୁ ହିଁ ବୈଷ୍ଣବମାନେ ମୁକ୍ତ ବୋଲି କୁହନ୍ତି ।

ରାଧାକୃଷ୍ଣଙ୍କ ପ୍ରେମଭାବକୁ ନେଇ ଭାରତବର୍ଷରେ ଅନେକ ପୁରୁଣା ଏବଂ ନୂଆ ସଂପ୍ରଦାୟ ଗଢ଼ି ଉଠିଛି । ଏକାଦଶ ଶତାବ୍ଦୀ ଠାରୁ ଆରମ୍ଭ କରି ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଏହି ସଂପ୍ରଦାୟଗୁଡ଼ିକ ଆମକୁ କହିବାକୁ ଚାହାନ୍ତି ଯେ ଶାନ୍ତ, ଦାସ୍ୟ, ସାଂଖ୍ୟ, ବାତ୍ସଲ୍ୟ ଏବଂ କାନ୍ତାଭକ୍ତି ମଧ୍ୟରୁ କାନ୍ତାଭକ୍ତି ହିଁ ସର୍ବଶ୍ରେଷ୍ଠ । ସ୍ୱକୀୟା କାନ୍ତାଭାବ ଅପେକ୍ଷା ପରକୀୟା ଭାବ ଶ୍ରେଷ୍ଠ ଅଟେ । କାନ୍ତାଭକ୍ତମାନଙ୍କର ତିନି ପ୍ରକାର ଭାବ ପ୍ରକାଶ ପାଏ । ପୂର୍ବରାଗ ବା ଅନୁରାଗ, ବିରହ ଓ ମିଳନ । ଏଥିରୁ ବିରହଭାବ ହିଁ ସର୍ବଶ୍ରେଷ୍ଠ ଅଟେ । ବିରହର ଗାଢ଼ତା ନ ଥିଲେ ମିଳନର ତାତ୍ପର୍ଯ୍ୟ ରହେ ନାହିଁ । ବିରହ ଯେଉଁ ପରିମାଣରେ ଘଟେ, ମିଳନ ସେହି ପରିମାଣରେ ସୁଖପ୍ରଦ ହୁଏ । ଏହି ଭାବକୁ "ମହାଭାବ" କୁହାଯାଏ । ବଲ୍ଲଭ ସଂପ୍ରଦାୟ ପ୍ରଚାର କରନ୍ତି ଯେ ରାଧାକୃଷ୍ଣ ଗୋଲକରେ ବାସ କରନ୍ତି । ପ୍ରତ୍ୟେକ ଭକ୍ତ ଗୋଲକରେ ପହଞ୍ଚିବା ଏକମାତ୍ର କାମ୍ୟ ଅଟେ । ମହାରାଷ୍ଟ୍ରର ବିଠଲ ଉପାସନାର ଆଦ୍ୟପ୍ରବର୍ତ୍ତକ ପୁଣ୍ଡରୀକ ଅଟନ୍ତି । ଏମାନଙ୍କ ଉପାସନାରେ ରାଧାଙ୍କ ସ୍ଥାନ ରୁକ୍ମିଣୀ ନିଅନ୍ତି । କାରଣ ରୁକ୍ମିଣୀଙ୍କ ପାଇଁ ଶ୍ରୀକୃଷ୍ଣ ପଣ୍ଡରପୁର ବା ପୁଣ୍ଡରୀକ ପୁରକୁ ଆସନ୍ତି ଏବଂ ସେଇଠି ସେ ଶ୍ରୀ ବିଠଲ ନାମରେ ପ୍ରସିଦ୍ଧ ହୁଅନ୍ତି । ଏହି ପରଂପରା ପରବର୍ତ୍ତୀ ସମୟରେ ନାମଦେବ ଏବଂ ତୁକାରାମଙ୍କ ଦ୍ୱାରା ପରିପୁଷ୍ଟ ହୁଏ ।

ରାଧା ଶବ୍ଦ ସଂସିଦ୍ଧି ଅର୍ଥବାଚକ ରାଧ ଧାତୁରୁ ଆ (ଟାପ୍) ପ୍ରତ୍ୟୟରୁ ଆସିଛି । ଭକ୍ତମାନଙ୍କ ପରିଭାଷାରେ, ଆରାଧ୍ୟତେ ଇତି ରାଧା" । ଅର୍ଥାତ୍ ଯାହାର ଆରାଧନା କରାଯାଏ ସେ ରାଧା ଅଟନ୍ତି । ତେବେ ପ୍ରଶ୍ନ ଉଠେ ରାଧା ଶବ୍ଦ ସିଦ୍ଧକରିବାକୁ ଯିବା ସମୟରେ ସେମାନେ "ଆ" ଉପସର୍ଗକୁ କାହିଁକି ବାଦ ଦିଅନ୍ତି

ରାଧା ଶବ୍ଦ ପୂର୍ବରୁ ଯଦି "ଆ" ଉପସର୍ଗ ନାହିଁ ତା' ହେଲେ ତାହାକୁ ସେମାନେ ଆରାଧନା କରିବେ । ଅନ୍ୟପ୍ରକାର ବିଚାର କଲେ ମୂଳଶବ୍ଦ "ରାଧା" ଶବ୍ଦ ଆଗରେ "ଅନୁ" ଉପସର୍ଗ ସଂଯୋଗ ହେଲେ ଅନୁରାଧା ହୁଏ । ଅଭିମନ୍ୟୁ ସାମନ୍ତ ସିଂହାର "ବିଦଗ୍ଧ ଚିନ୍ତାମଣି"ରେ ରାଧା ଶବ୍ଦର ବ୍ୟୁତ୍ପତ୍ତି ସଂପର୍କରେ ଏକ ମନଇଚ୍ଛା ସଂଜ୍ଞା ନିରୂପଣ କରିଛନ୍ତି । ତାଙ୍କ ଭାଷାରେ : "ର ରଶ୍ମି ରସ ଅଗ୍ନିବୀଜ ଅଧିକା ଯେଣୁ ରାଧିକା ନା ଦେଲେ ତ" । ଅର୍ଥାତ୍ ଜାତକ ବିଧାନରେ ପ୍ରସିଦ୍ଧ ଦୁର୍ବାସା ମୁନି "ର" ଅର୍ଥାତ୍ ରଶ୍ମି (ତେଜ) ରସ ଓ ଅଗ୍ନିବୀଜ (ପ୍ରଜ୍ଞା) ଅଧିକ ବୋଲି ତାଙ୍କର ନାମ ରାଧିକା ଦେଲେ । ର ଅଧିକା = ରାଧିକା ('ର' ଅର୍ଥ ରସ, ରଶ୍ମି ଏବଂ ଅଗ୍ନିବୀଜ) ।[1]

ଯାହାକିଛି ପ୍ରାଚୀନ ତାହାହିଁ ପ୍ରାମାଣ୍ୟ । ଏହି ଆଧାର ଉପରେ ବୈଷ୍ଣବୀୟ ବିଦ୍ୱାନଗଣ ରାଧା ଶବ୍ଦକୁ ବେଦକାଳୀନ ବୋଲି ଋଗ୍‌ବେଦର ଅନେକ ମନ୍ତ୍ର ଉଦ୍ଧୃତ କରନ୍ତି । ବେଦରେ ଥିବା ରାଧା, କୃଷ୍ଣ, ଅର୍ଜ୍ଜୁନ, ବ୍ରଜଲୀଳା, ରୋହିଣୀ, ଗୋପ, ଗୋ ଏବଂ ବୃଷଭାନୁ ଆଦି ଶବ୍ଦଗୁଡ଼ିକୁ ସୁନ୍ଦର ଭାବରେ ଯୋଡ଼ା ଯୋଡ଼ି କରି ରାଧା କୃଷ୍ଣଙ୍କ ବ୍ରଜଲୀଳାର ଉଲ୍ଲେଖ ବେଦରେ ଅଛି ବୋଲି ସେମାନେ ପ୍ରମାଣ ଦିଅନ୍ତି । ହୁଏତ ଏହି ଶବ୍ଦଗୁଡ଼ିକର ଆଧାର ଉପରେ ଭାଗବତ ଓ ବ୍ରହ୍ମବୈବର୍ତ୍ତ ପୁରାଣାଦି ରଚିତ ହୋଇଛି କହିଲେ ଅଯୁକ୍ତ ହେବ ନାହିଁ । ବାସ୍ତବରେ ଏ ଶବ୍ଦଗୁଡ଼ିକର ଅର୍ଥ କ'ଣ ତାହା ଜାଣିବା ଦରକାର । ବେଦ ଏକ ତତ୍ତ୍ୱଶାସ୍ତ୍ର ଅଟେ । ଏଥିରେ ଇତିହାସ ଖୋଜିବା ସଂପୂର୍ଣ୍ଣ ନିରାଧାର । ଏଥିରେ ଥିବା ସମସ୍ତ ପଦ ଯୌଗିକ ଅଟେ । ପ୍ରତ୍ୟେକ ମନ୍ତ୍ରକୁ ଅଧିଯାଜ୍ଞିକ, ଅଧିଦୈବିକ, ଏବଂ ଆଧ୍ୟାତ୍ମିକ ପ୍ରକ୍ରିୟାରେ ଅର୍ଥ କରାଯାଇ ପାରିବ ।

ବେଦରେ ଥିବା ରାଧା, କୃଷ୍ଣ, ଅର୍ଜ୍ଜୁନ, ଗୋପ, ବ୍ରଜ ଆଦି ଶବ୍ଦକୁ ନେଇ ଐତିହାସିକ ବ୍ୟାଖ୍ୟା କରାଯାଇ ପାରିବ ନାହିଁ । ନିତ୍ୟ ଓ ସନାତନ ଅର୍ଥରେ ହିଁ ବେଦର ବ୍ୟାଖ୍ୟା ହେବା ଦରକାର । ପାଞ୍ଚହଜାର ବର୍ଷ ତଳର କୃଷ୍ଣ ଓ ଅର୍ଜ୍ଜୁନ ଆଦି ଶବ୍ଦ ଦେଖି ପାଶ୍ଚାତ୍ୟ ପ୍ରାଚ୍ୟ ବିଦ୍‌ଗଣ ବେଦକୁ ପାଞ୍ଚହଜାର ବର୍ଷର ସୃଷ୍ଟି ବୋଲି କହି ସମାଲୋଚିତ ହୋଇଛନ୍ତି । କୋରାନରେ ଆକବର ଶବ୍ଦ ଦେଖି ଯଦି କିଏ କୋରାନକୁ ମହାନ ଆକବରଙ୍କ ସମୟର ବୋଲି କହେ ସେ ଯେପରି ହାସ୍ୟାସ୍ପଦ ହେବ, କୃଷ୍ଣ ଅର୍ଜ୍ଜୁନ ଶବ୍ଦ ଦେଖି ବେଦକୁ ମହାଭାରତ କାଳୀନ ବୋଲି କହିବା ମଧ୍ୟ ତଦ୍ରୂପ କଥା । ଏଇଠି ଆଉ ଗୋଟିଏ କଥା ମନେ ରଖିବା ଦରକାର ଯେ ଶ୍ରୀକୃଷ୍ଣ ବେଦର ପ୍ରଚାର ପ୍ରସାର କରିଛନ୍ତି ଏବଂ ବେଦ ଉପନିଷଦର ମହାନ ତତ୍ତ୍ୱକୁ ଅର୍ଜ୍ଜୁନଙ୍କ ସମ୍ମୁଖରେ ଉପସ୍ଥାପିତ କରି ବିଶ୍ୱବିଖ୍ୟାତ ହୋଇଛନ୍ତି । ଏହା ସତ୍ତ୍ୱେ

ଯଦ ଆମେ ରାଧାକୃଷ୍ଣଙ୍କୁ ବେଦ କାଳୀନ ବୋଲି କହିବା, ତ୍ରୁଟି ଆମର ହେବ, ବେଦର ନୁହେଁ । ଋଗ୍‌ବେଦରେ ରାଧା ଶବ୍ଦ ବିଭିନ୍ନ ମନ୍ତ୍ରରେ ଆସେ । କେଉଁଠି ସିଦ୍ଧି ଅର୍ଥରେ ଆସିଲେ ଆଉ କେଉଁଠି ଧନ ଅର୍ଥରେ ଏ ଶବ୍ଦ ବ୍ୟବହୃତ ହୋଇଛି ।

ଋଗ୍‌ବେଦର "ରାଧସ୍ତନ୍ନୋ ବିଦଦ୍ୱସ ଉଭୟାହସ୍ତ୍ୟାଭର" (5. 39. 1) ମନ୍ତ୍ରଟି ବ୍ୟାଖ୍ୟା କରିବାକୁ ଯାଇ ଯାସ୍କ "ନିରୁକ୍ତମ୍" ରେ ରାଧ ଶବ୍ଦର ଅର୍ଥ ଧନ ବୋଲି ପ୍ରତିପାଦନ କରିଛନ୍ତି ।[2] ସ୍କନ୍ଦସ୍ୱାମୀ ଓ ସାୟଣାଚାର୍ଯ୍ୟ "ରାଧସ୍"ର ଅର୍ଥ "ଧନ ସୈଭ ଦେଶମ୍" ଓ "ଧନମ୍ୟ ଏବ ଦେୟଣମ୍" ବା ଏକ ପ୍ରକାର ଧନ ଅର୍ଥରେ ବ୍ୟାଖ୍ୟା କରିଛନ୍ତି । ସ୍ୱାମୀ ଦୟାନନ୍ଦ ସରସ୍ୱତୀଙ୍କ ଋଗ୍‌ବେଦ ଭାଷ୍ୟରେ ରାଧା ଶବ୍ଦର ଅର୍ଥ ପରିଶ୍ରମ ଦ୍ୱାରା ପ୍ରାପ୍ତ ହୋଇଥିବା ଧନଅଟେ ଉଦାହରଣ ସ୍ୱରୂପ :[3]

ଚିତ୍ରମର୍ବାଗ୍ରାଧ (1. 9: 5)
ରାଧଃ ଅର୍ଥ ଧନ ।
କୃଣୁଷ୍ୱ ରାଧୋ (1. 10. 7)
ରାଧଃ ଅର୍ଥ ଧନକୁ ପ୍ରକାଶିତ କରୁଥିବା ଏବଂ ଅନେକ ସୁଖ ଯେପରି ସୁବର୍ଣ୍ଣାଦି ଧନ ।
ଚକ୍ରାମ ରାଧସେ (1. 17: 7)
ରାଧସେ ଅର୍ଥ ଯେଉଁଥିରେ ଉତ୍ତମ ସୁଖକୁ ସିଦ୍ଧ କରନ୍ତି ସେହି ଧନ ପାଇଁ ।
ସ୍ତୋତ୍ରଂ ରାଧାନାଂ ପତେ (1. 30. 5)
ରାଧାନାମ ଅର୍ଥ ଯେଉଁ ପୃଥିବୀ ଆଦି ପଦାର୍ଥ ଦ୍ୱାରା ସୁଖ ସିଦ୍ଧ ହୁଏ ।
ବସୁ ଭର୍ଷାସୁ ଭବ ରାଧସଃ (1. 81. 6)
ରାଧସଃ ଅର୍ଥ ଶିକ୍ଷିତ କାର୍ଯ୍ୟ ରୂପ ଧନ ।
ଶବସେ ଶୂର ରାଧସେ (1· 81. 8)
ରାଧସେ ଅର୍ଥ ଧନ ପାଇଁ ।
ଦାନାସ୍ମ ରାଧଃ (2: 13. 13)
ରାଧଃ ଅର୍ଥ ସୁଖ ସାଧକ ଧନ ।
ଦାତା ରାଧଃ ସ୍ତୁବତେ (2: 22. 3)
ରାଧଃ ଅର୍ଥ ଧନ ।
ସୁରାଧା ଆ ଦକ୍ଷିଣାଃ (3. 33: 12)
ସୁରାଧା ଅର୍ଥ ଉତ୍ତମ ଧନଯୁକ୍ତ ।
ଭଜସ୍ୱ ରାଧସି (4: 32. 21)
ରାଧସି ଅର୍ଥ ଭଲ ପ୍ରକାରେ ସାଧନ କରନ୍ତି ।
ଧଶ୍ଚିତ୍ର ମୃଞ୍ଜସେ (5: 13. 6)

ରାଧା ଅର୍ଥ ଧନ ।

ଇନ୍ଦ୍ର ରାଧସୋ (5. 38: 1)

ରାଧସଃ ଅର୍ଥ ଧନ ।

ରାଧସ୍ପତ୍ନୋ ବାଚସ୍ପତ (5: 39: 1)

ରାଧଃ ଅର୍ଥ ଦ୍ରବ୍ୟ

ରାଧୋ ଅଶ୍ବେ ମୃଜେ (5: 52. 17)

ରାଧଃ ଅର୍ଥ ଧନ ।

ଉପରୋକ୍ତ ମନ୍ତ୍ରଗୁଡ଼ିକର ଆଧାର ଉପରେ କୁହାଯାଇପାରିବ ଯେ ବେଦରେ ରାଧା ଶବ୍ଦ ଧନ, ଅନ୍ନ ବା ସିଦ୍ଧି ଅର୍ଥରେ ହିଁ ପ୍ରୟୋଗ ହୋଇଛି । ସେହିପରି କୃଷ୍ଣ ଏବଂ ଅର୍ଜ୍ଜୁନ ଶବ୍ଦ ବିଭିନ୍ନ ସ୍ଥାନରେ ବିଭିନ୍ନ ଅର୍ଥରେ ପ୍ରୟୋଗ ହୋଇଛି । ଯେପରି "ଅହଶ୍ଚ କୃଷ୍ଣମହରର୍ଜ୍ଜୁନଂ ଚ" (ଋଗ୍ 6: 9: 1) କୃଷ୍ଣ ଏବଂ ଅର୍ଜ୍ଜୁନ ଶବ୍ଦଦ୍ୱୟ ଦିବସ ଅର୍ଥରେ ହିଁ ଆସେ, ମନ୍ତ୍ରଟିରୁ ଯାସ୍କ "କୃଷ୍ଣ ଅହଃ" ବା ରାତ୍ରି ଅର୍ଥରେ ଭାଷ୍ୟ କରିଛନ୍ତି । ରାତ୍ରିକୁ କୃଷ୍ଣ ଏବଂ ଦିବସକୁ ଅର୍ଜ୍ଜୁନ ଅର୍ଥରେ ମଧ୍ୟ କେତେକ ଭାଷ୍ୟ କରିଥାନ୍ତି । ଶତପଥ ବ୍ରାହ୍ମଣ (2: 1. 2. 11) ରେ କୁହାଯାଇଛି "ଅର୍ଜ୍ଜୁନୋ ହ ବୈ ନାମେ ନ୍ଦ୍ରଃ" । ଅର୍ଜ୍ଜୁନଙ୍କୁ ଇନ୍ଦ୍ର ବା ବିଦ୍ୟୁତ୍ ରୂପରେ ବ୍ୟାଖ୍ୟା କରନ୍ତି । ଆକର୍ଷିତ ବସ୍ତୁକୁ ମଧ୍ୟ କୃଷ୍ଣ କୁହାଯାଏ ଏବଂ ସ୍ଥାନ ବିଶେଷରେ ଔଷଧ ଏବଂ କୃଷି ଅର୍ଥରେ ମଧ୍ୟ କୃଷ୍ଣ ଶବ୍ଦ ବ୍ୟବହାର କରାଯାଏ । କୃଷ୍ଣ ଶବ୍ଦ ଅନ୍ଧାର ବା ରାତ୍ରି ଏବଂ ଅର୍ଜ୍ଜୁନ ଶବ୍ଦ ଏକପ୍ରକାର ଔଷଧ ବୃକ୍ଷ ଭାବରେ ଗୃହୀତ ହୋଇଛି । ଚନ୍ଦ୍ରକିରଣରେ ଔଷଧ ବୃକ୍ଷ ପରିପୁଷ୍ଟତା ଲାଭ କରେ ଓ ପ୍ରକୃତ ଗୁଣ ପ୍ରାପ୍ତ ହୁଏ । ସେହି ଦୃଷ୍ଟିରୁ ଅର୍ଜ୍ଜୁନ ବୃକ୍ଷ, ସର୍ବଦା କୃଷ୍ଣଙ୍କୁ ବା ରାତ୍ରିକୁ ଚାହିଁ ରହିଥାଏ କାରଣ ରାତ୍ରିରେ ଚନ୍ଦ୍ର ଆସିଲେ ତାର ଗୁଣ ବିକଶିତ ହେବ । ଏଣୁ ଅର୍ଜ୍ଜୁନର ସଖା କୃଷ୍ଣ ବୋଲି କୁହାଯାଏ । ବୈଦିକ ଧର୍ମକୁ ଆଶ୍ରା କରି ସମସ୍ତେ ଚଳୁଥିବା କାରଣରୁ ବୈଦିକ ଶବ୍ଦକୁ ନେଇ ମାତା ପିତା ସ୍ୱ ସନ୍ତାନ ସନ୍ତତିମାନଙ୍କର ନାମକରଣ କରୁଥିଲେ । ନୃପରାଜା ସମ୍ପୂର୍ଣ୍ଣ ନାମକରଣ ବେଦରୁ ହିଁ କରିଥିଲେ । ମନୁସ୍ମୃତିରେ ଏହିପ୍ରକାର ଉଲ୍ଲେଖ ଅଛି

ସର୍ବେଷାଂ ତୁ ସ ନାମନ୍ଦି କର୍ମାଣି ଚ ପୃଥକ୍ ପୃଥକ୍ ।
ବେଦ ଶବ୍ଦେଭ୍ୟ ଏବାଦୌ ପୃଥକ୍ ସଂସ୍ଥାଶ୍ଚ ନିର୍ମମେ ।।
(1:21)

କୃଷ୍ଣ ପ୍ରେମରେ ସର୍ବତ୍ୟାଗିନୀ ବୃଷଭାନୁଜେମା ରାଧା , ବ୍ରହ୍ମବୈବର୍ତ୍ତ, ପଦ୍ମ, ବାୟୁ, ବରାହ, ମତ୍ସ୍ୟ, ମାର୍କଣ୍ଡେୟ ଏବଂ ନାରଦୀୟ ଆଦି ପୁରାଣରେ ପ୍ରୁଷ୍ଟା ମଣ୍ଡନ କରିଥିଲେ ମଧ୍ୟ ମହାଭାରତ, ଭାଗବତ, ହରିବଂଶ ଏବଂ ବିଷ୍ଣୁପୁରାଣ

ତାଙ୍କ ସମ୍ପର୍କରେ ସଂପୂର୍ଣ୍ଣ ନୀରବ ରହିବା ଏକ ଆଶ୍ଚର୍ଯ୍ୟଜନକ ଘଟଣା ଅଟେ । ମତ୍ସ୍ୟ ଓ ମାର୍କଣ୍ଡେୟ ପୁରାଣରେ ରାଧା ପ୍ରସଙ୍ଗଟି ପ୍ରକ୍ଷିପ୍ତ ଅଟେ । ମତ୍ସ୍ୟ ପୁରାଣରେ ବ୍ରହ୍ମବୈବର୍ତ୍ତ ପୁରାଣର ଯେଉଁ ଲକ୍ଷଣ ଓ ପତ୍ରସଂଖ୍ୟା ଦିଆ ହୋଇଛି ତାହା ବର୍ତ୍ତମାନ ଉପଲବ୍ଧ ହୋଇଥିବା ବ୍ରହ୍ମବୈବର୍ତ୍ତ ପୁରାଣରେ ଦେଖିବାକୁ ମିଳେ ନାହିଁ । ମୂଳ ବ୍ରହ୍ମବୈବର୍ତ୍ତ ପୁରାଣ ଖଣ୍ଡିତ ରୂପେ ଲୁପ୍ତ ହୋଇ ତା' ପରବର୍ତ୍ତୀ ବର୍ତ୍ତମାନ ଉପଲବ୍ଧ ହୋଇଥିବା ବ୍ରହ୍ମବୈବର୍ତ୍ତ ପୁରାଣ ରଚିତ ହୋଇଛି । ତେବେ ଶ୍ରୀକୃଷ୍ଣଙ୍କୁ ଜାଣିବାକୁ ହେଲେ ମହାଭାରତ ଓ ଭାଗବତ ଦୁଇଟି ଗ୍ରନ୍ଥ ଦେଖାଯିବା ଉଚିତ । ଏ ଦୁଇଟି ଗ୍ରନ୍ଥରେ ରାଧା ସ୍ପଷ୍ଟ ଭାବରେ ଉଲ୍ଲେଖ ହୋଇ ନଥିବା କାରଣରୁ ରାଧା ଯେ ମହାଭାରତ କାଳୀନ କିମ୍ବା ଭାଗବତ କାଳୀନ ତାହା ମନା ଯାଇପାରେ ନାହିଁ । ଯଦି ରାଧା ଶ୍ରୀକୃଷ୍ଣଙ୍କ ଜୀବନରେ ଏକ ମହତ୍ତ୍ୱପୂର୍ଣ୍ଣ ଚରିତ୍ର ତେବେ ମହାଭାରତରେ ତାଙ୍କର ଉଲ୍ଲେଖ ରହିବା ଏକାନ୍ତ ଅବଶ୍ୟକ । ଭାଗବତରେ ରାଧାଙ୍କ ସଂପର୍କରେ ଗୋଟିଏ ଶ୍ଲୋକ ଆସେ :

ଅନୟା ରାଧିତୋ ନୂନଂ ଭଗବାନ୍ ହରିରୀଶ୍ୱରଃ ।
ଯନ୍ନୋ ବିହାୟ ଗୋବିନ୍ଦଃ ପ୍ରୀତୋ ଯାମନୟଦ୍ରହଃ ॥

(10 : 30 : 24 )

ରାସଲୀଳାରେ ଶ୍ରୀକୃଷ୍ଣ ଜଣେ ପ୍ରିୟତମା ଗୋପୀକୁ ନେଇ ପ୍ରଥମରେ ଅନ୍ତର୍ଧାନ ହୋଇଯାଆନ୍ତି । ସେହି ଗୋପୀକୁ ଲକ୍ଷ୍ୟକରି ଅନ୍ୟ ବିରହବ୍ୟାକୁଳ ଗୋପୀଗଣ ଉପରୋକ୍ତ ଶ୍ଲୋକଟି କୁହନ୍ତି । ଏହି ଶ୍ଲୋକରେ "ଅନୟା ରାଧିତୋ" ଶବ୍ଦଟିକୁ ନେଇ ଭାଗବତ ଟୀକାକାର ଏହାକୁ ରାଧା ବୋଲି ଉଲ୍ଲେଖ କରନ୍ତି ଏବଂ "ରାସ ପଞ୍ଚାଧ୍ୟାୟୀ"ରେ ସେହି ପ୍ରିୟତମା ଗୋପୀକୁ ରାଧା ଭାବରେ ବ୍ୟାଖ୍ୟା କରନ୍ତି । ଯାହାର ସଂକେତ ଭାଗବତରେ ରହିଛି ବୋଲି ପ୍ରଚାର କରନ୍ତି । ଶ୍ରୀକୃଷ୍ଣ ସେହି ପ୍ରିୟତମା ଗୋପୀକୁ ନେଇ ଅନ୍ତର୍ଧାନ ହୋଇଯିବା ଦ୍ୱାରା ରାଧାଙ୍କୁ ପ୍ରମାଣ କରାଯାଇ ପାରିବ ନାହିଁ । ଏପରି ଭାବିବା ହୁଏତ ଗୋପୀମାନଙ୍କ ପକ୍ଷରେ ସମ୍ଭବ ମାତ୍ର ଭାଗବତକାରଙ୍କ ପକ୍ଷରେ ନୁହେଁ । ଡଃ ବ୍ରଜେଶ୍ୱର ବର୍ମା ଏ ପ୍ରସଙ୍ଗରେ କୁହନ୍ତି : "ପ୍ରକୃତ ପକ୍ଷେ ଗୋପାଳ-କୃଷ୍ଣଙ୍କ ଲୋକ ପ୍ରଚଳିତ ପ୍ରେମ କଥା ପ୍ରାରମ୍ଭରେ ପୂର୍ଣ୍ଣତଃ ଗ୍ରହଣ କରାଯାଇନଥିଲା । ରାଧା କୃଷ୍ଣ ସମ୍ବନ୍ଧୀ ପ୍ରେମ କଥା ପରବର୍ତ୍ତୀ ପୁରାଣଗୁଡ଼ିକରେ ସମ୍ମିଳିତ ହେଲା ।" ବ୍ରହ୍ମବୈବର୍ତ୍ତ ପୁରାଣରେ ରାଧାଙ୍କୁ ଅଯୋନି ସମ୍ଭବା ବୋଲି କୁହାଯାଇଛି । ଦିନେ ବୃଷଭାନୁଙ୍କ ପତ୍ନୀ ପୋଖରୀକୁ ସ୍ନାନ କରିବାକୁ ଯାଇ ଦେଖିଲେ ଗୋଟିଏ ଅତି କ୍ଷୁଦ୍ର ସୁନ୍ଦରୀ କନ୍ୟା ଗୋଟିଏ କୁମୁଦ ବା କଇଁ ଫୁଲରେ ରହି ଜଳରେ ଭାସୁଛି ।

ଅତି ଆଦରରେ କାଳିନ୍ଦୀ ତାଙ୍କୁ ଆଣି ନିଜର କନ୍ୟାରୂପେ ପାଳନ କରିଥିଲେ । ପୁରାଣକାରଙ୍କ ଭାଷାରେ :

ବୃଷଭାନୁ ବୈଶ୍ୟଙ୍କର କନ୍ୟକା ହୋଇଲେ
ଅଯୋନି ସମ୍ଭବା ହୋଇ ଜନମ ପାଇଲେ ।
କାଳକ୍ରମେ କନ୍ୟାଟିଏ ଜନମ ସେ ଭଲେ
ରାଧା ବୋଲି କରି ତାର ନାମ ଗୋଟି ଦେଲେ ।
ଦ୍ୱାଦଶ ବରଷ ଅନ୍ତେ ଯଉବନ ଆସି
ପ୍ରବେଶିଲା ତାଙ୍କ ଅଙ୍ଗେ ଶୋଭା ପରକାଶି ।
ରାୟାଣ ବୋଲିଣ ଏକ ଗୋପସୁତ ଥିଲା
ତାହା ସଙ୍ଗେ ରାଧାଙ୍କର ବିବାହ ଘଟିଲା ।[5]

ପୁଣି ସେହି ପୁରାଣରେ ଲେଖା ଅଛି ଯେ ଶ୍ରୀକୃଷ୍ଣଙ୍କ ବାମ ଅଙ୍ଗରୁ ରାଧ ଉତ୍ପତ୍ତି ହୋଇଥିଲେ :

ସେହି କ୍ଷଣି ବିଧାତାଙ୍କର ଇଚ୍ଛା ଅନୁସାରେ
ଆପଣା ଶରୀର ଦୁଇଭାଗ ହେଲା ପରେ ।
ଦକ୍ଷିଣ ଅଂଶଟି ପୁରୁଷ ଭାଗରେ ରହିଲା
ବାମ ଅଂଶ ରାଧାରୂପେ ପ୍ରକାଶିତ ହେଲା ।[6]

ରାଧାଙ୍କର ଏହି ଉତ୍ପତ୍ତି ଆମକୁ ବାଇବେଲ ପରମେଶ୍ୱରଙ୍କ ଆଦମ୍‌ର ଗୋଟିଏ ପଞ୍ଜରାରୁ ହବ୍‌ବାକୁ ସୃଷ୍ଟି ପ୍ରସଙ୍ଗରୁ ମନେପକାଇ ଦିଏ । ସେହି ପୁରାଣ ଅନୁସାରେ ରାଧା ବୃଷଭାନୁ ନାମକ ବୈଶ୍ୟର କନ୍ୟା ଅଟନ୍ତି ଏବଂ ଶ୍ରୀକୃଷ୍ଣଙ୍କର ମାତା ଯଶୋଦାଙ୍କର ଭାଇ ରାୟାଣ ସହିତ ରାଧାଙ୍କ ବିବାହ ହେବା କାରଣରୁ ରାୟାଣ ଶ୍ରୀକୃଷ୍ଣଙ୍କ ମାମୁଁ ଏବଂ ରାଧା ଶ୍ରୀକୃଷ୍ଣଙ୍କ ମାଇଁ ଅଟନ୍ତି :

ଯଶୋଦାଙ୍କ ସହୋଦର ଅଟନ୍ତି ରାୟାଣ
ବିଷ୍ଣୁଙ୍କ ଅଂଶରେ ଜାତ ହୋଇଥିଲେ ଜାଣ ।
× × ×
ଲେଖାରେ ସେ କୃଷ୍ଣଙ୍କର ମାତୁଳ ଅଟନ୍ତି ।[7]

ଗୋଟିଏ ପକ୍ଷରେ ରାଧା କୃଷ୍ଣଙ୍କର ମାଇଁ ହେଲେ ଅନ୍ୟ ପକ୍ଷରେ ସେ ତାଙ୍କର କନ୍ୟା । ଏହି ଦୁଇ ଦୃଷ୍ଟିକୋଣରୁ ମଧ୍ୟ କୃଷ୍ଣଙ୍କ ସହିତ ରାଧାଙ୍କର ପ୍ରେମ କେବଳ ଅନୁଚିତ ନୁହେଁ ଅସଙ୍ଗତ ମଧ୍ୟ ।

ରାଧା ସ୍ୱପକ୍ଷ ରାୟଣ ଥିବା ସତ୍ତ୍ୱେ ଶ୍ରୀକୃଷ୍ଣଙ୍କ ସହିତ ସମ୍ପର୍କ ସ୍ଥାପନ କରିବା ବ୍ୟତିକ୍ରମ ଅଟେ । ଏହାକୁ ଆଖିଆଗରେ ରଖି ପୁରାଣକାର ଏକ "ଛାୟା ରାଧା"ର କଳ୍ପନା କରନ୍ତି । ପ୍ରକୃତି ଖଣ୍ଡର 49 ଅଧ୍ୟାୟର 38 ଶ୍ଳୋକରେ କୁହାଯାଇଛି ରାଧା ନିଜର ଛାୟାକୁ ଘରେ ରଖି ଦେଇ ସ୍ୱୟଂ ଅନ୍ତର୍ଦ୍ଧାନ ହୋଇ ଯାଆନ୍ତି । ଯେଉଁ ଛାୟା ସହିତ ରାୟାଣର ବିବାହ ହୁଏ । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ରାଧା କୃଷ୍ଣଙ୍କ ସହିତ ଥିଲେ ଏବଂ ଛାୟା ରାୟଣଙ୍କ ପତ୍ନୀ ଥିଲେ । ଏଭଳି ଗୋଟିଏ କଥା ଅନୁଧ୍ୟାନର ବିଷୟ ଯେ ଏହାଦ୍ୱାରା ରାୟଣଙ୍କୁ ପ୍ରବଞ୍ଚିତ କରାଗଲା । ରାଧାଙ୍କ ଛାୟା ସହିତ ରାୟଣ କି ପ୍ରକାର ଦାଂପତ୍ୟ ସୁଖ ଅନୁଭବ କରିଥିବା ତାହା ବିଚାର୍ଯ୍ୟ । ମହାଭାଗବତ (51 ଅଧ୍ୟାୟ, 34-36)ର ଅନ୍ୟ ଏକ ସ୍ଥାନରେ କୁହାଯାଇଛି ଯେ ରାଧାକୃଷ୍ଣଙ୍କ ସହିତ ମୁକ୍ତ ଭାବରେ ପ୍ରେମ କରିବା କାରଣରୁ ତାଙ୍କ ପତିଙ୍କୁ ନପୁଂସକ କରି ଦିଆଯାଇଥିଲା । ଆଉ କେଉଁଠି ଗୋଲକ ଧାମର ରାସ ମଣ୍ଡଳରେ ତାଙ୍କର ଜନ୍ମ ହୋଇଥିବା କଥା ଲେଖା ଅଛି । ଜନ୍ମ ହେବା ମାତ୍ରେ ସେ ଯୁବତୀ ହେବା କଥା ମଧ୍ୟ ଉଲ୍ଲେଖ ଅଛି । ଗର୍ଗ ସଂହିତା ଆଦି କେତେକ ଅର୍ବାଚୀନ ଗ୍ରନ୍ଥରେ ଶ୍ରୀକୃଷ୍ଣ ରାଧାଙ୍କୁ ବିବାହ କରିଥିବା କଥା ମଧ୍ୟ ଉଲ୍ଲେଖ ଅଛି । ଚନ୍ଦ୍ରସେନା ବା ରାୟଣ ନାମକ ଗୋପାଳର ଏକମାତ୍ର ବିବାହିତ ପତ୍ନୀ ଭାବରେ ମଧ୍ୟ ତାଙ୍କୁ ବର୍ଣ୍ଣନା କରାଯାଇଛି । ପଦ୍ମପୁରାଣର ଉତ୍ତର ଖଣ୍ଡର ଗୋଲକର ବର୍ଣ୍ଣନା ପ୍ରସଙ୍ଗରେ ଯେଉଁ ରାଧାଙ୍କୁ ଆରାଧନା କରିବା ପାଇଁ କୁହାଯାଇଛି ସେଥିରେ ଆଦ୍ୟ ପ୍ରକୃତି ସତ୍ତ୍ୱ ମାହେଶ୍ୱରୀ, ରମା, ଆଦ୍ୟଶକ୍ତି ତଥା ଇଚ୍ଛା, ଜ୍ଞାନ, କ୍ରିୟା, ଶକ୍ତି ଭାବରେ ବର୍ଣ୍ଣନା କରାଯାଇଛି ଏବଂ ଗୋଟିଏ ସ୍ଥାନରେ ସ୍ୱୟଂ କୃଷ୍ଣ ନିଜକୁ ପୁରୁଷ ରୂପୀ ରାଧାଦେବୀ ବୋଲି କହିଛନ୍ତି । ପୁଣି କର୍ଣ୍ଣଙ୍କର ପାଳିତା ମା' ଥିବାରୁ କର୍ଣ୍ଣଙ୍କୁ ସୁତ ପୁତ୍ର ଓ ରାଧେୟ ବୋଲି ମଧ୍ୟ କୁହାଯାଇ ଥାଏ ।

ରାଧାକୃଷ୍ଣଙ୍କ ଅନନ୍ତ ପ୍ରେମକୁ ବିଷ୍ଣୁ ବା ନାରାୟଣ ଲକ୍ଷ୍ମୀ ପ୍ରେମ ଭାବରେ ଯଦି ଆମେ ସ୍ୱୀକାର କରୁ ତାହା ହେଲେ ଅଷ୍ଟମ ଶତାବ୍ଦୀ ପୂର୍ବରୁ କବି ଭଟ୍ଟ ନାରାୟଣ କୃତ "ବେଣୀ ସଂହାର" ନାଟକର ନାନ୍ଦୀ ଶ୍ଳୋକ, ନବମ ଶତାବ୍ଦୀର ଆନନ୍ଦ ବର୍ଦ୍ଧନ କୃତ "ଧ୍ୱନ୍ୟାଲୋକ"ର ଦୁଇଟି ଶ୍ଳୋକ; ଦଶମ ଶତାବ୍ଦୀର ଲିଖିତ ତ୍ରିବିକ୍ରମ ଭଟ୍ଟ କୃତ "ନଳଚଂପୂ"ର ଏକ ଶ୍ଳେଷ ଗର୍ଭିତ ଶ୍ଳୋକ; ଦଶମ ଶତାବ୍ଦୀର ସୋମଦେବ ସୂରିକୃତ "ଯଶସ୍ତିଲକ ଚଂପୂ"ର ଏକ ଶ୍ଳୋକ ଏବଂ ଏକାଦଶ ଶତାବ୍ଦୀର ବାକ୍ ପତିରାଜଙ୍କ ଏକ ଅଭିଲେଖର ଏକ ଶ୍ଳୋକ ଉଲ୍ଲେଖ କରିପାରିବୁ । ଦଶମ ଶତାବ୍ଦୀର ଏକ କବିତା ସଂକଳନ "କବୀନ୍ଦ୍ର ବଚନ ସମୁଚ୍ଚୟ"ରେ ସୁରୋକ୍ତି ପଦ୍ୟ ଅଛି । ରାଧାନାମ କୁତ୍ରାପି ଉଲ୍ଲେଖ ନ ଥିଲେ ମଧ୍ୟ କୃଷ୍ଣଙ୍କ

ସମ୍ବଳିତ ଥିବା ନାୟିକାଟିକୁ ରାଧାବୋଲି ପ୍ରମାଣ କରାଯାଇ ପାରିବ । ମାତ୍ର "ଗାଥା ସପ୍ତଶତୀ"ରେ ବର୍ଣ୍ଣିତ ହୋଇଥିବା ରାଧାକୃଷ୍ଣଙ୍କର ପ୍ରେମ ସାଧାରଣ ପ୍ରେମିକ ପ୍ରେମିକାଙ୍କ ପ୍ରେମ ସହ ଭିନ୍ନ ନୁହଁ । ସିଦ୍ଧେଶ୍ୱର ଶାସ୍ତ୍ରୀ ଚିତ୍ରାବଙ୍କ ଅନୁସାରେ ରାଧା-କୃଷ୍ଣ ଉପାସନାର ପ୍ରାଚୀନତମ ଗ୍ରନ୍ଥ "ଜ୍ଞାନାମୃତ ସାର" ଅଟେ । ଯାହା "ନାରଦ-ପଞ୍ଚରାତ୍ର" ନାମକ ସଂହିତାରେ ସମାବିଷ୍ଟ ହୋଇଛି । ଏହା ଚତୁର୍ଥ ଶତାବ୍ଦୀର ବୋଲି କୁହାଯାଇଛି ।[8] ଭାଷା ଦୃଷ୍ଟିରୁ ଏହା ପୁରାଣ ସାହିତ୍ୟ ଠାରୁ ଅଧିକ ପ୍ରାଚୀନ ମନେ ହୁଏ ନାହିଁ । ବ୍ରହ୍ମବୈବର୍ତ୍ତ ଏବଂ ପଦ୍ମ ପୁରାଣକୁ ଅଷ୍ଟମ ଶତାବ୍ଦୀର ଧରାଗଲେ "ଜ୍ଞାନାମୃତ ସାର" ସେଥିରୁ ଆହୁରି ଅର୍ବାଚୀନ ହେବ ତାହା ଆମେ ମାନିବା ପାଇଁ ବାଧ୍ୟ । ବୈଷ୍ଣବ ସଂପ୍ରଦାୟର ବିଦ୍ୱାନମାନେ ରାଧାଙ୍କ ପ୍ରାଚୀନତା ପ୍ରମାଣ କରିବାକୁ ଯାଇ ଅର୍ବାଚୀନ ଗ୍ରନ୍ଥ "ଗୋପାଳୋତ୍ତରତାପନୀ" ନାମକ ଉପନିଷଦ "ନାରଦ-ପାଞ୍ଚରାତ୍ର", "ବୃହଦ ଗୌତମୀୟ ତନ୍ତ୍ର", "ବ୍ରହ୍ମସଂହିତା", "ଦେବୀଭାଗବତ" ଏବଂ "ମହାଭାରତ" ଉପପୁରାଣ ଆଦି ଅନେକ ଗ୍ରନ୍ଥକୁ ବହୁ ପ୍ରାଚୀନ ବୋଲି ପ୍ରମାଣ କରି ଚାଲିଛନ୍ତି ।

ପ୍ରାଚୀନ ସାହିତ୍ୟରେ ରାଧାଙ୍କ ପ୍ରଥମ ଉଲ୍ଲେଖ ହାଲସାତବାହନ ଦ୍ୱାରା ସଂଗୃହୀତ "ଗାଥାସପ୍ତଶତୀ" କୁ ପ୍ରଥମ ଶତାବ୍ଦୀ ଠାରୁ ଆରମ୍ଭ କରି ସପ୍ତମ ଶତାବ୍ଦୀ ପର୍ଯ୍ୟନ୍ତ ଅନୁମାନ କରନ୍ତି । ମାତ୍ର ବ୍ରହ୍ମବୈବର୍ତ୍ତ ପୁରାଣ ହେଉଛି ପ୍ରଥମ ଯେଉଁଥିରେ କୃଷ୍ଣଙ୍କ ସହିତ ରାଧାଙ୍କ ନାମ ଆସିଛି । ଏହା ଡଃ ଭବାନୀଲାଲ ଭାରତୀୟଙ୍କ ମତ ।[9] ଏହି ପୁରାଣ ଅଷ୍ଟମ ଶତାବ୍ଦୀର ପରବର୍ତ୍ତୀ ସମୟର ରଚନା । ଦେଉ ମିନ ଓ୍ୱେଲକରଙ୍କ ମତରେ ଏହା ଚତୁର୍ଦ୍ଦଶ ଶତାବ୍ଦୀର ରଚନା ଅଟେ ।[10] ତ୍ରୟୋଦଶ ଶତାବ୍ଦୀରେ ବିଷ୍ଣୁ ସ୍ୱାମୀ ସମ୍ପ୍ରଦାୟ ରାଧାକୃଷ୍ଣଙ୍କ ପୂଜା କରୁଥିବା ସେ ଅନୁମାନ କରନ୍ତି । ମାତ୍ର ଦଶମ ଶତାବ୍ଦୀ ପୂର୍ବରୁ ଯେ ରାଧା ଭାରତୀୟ ଜନମାନସରେ ଆସି ଯାଇଥିଲେ ତାହା ସେ ବିଶ୍ୱାସ କରିପାରନ୍ତି ନାହିଁ ।[11]

କେବଳ ଅନୁମାନ କରନ୍ତି ରାଧା ଉପାଖ୍ୟାନଟିର ଉଦ୍ଭବ ତାମିଲ ଗୌଡୁଣୀ ବାଳିକାଙ୍କ ଭିତରେ ଖେଳା ଯାଉଥିବା ହଲ୍ଲୀସକ ନାମକ ଏକ ବସନ୍ତ କାଳୀନ ଖେଳରୁ । ହଲ୍ଲୀସକ ସାଥିସହ ରାସଯାତ୍ରାର ଯଥେଷ୍ଟ ସମ୍ପର୍କ ରହିଛି । ଶିଳପ୍ପଦିକାରମ, ମଣିମେଖଳୈ, ଜୀବକ ଚିନ୍ତାମଣି, ଦେବାରମ, ତିରୁକ୍କୋ ବୈୟାର ଆଦି ପ୍ରାଚୀନ ତାମିଲ କୃତିରୁ ଜଣାପଡ଼େ ଯେ ଶ୍ରୀକୃଷ୍ଣଙ୍କ ଅନେକ ପତ୍ନୀଙ୍କ ମଧ୍ୟରେ ନାପିନ୍ନାୟ ଅନ୍ୟତମ । ନାପିନ୍ନାୟ ଯଶୋଦାଙ୍କ ଭାଇ କୁମ୍ଭନଙ୍କ କନ୍ୟା ଥିଲେ । କୃଷ୍ଣ ତାମିଲ ପ୍ରାନ୍ତର ଅହୀର ମାନଙ୍କ ବଳଶାଳୀ ବଳଦମାନଙ୍କୁ ଆୟତ୍ତରେ ଆଣି ନାପିନ୍ନାୟଙ୍କୁ ପତ୍ନୀରୂପେ ପ୍ରାପ୍ତ କରିଥିଲେ । ବୈଷ୍ଣବ ଆଚାର୍ଯ୍ୟଗଣ ନାପିନ୍ନାୟଙ୍କୁ ନୀଳା ବୋଲି

ମଧ୍ୟ କହିଛନ୍ତି । ତାମିଲରେ ପ୍ରଚଳିତ ଆଲବାର ସାଧୁଙ୍କ ଗୀତରେ ମଧ୍ୟ କୃଷ୍ଣଙ୍କର ଜଣେ ପ୍ରିୟତମା ଗୋପୀ ନାପିନ୍ନାଇଙ୍କ ନାମର ଉଲ୍ଲେଖ ମିଳେ । ଏହି ନାପିନ୍ନାଇ ଗୋପୀ ହିଁ ଏବେ ଉତ୍ତର ଭାରତର ରାଧା ହୋଇ ଥାଇପାରନ୍ତି ବୋଲି ବ୍ରଜେଶ୍ୱର ବର୍ମା ଅନୁମାନ କରନ୍ତି ।[12] ଡଃ ଭଣ୍ଡାରକରଙ୍କ ପରି ବିଦ୍ୱାନ ଏହି ପୁରାଣ-କାରଙ୍କ ମାନସ କନ୍ୟା ରାଧାଙ୍କୁ ବିଶଅର ଆଭୀର ସଂସ୍କୃତିରୁ ଭାରତୀୟ ସଂସ୍କୃତିର ଋଣ ବୋଲି କହିବାକୁ କିଛି କୁଣ୍ଠାବୋଧ କରନ୍ତି ନାହିଁ ।

ବାସ୍ତବରେ ଯଦି ମୂଳତତ୍ତ୍ୱ ଅନୁସନ୍ଧାନ କରାଯାଏ ତେବେ ଦେଖାଯିବ ଯେ ରାଧାତତ୍ତ୍ୱ ବା ବୈଷ୍ଣବ ତନ୍ତ୍ର ବିଦେଶାଗତ ନୁହେଁ । ଋଗ୍‌ବେଦରେ ବରୁଣଙ୍କ ପ୍ରତି କରାଯାଇଥିବା ପ୍ରାର୍ଥନା ଶୈବ ବା ବୈଷ୍ଣବ ଧର୍ମକୁ କେବଳ ଜନ୍ମ ଦେଇ ନାହିଁ ବରଂ ବୌଦ୍ଧ ଧର୍ମର ମହାଯାନ ପନ୍ଥାକୁ ମଧ୍ୟ ଏହା ଜନ୍ମ ଦେଇଛି । ଶିବ ଏବଂ ବାସୁଦେବ ଯେପରି ଭଗବାନ ବିଷ୍ଣୁ ହୋଇ ଯାଅନ୍ତି ବୈଦିକ ଯୁଗ କାଳାନ୍ତରରେ ସେହି ପ୍ରକାର ଶିବ ରୂପରେ ପ୍ରତିଷ୍ଠିତ ହୁଅନ୍ତି । ଏହି ଭକ୍ତି ସିଦ୍ଧାନ୍ତର ମୂଳତତ୍ତ୍ୱ ଋଗ୍‌ବେଦରୁ ଶ୍ୱେତାଶ୍ୱେତର ମାଧ୍ୟମରେ ପୁଷ୍ଟି ଦେଇ ବୈଷ୍ଣବମାନଙ୍କ ପାଖରେ ପହଞ୍ଚିଯାଇଛି । ଶ୍ରୀ ରାଧା ଭାରତୀୟ ଧର୍ମ-ଧାରଣାକୁ କିପରି ଆସିଲେ ସଂକ୍ଷେପରେ କହିବାକୁ ଗଲେ ଏକାଦଶ ଶତାବ୍ଦୀରୁ ଏ ତତ୍ତ୍ୱର କ୍ରମବିକାଶର ଧାରା ଦେଖିବାକୁ ହୁଏ । ନିମ୍ବାର୍କ ସଂପ୍ରଦାୟର ବୃନ୍ଦାବନ ସହ ଯୋଗାଯୋଗର ପରିଣାମ ଏହାର ଏକ ମୁଖ୍ୟ କାରଣ ହୋଇପାରେ । ନିମ୍ବାର୍କ ସ୍ୱୟଂ ରାମାନୁଜ ସଂପ୍ରଦାୟର ଥିଲେ । ରାମାନୁଜଙ୍କ ନାରାୟଣ ଓ ଲକ୍ଷ୍ମୀ ଉପାସନା ନିମ୍ବାର୍କଙ୍କ କୃଷ୍ଣ ଓ ରାଧା ଉପାସନାରେ ପରିବର୍ତ୍ତିତ ହୋଇଯାଏ ଯାହାକୁ ସନକ ସଂପ୍ରଦାୟ ବୋଲି କୁହାଯାଏ । ନିମ୍ବାର୍କ ତେଲଙ୍ଗୀ ବ୍ରାହ୍ମଣ ଥିଲେ ମାତ୍ର ମଥୁରା ବୃନ୍ଦାବନରେ ରହିବା କାରଣରୁ କପାଳରେ ଗୋପୀ ଚନ୍ଦନ ଟୀକା ଲଗାଇବା ଏବଂ ତୁଳସୀ ମାଳା ପିନ୍ଧିବା ତାଙ୍କ ସଂପ୍ରଦାୟରେ ପ୍ରଚଳିତ କଲେ ।

ଓଡ଼ିଶାରେ ରାଧାକୃଷ୍ଣ ତତ୍ତ୍ୱ ଜୟଦେବଙ୍କ ରଚିତ ଗୀତଗୋବିନ୍ଦରେ ପୂର୍ଣ୍ଣତା ଲାଭ କରିଥିଲା । ସେହି ସମୟରେ ଉତ୍କଳରେ ଗଙ୍ଗରାଜା କାମାର୍ଣ୍ଣବଦେବ ଶାସନ କରୁଥିଲେ । ଦ୍ୱାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଚୋଡ଼ଗଙ୍ଗ ଦେବ ଭାରତ ବିଖ୍ୟାତ ପୁରୁଷୋତ୍ତମ କ୍ଷେତ୍ରରେ ଶ୍ରୀ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା କରି ଓଡ଼ିଶାର ଧର୍ମ ଧାରଣାରେ ବୈଷ୍ଣବ ଧର୍ମର ପ୍ରଚାର ଓ ପ୍ରସାର କରାଇଥିଲେ । ଚୋଡ଼ଗଙ୍ଗ ଦେବଙ୍କ ସମୟରେ ଦାକ୍ଷିଣାତ୍ୟର ପ୍ରସିଦ୍ଧ ବୈଷ୍ଣବ ଧର୍ମ ପ୍ରଚାରକ ରାମାନୁଜ ପୁରୁଷୋତ୍ତମ କ୍ଷେତ୍ରକୁ ଆସିଥିଲେ । ରାଜା ବୈଷ୍ଣବ ମତରେ ପ୍ରଭାବିତ ହୋଇ "ପରମ ବୈଷ୍ଣବ" ଉପାଧି

ଧାରଣ କରିଥିଲେ । ଏହା ପରେ ପରେ ସୂର୍ଯ୍ୟବଂଶୀ ରାଜାଗଣ ଅନେକ ବିଷ୍ଣୁ ମନ୍ଦିର ନିର୍ମାଣ କରନ୍ତି । ସ୍ୱୟଂ କପିଳେନ୍ଦ୍ର ଦେବ ଓଡ଼ିଆ ସାମ୍ରାଜ୍ୟକୁ ଶ୍ରୀ ଜଗନ୍ନାଥ ସାମ୍ରାଜ୍ୟ ଭାବରେ ପରିବର୍ତ୍ତିତ କରିଦିଅନ୍ତି । ପୁରୁଷୋତ୍ତମ ଦେବଙ୍କ ସମୟରେ 'ଭାଗବତ' ଓ 'ଗୀତ ଗୋବିନ୍ଦ' ବହୁଳ ପ୍ରଚାର ଓ ପ୍ରସାର ହୁଏ । କଥିତ ଅଛି ଯେ ପୁରୁଷୋତ୍ତମ ଦେବ 'ଭାଗବତ' ଓ 'ଗୀତ ଗୋବିନ୍ଦ' ଶ୍ରବଣ କରି ତାଙ୍କର ଦିନଚର୍ଯ୍ୟା ଆରମ୍ଭ କରୁଥିଲେ । ୧୫୧୦ ଖ୍ରୀଷ୍ଟାବ୍ଦରେ ଚୈତନ୍ୟ ଓଡ଼ିଶା ଆସନ୍ତି, ତାଙ୍କ ଆସିବା ପୂର୍ବରୁ ଜଗନ୍ନାଥ ଦାସ 'ଭାଗବତ' ରଚନା କରିସାରିଥିଲେ । ଚୈତନ୍ୟ ରାଜା ପ୍ରତାପରୁଦ୍ର ଦେବଙ୍କ ସମର୍ଥନ, ରାୟ ରାମାନନ୍ଦଙ୍କ ଭକ୍ତି ଏବଂ ବୈଷ୍ଣବୀୟ ଚିନ୍ତା ଓ ଚେତନାର ପରିବେଶ ପାଇ ମୁଗ୍‌ଧ ହୋଇଯାଆନ୍ତି । ପଞ୍ଚସଖାଙ୍କ ସହ ତାଙ୍କର ଘନିଷ୍ଠ ପରିଚୟ ହୁଏ ଏବଂ ଜଗନ୍ନାଥ ଦାସଙ୍କ ସହିତ ତାଙ୍କର ମିତ୍ରତା ତାଙ୍କୁ ବୈଷ୍ଣବ ଧର୍ମ ପ୍ରଚାର କରିବା ପାଇଁ ସୁଯୋଗ ପ୍ରଦାନ କରେ । ଜଗନ୍ନାଥଙ୍କୁ ସେ ରାଧାକୃଷ୍ଣଙ୍କର ଯୁଗଳମୂର୍ତ୍ତି ପରିକଳ୍ପନା କରି ରାଧାକୃଷ୍ଣଙ୍କ ଭକ୍ତି ଭାବନାକୁ ଜଗନ୍ନାଥ ଧର୍ମ ସହିତ ମିଶାଇଦିଅନ୍ତି । ଏହି ତତ୍ତ୍ୱ ପରବର୍ତ୍ତୀ ସମୟରେ 'ଅଚିନ୍ତ୍ୟ ଭେଦାଭେଦ ଭାବ' ଭାବରେ ଲୋକ ସମ୍ମୁଖକୁ ଆସେ ।

ପଞ୍ଚଦଶ ଶତାବ୍ଦୀ ରାଧାକୃଷ୍ଣ ତତ୍ତ୍ୱର ଏକ ପରିପକ୍ୱ ସମୟ କହିଲେ ଅତ୍ୟୁକ୍ତି ହେବ ନାହିଁ । କାରଣ ଏହି ସମୟରେ ମୈଥିଳୀରେ ବିଦ୍ୟାପତି, ବଙ୍ଗଳାରେ ଚଣ୍ଡୀଦାସ ଏବଂ ଗୁଜରାଟରେ ଭୀମ, କୃଷ୍ଣଭକ୍ତିର ପ୍ରସାର ଓ ପ୍ରଚାର ଘଟାଇଥିଲେ । ବିଦ୍ୟାପତିଙ୍କୁ ଯଦିଓ ଅନେକେ ରାଧାକୃଷ୍ଣ ତତ୍ତ୍ୱର ପ୍ରସାରକ ବୋଲି ଗ୍ରହଣ କରିଥାନ୍ତି ଏବଂ ବିଦ୍ୱାନ ନଗେନ୍ଦ୍ର ନାଥ ଗୁପ୍ତ ତାଙ୍କର ପ୍ରତ୍ୟେକ ପଦକୁ ରାଧାକୃଷ୍ଣ ଲୀଳା ସନ୍ଦର୍ଭରେ ରଖିବାକୁ ଚେଷ୍ଟା କରିଛନ୍ତି ଏହା ସତ୍ତ୍ୱେ ଡଃ ବ୍ରଜେଶ୍ୱର ବର୍ମା ବିଦ୍ୟାପତିଙ୍କୁ ନିତାନ୍ତ ବୈଷ୍ଣବ ବୋଲି ଅଭିହିତ କରି ତାଙ୍କ ପଦ୍ୟାବଳୀକୁ ଶୁଦ୍ଧ ଶୃଙ୍ଗାରିକ ବୋଲି ପ୍ରତିପାଦନ କରନ୍ତି । ସେ ଶୈବ ଥିଲେ । ଏପରିକି ତାଙ୍କର ଶହସ୍ର ପଦ ଏପରି ଅଛି ଯେଉଁଥିରେ ରାଧାକୃଷ୍ଣଙ୍କ ନାମ ମଧ୍ୟ ଉଲ୍ଲେଖ ନାହିଁ ।[13] ରାଧା କୃଷ୍ଣତତ୍ତ୍ୱ ଯେ କପରି ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ଆଳବାର ସାଧୁଙ୍କ ମାଧ୍ୟମରେ ଭାରତର ପ୍ରତ୍ୟେକ ଭାଷାଭାଷୀଙ୍କ ପାଖକୁ ପହଞ୍ଚିଥିଲା ତାହା ବର୍ଣ୍ଣନୀୟ । ଡଃ ନଗେନ୍ଦ୍ରଙ୍କ ମତରେ ମରାଠୀ ଓ ଓଡ଼ିଆ କବିଙ୍କ ଉପରେ ଆଳବାର ସାଧୁଙ୍କ ପ୍ରତ୍ୟକ୍ଷ ପ୍ରଭାବ ପଡ଼ିଥିଲା ।[14] ବଙ୍ଗ ପ୍ରଦେଶରେ ପାହାଡ଼ପୁରରୁ ପ୍ରାପ୍ତ ମୂର୍ତ୍ତିରୁ ଜ୍ଞାତ ହୁଏ ଯେ କୃଷ୍ଣଙ୍କ ସହିତ ପ୍ରସିଦ୍ଧ ଭଙ୍ଗୀରେ ଠିଆ ହୋଇଥିବା ସ୍ତ୍ରୀଟି ନିଶ୍ଚିତ ରୂପେ ରାଧା ହୋଇଥିବ । ସେହି ମୂର୍ତ୍ତିଟି ଷଷ୍ଠ ଶତାବ୍ଦୀର ବୋଲି ଅନୁମାନ କରାଯାଏ । ବ୍ରଜେଶ୍ୱର ବର୍ମାଙ୍କ ମତ ଅନୁସାରେ ରାଧାକୃଷ୍ଣଙ୍କର ଉଲ୍ଲେଖ ସଂସ୍କୃତ

ସାହିତ୍ୟରେ ଦ୍ୱାଦଶ ଶତାବ୍ଦୀ ପୂର୍ବରୁ ମିଳେ ନାହିଁ ।[15] ସେହି ଦୃଷ୍ଟିରୁ ମୂର୍ତ୍ତିଟିର ଷଷ୍ଠ ଶତାବ୍ଦୀ କାଳ ନିରୂପଣ ପ୍ରମାଣଯୋଗ୍ୟ ନୁହେଁ । ଏତେ ପ୍ରଚ୍ଛର ପ୍ରସାର ହେଲେ ମଧ୍ୟ ୧୭୪୦ ଖ୍ରୀଷ୍ଟାବ୍ଦ ପୂର୍ବରୁ ଓଡ଼ିଶାର କୌଣସି ସ୍ଥାନରେ ରାଧାକୃଷ୍ଣଙ୍କର ଯୁଗଳ ମୂର୍ତ୍ତି ପୂଜାହେବା ବା ପ୍ରାପ୍ତହେବାର ସନ୍ଧାନ ମିଳି ନ ଥିଲା ।[16] ତେବେ ସେହି ବର୍ଷ ରାଜସ୍ଥାନର ଜୟପୁରରେ ଅନୁଷ୍ଠିତ ହୋଇଥିବା ମହଣ୍ଡଳେଶ୍ୱରଙ୍କ ଧର୍ମ ସମ୍ମିଳନୀରେ ଓଡ଼ିଶା ଚୈତନ୍ୟ ପନ୍ଥୀ ବୈଷ୍ଣବ ଦାର୍ଶନିକ ଶ୍ରୀବଳଦେବ ବିଦ୍ୟାଭୂଷଣ ପ୍ରସ୍ଥାନ ତ୍ରୈସ୍ତ୍ରୀ ଉପରେ ପାଣ୍ଡିତ୍ୟପୂର୍ଣ୍ଣ "ଗୋବିନ୍ଦଭାଷ୍ୟ" ଉପସ୍ଥାପିତ କରି ରାଧାକୃଷ୍ଣାଶ୍ରିତ ଶୃଙ୍ଗାରିକ ଭକ୍ତି ଚେତନାର ମୂଳଦୁଆ ସ୍ଥାପନ କଲେ ।[17]

ଏଥର ଆସନ୍ତୁ ରାଧାକୃଷ୍ଣ ତତ୍ତ୍ୱ ସମ୍ପର୍କରେ କିଛି ଆଲୋଚନା କରିବା । ରାଧା ଓ କୃଷ୍ଣଙ୍କ ପ୍ରେମରେ ଜାଗତିକ, ପାଶବିକ ବା ଇନ୍ଦ୍ରିୟ ବାସନା ନାହିଁ, ଅଛି ବ୍ରହ୍ମାନନ୍ଦ । ଏ ପ୍ରେମ ଜାଗତିକ, ଦୈହିକ ନା ନୈସର୍ଗିକ ତାହା ବୁଝିବା ପାଇଁ ବ୍ରହ୍ମବୈବର୍ତ୍ତ ପୁରାଣରୁ କେତେକ ଉଦାହରଣ ପ୍ରସ୍ତୁତ କରାଯାଇ ପାରେ । ବାଳକ କୃଷ୍ଣଙ୍କୁ ନେଇକି ନନ୍ଦ ଗୋଚାରଣ ପାଇଁ ବଣକୁ ଯାଆନ୍ତି । ସେଇଠି ଘୋର ବାତ୍ୟା ଓ ବର୍ଷାର ସମ୍ମୁଖୀନ ହୋଇ ସେ ଘରକୁ ଫେରିବାକୁ ଚାହାଁନ୍ତି । ହଠାତ୍ ରାଧାଙ୍କ ଉପସ୍ଥିତ ହେବା ଦେଖି ନନ୍ଦ, ବାଳକ କୃଷ୍ଣଙ୍କୁ ରାଧାଙ୍କ ହାତରେ ଦେଇଦିଅନ୍ତି । ଯୁବତୀ ରାଧା ବାଳକ କୃଷ୍ଣଙ୍କୁ କୋଳରେ ନେବାମାତ୍ରେ କାମନାବାସନାଗ୍ରସ୍ତ ହୁଅନ୍ତି । ସେ ରାସମଣ୍ଡଳ ସ୍ମରଣ କରି କୃଷ୍ଣଙ୍କୁ ଜଣେ ରୂପବାନ ଯୁବକରେ ପରିବର୍ତ୍ତନ କରି କ'ଣ କରନ୍ତି ପୁରାଣକାରଙ୍କ ଭାଷାରୁ ଅନୁମାନ କରନ୍ତୁ :

ଜାମଶରେ ବଶ ହୋଇ କୋଳାଗତ କଲେ
ବିବିଧ ପ୍ରକାର ରତିରସରେ ମାତିଲେ ।

× × ×

ବକ୍ଷସ୍ଥଳେ ବସାଇଣ ଶ୍ରୀକୃଷ୍ଣ ରାଧାକୁ
ନୀବିବନ୍ଧ ଫେଡ଼ି ମୁଖେ ଦେଲେ ଚୁମ୍ବନକୁ ।
ରତିଯୁଦ୍ଧେ ରାଧାଙ୍କର କ୍ଷୁଦ୍ର ଘଣ୍ଟି ଛିଡ଼ି
ଗୋଟି ଗୋଟି ହୋଇ ମହୀପରେ ଗଲାଗଡ଼ି ।
ଚୁମ୍ବନରେ ଓଷ୍ଠରାଗ ଆଶ୍ଳେଷେ ପତ୍ରକ
ଶୃଙ୍ଗାରେ କବରୀ ଭାର ସିନ୍ଦୁର ତିଳକ ।

ସ୍ୱୀପସ୍ଥିତ ସମ୍ଭୋଗରେ ଅଲୌକିକ ଚନ୍ଦ୍ର
କ୍ରମେ କ୍ରମେ ହୋଇଗଲା ସବୁ ଭିନ୍ନ ଭିନ୍ନ ।

ନବ ସଙ୍ଗମ ସୁଖରେ ବିମୋହିତ ହୋଇ
କୋମଳ ଶଯ୍ୟାରେ ଦେଖି ପଡ଼ିବାରୁ ଶୋଇ ।

ଆକର୍ଷଣ କରି ତାଙ୍କୁ ପୁଣି ଜୀବନ୍ତର
ନଖଦନ୍ତ କ୍ଷତ ଦେଲେ ଅଙ୍ଗେ ନେଇ ଭରି ।

ଶୃଙ୍ଗାର ସମୟେ କର କଙ୍କଣ କିଙ୍କିଣୀ
ଶବ୍ଦରେ କାମଧନୁ ଟଙ୍କାରକୁ ଜିଣି ।

ଶ୍ରୀକୃଷ୍ଣ ରାଧାଙ୍କୁ ନେଇ ଏକାନ୍ତ ସ୍ଥାନରେ
ବିବସନ ମୁକ୍ତକେଶ କଲେ କୌତୁକରେ ।

× × ×

ପରସ୍ପରେ ରତିରସେ ପରସ୍ପରେ ମନ
ସନ୍ତୁଷ୍ଟ କଲେ ସେ କାଳେ ଆହେ ତପୋଧନ ।

ଏହିପରି କେତେକ୍ଷଣ ପରେ କାମଯୁଦ୍ଧ
କରିବାରୁ ଦୁହିଁଙ୍କର ହୋନ୍ତେ ମନବୋଧ ।[15]

ସେହିପରି ଜୟଦେବ "ଗୀତଗୋବିନ୍ଦ"ର ଦ୍ୱାଦଶ ସର୍ଗରେ କୃଷ୍ଣ ଆଠ ପ୍ରକାର ଶୃଙ୍ଗାର କରିଥିବାର ବର୍ଣ୍ଣନା କରନ୍ତି । ସେଥିକରେ ଜୟଦେବ କ୍ଷାନ୍ତ ହୋଇ ନାହାଁନ୍ତି । ଲୌକିକ ପ୍ରେମ ଅବତାର କୃଷ୍ଣଙ୍କ ପ୍ରେମରେ ରୂଷାରୁଷି ଗାଳି ଅଭିମାନ ଦେଇ ଏ ଘଟଣାଗୁଡ଼ିକୁ ବର୍ଣ୍ଣନା କରିଛନ୍ତି । ଯମୁନା ତୀରରେ ଶ୍ରୀକୃଷ୍ଣ ରାଧାଙ୍କୁ ଅପେକ୍ଷା କରି ବସିଛନ୍ତି ଆଉ ରାଧା ତାଙ୍କୁ ଭର୍ତ୍ସନା କରି କହୁଛନ୍ତି, "ହେ ବରନାରୀ ସ୍ନେହୀ କୃଷ୍ଣ ମୋର ନଗରରୁ ତୁ ଚାଲିଯା' । ତୁ ଅଧାର୍ମିକ, ଲମ୍ପଟ ଅଟୁ । ଶୀଘ୍ର ପଦ୍ମାବତୀ ପାଖକୁ ଯା', ରତ୍ନମାଳା ପାଖକୁ ଯା', ବନମାଳା ପାଖକୁ ଯା' । ହେ ସୁଶୀତଳ, ହେ ଶଶୀକଳେ ଏହି କୃଷ୍ଣଙ୍କୁ ଏଠାରୁ ବାହାର କରିଦିଅ । ଏ ଧୂର୍ତ୍ତ ଅଟେ, ଏଠି ଏହାର ପ୍ରୟୋଜନ ନାହିଁ । [ବ୍ରହ୍ମବୈବର୍ତ୍ତ ଶ୍ରୀକୃଷ୍ଣ ଜନ୍ମଖଣ୍ଡ 58-62] ଏଥିରୁ ଜଣାପଡ଼େ ଯେ ଶ୍ରୀକୃଷ୍ଣଙ୍କର କେବଳ ରାଧା ନ ଥିଲେ ବରଂ ତାଙ୍କର ଅନେକ ପ୍ରେୟସୀ ଥିଲେ । ଏହା ସତ୍ତ୍ୱେ ଯୋଗେଶ୍ୱର ଭଗବାନ ଶ୍ରୀକୃଷ୍ଣ ରାଧାଙ୍କୁ ପ୍ରୀତ କରିବା ପାଇଁ ତାଙ୍କ ଚରଣକୁ ନିଜ ଶିରରେ ରଖିବା ପାଇଁ ସଙ୍କୋଚବୋଧ କଲେ ନାହିଁ । ଜୟଦେବଙ୍କ ଭାଷାରେ ଶୁଣନ୍ତୁ :

ସ୍ମର ଗରଳ-ଖଣ୍ଡନଂ ମମ ଶିରସି ମଣ୍ଡନଂ
ଦେହି ପଦ-ପଲ୍ଲବ ମୁଦାରଂ
ଜ୍ୱଳତିମୟି ଦାରୁଣୋ ମଦନ କଦନାନଳୋ
ହରତୁ ତଦୁପହିତ-ବିକାରଂ [10 : 8]

ଅର୍ଥାତ୍

କାମ ବିଷନାଶକ ତୋର ଚରଣ—
ପଲ୍ଲବ ଯୁଗ ମୋର ବାଞ୍ଛିତ ଧନ,
ଦିଅ ତା' ମୋର ଶିରେ ବିନ୍ୟସ୍ତ କରି
ସୁନ୍ଦର ଶିରୋଭୂଷା ରଚନ କରି ।

ଦୁରନ୍ତ କାମାନଳ ଶରୀରସ୍ଥାନ
ଦହନ କରି ଦେଉଅଛି ସନ୍ତାପ,
ସେହି ବିକାର ତୋର ପ୍ରସାଦ ଲଭି
ଯାଉ ସଜନି ! ଏବା ବେଳକେ ଲଭି ।[19]

ଭାଗବତରେ ତ ଶ୍ରୀକୃଷ୍ଣଙ୍କୁ ମହାକାମୀ ଏବଂ ଲମ୍ପଟ ଭାବରେ ବର୍ଣ୍ଣନା କରାଯାଇଛି । ଅତି ନଗ୍ନ ଭାବରେ ଭାଗବତକାର ଏହା ବର୍ଣ୍ଣନା କରନ୍ତି :

"ବାହୁ ପ୍ରସାର ପରିରମ୍ଭ କରାଳ କୋରୁନୀ ବୀସ୍ତନାଳଭନ
ନର୍ମ ନଖାଗ୍ରପାତୈଃ ।
କ୍ଷେଲ୍ୟାବଲୋକ ହସିତୈ ବ୍ରଜ ସୁନ୍ଦରୀଣା
ମୁତ୍ତମ୍ଭୟନ୍ ରତି ପତି ରମୟାଞ୍ଚକାର ॥
(ଭାଗବତ ପୁରାଣ 10 29:49)

ଶ୍ରୀକୃଷ୍ଣଙ୍କ ରାଧିକାଙ୍କ ସଙ୍ଗେ ରସିକତା, ଷୋଳ ସହସ୍ର ଗୋପୀଙ୍କ ସଙ୍ଗେ ରମଣ ଆଦି ଉପକଥା ଅତି କାଳ୍ପନିକ ଓ ରୂପକ ମାତ୍ର । କୃଷ୍ଣ ଗୋପପୁରରୁ ମଥୁରା ଅଷ୍ଟମ ବର୍ଷରେ ଯାଆନ୍ତି । ତେଣୁ "ମଥୁରା ମଙ୍ଗଳ" କବି ଲେଖନ୍ତି :

"ଅଷ୍ଟମ ବର୍ଷର ପୁଅ ବାହୁଡ଼ି ନଗଲା ଲୋ କୋଇଲି ।"

ମଥୁରାକୁ ଯିବାର କେତେଦିନ ପରେ ଶ୍ରୀକୃଷ୍ଣ ଋଷି ସାନ୍ଦୀପନିଙ୍କ ଆଶ୍ରମକୁ ବିଦ୍ୟାଶିକ୍ଷା କରିବାକୁ ଅବନ୍ତୀକୁ ଯାଆନ୍ତି । ବ୍ରହ୍ମପୁରାଣରେ କୁହାଯାଇଛି :

କୃଷ୍ଣଚନ୍ଦ୍ର ମଥୁରାରେ ବଳରାମ ସଙ୍ଗେ
କରିଥିଲେ ବିହରନ୍ତି ନାନା ଲୀଳା ରଙ୍ଗେ ।
ତହୁଁ କେତେ ଦିନ ସୁଖେ ମଥୁରା-ବିହାରୀ
ଅବନ୍ତୀ ନଗରେ ଗଲେ ପ୍ରଭୁ ରାମହରି ।
ଅବନ୍ତୀ ନିବାସୀ ମୁନି ସାନ୍ଦୀପନି ନାମ
ତହିଁ ବିଦ୍ୟା ଶିକ୍ଷା କଲେ କୃଷ୍ଣ ବଳରାମ ।

ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ରାଧା, କୃଷ୍ଣଙ୍କୁ ସେହି ବୟସରେ ସାକ୍ଷାତ ହୋଇଥିଲେ ଯେତେବେଳେ ତାଙ୍କୁ ବାରବର୍ଷ ହୋଇଥିଲା ଏବଂ କୃଷ୍ଣଙ୍କ ବୟସ ଆଠ ବର୍ଷରୁ ମଧ୍ୟ କମ୍ ଥିଲା । ଏହି ବୟସରେ ଶୃଙ୍ଗାରର ସମ୍ପୂର୍ଣ୍ଣ ରାସକ୍ରୀଡ଼ା ସମ୍ଭବ କି ? ଯଦି ଆମ୍ଭେ ମନେ କରୁ ଯେ କୃଷ୍ଣଙ୍କର ବୟସ ଦଶ ବାର ବର୍ଷ ହୋଇଥିଲା ତେବେ ଷୋଳ ସହସ୍ର ଗୋପୀଙ୍କ ସଙ୍ଗେ ଷୋଳ ସହସ୍ର କୃଷ୍ଣ ରୂପ ଧାରଣ କରି ରତିକ୍ରୀଡ଼ା କରିବା ବାସ୍ତବ ଜଗତରେ ସମ୍ଭବ କି ? ଶ୍ରୀକୃଷ୍ଣଙ୍କୁ ଯଦି ଅବତାରୀ ପୁରୁଷ ମନେ କରାଯାଏ ତେବେ ତାଙ୍କର ଏ ଜଗତରେ ଆବିର୍ଭାବର କାରଣ ଧର୍ମ ସଂସ୍ଥାପନ, ଦୁଷ୍ଟଦଳନ ଓ ସନ୍ଥପାଳନ ଅଟେ ଯାହା ସେ ଗୀତାରେ ଅର୍ଜ୍ଜୁନଙ୍କୁ କହିଛନ୍ତି । ସେ କେବେ ମଧ୍ୟ ପୃଥିବୀକୁ ଚୌଷଠୀ ରତି ବନ୍ଧ ଶିକ୍ଷା ଦେବାକୁ ଆସି ନ ଥିଲେ, ଯାହା ପୁରାଣକାରମାନେ ଆମକୁ କହନ୍ତି ।

ବ୍ରହ୍ମବୈବର୍ତ୍ତ ପୁରାଣରେ ରାଧା କୃଷ୍ଣଙ୍କର ଯେଉଁ ବିଳାସ ଲୀଳା ବର୍ଣ୍ଣନା କରାଯାଇଛି ତାହା ଅତ୍ୟନ୍ତ ସ୍ଥୂଳ ଓ ଅସଂସ୍କୃତ । ଏଥିରେ ଥିବା ନଗ୍ନ ଚିତ୍ରଣ ଏତେ ଉତ୍ତେଜକ ଯେ ଏହି ପୁସ୍ତକ ବ୍ୟାସଙ୍କ ଭଳି ମହାନ ତପସ୍ୱୀ, ସଂଯମୀ ବିଦ୍ୱାନଙ୍କ ଦ୍ୱାରା ଲିଖିତ ହୋଇଛି ତାହା ବିଶ୍ୱାସ କରି ହୁଏ ନାହିଁ । ରାଧାକୃଷ୍ଣଙ୍କ ଏହି ସମ୍ବନ୍ଧକୁ ଅଲୌକିକ ଓ ଦିବ୍ୟ ମନେ କରିବା ଅତି ଅସୁନ୍ଦର ମନେହୁଏ । ଏହା ସତ୍ତ୍ୱେ ଶ୍ରୀପାଦ ଦାମୋଦର ସାତବଲେକର ଏହି ସମ୍ବନ୍ଧକୁ ଅତି ପବିତ୍ର ବୋଲି ମନେ କରନ୍ତି । ବଙ୍କିମଚନ୍ଦ୍ର ଯଦିଓ ରାଧାଙ୍କ ଅସ୍ତିତ୍ୱକୁ ପୌରାଣିକ ଲେଖକଙ୍କ କଳ୍ପନା ବିଳାସ ମନେକରନ୍ତି ତଥାପି ଏହି ସମ୍ବନ୍ଧକୁ ସଂପୂର୍ଣ୍ଣ ବାଦ୍ ଦେବାକୁ ସେ ସାହସ କରନ୍ତି ନାହିଁ । ଏହାକୁ ପୁରୁଷ ଓ ପ୍ରକୃତି ଭାବରେ ଗ୍ରହଣ କରିବାକୁ ଉପଯୁକ୍ତ ମନେକରନ୍ତି ।

ଏଇଠି ଗୋଟିଏ କଥା ମୁଁ ପାଠକଙ୍କୁ ସ୍ପଷ୍ଟ କରିଦେବାକୁ ଚାହେଁ ଯେ ସାଂଖ୍ୟର ପ୍ରକୃତି ଓ ପୁରୁଷ ସହିତ ରାଧାକୃଷ୍ଣଙ୍କର ସମ୍ପର୍କର ଅନ୍ୟ କୌଣସି ଶାସ୍ତ୍ରରେ ପ୍ରମାଣ ଅଛି କି ? ସାଂଖ୍ୟ ମତର ବିଭିନ୍ନ ଭାଷ୍ୟ ଓ ଗ୍ରନ୍ଥରେ ରାଧାକୃଷ୍ଣଙ୍କ ସାଧାରଣ

ସୂଚନା ମଧ୍ୟ ଦିଆଯାଇ ନାହିଁ । ଯଦି ରାଧାକୃଷ୍ଣ ତତ୍ତ୍ୱ ସହିତ ସାଂଖ୍ୟର ସାଧାରଣ ତୁଳନା ନାହିଁ ତେବେ ଇଚ୍ଛାନୁରୂପ ଆମେ ଉପରି ଲୋକଙ୍କୁ ଚାଲି କରି ଏହି କଥାଟିକୁ ଉପସ୍ଥାପିତ କରିବୁ । ଏହା ଆମେ ମାନିବା ପାଇଁ ବାଧ୍ୟ ଯେ ଭାଗବତ ଭକ୍ତିର ଗୂଢ଼ ତତ୍ତ୍ୱ ଜୟଦେବଙ୍କ ମଦନ ଧର୍ମୋତ୍ସବରେ ପରିଣତ ହୋଇଯାଏ । ଏହି ମହୋତ୍ସବର ବୋଝ ଦୀନକୃଷ୍ଣ ଦାସଙ୍କ 'ରସକଲ୍ଲୋଳ''ରେ, ଅଭିମନ୍ୟୁ ସାମନ୍ତସିଂହାରଙ୍କ ''ବିଦଗ୍ଧ ଚିନ୍ତାମଣି'' ଏବଂ ଭକ୍ତଚରଣ ଦାସଙ୍କ ''ମଥୁରାମଙ୍ଗଳ''ରେ ଉଠାଇବାକୁ ହୁଏ ।

ରାଧାକୃଷ୍ଣ ପ୍ରେମ ତତ୍ତ୍ୱର ପ୍ରଭାବ ସମାଜ ଉପରେ କି ପ୍ରକାର ଅନୈତିକ ପ୍ରଭାବ ପକାଇଛି ତାହା ସର୍ବଜନ ବିଦିତ । ମଠଗୁଡ଼ିକରେ ବାବାଜୀଙ୍କ ସହିତ ମାତା ଏଙ୍କ ସଙ୍ଗରେ ଭକ୍ତା ଭାରତୀୟ ଆର୍ଯ୍ୟ ସଂସ୍କୃତିର ପ୍ରତିକୂଳ ଥିଲେ ମଧ୍ୟ ରାଧାକୃଷ୍ଣ ତତ୍ତ୍ୱ ଦ୍ୱାରା ଏହା ସ୍ୱୀକୃତ ହୋଇଛି । ରାଧାପରି ସଖୀ ଭାବରେ ବସ୍ତ୍ରଧାରଣ କରିବା ଦ୍ୱାରା ଶ୍ରୀକୃଷ୍ଣଙ୍କ ସାନ୍ନିଧ୍ୟ ଲାଭ ହୋଇପାରିବ ବୋଲି ସଖୀଭାବ ସଂପ୍ରଦାୟର ଦୃଢ଼ ବିଶ୍ୱାସ । କେବଳ ବସ୍ତ୍ର ଏବଂ ବ୍ୟବହାରତଃ ସେମାନେ ନାରୀ ସୁଲଭ ନୃତ୍ୟ ଏପରି କି ମାସିକ ଧର୍ମର ଅଭିନୟ ମଧ୍ୟ ସେମାନେ କରନ୍ତି । ରାଧା ଏବଂ ଗୋପୀମାନେ ଶ୍ରୀକୃଷ୍ଣଙ୍କର ଅତିପ୍ରିୟ ହୋଇଥିବାରୁ ଏହି ଭାବକୁ ଧାରଣ କଲେ ଏମାନେ ହୁଏତ ରାଧାବଲ୍ଲଭଙ୍କୁ ପାଇପାରିବେ । ଏହି ପ୍ରକାର ଘୃଣିତ ବ୍ୟବହାର କାରଣରୁ ଏମାନେ ଜନସମାଜକୁ ଆସିବା ପାଇଁ ମଧ୍ୟ ଲଜ୍ଜିତ ହୋଇଥାଆନ୍ତି । ପ୍ରସିଦ୍ଧ ପ୍ରତ୍ନତତ୍ତ୍ୱବିତ୍ ପଣ୍ଡିତ ଡଃ ରାମକୃଷ୍ଣ ଗୋପାଳ ଭଣ୍ଡାରକର ଏମାନଙ୍କ ସମ୍ପର୍କରେ ଅନୁରୂପ ମତ ପ୍ରଦାନ କରନ୍ତି ।[20]

ଏହି ତତ୍ତ୍ୱର ଫଳରେ କେତେ ଯେ ବିଚିତ୍ର ଘଟଣା ଘଟିନାହିଁ । କିଛିଦିନ ତଳେ ନିମ୍ବାର୍କ ସଂପ୍ରଦାୟର ଏକ ଆଚାର୍ଯ୍ୟ କୌଣସି ଶେଠଙ୍କ ପ୍ରବର୍ତ୍ତନାରେ ବୃନ୍ଦାବନରେ ରାଧାକୃଷ୍ଣଙ୍କ ବିବାହ ଉତ୍ସବ ଅନୁଷ୍ଠିତ କଲେ । ଦୁଇଟି ପୁଅପିଲାଙ୍କୁ ରାଧା ଓ କୃଷ୍ଣ କରାଗଲା । ହଜାର ହଜାର ଲୋକଙ୍କୁ ଭୋଜି ଦିଆଗଲା । ରାଧାଙ୍କ ପକ୍ଷରୁ କୃଷ୍ଣଙ୍କୁ ଅଜସ୍ର ଯୌତୁକ ଦିଆଗଲା । ବେଦମନ୍ତ୍ର ଏବଂ ଅଗ୍ନିକୁ ସାକ୍ଷୀରଖି ଦୁଇଟି ପିଲା ବିବାହ ହେଲେ । କୁହାଯାଏ ଏହି ବିବାହରେ ଏକ ଲକ୍ଷ ଟଙ୍କା ଖର୍ଚ୍ଚ ହୋଇଥିଲା । ସନାତନୀ ଓ ଆର୍ଯ୍ୟ ସମାଜ ଏହି ପ୍ରକାର ବିବାହକୁ ଘୋର ବିରୋଧ କଲେ । ସନାତନୀମାନେ ଅଭିଯୋଗ କଲେ ଯେ ଶାସ୍ତ୍ରରେ କୁତ୍ରାପି ରାଧାକୃଷ୍ଣଙ୍କ ବିବାହ ବର୍ଣ୍ଣନା ନାହିଁ । ଆର୍ଯ୍ୟ ସମାଜ ଆପତ୍ତି କଲେ ଯେ ଦୁଇଟି ପୁଅପିଲାଙ୍କୁ ବିବାହ କରି ବେଦମନ୍ତ୍ରର ଅପମାନ କରାଗଲା । ଚଳଚ୍ଚିତ୍ରରେ ମଧ୍ୟ ଏହିପରି କେବେ ହୁଏ ନାହିଁ ଯାହା ନିମ୍ବାର୍କ ପନ୍ଥୀଙ୍କ ଦ୍ୱାରା ହେଲା ।[21]

ପରିଶେଷରେ ଏତିକି କହିଲେ ଯଥେଷ୍ଟ ହେବ ଯେ ଏକାଦଶ ଶତାବ୍ଦୀର ରାଧା ଆଜକୁ ପାଞ୍ଚହଜାର ବର୍ଷ ପୂର୍ବରୁ କୃଷ୍ଣଙ୍କ ସହିତ କିପରି ଓ କେମିତି ମିଳନ ହୋଇପାରନ୍ତେ। ରାଧା ବୃଷଭାନୁଙ୍କ ଜଣେ ମାନସ କନ୍ୟା । ରାଧାଙ୍କୁ କୃଷ୍ଣଙ୍କ ସହିତ ସଂଯୋଗ କରିବା ଦ୍ୱାରା ଶ୍ରୀକୃଷ୍ଣ କାମି ପୁରୁଷ ହୋଇ ରହିଯାଆନ୍ତି । ଏହା ଦ୍ୱାରା କୃଷ୍ଣଙ୍କ ଚରିତ୍ରକୁ କଳଙ୍କିତ କରାଯାଉଛି ।

କୃଷ୍ଣକେନ୍ଦ୍ରିକ ବୈଷ୍ଣବ ସଂପ୍ରଦାୟ ଶ୍ରୀକୃଷ୍ଣଙ୍କ ସହିତ ରାଧାଙ୍କୁ ଯୋଡ଼ିଦେବା କାରଣରୁ ଯୋଗେଶ୍ୱର କୃଷ୍ଣ ଯୋଗେଶ୍ୱରରେ ପରିଣତ ହୋଇଯାଆନ୍ତି । ସଂସାରରେ ଅନେକ ମହାପୁରୁଷ ଅଛନ୍ତି, ଅଧିକାଂଶ ମହାପୁରୁଷ ନିଜ ବିରୋଧିଙ୍କ ଦ୍ୱାରା ଅତ୍ୟାଚାରିତ ହୋଇଥିବା ସମୟରେ କୃଷ୍ଣ ଜଣେ ମାତ୍ର ମହାପୁରୁଷ ଯାହାଙ୍କୁ ତାଙ୍କ ଭକ୍ତମାନଙ୍କ ଦ୍ୱାରା ଲାଞ୍ଛିତ ହେବାକୁ ପଡ଼ିଛି । ଭକ୍ତମାନେ ତାଙ୍କୁ ବାଲ୍ୟାବସ୍ଥାରେ ଲବଣୀ ଚୋର, ଯୁବାବସ୍ଥାରେ ଗୋପୀଙ୍କର ଜାର ହିସାବରେ ସେଇଁ ବସ୍ତ୍ରହରଣ, କୁବ୍‌ଜା ପ୍ରସଙ୍ଗ ଯୋଡ଼ିଦିଅନ୍ତି ତାହା ଅତି ଦୁଃଖଦାୟକ । ଏତିକି କହି ଭକ୍ତଗଣ କ୍ଷାନ୍ତ ହୋଇନାହାନ୍ତି । ସେମାନେ କୃଷ୍ଣଙ୍କର ଷୋଳସହସ୍ର ଗୋପୀଙ୍କ ସହ ଏକଶହ ଆଠ ପାଟରାଣୀଙ୍କୁ ମଧ୍ୟ ତାଙ୍କର ଜୀବନରେ ଯୋଡ଼ି ପ୍ରତ୍ୟେକ ସ୍ତ୍ରୀଙ୍କର ଦଶ ଦଶଟି ପୁତ୍ର ଥିଲେ ବୋଲି ଶ୍ରୀକୃଷ୍ଣଙ୍କୁ ଜଣେ ଅସଂଯମୀ ଓ ବ୍ୟଭିଚାରୀ ପୁରୁଷ ରୂପେ ବର୍ଣ୍ଣନା କରନ୍ତି । ଯା'ଫଳରେ ପାର୍ଥସାରଥି ଯୋଗେଶ୍ୱର କୃଷ୍ଣ ବୈଷ୍ଣବ ଧର୍ମର ତାଳପତ୍ର ମଧ୍ୟରେ ଲୁଚି ବଂଶୀବାଦନ କରୁଥିବା ଗୋପୀ ବଲ୍ଲଭ ହୋଇ ରହିଯାଆନ୍ତି । ଧର୍ମକ୍ଷେତ୍ର ସୁଦର୍ଶନ ଚକ୍ରଧାରୀ ଅର୍ଜୁନ କୃଷ୍ଣ ଆମ ମାନସପଟରୁ ଅନ୍ତର୍ଦ୍ଧାନ ହୋଇ ଆମ ମନରେ ଭାସି ଉଠେ ରାଧାକୃଷ୍ଣଙ୍କ ଯୌନଯୁଗଳ ମୂର୍ତ୍ତି ।

ବାସ୍ତବରେ କ'ଣ ଶ୍ରୀକୃଷ୍ଣ ବ୍ୟଭିଚାରୀ ଥିଲେ ? ମହାଭାରତ ଗୋଟିଏ ପ୍ରସଙ୍ଗରୁ ଜଣାପଡ଼େ ଯେ ଶ୍ରୀକୃଷ୍ଣ ଏକ ପତ୍ନୀବ୍ରତ ପାଳନ କରି ବାରବର୍ଷ କଠୋର ତପସ୍ୟା ବଳରେ ପୁତ୍ର ପ୍ରଦ୍ୟୁମ୍ନକୁ ପ୍ରାପ୍ତ କରିଥିଲେ । ପ୍ରସଙ୍ଗଟି ହେଲା ଦ୍ରୋଣ ଦୁର୍ଯ୍ୟୋଧନଙ୍କର ହତ୍ୟାର ପ୍ରତିଶୋଧ ନେବାପାଇଁ ଦ୍ରୋଣଙ୍କ ପୁତ୍ର ଅଶ୍ୱଥାମା ପାଞ୍ଚାଳୀଙ୍କ ସୁପ୍ତ ସମସ୍ତ ପୁତ୍ରଙ୍କୁ ବଧ କଲେ । ଏଣୁ କ୍ରୋଧରେ ଜର୍ଜରିତ ଭୀମସେନ ଅଶ୍ୱଥାମାଙ୍କୁ ହତ୍ୟା କରିବାକୁ ଚାଲିଗଲେ । ଏହି ପରିପ୍ରେକ୍ଷୀରେ ଶ୍ରୀକୃଷ୍ଣ ଭୀମସେନଙ୍କ ରକ୍ଷା ନିମନ୍ତେ ଯୁଧିଷ୍ଠିରଙ୍କୁ କହିଲେ ଯେ ଦ୍ରୋଣାଚାର୍ଯ୍ୟ ନିଜ ପୁତ୍ରକୁ ବ୍ରହ୍ମାଶିର ନାମକ ଭୟଙ୍କର ଅସ୍ତ୍ର ପ୍ରଦାନ କରିଥିଲେ ଯାହାକି ସମସ୍ତ ପୃଥିବୀକୁ ଭସ୍ମ କରିଦେଇ ପାରେ । ପୁନଶ୍ଚ ସେ ଏକଦା ଦ୍ୱାରକା ଆସି ଶ୍ରୀକୃଷ୍ଣଙ୍କ ଚକ୍ରକୁ ଭିକ୍ଷା କରିଥିଲେ, ସେହି ସମୟରେ ଶ୍ରୀକୃଷ୍ଣ କହିଥିଲେ :

ବ୍ରହ୍ମଚର୍ଯ୍ୟଂ ମହଦ୍ ଘୋରଂ ତୀର୍ତ୍ତ୍ୱା ଦ୍ୱାଦଶ ବାର୍ଷିକମ୍ ।
ହିମବତ୍ ପାର୍ଶ୍ୱମାସ୍ଥାୟ ଯୋ ମୟା ତପସାର୍ଜିତଃ ।।

ସମାନ ବ୍ରତ ଚାରିଣ୍ୟାଂ ରୁକ୍ମିଣ୍ୟାଂ ଯୋଽନ୍ୱଜାୟତ ।
ସନତ୍କୁମାର ସ୍ତେଜସ୍ୱୀ ପ୍ରଦ୍ୟୁମ୍ନ ନାମ ମେ ସୁତଃ ।।

ତେନାପ୍ୟେତନ୍ ମହଦ୍ ଦିବ୍ୟଂ ଚକ୍ରମ ପ୍ରତିମଂ ରଣେ ।
ନ ପ୍ରାର୍ଥିତ ଅଭୂନ୍ମୂଢ଼ ଯଦିଦଂ ପ୍ରାର୍ଥିତଂ ତ୍ୱୟା ।।

(ମହାଭାରତ, ସୌପ୍ତିକ 12 : 30-32)

ଅର୍ଥାତ୍, ଆରେ ମୂଢ଼ ବ୍ରାହ୍ମଣ ଏହି ଦିବ୍ୟ ଚକ୍ରକୁ ମୋର ପୁତ୍ର ପ୍ରଦ୍ୟୁମ୍ନ ମଧ୍ୟ କେବେ ଭିକ୍ଷା ମାଗି ନାହିଁ । ଯେଉଁ ପୁତ୍ରକୁ ପାଇବା ପାଇଁ ମୁଁ ଏବଂ ରୁକ୍ମିଣୀ ହିମାଳୟରେ ବାରବର୍ଷ ପର୍ଯ୍ୟନ୍ତ କଠୋର ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିଥିଲୁ ।

ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ଶ୍ରୀକୃଷ୍ଣ ଜଣେ ସଂଯମୀ ଓ ସଦାଚାରୀ ବ୍ୟକ୍ତି ଥିଲେ । ସେ ଏକ ଉତ୍ତମ ଏବଂ ବୀର ସନ୍ତାନ ଲାଭ କରିବା ପାଇଁ ବେଦୋକ୍ତ ପ୍ରାର୍ଥନାକୁ ସ୍ୱୀକାର କରିଥିଲେ : "ସୁପ୍ରଜାଃ ପ୍ରଜାଭିଃ ସ୍ୟାମ, ସୁବୀରେ ବୀରୈଃ, ସୁପୋଷଃ ପୋଷୈଃ ।" ମହର୍ଷି ଦୟାନନ୍ଦଙ୍କ 'ସତ୍ୟାର୍ଥ ପ୍ରକାଶ'ରେ ଶ୍ରୀକୃଷ୍ଣଙ୍କ ମହାନ ବ୍ୟକ୍ତିତ୍ୱ ସମ୍ପର୍କରେ କହିବାକୁ ଯାଇ ସେ କହନ୍ତି :

ମହାଭାରତରେ ଶ୍ରୀକୃଷ୍ଣଙ୍କର ଇତିହାସ ଅତି ଉତ୍କୃଷ୍ଟ । ତାହାଙ୍କର ଗୁଣ କର୍ମ ସ୍ୱଭାବ ଓ ଚରିତ୍ର ଆପ୍ତପୁରୁଷମାନଙ୍କ ପରି । ମହାଭାରତର କୌଣସି ସ୍ଥଳରେ ଶ୍ରୀକୃଷ୍ଣଙ୍କ ଜନ୍ମରୁ ମରଣ ପର୍ଯ୍ୟନ୍ତ କେବେହେଲେ ଅଧର୍ମାଚରଣର ସନ୍ଧି ପର୍ଯ୍ୟନ୍ତ ନାହିଁ । କିନ୍ତୁ ଏହି ଭାଗବତ ରଚୟିତା ତାଙ୍କ ସମ୍ବନ୍ଧରେ ମନଗଢ଼ା ଅନୁଚିତ ଦୋଷାରୋପ କରିଛନ୍ତି । ଦୁଧ ଦହି-ଲହଣୀ ପ୍ରଭୃତିର ଚୋରି, କୁବ୍ଜା ଦାସୀ ସହିତ ସମାଗମ, ପର ସ୍ତ୍ରୀମାନଙ୍କ ସହିତ ରାସମଣ୍ଡଳ ଓ କ୍ରୀଡ଼ା ଇତ୍ୟାଦି ମିଥ୍ୟା ଦୋଷ ସମୂହ ଶ୍ରୀକୃଷ୍ଣଙ୍କ ଉପରେ ଆରୋପ କରିହୋଇଛି । ଭିନ୍ନ ମତାବଲମ୍ବୀଗଣ ଏହି ସବୁ ପଢ଼ି ପଢ଼ାଇ ଏବଂ ଶୁଣି ଶୁଣାଇ ଶ୍ରୀକୃଷ୍ଣଙ୍କର ନାନା ପ୍ରକାର ନିନ୍ଦା କରିଥାନ୍ତି । ଏହି ଭାଗବତ ନଥିଲେ ଶ୍ରୀକୃଷ୍ଣଙ୍କ ପରି ମହାତ୍ମାମାନଙ୍କର ମିଥ୍ୟାନିନ୍ଦା କିପରି ହୋଇ ପାରିଥାନ୍ତା ।[22]

## ପାଦଟୀକା :

1. ଅଭିମନ୍ୟୁ ସାମନ୍ତ ସିଂହାର, 'ବିଦଗ୍ଧ-ଚିନ୍ତାମଣି', ଟୀକା- ଆର୍ତ୍ତିବଲ୍ଲଭ ମହାନ୍ତି (ଭୁବନେଶ୍ୱର : ଉତ୍କଳ ବିଶ୍ୱବିଦ୍ୟାଳୟ, 1965), ପୃଷ୍ଠା 25.

2. ସ୍ୱାମୀ, 'କରୁକ୍ରମ୍', ହିନ୍ଦୀ ବ୍ୟାଖ୍ୟାକାର ଆଚାର୍ଯ୍ୟ ବିଶ୍ୱେଶ୍ୱର (ବାରଣାସୀ : ଜ୍ଞାନମଣ୍ଡଳ ଲି. 1966), ପୃଷ୍ଠା 377-378.
3. 'ଋଗ୍‌ବେଦ', ସ୍ୱାମୀ ଦୟାନନ୍ଦ ସରସ୍ୱତୀ (ନୂଆଦିଲ୍ଲୀ : ସାର୍ବଦେଶିକ ଆର୍ଯ୍ୟ ପ୍ରତିନିଧି ସଭା, ବିକ୍ରମାବ୍ଦ 2031), I, 45, 51, 86, 152, 404, 408-409; II' ପୃ. 66-67, 104, 366, 674; III ପୃ. 54, 136, 139, 211.
4. ବ୍ରଜେଶ୍ୱର ବର୍ମା, 'ହିନ୍ଦୀ ସାହିତ୍ୟ କୋଶ', ସମ୍ପାଦକ ଧୀରେନ୍ଦ୍ର ବର୍ମା (ବାରାଣସୀ : ଜ୍ଞାନମଣ୍ଡଳ, 1963). II ପୃ. 464.
5. 'ବ୍ରହ୍ମବୈବର୍ତ୍ତ ପୁରାଣ', ପଦ୍ୟ—ରତ୍ନାକର ଗର୍ଗବଟୁ (କଟକ : ଶ୍ରୀ ରାଧାରମଣ ପୁସ୍ତକାଳୟ, 1971), II ପୃ. 218 (ପ୍ରକୃତି ଖଣ୍ଡ, 52 ଅଧ୍ୟାୟ)
6. ସେହି, ପୃ-214 (51 ଅଧ୍ୟାୟ)
7. ସେହି, ପୃ. 218 (52 ଅଧ୍ୟାୟ)
8. ସିଦ୍ଧେଶ୍ୱର ଶାସ୍ତ୍ରୀ' 'ପ୍ରାଚୀନ ଚରିତ୍ର କୋଶ' (ପୁନା : ଭାରତୀୟ ଚରିତ୍ରକୋଶ, 1964), ପୃ. 724.
9. ଉଜାଗର ପଟେଲ, 'ରାଧା ଚାରିତ୍ର କା କଳ୍ପନା', 'ବେଦପୀୟୂଷ' (ମେ- ଜୁନ୍ 1985), 20.
10. ବେଞ୍ଜାମିନ୍ ଓ୍ୱାଲକର୍, 'ହିନ୍ଦୁ ଓ୍ୱାର୍ଲ୍ଡ' (ଲଣ୍ଡନ : ଜର୍ଜ ଏଲେନ୍ ଏଣ୍ଡ ଅନ୍ ଉଇନ୍ 1968) I 401.
11. ସେହି
12. ବ୍ରଜେଶ୍ୱର ବର୍ମା, ପୃ. 463
13. ବ୍ରଜେଶ୍ୱର ବର୍ମା, 'କୃଷ୍ଣ ଭକ୍ତି ସାହିତ୍ୟ', ସଂ. ଧୀରେନ୍ଦ୍ର ବର୍ମା (ପ୍ରୟାଗ : ଭାରତୀୟ ହିନ୍ଦୀ ପରିଷଦ, 1959), ପୃ. 353-354.
14. ଡା. ନଗେନ୍ଦ୍ର, 'ଭାରତୀୟ କୃଷ୍ଣକାବ୍ୟ ଔର ସୁରସାଗର' (ଦିଲ୍ଲୀ : ସୂର୍ଯ୍ୟ ପ୍ରକାଶନ, 1979), ପୃ. 3.
15. ବ୍ରଜେଶ୍ୱର ବର୍ମା, 'ହିନ୍ଦୀ ସାହିତ୍ୟ କୋଶ', ପୃ-463
16. ବନମାଳୀ ରଥ, 'ରାଧା', 'ବାଇଶି ପାହାଚ' (ଅକ୍ଟୋବର 1974), ପୃ 26.

17. ସେହି, ପୃ 25.

18. 'ବ୍ରହ୍ମବୈବର୍ତ୍ତ ପୁରାଣ, IV. 69 (ଜନ୍ମଖଣ୍ଡ; 15 ଅଧ୍ୟାୟ).

19. ଜୟଦେବ, 'ଗୀତଗୋବିନ୍ଦ', ଅନୁ-ଜୟକୃଷ୍ଣ ପଟ୍ଟନାୟକ (କଟକ : ଗ୍ରନ୍ଥମନ୍ଦିର, 1970), ପୃ-95.

20. ଭବାନୀଲାଲ ଭାରତୀୟ, 'ଶ୍ରୀକୃଷ୍ଣ ଚରିତ' (ଆଜମେର : ଆର୍ଯ୍ୟ ସାହିତ୍ୟ-ମଣ୍ଡଳ, 1958), ପୃ. 26-27ରୁ ଉଦ୍ଧୃତ ।

21. ଗଙ୍ଗା ସହାୟ 'ପ୍ରେମୀ', 'କୃଷ୍ଣ ଔର ରାଧା', 'ସରିତା' ଜୁନ୍ II, 1968), 8.

22. ସ୍ୱାମୀ ଦୟାନନ୍ଦ ସରସ୍ୱତୀ, 'ସତ୍ୟାର୍ଥପ୍ରକାଶ' (ଅ:ମସେନା : ଉତ୍କଳ ସାହିତ୍ୟ ସଂସ୍ଥାନ, 2032) ପୃ-440.



# ଯୀଶୁଙ୍କ ପୁରୀ ଆଗମନ ସତ୍ୟ କି ?

[ମନୁଷ୍ୟର ମୌଳିକ ଚିନ୍ତା ଓ ଚେତନାର ଆଦିମ ଉତ୍ସରୁ ଉଦ୍ଭୂତ ଜଗନ୍ନାଥ ପୃଥିବୀର ସମସ୍ତ ଧର୍ମଚେତନାର ଚିରନ୍ତନ ପ୍ରେରଣା । ଜଗନ୍ନାଥଙ୍କୁ କୌଣସି ଧର୍ମଧାରଣାର ଗଣ୍ଡି ଭିତରେ ଆବଦ୍ଧ କରିଯାଇ ନପାରେ । ଆଦିବାସୀଙ୍କ ମଧ୍ୟରେ ଏବେ ବି ଏକ ଅଭିମାନ ଜୀବନ୍ତ ଯେ "ବ୍ରାହ୍ମଣମାନେ ତାଙ୍କର ପ୍ରିୟ 'ଜଗନ୍ନା ଜାଉଙ୍ଗ୍'କୁ ଇଟା ଦେଉଳରେ ରଖିଦେଲେ" । ପ୍ରାକ୍ ବୈଦିକ-ମାନବିକ—ପ୍ରତିଭୂ ବର୍ତ୍ତମାନ ଶ୍ରୀମନ୍ଦିରରେ ବେଦପାଠ ଓ ଚର୍ଚ୍ଚାର ନିଗଡ଼ରେ ଏକ ନିସ୍ସହ ଶିକାର । କିନ୍ତୁ ଅନାମଙ୍କ ମତରେ ଜଗନ୍ନାଥ ସକଳଧର୍ମ ଓ ବିଶ୍ୱାସର ଊର୍ଦ୍ଧ୍ୱରେ ।

ମାନବିକ ମୂଲ୍ୟବୋଧର ବିଘଟଣ କାଳରେ ମନୁଷ୍ୟକୁ କେବଳ ଗୋଟିଏ ବିଶ୍ୱାସର ପଥପ୍ରଦର୍ଶନ କରିବାର କର୍ତ୍ତବ୍ୟବୋଧରୁ ଜଗନ୍ନାଥ ଓ ଖ୍ରୀଷ୍ଟଧର୍ମର ସମ୍ପର୍କ ବିଷୟରେ ଆମେ ଚିନ୍ତିତ । ଶ୍ରୀଯୁକ୍ତ ଉମେଶ ପଢ଼ୀ ବହୁ କଷ୍ଟ ସ୍ୱୀକାର କରି ଏହି ଅନୁସନ୍ଧାନମୂଳକ ପ୍ରବନ୍ଧ ରଚନା କରିଥିବାରୁ ଆମେ କୃତଜ୍ଞତା ଜ୍ଞାପନ କରୁଛୁ । (—ଅନାମମାନେ)

ପ୍ରଭୁ ଯୀଶୁ ଭାରତକୁ ଆସିଥିଲେ କି ? ସଂପ୍ରତି ଏହି ପ୍ରଶ୍ନଟି ସବୁଠାରୁ ବେଶୀ ବିବାଦୀୟ ହୋଇ ରହିଛି । ଯେଉଁମାନେ କହୁଛନ୍ତି ଯେ ସେ ଭାରତକୁ ଆସି ନଥିଲେ, ସେମାନେ ହେଉଛନ୍ତି ଭାରତୀୟ ଖ୍ରୀଷ୍ଟିଆନ ମିସନାରୀ । ଯେଉଁମାନେ ପ୍ରଚାର କରୁଛନ୍ତି ଯେ ସେ ଭାରତକୁ ଆସିଥିଲେ ସେମାନେ ହେଲେ କାଦିଆନୀର ଅହମଦିଆ ସଂପ୍ରଦାୟ । ପ୍ରଥମ ସଂପ୍ରଦାୟର ଭୟ ହୁଏ ଯଦି ଯୀଶୁ ଭାରତକୁ ଆସିଛନ୍ତି ତେବେ ଏହି ବୃଦ୍ଧ ହିନ୍ଦୁଧର୍ମ ତାଙ୍କୁ ନିଶ୍ଚୟ କବଳିତ କରିଛି । ସେ ଦୃଷ୍ଟିରୁ ହିନ୍ଦୁମାନଙ୍କ ମଧ୍ୟରେ ଖ୍ରୀଷ୍ଟଧର୍ମର ପ୍ରଚାର ନିରର୍ଥକ ପ୍ରମାଣିତ ହୋଇଛି । ଏଣୁ ସେମାନେ ଏହା କେବେମଧ୍ୟ ମାନିପାରିବେ ନାହିଁ ଯେ ସେ ଭାରତକୁ ଆସିଛନ୍ତି । ଅନ୍ୟ ସଂପ୍ରଦାୟ ପ୍ରଚାର କରି ଚାଲିଛି ଯେ ସେ ଭାରତକୁ ଆସିଛନ୍ତି ଓ ଭାରତୀୟ ଧର୍ମଦ୍ୱାରା ପ୍ରଭାବିତ ହୋଇଛନ୍ତି । ତାଙ୍କର ମୃତ୍ୟୁ କ୍ରୁଶରେ ହୋଇ ନାହିଁ । ସେ

ସ୍ୱାଭାବିକ ମୃତ୍ୟୁବରଣ କରିଛନ୍ତି କାଶ୍ମୀରରେ । ଯାହାଙ୍କ କବର ଆବିଷ୍କାର କରିଛନ୍ତି ମୁସଲମାନ ଅହମଦିଆ ସମ୍ପ୍ରଦାୟର ପ୍ରତିଷ୍ଠାତା ମିର୍ଜା ଗୋଲାମ୍ ଅହମଦ । ଏ ଦୁଇ ସମ୍ପ୍ରଦାୟ ସ୍ୱ ସ୍ୱ ସ୍ୱାର୍ଥକୁ ସାମନାରେ ରଖି ଏ ସମସ୍ତ କଥା ଯେ କହିଚାଲିଛନ୍ତି ଏଥିରେ ସନ୍ଦେହ ନାହିଁ ।

ଯୀଶୁ ଭାରତକୁ ଆସି ନଥିଲେ । ତାଙ୍କ ଜନ୍ମ ବେଥ୍‌ଲେହମ୍‌ରେ ଖ୍ରୀଷ୍ଟପୂର୍ବ ଆଠ ବା ସାତରେ ହୋଇଥିଲା (?) ରାଜା ହେରୋଦ ସ୍ୱ ପ୍ରତିଦ୍ୱନ୍ଦ୍ୱୀ ଜନ୍ମହେବା ଜାଣି ସମସ୍ତ ଶିଶୁଙ୍କୁ ବଧ କରିବାକୁ ଆଦେଶ ଦେଇଥିଲେ । ଏଣୁ ଯୀଶୁଙ୍କ ପିତା ମାତା ଶିଶୁଟିକୁ ବଞ୍ଚାଇବା ପାଇଁ ମିଶରକୁ ପଳାଇ ଯାଇଥିଲେ । ସେଇଠି ଯୀଶୁ ବାରବର୍ଷରେ ଉପନୀତ ହୁଅନ୍ତି । ସେହି ବର୍ଷ ସେ ପିତାମାତାଙ୍କ ସହ ପ୍ରତିବର୍ଷ ପରି ନିସ୍ତାରପର୍ବ ପାଳନ କରିବାକୁ ଜେରୁଜେଲମ ଯାଆନ୍ତି । ସେଠାରୁ ବାହୁଡ଼ି ଆସିବା ସମୟରେ ଯୀଶୁ ହଜିଯାନ୍ତି । ଏଣୁ ପିତାମାତା ତାଙ୍କୁ ଖୋଜି ଖୋଜି ସେହି ମନ୍ଦିରରେ ତର୍କ ଆଲୋଚନା କରୁଥିବା ଅବସ୍ଥାରେ ଦେଖନ୍ତି । ତାଙ୍କୁ ସାଙ୍ଗରେ ନେଇ ନାଜରିତକୁ ଫେରିଯାନ୍ତି, ଯୀଶୁ ସେମାନଙ୍କ ବଶୀଭୂତ ହୋଇ ରହନ୍ତି ଏବଂ ସେ ଜ୍ଞାନରେ ଓ ଶରୀରରେ ବଢ଼ନ୍ତି । ଏତିକି କହି ଲୂକ (2:52) କଥାଟି ସମାପ୍ତ କରି ଦିଅନ୍ତି । ତା'ର ପରବର୍ତ୍ତୀ ଘଟଣା ସେ ଯୀଶୁଙ୍କ ଜଳଦୀକ୍ଷାରୁ ଆରମ୍ଭ କରନ୍ତି, ଯାହା ଯୀଶୁଙ୍କ ଅଣତିରିଶ ବର୍ଷରେ ସଂଗଠିତ ହୋଇଥିଲା । ପ୍ରଶ୍ନ ଉଠୁଛି, ଯୀଶୁଙ୍କୁ ତେର ବର୍ଷଠାରୁ ଅଣତିରିଶ ବର୍ଷ ହେବା ପର୍ଯ୍ୟନ୍ତ ସେ କେଉଁଠି କ'ଣ କରୁଥିଲେ ? ଅନ୍ୟନପକ୍ଷେ ଏହି ଷୋହଳବର୍ଷର ଇତିହାସକୁ ଯୀଶୁଙ୍କ ଜୀବନୀରୁ କପରି ବାଦ ଦିଆଯାଇ ପାରିବ ? ସୁସମାଚାରକଗଣ ଯେଉଁଠି ମୌନ, ସେଠି ଆନ୍ତରିକ ଏବଂ ବାହ୍ୟିକ ପ୍ରମାଣ ଦ୍ୱାରା ହିଁ ସତ୍ୟାସତ୍ୟ ନିର୍ଣ୍ଣୟ ହେବା ଉଚିତ ।

ଅବଶ୍ୟ ଖ୍ରୀଷ୍ଟିୟାନମାନଙ୍କ ମତରେ ସେ ନାଜରିତରେ ହିଁ ଏହି ଷୋଳ-ସତର ବର୍ଷ ବାସ କରିଥିଲେ । ନୂତନ ନିୟମରେ "ନାଜରିତୀୟ ଯୀଶୁ" କଥାଟି ବାରମ୍ବାର ଉଲ୍ଲେଖ ହୋଇଥିବା ଦେଖି ଯେ କେହି ଅନୁମାନ କରିନେଇ ପାରିବେ ଯେ ସେ ନାଜରିତରେ ପିତାମାତାଙ୍କ ଦ୍ୱାରା "ବଶୀଭୂତ ହୋଇ ରହିଥିଲେ" । ଯୋସେଫ ବଢ଼ଇକୁଟୁମ୍ବୀ ଥିଲେ । ଯୀଶୁଙ୍କୁ ମିଶାଇ ତାଙ୍କର ପାଞ୍ଚପୁଅ ଓ ଦୁଇଟିଝିଅ ଥିଲେ । ଯୋସେଫଙ୍କ ମୃତ୍ୟୁ ପରେ ଜ୍ୟେଷ୍ଠପୁତ୍ର ହିସାବରେ ଯୀଶୁଙ୍କ ଉପରେ ଘରର ସମସ୍ତ ଭାର ପଡ଼ିଲା । ଏହି ବର୍ଷ ତକ ସେ ବଢ଼େଇ କାର୍ଯ୍ୟ କରି ପରିବାର ପୋଷଣ କରିଥିଲେ । ଯୀଶୁଙ୍କ ଅନ୍ୟଭାଇ ଯାକୁବ ବଡ଼ ହୋଇ ପରିବାର ଚଳାଇବା ପରେ ଯୀଶୁ ତିରିଶବର୍ଷ ବୟସରେ ଈଶ୍ୱରଙ୍କ ରାଜ୍ୟପାଇଁ ତାଙ୍କର ମହାନ୍ କାର୍ଯ୍ୟ ଆରମ୍ଭ କରି ଦେଇଥିଲେ, ଏହା ବିଶ୍ୱାସଯୋଗ୍ୟ ନୁହେଁ ।

ଯେଉଁ ଯୀଶୁ ବାରବର୍ଷ ବୟସରେ ପିତାମାତାଙ୍କ ଠାରୁ ଲୁଚି ମନ୍ଦିରରେ ପଣ୍ଡିତମାନଙ୍କ ସଙ୍ଗେ ତତ୍ତ୍ୱ ଆଲୋଚନାରେ ଆନନ୍ଦ ନେଉ ଥାଆନ୍ତି ଏବଂ ତାଙ୍କ ମା ବ୍ୟସ୍ତବ୍ୟସ୍ତ ହୋଇ ତାଙ୍କୁ ଖୋଜୁଥିବା ଜାଣି ମଧ୍ୟ "ମୋହର ପିତାଙ୍କ ଗୃହରେ ରହିବା ଓ ତାଙ୍କ କାର୍ଯ୍ୟରେ ପ୍ରବୃତ୍ତ ହେବା ଯେ ମୋହର କର୍ତ୍ତବ୍ୟ, ଏହା କ'ଣ ଜାଣି ନଥିଲ ? (ଲୂକ 2: 49) କହିପାରନ୍ତି, ସେହି ପ୍ରକାର ଜଣେ ଜନ୍ମସୂ ସାଧକ ଯେ ଧାର୍ଘ ଷୋହଳବର୍ଷ ପରିବାର-ଆସକ୍ତ ହୋଇ ସମସ୍ତ ବ୍ୟୟିତ କରିଥିବେ ତାହା କଳ୍ପନା ମଧ୍ୟ କରାଯାଇନପାରେ । ଯେଉଁ ଯୀଶୁ ଜଗତର ଉଦ୍ଧାର ପାଇଁ ପରମେଶ୍ୱରଙ୍କ ଏକମାତ୍ର ପୁତ୍ର ହିସାବରେ ଜଗତରେ ଅବତୀର୍ଣ୍ଣ ହୋଇଥିଲେ ସେ ଯେ ଯୋସେଫମରିୟମଙ୍କ ପୁତ୍ରହୋଇ ଏତେଗୁଡ଼ାଏ ବର୍ଷ ବଢ଼େଇବାପାଇଁ କରି ପରିବାର ଭରଣପୋଷଣରେ ଲାଗିପଡ଼ିଥିଲେ ତାହା ତାଙ୍କର ଜୀବନ ଓ କାର୍ଯ୍ୟରୁ ଜଣାପଡ଼େ ନାହିଁ । ପ୍ରକୃତରେ ସେ ଥିଲେ ଜଣେ ନିରାସକ୍ତ ଯୋଗୀ । ଅତେ ଯେତେବେଳେ ତାହାଙ୍କ ମା ଓ ଭାଇମାନେ ଆସି ବାହାରେ ଠିଆ ହୋଇ ତାହାଙ୍କୁ ଡକାଇ ପଠାଇଲେ, ସେଥିରେ ତାହାଙ୍କ ଚତୁର୍ଦ୍ଦିଗରେ ବସିଥିବା ଲୋକ ସମୂହ ତାହାଙ୍କୁ କହିଲେ, ଦେଖନ୍ତୁ, ଆପଣଙ୍କ ମା', ଭାଇ ଓ ଭଉଣୀମାନେ ବାହାରେ ଥାଇ ଆପଣଙ୍କୁ ଖୋଜୁଛନ୍ତି । ସେ ସେମାନଙ୍କୁ ଉତ୍ତରଦେଲେ-ମୋହର ମା ଓ ଭାଇମାନେ କିଏ ? ଆଉ ସେ ନିଜର ଚତୁଃପାର୍ଶ୍ୱରେ ବସିଥିବା ଲୋକମାନଙ୍କ ପ୍ରତି ଦୃଷ୍ଟିପାତ କରି କହିଲେ,, ଦେଖ, ମୋହର ମା ଓ ମୋହର ଭାଇମାନେ ! ଯେ କେହି ଇଶ୍ୱରଙ୍କ ଇଚ୍ଛା ସାଧନ କରେ, ସେ ମୋହର ଭାଇ, ଭଉଣୀ ଓ ମା । (ମାର୍କ 3 : 31:-35; ମାଥିଉ 12 46-50) ଏ ପ୍ରସଙ୍ଗଗୁଡ଼ିକରୁ ଏହା ପ୍ରମାଣିତ ହୋଇଯାଏ ଯେ ଯୀଶୁ ନିରାସକ୍ତ ଯୋଗୀ ଥିଲେ । ବାଇବେଲର କୌଣସି ସ୍ଥାନରେ ସେ ଗୃହ-ମଣ୍ଡଳ ଥିବାର ପ୍ରମାଣ ନାହିଁ । ଯୀଶୁ ଯେ ସେ ସମସ୍ତକ ନାଜରତରେ ନଥିଲେ ତା'ର ଆଉ ଏକ ବଳିଷ୍ଠ ପ୍ରମାଣ ଦିଆଯାଇପାରେ । ସେ ଯେଉଁ ନାଜରତରେ ପ୍ରତିପାଳିତ ହୋଇଥିଲେ, ସେହିସ୍ଥାନକୁ ଇତି ମଧ୍ୟରେ ଗଲେ (ଲୂକ 4 : 16) । ଏବଂ ତାଙ୍କ ମୁଖନିର୍ଗତ ଅନୁଗ୍ରହର ବାକ୍ୟରେ ସମସ୍ତଙ୍କୁ ଚମତ୍କୃତ କଲେ ପୁଣି ସେମାନେ କହିବାକୁ ଲାଗିଲେ, ଏ କଅଣ ଯୋସେଫର ପୁତ୍ର ନୁହେଁ ? (4 : 22) ଯଦି ଯୀଶୁ ନାଜରତରେ କ୍ରମାଗତ ଭାବରେ ରହିଥାନ୍ତେ ତେବେ ଯୀଶୁଙ୍କ ସମ୍ପର୍କରେ ସେମାନେ ଆଶ୍ଚର୍ଯ୍ୟ ହୁଅନ୍ତେ କିପରି ? ଯୋସେଫଙ୍କ ପୁତ୍ର ଓ ତତ୍ତ୍ୱଦର୍ଶୀ ଯୀଶୁଙ୍କ ମଧ୍ୟରେ ଯେଉଁ ବ୍ୟବଧାନ ରହିଛି ତାହା ସ୍ଥାନ, କାଳ ଓ ପାତ୍ରର ବ୍ୟବଧାନ ନୁହେଁ କି ?

ବର୍ତ୍ତମାନ ଅନ୍ବେଷକମାନଙ୍କର ଗ୍ରନ୍ଥର ସନ୍ଦର୍ଭରେ କିଛି ଆଲୋଚନା କରାଯାଉ । ସେମାନଙ୍କର ଦୃଢ଼ବିଶ୍ୱାସ ଯେ ଯୀଶୁ [illegible]

ମିର୍ଜା ଗୋଲାମ ଅହମଦ (1898 1908) ଏହା ହିଁ ପ୍ରମାଣ କରନ୍ତି ଯେ ସେ ସ୍ୱଦେହରେ ସ୍ୱର୍ଗାରୋହଣ ମଧ୍ୟ କରି ନଥିଲେ ଏଣୁ ତାଙ୍କର ଅବତରଣ କଥା ଏଠି ଉଠିବ କିପରି ? ସେ 120 ବର୍ଷ ବୟସରେ କାଶ୍ମୀରର ଶ୍ରୀନଗରରେ ଦେହତ୍ୟାଗ କରିଥିଲେ, ଯାହାଙ୍କ ସମାଧି ଅଦ୍ୟାବଧି ଶ୍ରୀନଗରରେ ଖାନୟାର ଗଳିରେ ଅବସ୍ଥିତ । ଯୀଶୁ ଯେ କ୍ରୁଶରେ ନିହତ ହୋଇନଥିଲେ ତାହା ସେ କୋରାନର ବିଭିନ୍ନ ଅଂଶ ବିଶେଷରୁ ପଢ଼ି ଜାଣିଥିଲେ । ଏଥିପାଇଁ କୋରାନର ସୁରାନିସା (4 :156) ଏବଂ ସୁରା (3 : 47) ଦେଖାଯାଇପାରେ । କେବଳ ଖ୍ରୀଷ୍ଟିୟାନ ମାନେ ଏପ୍ରକାର ମତବାଦ ସହମତ ନୁହଁନ୍ତି । ସେମାନଙ୍କ ମତରେ ହଜରତ ମହମ୍ମଦ (570 632ଖ୍ରୀ: ଇ)ଙ୍କ କକା ଔର୍କା ବିନ୍ ନାଫାଲ ଥିଲେ ଜଣେ ନେଷ୍ଟୋରିଆନ ମତାବଲମ୍ବୀ ଖ୍ରୀଷ୍ଟିୟାନ । ସେ ସମୟରେ ଆରବ ଅଂଚଳରେ ଯିହୁଦୀ, ଖ୍ରୀଷ୍ଟିୟାନ ଓ ସିରିୟ ଖ୍ରୀଷ୍ଟିୟାନମାନେ ଅନେକ ବାସ କରୁଥିଲେ । ଏହିମାନଙ୍କର ଶୁଣାଶୁଣି କଥା ଉପରେ ମହମ୍ମଦ ବିଶ୍ୱାସ କରି ଯୀଶୁ କ୍ରୁଶରେ ମୃତ ହୋଇ-ନଥିଲେ ବୋଲି କହୁଥିଲେ ।[3] ତେବେ ସେ ଯାହାହେଉନା କାହିଁକି ଅହମଦ ମୁସଲମାନ ସମ୍ପ୍ରଦାୟର "ଇମାମ୍ ମେହେଦି" ବା "ଯୀଶୁ ମଶିହ" ହେବାକୁ ଚାହୁଁଥିଲେ । ତାଙ୍କ ସାମନାରେ ଦୁଇଟି ସମସ୍ୟା ଥିଲା । ପ୍ରଥମେ ସେ ଯଦି ଯୀଶୁଙ୍କୁ ମୃତବୋଲି ପ୍ରମାଣ ନ କରନ୍ତି ତେବେ ସେ କିପରି ଯୀଶୁ ମଶିହ ହେବେ । ଅନ୍ୟ କାରଣ ହେଲା ଯୀଶୁ ଯଦି ସ୍ୱର୍ଗାରୋହଣ କରିଥାନ୍ତି ତେବେ ମର୍ତ୍ତ୍ୟରେ ଅର୍ଥାତ୍ ମକାରେ ଥିବା ହଜରତ ମହମ୍ମଦଙ୍କ ସମାଧି ଯୀଶୁଙ୍କଠାରୁ ନିମ୍ନରେ ପ୍ରମାଣିତ ହେବ । ଏହି କାରଣରୁ ହୁଏତ ସେ କୋରାନ୍ ଲିଖିତ ଇମାମ ମେହେଦୀ (ଯୀଶୁ)ଙ୍କୁ ମୃତବୋଲି ପ୍ରମାଣ କରୁଥିଲେ ଏବଂ ଏକ ଅଜ୍ଞାତ ଫକୀରଙ୍କ ସମାଧିକୁ ଏହା ଯୀଶୁଙ୍କ ସମାଧି ବୋଲି ଦାବୀ କରି ବସିଥିଲେ । ଅହମଦୀଆ ସମ୍ପ୍ରଦାୟର ଏତାଦୃଶ ମତ ସଂପର୍କରେ ଅଭିହିତ ହେବା ପରେ ଏଠି ଆଲୋଚନାକୁ ଆଗକୁ ନେବାକୁ ମୁଁ ଚାହୁଁ ନାହିଁ । ଏତଦ୍‌ବ୍ୟତୀତ ମୁଁ ସ୍ପଷ୍ଟକରି ଦେବାକୁ ଚାହେଁ ଯେ ଆଲୋଚନାଟି ଯୀଶୁଙ୍କ ବାରବର୍ଷ ପରଠାରୁ ଅଣତିରିଶ ବର୍ଷ ବୟସ ମଧ୍ୟରେ ସୀମିତ ରହିବ । ଯୀଶୁଙ୍କ କ୍ରୁଶବିଦ୍ଧ ହେବାପରେ ସେ ମୃତ ନା ଜୀବିତ ଥିଲେ ଏବଂ ଯଦି ଜୀବିତ ଥିଲେ ସେ କାଶ୍ମୀର ଆସିଥିଲେ ନା ସ୍ୱର୍ଗାରୋହଣ କରିଥିଲେ ସେ ସମ୍ପର୍କରେ ଅନ୍ୟାନ୍ୟ ଆଲୋଚନା ହେବ । ଯୀଶୁ କ୍ରୁଶବିଦ୍ଧ ହେବାପରେ କ'ଣ ହେଲା ତାହା ଏତେ ଗୁରୁତ୍ୱପୂର୍ଣ୍ଣ ନୁହେଁ ଯେତେ ଗୁରୁତ୍ୱପୂର୍ଣ୍ଣ ତାଙ୍କର କୈଶୋରାବସ୍ଥାର ଅଜ୍ଞାତବାସ । କାରଣ ଅଜ୍ଞାତ ବାସ ଥିଲା ଯୀଶୁଙ୍କର ଖ୍ରୀଷ୍ଟ ହେବାର ଏକ ପ୍ରସ୍ତୁତି ।

ବର୍ତ୍ତମାନ ପର୍ଯ୍ୟନ୍ତ ଏହା ପ୍ରମାଣିତ ହୋଇ ସାରିଛି ଯେ ଯୀଶୁଙ୍କ ତେର ବର୍ଷରୁ ଅଠେଇଶ ବର୍ଷ ବୟସ ପର୍ଯ୍ୟନ୍ତ ବାଇବେଲ ନୀରବ ଯାହା କୁହାଯାଉଥିଲା

ଯେ ସେ ସ୍ୱ ଜନ୍ମ ସ୍ଥାନରେ ହିଁ ବଢ଼ିଛନ୍ତି ଓ ଜାଗ୍ୟଙ୍କ ମା ଓ ବାପା ଭକ୍ତମାନଙ୍କ ପାଳନରେ ବ୍ୟସ୍ତ ଥିଲେ ତାହା ମଧ୍ୟ ଭ୍ରାନ୍ତ ପ୍ରମାଣିତ । ତେବେ ଏହି ଷୋହଳବର୍ଷ କୈଶୋରାବସ୍ଥାକୁ ଆମେ ତାଙ୍କ ଜୀବନୀରୁ ବାଦ ଦେଇଦେବା ଉଚିତ୍ ହେବ କି ? ଯେଉଁ ବର୍ଷଗୁଡ଼ିକ ସେ ଖ୍ରୀଷ୍ଟହେବାପାଇଁ ପ୍ରସ୍ତୁତ ହେଉଥିଲେ ଏ ସମ୍ପର୍କରେ ବାହ୍ୟ ପ୍ରମାଣ ଦ୍ୱାରା ଅନୁମାନ କରାଯାଉ । ନିକୋଲାସ୍ ନଟୋଭିଚ୍ ନାମକ ଜଣେ ରୁଷୀୟ ପରିବ୍ରାଜକ ଯୀଶୁଙ୍କ ଏହି ଅଜ୍ଞାତ ଜୀବନ ଆବିଷ୍କାର କରିଛନ୍ତି ଓ ଏକ ଗ୍ରନ୍ଥ ରଚନା କଲେ । ଏହା ସମଗ୍ର ପୃଥିବୀରେ ଚହଳ ପକାଇ ଥିଲା । ଏହି ଗ୍ରନ୍ଥଟିର ନାମ ହେଲା "ଦ ଅନ୍ ନୋନ୍ ଲାଇଫ୍ ଅଫ୍ ଜାଇଷ୍ଟ" ଏହା ପ୍ରଥମେ ଫରାସୀ ଓ ପରେ ଇଂରାଜୀ ଭାଷାରେ 1895ରେ ୟୁରୋପରେ ପ୍ରକାଶ ପାଇଲା । ଯେଉଁ ପୁସ୍ତକରେ ସେ ଯୀଶୁଙ୍କ ଏହି ଅଜ୍ଞାତ ଜୀବନ ଭାରତରେ ହିଁ ବ୍ୟତୀତ ହୋଇଥିବା କଥା ସେ ତିବ୍ବତୀୟ ହେମିସ୍ ମଠରୁ ପ୍ରାପ୍ତ ଏକ ପାଣ୍ଡୁଲିପିରୁ ଜାଣିଥିଲେ ।

ଏହି ପାଣ୍ଡୁଲିପି ପ୍ରକାଶ ପାଇବା ପୂର୍ବରୁ ଯୀଶୁଙ୍କ ଅଜ୍ଞାତ ଜୀବନ ସମସ୍ତଙ୍କ ପାଇଁ ଅଜ୍ଞାତ ଥିଲା । ନଟୋଭିଚ ପ୍ରଥମେ ପୁସ୍ତକଟି ଭେଟିକାନସିଟି ସ୍ଥିତ ଖ୍ରୀଷ୍ଟଧର୍ମଗୁରୁ ମହାମାନ୍ୟ ପୋପଙ୍କ ପାଖକୁ ପଠାଇଲେ । ମାତ୍ର ଏ ତଥ୍ୟ ଖ୍ରୀଷ୍ଟଧର୍ମର ଅସ୍ତିତ୍ୱକୁ ଲୋପ କରିଦେବ ଏହି ଭୟରେ ପୋପ୍ ପୁସ୍ତକଟିକୁ ବେଆଇନ୍ ଘୋଷିତ କଲେ ଏବଂ ଅନେକ ପୁସ୍ତକ ପୋଡ଼ିଦିଆଗଲା ।[4] ପରିଶେଷରେ ଏ ପୁସ୍ତକଟି ସଂସ୍କୃତ ପଣ୍ଡିତ ମେକ୍ସମୁଲରଙ୍କ ଦୃଷ୍ଟିଗୋଚରକୁ ମଧ୍ୟ ଆସିଲା । ମୂଳତଃ ସେ ଖ୍ରୀଷ୍ଟଧର୍ମାବଲମ୍ବୀ ହୋଇଥିବାରୁ ଏବଂ ତାଙ୍କର ସଂସ୍କୃତ ଅଧ୍ୟୟନ କରିବାର ପଛରେ ଖ୍ରୀଷ୍ଟଧର୍ମକୁ ହିଁ ବୈଦିକ ଧର୍ମଠାରୁ ଶ୍ରେଷ୍ଠ ପ୍ରମାଣିତ କରିବାପାଇଁ ମେକେ-ଲେଙ୍କ ପାଖରେ ପ୍ରତିଶ୍ରୁତିବଦ୍ଧ ଥିବାରୁ ସେ ମନେକଲେ ଯେ ଖ୍ରୀଷ୍ଟ ଯଦି ଭାରତକୁ ଯାଇଥାନ୍ତି ତେବେ ଭାରତରେ ଖ୍ରୀଷ୍ଟ ଧର୍ମ ପ୍ରଚାର କରିବା ବ୍ୟର୍ଥ ପ୍ରମାଣିତ ହେବ । ଏଣୁ ସେ ଗୋଟିଏ ପ୍ରବନ୍ଧରେ ସେହି ସମୟରେ ପ୍ରକାଶ କଲେ ଯେ ନଟୋଭିଚଙ୍କ ପୂର୍ବରୁ କେତେକ ଗବେଷକ ବୌଦ୍ଧଧର୍ମ ଏବଂ ଖ୍ରୀଷ୍ଟଧର୍ମ ମଧ୍ୟରେ ଥିବା ତତ୍ତ୍ୱଗତ ସାମଞ୍ଜସ୍ୟ ଦର୍ଶାଇ ଖ୍ରୀଷ୍ଟକାଳୀନ ପାଲେଷ୍ଟାଇନ୍ ଆଦି ଅଞ୍ଚଳରେ ବୌଦ୍ଧଧର୍ମ ପ୍ରଚୁର ପ୍ରସାର ହୋଇଥିବା ତଥ୍ୟ ପରିବେଷଣ କରି ଯାଇଛନ୍ତି । ଏହି ତଥ୍ୟର ଆଧାର ଉପରେ ଏକ ନୂତନ ଚମକପ୍ରଦ ତଥ୍ୟ ଦେବାକୁ ବ୍ୟାକୁଳ ହୋଇ ସେହି ଗବେଷକମାନେ ଏ ପ୍ରକାର କୃତି କରି ବସିଛନ୍ତି । ଯଦି ସେ ହେମିସ୍ ମଠରେ ତିବ୍ବତୀୟ ଭାଷାରେ ଏପ୍ରକାର ଏକ ତଥ୍ୟର ସନ୍ଧାନ ପାଇଲେ ତେବେ ସେଇ ପାଣ୍ଡୁଲିପି ତାଙ୍କ ସାଙ୍ଗରେ ନେଇଆସିବା ତାଙ୍କର ଉଚିତ ନ ଥିଲା କି ? ସେହି ଭାଷାରେ ଅଜ୍ଞଥିବା ସତ୍ତ୍ୱେ ସେ ଅନୁବାଦକୁ ସମ୍ପୂର୍ଣ୍ଣ ବିଶ୍ୱାସ କରିନେବା ଉଚିତ

ଥିଲା କି ?[5] ଏପ୍ରକାର ଏକ ଆନ୍ଦୋଳନ ଖ୍ରୀଷ୍ଟିୟାନ ବୁଦ୍ଧିଜୀବୀଙ୍କ ମଧ୍ୟରେ ଆଶା ସଞ୍ଚାର କଲା । ଏପରି ଏକ ପାଣ୍ଡୁଲିପି ହେମିସ ମଠରେ ନଥିବା ଏକଥା ଜାଣିବାକୁ ସେମାନେ ହେମିସ୍ ମଠ ପରିଦର୍ଶନ କଲେ । ସେହି ପରିଦର୍ଶକଙ୍କ ମଧ୍ୟରେ ତତ୍କାଳୀନ ଆଗ୍ରାରେ ଅଧ୍ୟାପନା କରୁଥିବା ଜେ ଆର୍ଚିବଲଡ଼ ଡୋଗ୍ଲାସ୍ ଏବଂ ଖ୍ରୀଷ୍ଟିୟାନ ସାଧୁ ସୁନ୍ଦର ସିଂ ଅନ୍ୟତମ ଥିଲେ । ସେମାନେ ମଠ ପରିଦର୍ଶନ କରି ମତଦେଲେ ଯେ ସେଠି ସେପ୍ରକାର କୌଣସି ପାଣ୍ଡୁଲିପି ସମ୍ପର୍କରେ ମଠାଧୀଶ ଅଜ୍ଞ । ମାତ୍ର ତାଙ୍କ ପରେ ପରେ ସେହି ମଠକୁ ବଙ୍ଗୀୟ ପରିବ୍ରାଜକ ଦ୍ୱୟ ସ୍ୱାମୀ ଅଭେଦାନନ୍ଦ ଏବଂ ବ୍ରହ୍ମଚାରୀ ଭୈରବ ଚୈତନ୍ୟ ଏହି ପାଣ୍ଡୁଲିପି ଦେଖି ଆସିଥିବାର ଦାବୀକରି 'ଦେବତାତ୍ମା ହିମାଳୟ' ନାମକ ପୁସ୍ତକରେ କିଛି କଥା ଉଲ୍ଲେଖ କଲେ । ଯଦି ପ୍ରକୃତରେ ତଥ୍ୟଟି ସତ୍ୟ ହୋଇଥାଏ ତେବେ ଖ୍ରୀଷ୍ଟୀୟ ସମାଜ ଏଥିପାଇଁ ଅନୁତପ୍ତ ହେବେ । ଏଠାରେ ସରଳମନସ୍କ ସ୍ୱୀକାର କରୁଛି ଯେ ଯେପର୍ଯ୍ୟନ୍ତ ସେହି ମଠକୁ ମୁଁ ଯାଇନାହିଁ ସେପର୍ଯ୍ୟନ୍ତ ସେହି ପୋଥି ସମ୍ପର୍କରେ କୌଣସି ମତଦେବା ଉଚିତ ନୁହେଁ ।

ନଟୋଭିଚ୍ ସତ୍ୟ ଲେଖିଥାନ୍ତୁ ବା ମିଥ୍ୟା ଲେଖିଥାନ୍ତୁ ତାଙ୍କ ପୁସ୍ତକଟିଯେ ବିଶ୍ୱର ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ଭୟଙ୍କର ପ୍ରଭାବ ବିସ୍ତାର କଲା ତାହା ସର୍ବମାନ୍ୟ । ବିଖ୍ୟାତ ଫରାସୀ ଐତିହାସିକ ଏମ୍. ସେଲଟେଭନ୍ ଲିଭି ତାଙ୍କ ଦି ଏକ୍ୱାରିୟମ ଗୋସ୍ପଲ୍ ଅଫ୍ ଜିସସ୍ ଦି କ୍ରାଇଷ୍ଟ' ପୁସ୍ତକରେ 'ଦି ଲାଇଫ୍ ଏଣ୍ଡ ଓ୍ୱାର୍କ ଅଫ୍ ଜିସସ୍ ଇନ୍ ଇଣ୍ଡିଆ' ଅଧ୍ୟାୟରେ ଯୀଶୁଙ୍କ ଭାରତ ଆଗମନ କରିଥିବା କଥାକୁ ଗୁରୁତ୍ୱ ଦେଲେ । କିମ୍ବଦନ୍ତୀଗୁଡିକର ଆଧାର ଉପରେ ଏଫ୍. ଏ. ପ୍ଲାଟନ ତାଙ୍କ 'ଖ୍ରୀଷ୍ଟିୟାନ୍ ଇଣ୍ଡିଆ' ପୁସ୍ତକରେ ଯୀଶୁଙ୍କ ଜ୍ଞାନାର୍ଜନ ପାଇଁ ଭାରତ ଆଗମନ କଥା କହିଲେ । ଗଭୀର ଅଧ୍ୟୟନ ଏବଂ ଚିନ୍ତନ ପରେ 'ଦି ଅର୍ଡ଼ର ଅଫ୍ ଦି ବେଣୀଡିକ୍ଟିସନ୍'ର ଅଧ୍ୟକ୍ଷ ଡା. ସ୍ପେନସର ଲୁଇସ୍ 1929ରେ 'ଦି ମିଷ୍ଟିକାଲ ଲାଇଫ୍ ଅଫ୍ ଯୀଶସ୍ କ୍ରାଇଷ୍ଟ' ନାମକ ପୁସ୍ତକ ରଚନା କରି ନଟୋଭିଚ ଯୁକ୍ତିର ପୁନରାବୃତ୍ତି କରିଗଲେ ଯାହା ଏତେ ଲୋକପ୍ରିୟ ହୋଇ ପଡ଼ିଲା ଯେ 1964 ପର୍ଯ୍ୟନ୍ତ 16ଟି ସଂସ୍କରଣରେ ବିକ୍ରୀ ହୋଇ ଚାଲିଲା । ସେମାନଙ୍କ ପରି ଜଣେ ପ୍ରସିଦ୍ଧ ରୁଷିୟ ଚିତ୍ରକାର ନିକୋଲାସ୍ ରୋରିଚ୍ନ 1929ରେ 'ହାର୍ଟ ଅଫ ଏଶିଆ'ଙ୍କ ନାମକ ପୁସ୍ତକ ପ୍ରକାଶ କରି କହିବାକୁ ଆରମ୍ଭ କରିଦେଲେ ଯେ ଯୀଶୁ ଯୁବାବସ୍ଥାରେ ପୁଣି କ୍ରୁଶବିଦ୍ଧ ହୋଇ ମୃତହେବା ପୂର୍ବରୁ ଏହିପରି ଦୁଇଥର ଭାରତକୁ ଆସିଥିଲେ । ପାଶ୍ଚାତ୍ୟ ବିଦ୍ୱାନମାନଙ୍କ ପଦାଙ୍କ ଅନୁସରଣ କରି ପ୍ରାଚ୍ୟ ବିଦ୍ୱାନମାନେ ମଧ୍ୟ ମୁଣ୍ଡ ହଲାଇବାକୁ ଆରମ୍ଭ କରିଦେଲେ ଯେ ଯୀଶୁ ଭାରତକୁ ତାଙ୍କର

ଯୁବାବସ୍ଥାରେ ଆସିଥିଲେ । ଏହିପରି ସତ୍ୟ ବାରମ୍ବାର ଗୁହାରିବା ଫଳରେ ତାହା ଗୁଜବରେ ପରିଣତ ହେଲା । ସ୍ୱାତନ୍ତ୍ର୍ୟବୀର ସଭରକର ତାଙ୍କ ମରାଠୀରେ ଲିଖିତ 'ଖ୍ରୀଷ୍ଟ ପରିଚୟ' ପୁସ୍ତକରେ ଯୀଶୁଙ୍କ ଜନ୍ମ ଭାରତରେ ହୋଇଥିଲା କିମ୍ବା ଫିଲିସ୍ତାନରେ ବାସକରୁଥିବା କୌଣସି ହିନ୍ଦୁ ଗୃହରେ ହୋଇଥିଲା ବୋଲି କହିପକାଇଲେ । ତାଙ୍କପରି ସାଧକ ସ୍ୱାମୀ ରାମତୀର୍ଥ 'ସ୍ପିରିଚୁଏଲ୍ ପାଓ୍ୱାର ଦେଟ ଉଇନ୍‌ସ୍' ଗ୍ରନ୍ଥରେ ଅହମଦିଆ ସମ୍ପ୍ରଦାୟଙ୍କ ପରି ଯୀଶୁଙ୍କୁ ମୃତ୍ୟୁପୂର୍ବରୁ କାଶ୍ମୀର ନେଇ ଆସନ୍ତି ଏବଂ ସେଠାରେ ତାଙ୍କର ସମାଧି ଥିବା ବିଷୟରେ ଉଲ୍ଲେଖ କରିଯାଇଛନ୍ତି । ପରବର୍ତ୍ତୀ ହିନ୍ଦୁଧର୍ମ—ପ୍ରେମୀ ଦେଶଭକ୍ତ ବିଦ୍ୱାନମାନେ ଯୀଶୁଙ୍କୁ କେବଳ ପୁରୀରେ ଗୁପ୍ତ ସନ୍ନ୍ୟାସୀ ନଟୋଭିଚଙ୍କ କଥନରେ ଶିକ୍ଷାଲାଭ ପାଇଁ ମଧ୍ୟ ନିଯୁକ୍ତ କରି ଆମକୁ ନ ବୁଝାଇ କେମିତି ତୃପ୍ତି ଦଅନ୍ତି ନାହିଁ ।

ବହୁ ଲେଖକଙ୍କର ବହୁ ପ୍ରକାର ତଥ୍ୟ ଏବଂ ଅନୁମାନକୁ ଗ୍ରହଣ ନକରି ଏଠି ନଟୋଭିଚଙ୍କର ପୁସ୍ତକଟିର ମୂଲ୍ୟାଙ୍କନ କରାଯିବା ଆବଶ୍ୟକ । ନଟୋଭିଚ ଲେଖନ୍ତି ଯୀଶୁ ତେରବର୍ଷ ବୟସରେ ଗୁପ୍ତଭାବରେ ସ୍ୱଗୃହ ତ୍ୟାଗକରି ଯିରୁଶାଲମ ଛାଡ଼ିଲେ ଏବଂ ଚଉଦବର୍ଷ ବୟସରେ ବଣିକମାନଙ୍କ ସଙ୍ଗେ ସିନ୍ଧୁ ପ୍ରଦେଶକୁ ଆସିଲେ । ସେଠୁ ସେ ପଞ୍ଚନଦ ପ୍ରବାହିତ ରାଜପୁତନା ଆଦି ଅଞ୍ଚଳରେ ଜୈନମାନଙ୍କର ଆତିଥ୍ୟ ସ୍ୱୀକାର କଲେ । ସେଠାରୁ ସେ ଓଡ଼ିଶାରେ ଅବସ୍ଥିତ ଜଗନ୍ନାଥ ଧାମକୁ ଗମନକଲେ ଏବଂ ବ୍ରାହ୍ମଣମାନଙ୍କ ପାଖରୁ ବେଦ ଅଧ୍ୟୟନ, ମନ୍ତ୍ରଦ୍ୱାରା ଶରୀରଆରୋଗ୍ୟ କରିବା ଆଦି ବିଦ୍ୟା ଶିକ୍ଷା କଲେ । ଏପ୍ରକାରେ ଛ ବର୍ଷ ସେ ଜଗନ୍ନାଥ ପୁରୀରେ ବ୍ୟତୀତ କଲେ ଯଦିଓ ମଝିରେ ମଝିରେ ସେ ରାଜଗୃହ ବାରଣାସୀ ଆଦି ତୀର୍ଥସ୍ଥାନ ଦର୍ଶନ କରୁଥିଲେ । ଜଗନ୍ନାଥ ଧାମରେ ଜାତିଭେଦ ବିରୋଧ କରିବା ଏବଂ ମୂର୍ତ୍ତିପୂଜା ଖଣ୍ଡନ କରିବାଦ୍ୱାରା ବ୍ରାହ୍ମଣମାନେ ତାଙ୍କୁ ମାରିଦେବେ ଏହା ଜାଣିପାରି ସେ ବୁଦ୍ଧଦେବଙ୍କ ଜନ୍ମସ୍ଥାନକୁ ପଳାୟନ କଲେ । ଛ ବର୍ଷରେ ସେ ନେପାଳ ଏବଂ ହିମାଳୟ ଗୁମ୍ଫା ରାଜପୁତନାରେ ପଢ଼ିଥିଲେ ଏବଂ ସେଠାରୁ ଅଣତିରିଶ ବର୍ଷ ବୟସରେ ପଶ୍ଚିମ ଅଭିମୁଖେ ପାରସ୍ୟ ଦେଇ ସ୍ୱଦେଶକୁ ଫେରିଲେ ।

ନଟୋଭିଚଙ୍କ ଅନେକ କଥା ଅବିଶ୍ୱାସ ଯୋଗ୍ୟ ମନେହୁଏ । ଯେଉଁ ସମୟରେ ସେ ଯୀଶୁଙ୍କୁ ଓଡ଼ିଶାକୁ ଆଣନ୍ତି ସେ ସମୟରେ ଓଡ଼ିଶା ନାମକ କୌଣସି ପ୍ରଦେଶର ଅସ୍ତିତ୍ୱ ଥିଲା କି ? ଯଦି ଥିଲା ଜଗନ୍ନାଥ ମନ୍ଦିର ଆଜକୁ ଦୁଇହଜାର ବର୍ଷ ପୂର୍ବରୁ ସ୍ଥାପିତ ହୋଇଥିଲା କି ? ଯଦି ଥିଲା ମନ୍ଦିରର ପଣ୍ଡାମାନେ ବେଦଜ୍ଞ

ପଣ୍ଡିତ ଥିଲେ କି ? ଯଦି ଥିଲେ ସେଠି ଜାତିଭେଦ ନାମକ ଏକ ବ୍ୟାଧି ବ୍ୟାପି ଥିଲା କି ? ଯଦି ଥିଲା ତେବେ ଯବନ ଯୁବକଙ୍କୁ ମନ୍ଦିରରେ ପ୍ରବେଶାଧିକାର ମିଳୁଥିଲା କି ? ଏ ସମସ୍ତ ପ୍ରଶ୍ନ ଯଥାଯଥ ଭାବରେ ଉତ୍ତର ନଦେବା ପର୍ଯ୍ୟନ୍ତ ଯୀଶୁଙ୍କ ପୁରୀ ଆଗମନ ପ୍ରସଙ୍ଗ ଯେ କପୋଳକଳ୍ପିତ ତାହା କହିବାକୁ ଆମେ ବାଧ୍ୟ । ବର୍ତ୍ତମାନ ଏ ବିଷୟରେ ଆଲୋଚନା କରାଯାଉ ।

ଶାମୁଏଲ ଦାସଙ୍କ ମତରେ ଯୀଶୁଙ୍କ ପୁରୀ ଜଗନ୍ନାଥ ପୀଠରେ ଅବସ୍ଥାନ କଥା ସମ୍ପୂର୍ଣ୍ଣ ଅବିଶ୍ୱାସନୀୟ ।[6] ଏ ପ୍ରକାର ମତ ଦେବାର କାରଣ ମଧ୍ୟ ଅଛି । ରାଜା ଅନଙ୍ଗଭୀମ 1198ରେ ବଡ଼ଦେଉଳ ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ ଏବଂ ପରବର୍ତ୍ତୀ ରାଜାମାନେ କ୍ରମାନ୍ୱୟେ ମନ୍ଦିରର ଅନ୍ୟାନ୍ୟ ଅଂଶଗୁଡ଼ିକ 1532 ସୁଦ୍ଧା ସମ୍ପାଦନ କରିଥିବାରୁ ଏହା ଅନ୍ୟୁନ ଯୀଶୁଙ୍କ ଆବିର୍ଭାବର 800 ବର୍ଷ ପରର ହିଁ କଥା ହେବ । ଏ କ୍ଷେତ୍ରରେ ସେ ଏଠାକୁ ଆସି ଆଧ୍ୟାତ୍ମିକ ପ୍ରେରଣା ନେବା କଥା ସ୍ୱତଃ ଭ୍ରମାତ୍ମକ ଅଟେ । ବସ୍ତୁତଃ ଜଗନ୍ନାଥଙ୍କ ଏହି ମନ୍ଦିରଟି ସମ୍ପର୍କରେ ଏହା ଏକ ବାହ୍ୟିକ ପ୍ରମାଣ ଅଟେ । ଶଙ୍କରାଚାର୍ଯ୍ୟଙ୍କ ପୁରୀ ଆଗମନ ହୁଏ, ନବମ ଶତାବ୍ଦୀର ପ୍ରାରମ୍ଭରେ । ଏହି ଐତିହାସିକ ତଥ୍ୟକୁ ଯଦି ଆମେ ସ୍ୱୀକାର କରିବାକୁ ବାଧ୍ୟ ତେବେ ଶଙ୍କରଙ୍କ ଆଠଶହ ବର୍ଷ ପୂର୍ବରୁ ଯେ ଜଗନ୍ନାଥଙ୍କ ଅସ୍ତିତ୍ୱ ଥିଲା ତାହା ଆମେ ମାନିବାକୁ ବାଧ୍ୟ । ନହେଲେ ସେ ଜଗନ୍ନାଥଙ୍କୁ ସ୍ତୁତି ପ୍ରାର୍ଥନା ଏବଂ ଉପାସନା କରିଥାନ୍ତେ କିପରି ? ଜଗନ୍ନାଥଙ୍କ ମହିମା ସେ ସମୟରେ ସୁଦୂର ଥିବାରୁ ତ ସେ ତାଙ୍କୁ ସ୍ତୁତି କଲେ । ଏତଦ୍‌ବ୍ୟତୀତ ଜଗନ୍ନାଥ ଯେ ଶ୍ରୀକୃଷ୍ଣଙ୍କର ଏକ ମୂର୍ତ୍ତି ଯାହା ବନବାସୀମାନଙ୍କ ସମ୍ପର୍କରେ ଆସି ଏକ ପ୍ରତୀକାତ୍ମକ ହୋଇ ପଡ଼ିଛି ଏହା ତ ନିର୍ଦ୍ୱନ୍ଦରେ କୁହାଯାଇ ପାରିବ । ଯଦି ସେ ଶ୍ରୀକୃଷ୍ଣଙ୍କର ମୂର୍ତ୍ତିରୂପ ତେବେ ସେ ମହାଭାରତ କାଳର ପରବର୍ତ୍ତୀ ଧରାଯିବ । ମହାଭାରତ କାଳ ଆଜକୁ ପାଞ୍ଚ ହଜାର ବର୍ଷ ମଧ୍ୟରେ ବୋଲି ଗବେଷକମାନଙ୍କ ଦ୍ୱାରା ସ୍ଥିରୀକୃତ ହୋଇ-ଥିବାରୁ ମନ୍ଦିର ତାର ପରବର୍ତ୍ତୀ ଅର୍ଥାତ୍ ପାଞ୍ଚହଜାର ବର୍ଷ ପରେ କୌଣସି ବର୍ଷ କୁହାଯାଇ ପାରିବ । ପୁନଶ୍ଚ ମହାଭାରତ କାଳଠାରୁ ପୁରୀର ଧାର୍ମିକ ମହତ୍ତ୍ୱ ଥିବା କଥା ମହାଭାରତରୁ ଜଣାପଡ଼େ । ବନପର୍ବରେ ଯୁଧିଷ୍ଠିରଙ୍କ ତୀର୍ଥଭ୍ରମଣ ପ୍ରସଙ୍ଗଟି ପାଠକଲେ ଜଣାଯାଏ ଯେ ମହାଭାରତ ବେଳକୁ ପୂର୍ବ ସମୁଦ୍ରତୀରରେ ବୈତରଣୀ ନଦୀ ପ୍ରବାହିତ ହେଉଥିବା କଳିଙ୍ଗ ରାଜ୍ୟରେ ପର୍ବତାକାର ଏକ ମହାବେଦୀ ପ୍ରତିଷ୍ଠିତ ଥିଲା । ଯେଉଁ ସ୍ଥାନକୁ ପଞ୍ଚପାଣ୍ଡବ ଦ୍ରୋପଦୀଙ୍କ ସହ ବୈତରଣୀରେ ସ୍ନାନକରି ପିତୃତର୍ପଣ କରିଥିଲେ । ସେ ସମୟରେ "ଏହା ଏକ ପବିତ୍ର ତୀର୍ଥରୂପେ ସମ୍ମାନିତ ହେଉଥିଲା । ...'ଯଜ୍ଞୀୟଂ' ଓ 'ଗିରିଶୋଭିତଂ' ପଦଦ୍ୱୟର ବ୍ୟବହାର

ଦେଖି ପରବର୍ତ୍ତୀ ପୁରାଣକାରମାନେ ମହାଭାରତର ବନପର୍ବର 198 ଅଧ୍ୟାୟ ବର୍ଣ୍ଣିତ ବିଶ୍ୱକର୍ମାଙ୍କ ଯନ୍ତ୍ରର ଐକ୍ୟ କଳ୍ପନା କରି ଏକ ସୁଦୃଢ଼ କମ୍ବଦନ୍ତୀ ସୃଷ୍ଟି କରିଛନ୍ତି ।"[8] ଏସବୁ ପ୍ରମାଣରୁ ଏହା ନିଃସନ୍ଦେହ ଯେ ମହାଭାରତ କାଳରୁ ଏ ସ୍ଥାନଟି ଏକ ତୀର୍ଥରୂପେ ଜ୍ଞାତ ଥିଲା । ମହାଭାରତ କାଳ ଆଜକୁ ପାଞ୍ଚହଜାର ବର୍ଷ ପ୍ରମାଣିତ ହୋଇଥିବାରୁ ଏବଂ ଜଗନ୍ନାଥ ଶ୍ରୀକୃଷ୍ଣଙ୍କର ପ୍ରତୀକ ବିଗ୍ରହ ହୋଇଥିବାରୁ ଏହା ପ୍ରମାଣିତ ହୋଇଯାଏ ଯେ ପୁରୁଷୋତ୍ତମ ପାଞ୍ଚହଜାର ବର୍ଷ ମଧ୍ୟରେ ଅବସ୍ଥିତ । ଏ ଦୃଷ୍ଟିରୁ ଦୁଇହଜାର ବର୍ଷ ମଧ୍ୟରେ ଜନ୍ମ ନେଇଥିବା ଯୀଶୁ ଯେ ପୁରୀ ଆସି ନ ଥିବେ ଏହା କପରି କୁହାଯାଇ ପାରିବ । ନତୋଭିଚଙ୍କ ଗୋଟିଏ କଥା ଯାହା ଅବିଶ୍ୱାସନୀୟ ମନେ ହୁଏ ତାହାହେଲା ଜଗନ୍ନାଥ ମନ୍ଦିରରେ ଜାତିଭେଦ । ଯେଉଁମାନେ ଆନନ୍ଦ ବଜାର ଦେଖିଥିବେ ସେମାନେ ଏହା କେବେ ମଧ୍ୟ ମାନିନେଇ ପାରିବେ ନାହିଁ ଯେ ଜାତିଭେଦ ବୋଲି କିଛିକଥା ମନ୍ଦିରରେ ଥିଲା । ଅନ୍ୟ ଆକ୍ଷେପଟି ହେଲା ଯବନ ଯୁବକଙ୍କ ମନ୍ଦିର ପ୍ରବେଶ । ହୁଏତ ସେ ପ୍ରକାର ବାଛ ବିଚାର ନଥିଲା ମାତ୍ର ମୁସଲମାନମାନଙ୍କ ସମୟଠୁ ଏପ୍ରକାର ନିୟମ ଜାରିହେବା ପଛରେ ସେମାନଙ୍କ ମ୍ଳେଚ୍ଛ, ଅପବିତ୍ର ଏବଂ ଅନାଚାର ବ୍ୟବହାର ହିଁ ଏଥିପାଇଁ ଦାୟୀ ଅଟେ । ଜଗନ୍ନାଥ ପୁରୀରେ ଯୀଶୁ ଯେ ମୂର୍ତ୍ତିପୂଜାକୁ ଖଣ୍ଡନ କରିନଥିବେ ତାହା କୁହାଯାଇ ପାରିବ ନାହିଁ ।

ଯେଉଁମାନେ କହିବେ ଯେ ଯୀଶୁ ପୁରୀ ଜଗନ୍ନାଥ ଆସିନଥିଲେ ସେମାନେ ହୁଏତ ଏକଥା ସ୍ୱୀକାର କରିବେ ଯେ ସେ ଭାରତକୁ ଅବଶ୍ୟ ଆସିଛନ୍ତି । ଯେଉଁମାନେ କହିବେ ଯେ ସେ ଭାରତକୁ ଆଦୌ ଆସି ନାହାନ୍ତି ସେମାନେ ଅବଶ୍ୟ ସ୍ୱୀକାର କରିବେ ଯେ ପାଲେଷ୍ଟାଇନ୍ ଆଦି ଅଞ୍ଚଳରେ ସେ ସମୟରେ ବୌଦ୍ଧଧର୍ମର ପ୍ରଚାର ହୋଇ ସାରିଥିଲା ଏବଂ ସେଇଠାରୁ ସେ ସ୍ୱ ଆଧ୍ୟାତ୍ମିକ ପ୍ରେରଣା ପାଇଥିଲେ । ଏ ଦୁଇ କଥାରୁ ଗୋଟିଏ କଥା ନ ମାନିବାର ଉପାୟ ନାହିଁ । ଭାରତରୁ ଭାରତ ବାହାରକୁ ଏବଂ ଭାରତବାହାରୁ ଭାରତକୁ ସେ ସମୟରେ ଅନେକ ପଥ ଉନ୍ମୁକ୍ତ ଥିଲା । ତାହା ହେଲା ଇଜିପଟ ଓ ଆଲେକଜାଣ୍ଡ୍ରିଆ ଠାରୁ, ପେରସିଆନ୍ ଉପକୂଳରୁ ଏବଂ ମଧ୍ୟ ଏସିଆରୁ । ଅନେକ ଖ୍ରୀଷ୍ଟିୟାନ ବନ୍ଧୁ ଏହା ବିଶ୍ୱାସ କରିପାରୁ ନାହାନ୍ତି ଯେ ଯୀଶୁ କପରି ଭାରତକୁ ଆସି ପାରିବେ ? ଏ ଅବିଶ୍ୱାସନୀୟ ପ୍ରସଙ୍ଗଟିକୁ ବିଶ୍ୱାସନୀୟ କରିବା ପାଇଁ ତାଙ୍କୁ ମୁଁ ଏଠି ଯିହୁଦା ଥୋମା (ସେଣ୍ଟ୍ ଥୋମାସ)ଙ୍କ ପ୍ରସଙ୍ଗଟି ଉଲ୍ଲେଖ କରିବାକୁ ଚାହେଁ । ଯୀଶୁ କ୍ରୁଶବିଦ୍ଧ ହେବା ପରେ ତାଙ୍କର ଶିଷ୍ୟମାନେ ବିଶ୍ୱର ବିଭିନ୍ନ ଅଞ୍ଚଳରେ ବିଭକ୍ତ ହୋଇ ପ୍ରଭୁଙ୍କ ବାଣୀ ପ୍ରଚାର କରିବାକୁ ଲାଗିଲେ । ଯାକୁବ୍ ଯିରୁଶାଲମରେ ରହିଲେ । ଶିମୋନ

ପିତର ରୋମରେ, ଯୋହନ ଏଫିସୀରେ, ମାର୍କ ଆଲେକ୍‌ଜାଣ୍ଡ୍ରିଆ, ଆଣ୍ଡ୍ରୁ ସ୍କିଥିଆ ଲୁକ ମାସିଡୋନିଆରେ ଏବଂ କନ୍ଥୁଦା ଥୋମାସ୍ 52 ଖ୍ରୀଷ୍ଟାବ୍ଦରେ ଭାରତର ମାଲବାର ଉପକୂଳରେ ପହଞ୍ଚି ମାଲିଆଙ୍କାର ବା କାଙ୍ଗାନୋର, ମେଲାପୁରମ୍ (ଯାହା ଆଜି ମାଡ୍ରାଜର ମଇଲାପୁର) ଆଦି ସ୍ଥାନରେ ପ୍ରଚାର କରିଥିଲେ । ମଇଲାପୁରର ସାନ୍ ଥୋମେ କାଥେଡ୍ରାଲରେ ତାଙ୍କର ସମାଧି ଅଦ୍ୟାବଧି ରହିଛି । ଯୀଶୁଖ୍ରୀଷ୍ଟଙ୍କ ସମୟରେ ଭାରତ ଯେ ଯୀଶୁଙ୍କ ଶିଷ୍ୟମାନଙ୍କ ବା ଯୀଶୁଙ୍କ ପାଇଁ ଏକ ଅଜ୍ଞାତ ଦେଶ ନଥିଲା ଏଥିରୁ ଏହା ପ୍ରମାଣିତ । ଇଜିପ୍ଟ ସହ ଭାରତର ବାଣିଜ୍ୟ ଏବଂ ଭାରତ ସହ ଇଜିପ୍ଟର ବାଣିଜ୍ୟ ଏବଂ ପରବର୍ତ୍ତୀ ସମୟରେ ୟୁରୋପ ସହ ଭାରତର ବାଣିଜ୍ୟ ଜେରୁଶାଲମ ମଧ୍ୟରେ ଚାଲୁଥିଲା । କୁହାଯାଏ ରାଜା ଶଲୋମନଙ୍କ ମନ୍ଦିର ନିର୍ମାଣରେ ଭାରତୀୟ ବ୍ୟାପାରୀମାନଙ୍କର ବହୁମୂଲ୍ୟ ସ୍ୱର୍ଣ୍ଣାଦି ଧାତୁ ହିଁ ବ୍ୟବହୃତ ହୋଇଥିଲା । ରେଭ୍ ଜୋସେଫ୍ ଉଲଫ୍ ଏବଂ ଏଲ୍. ପି. ଫିବଟଙ୍କ ମତରେ କାନ୍ଦାହାର (ଆଫଗାନିସ୍ଥାନ)ରୁ ଶିଳ୍ପୀ ଶଲୋମନଙ୍କ ମନ୍ଦିର ନିର୍ମାଣ କରିବାକୁ ଯାଇଥିଲେ ।[9] ପୁରାତନ ନିୟମରେ ସନ୍ନିବେଶିତ ହୋଇଥିବା ଏଷ୍ଟର ବିବରଣୀରୁ ଜଣାଯାଏ ଯେ ଅକ୍ଷଶ୍ୱେରଶ ଖ୍ରୀଷ୍ଟପୂର୍ବ 486-465ରେ ହିନ୍ଦୁସ୍ଥାନଠାରୁ ଅର୍ଥାତ୍ ସିନ୍ଧୁପ୍ରଦେଶ ଠାରୁ କୁଶଦେଶ ପର୍ଯ୍ୟନ୍ତ ଏକ ଶହ ସତାଇଶଟି ପ୍ରଦେଶ ଉପରେ ରାଜ୍ୟ କରିଥିଲେ । ଏହାଯଦି ସତ୍ୟ ତେବେ ଯୀଶୁଙ୍କ ବହୁପୂର୍ବରୁ ଭାରତସହ ଯିହୁଦୀମାନଙ୍କ ସମ୍ପର୍କ ଯେ ଥିଲା ତାହା ସ୍ୱତଃ ପ୍ରମାଣିତ । ସନ୍ଥ ମାଥିଉଙ୍କ ଅନୁସାରେ ଯୀଶୁଙ୍କ ଜନ୍ମହେବା ପରେ ପୂର୍ବଦେଶର କେତେକ ଜ୍ୟୋତିର୍ବିଦ୍ ପଣ୍ଡିତ ଗୋଟିଏ ନକ୍ଷତ୍ରକୁ ଲକ୍ଷ୍ୟ କରି ବେଥ୍ଲେହମରେ ପହଞ୍ଚିଲେ ଏବଂ ଯୀଶୁଙ୍କୁ ଦର୍ଶନ କରି ଦର୍ଶନୀ ସ୍ୱରୂପ ସାଙ୍ଗରେ ଆଣିଥିବା ସୁନା, କୁନ୍ଦୁରୁ ଏବଂ ଗନ୍ଧରସ ନୈବେଦ୍ୟ ଦେଇ ଫେରିଯାଇଥିଲେ । ଆମେରିକାର ବରେଣ୍ୟ ବିଦ୍ୱାନ ମନକ୍ୟୁରର ଡେନିଏଲ୍ ଜନସ୍ତେ ତାଙ୍କ ପୁସ୍ତକରେ ଲେଖିଲେ ଯେ ଏହି ପୂର୍ବଦେଶର ପଣ୍ଡିତ ଭାରତବର୍ଷରୁ ଯାଇଥିଲେ । ପୂର୍ବଦେଶ କହିଲେ ଭାରତକୁ ହିଁ ବୁଝାଇ ଥାଏ ।[10] ପ୍ରଥମ ଶତାବ୍ଦୀ ଗୁଡ଼ିକରେ ରଚିତ ପଚିଶରୁ ଅଧିକ "ଆପୋକ୍ରିଫାଲ ଗସପେଲ" ଗୁଡ଼ିକ ଯଦି ଅଧ୍ୟୟନ କରାଯାଏ ତେବେ ସେଥିରୁ ମଧ୍ୟ ଆହୁରି ଅନେକ କଥା ମିଳି ପାରିବ । ମାତ୍ର ଏଗୁଡ଼ିକୁ କୃତ୍ରିମ ସୁସମାଚାର କହି ଚର୍ଚ୍ଚ ପ୍ରତ୍ୟାଖ୍ୟାନ କରିବା ଦ୍ୱାରା ଏହାର ପ୍ରଚୁର ପ୍ରସାର ହୋଇପାରି ନାହିଁ ଏବଂ ସହଜରେ ଏହା ପ୍ରାପ୍ୟ ନୁହେଁ ।

ପାଶ୍ଚାତ୍ୟ ବିଦ୍ୱାନଙ୍କ ମତରେ ଯୀଶୁ ତାଙ୍କର କୈଶୋର ଅବସ୍ଥାରେ ଭାରତକୁ ଆସିଥିଲେ । ଯଦି ସେ ଆସିଥିଲେ ତେବେ ବିଦେଶୀ ବାକ୍ୟ ପ୍ରମାଣ ନେଇ ଏହାକୁ ସିଦ୍ଧ କରାଯାଇ ପାରିବ ନାହିଁ । ଏଥିପାଇଁ ଭାରତର ପୁରାଣଶାସ୍ତ୍ର

ଆଧାରରେ ଅନ୍ୟାନ୍ୟ କେତେକ କଥା ଉଲ୍ଲେଖ କରିବା ଉଚିତ । ଏ ଦୃଷ୍ଟିରୁ ଭବିଷ୍ୟ-ପୁରାଣ ଏବଂ ନାଥ ନାମାବଳୀ ଦ୍ରଷ୍ଟବ୍ୟ । ଭବିଷ୍ୟପୁରାଣରେ କିଛିଅଂଶ ଏଠି ଉଦ୍ଧୃତ କରାଗଲା :

ଏକାଦାତୁ ଶକାଧୀଶୋ ହିମି ତୁଙ୍ଗ ସମାଜସ୍ଥୀ ।
ହୁଣ ଦେଶସ୍ୟ ମଧ୍ୟେବୈ ଗିରିସ୍ଥଂ ପୁରୁଷଂ ଶୁଭମ୍ ॥
ଦଦର୍ଶ ବଳବାନ୍ ରାଜା ଗୌରାଙ୍ଗମ୍ ଶ୍ୱେତ ବସ୍ତ୍ରକମ୍ ।
କୋ ଭବାନିତ୍ରଂ ତଂ ପ୍ରାହ ସହୋବାଚ ସୁଦାନ୍ୱିତଃ ॥
ଈସା ପୁତ୍ରଶ୍ଚ ମାଂ ବିଦ୍ଧି କୁମାରୀ ଗର୍ଭ ସମ୍ଭବମ୍ ।
ମର୍ମସାର ମ୍ଲେଚ୍ଛ ଦେଶେ ମସୀହୋଽହଂ ସମାଗତଃ ॥
ଈସାମସୀ ଚ ଦସ୍ୟୁନାଂ ପ୍ରାଦୁର୍ଭୁତ୍ୱା ଭୟଙ୍କରୀ ।
ତାମହଂ ମ୍ଲେଚ୍ଛତଃ ପ୍ରାପ୍ୟ ମସୀହତ୍ୱ ମୁପାଗତଃ ॥[11]

ଅର୍ଥାତ୍—ଥରେ ଶକରାଜା ଶାଲୀବାହନ ହିମାଳୟର ସେପାଖରେ ହୁଣ ଦେଶରେ ଏକ ଶ୍ୱେତବସ୍ତ୍ରଧାରୀ ଗୌରଅଙ୍ଗଯୁକ୍ତ ସନ୍ନ୍ୟାସୀଙ୍କୁ ଭେଟିଲେ । ସେ ତାଙ୍କର ପରିଚୟ ପଚାରିଲେ । ଉତ୍ତରରେ ସନ୍ଥ କହିଲେ "ମୋର ନାମ ଇସା ଓ ମୁଁ କୁମାରୀ ପୁତ୍ର । ମୁଁ ମ୍ଲେଚ୍ଛ ଦେଶରୁ ଆସିଛି । ମତେ ମସୀହ ବୋଲି ଡାକନ୍ତି ।

ଏହାଦ୍ୱାରା ନାଥ ସମ୍ପ୍ରଦାୟର ଗ୍ରନ୍ଥ "ନାଥ ନାମାବଳୀ"ରେ ଯୀଶୁଙ୍କ ଭାରତ ଆଗମନ ବିଷୟକ ଏକ ବର୍ଣ୍ଣନା ଦେଖିବାକୁ ମିଳେ । ସେଥିରେ ଲେଖାଅଛି ଯୀଶୁ 14 ବର୍ଷ ବୟସରେ ଭାରତକୁ ଆସିଥିଲେ । ସେ ଶିବଉପାସକ ଥିଲେ । ସ୍ୱ ନାମ ପରିବର୍ତ୍ତନ କରି ସେ "ଈଶ" ନାମ ଗ୍ରହଣ କଲେ । ତାଙ୍କୁ ଲୋକମାନେ ଖୁସିରେ "ଇସା" ବୋଲି ଡାକୁଥିଲେ । ଉଦ୍ଧାର ପ୍ରଚାର କରିବା ପାଇଁ ସେ ନିଜ ଦେଶକୁ ଫେରିଗଲେ । ସେଠାରେ ସେ ଶୂଳୀ ଦଣ୍ଡ ଭୋଗ କଲେ । ଜଣେ ସମର୍ଥ ଗୁରୁ ଚେତନନାଥ ତାଙ୍କୁ ଶୂଳରୁ ଓହ୍ଲାଇ ଭାରତ ନେଇ ଆସିଲେ । ସେ ହିମାଳୟରେ ତପସ୍ୟା କରିଥିଲେ ଇତ୍ୟାଦି ।[12] ଏପ୍ରକାର ମତ ଯଦିଓ ସମ୍ପୂର୍ଣ୍ଣ ବିଶ୍ୱାସ ଯୋଗ୍ୟ ନୁହେଁ ତଥାପି ଭାରତରୁ ପ୍ରାପ୍ତ ଏହି ଗ୍ରନ୍ଥଗୁଡ଼ିକ ପୁରୁଣା ହୋଇଥିବା ଦୃଷ୍ଟିରୁ ଉଦ୍ଧୃତ ହେଲା ।

ସିଦ୍ଧାନ୍ତ ଓ ତତ୍ତ୍ୱତଃ ହିନ୍ଦୁ (ବୁଦ୍ଧ) ଧର୍ମ ସହ ଖ୍ରୀଷ୍ଟଧର୍ମର ଯେ ଏକ ନିବିଡ଼ ସମ୍ପର୍କ ଥିଲା ତାହା ଅନ୍ୟ ଏକ ପ୍ରବନ୍ଧରେ ଆଲୋଚନା କରାଯିବ । ତେବେ ପରିଶେଷରେ ଏତିକି କହିଲେ ଯଥେଷ୍ଟ ହେବ ଯେ ଯଦି ପ୍ରଭୁ ଯୀଶୁ ଭାରତକୁ ସ୍ୱ ଯୌବନର ପ୍ରାକ୍-କାଳରେ ଆସି ନଥିଲେ ତେବେ ତାଙ୍କ ଜନ୍ମସ୍ଥାନରେ ସେ

ହୁଏତ ବୌଦ୍ଧଧର୍ମ ସମ୍ପର୍କରେ ଆସିଛନ୍ତି । ଏଥିର ଦୁଇଟି କଥା ସ୍ୱୀକାର ଯଦି କରି ନ ହୁଏ ତେବେ କୌଣସି ଗୋଟିଏ କଥାକୁ ଅବଶ୍ୟ ଆମେ ମାନିବାକୁ ବାଧ୍ୟ । ଭାରତୀୟ ଖ୍ରୀଷ୍ଟିୟାନ ବନ୍ଧୁମାନେ ଉଲ୍ଲସିତହେବା ଉଚିତ ଯେ ପ୍ରଭୁ ଯୀଶୁଙ୍କର ଏ ଭୂମି, ଧର୍ମ ଓ ଦର୍ଶନ ସହିତଥିଲା ଏକ ଆଧ୍ୟାତ୍ମିକ ସମ୍ପର୍କ । ଏହା କହିବାଦ୍ୱାରା ହିନ୍ଦୁଧର୍ମ ଖ୍ରୀଷ୍ଟଧର୍ମକୁ କବଳିତ କରୁଛି ନ କହି ଏହାଦ୍ୱାରା ହିନ୍ଦୁ ଖ୍ରୀଷ୍ଟିୟାନ ଭାତୃତ୍ୱ ବନ୍ଧନକୁ ଆହୁରି ସୁଦୃଢ଼ କରିଛି ଏବଂ ଦୁଇ ଧର୍ମ ମଧ୍ୟରେ ମୈତ୍ରୀର ସେତୁ ନିର୍ମାଣ ହୋଇଛି ବୋଲି ଆମ୍ଭେମାନେ ଗର୍ବ ଓ ଗୌରବ ଅନୁଭବ କରିବା ଉଚିତ । ଆମେନ୍ ।

## ପାଦଟିକା :

1. ଶାମୁଏଲ ଦାସ, "ଯୀଶୁଖ୍ରୀଷ୍ଟ କ'ଣ ଭାରତକୁ ଆସିଥିଲେ," "ପ୍ରଭାତୀ ତାରା" (ସେପ୍ଟେମ୍ବର, 1975), ପୃ 247.
2. ହଜରତ ମିର୍ଜା ଗୁଲାମ ଅହମଦ, "ଯୀଶସ୍ ଇନ୍ ଇଣ୍ଡିଆ" (କାଦିଆନ : ନାଜର ଦଓ୍ୱାତ-ଓ-ତବଲିକ୍, 1899), ପୃ. 19.
3. ଦାସ "ପ୍ରଭୁ ଯୀଶୁ କ'ଣ ଭାରତବର୍ଷକୁ ଆସିଥିଲେ ? ପୁରୀଧାମ ଦର୍ଶନରେ ଆସିଥିଲେ," "ପ୍ରଭାତୀ ତାରା" (ଜୁଲାଇ, 1975. 176).
4. "ରାଷ୍ଟ୍ରଦୀପ" (2 ଜାନୁୟାରୀ, 1965).
5. ମେକ୍ସମ୍ୟୁଲର, "ଦି ଏଲିନେଜ ସଜେର୍ନ ଅଫ୍ କ୍ରାଇଷ୍ଟ ଇନ୍ ଇଣ୍ଡିଆ," "ଦି ନାଇନଟିନ୍ଥ ସେନଚୁରୀ, ଲଣ୍ଡନ୍" (ଅକ୍ଟୋବର, 1894, 517.
6. ଦାସ, "ପ୍ରଭାତୀ ତାରା" (ଜୁଲାଇ, 1975), 175.
7. "ମହାଭାରତ", ବନପର୍ବ, 114 : 3-5, 12.
8. ବେଣୀମାଧବ ପାଢ଼ୀ, "ଦାରୁଦେବତା" (କଟକ) : କଟକ ଷ୍ଟୁଡେନ୍‌ଟସ୍ ଷ୍ଟୋର, 1964), ପୃ. 16. ଏଠାରେ ଡା. ପାଢ଼ୀ ବ୍ରହ୍ମପୁରାଣ-42-5 । ଏବଂ ସ୍କନ୍ଦ ପୁରାଣ-ପୁରୁଷୋତ୍ତମ ମହାତ୍ମ୍ୟ, ଅ 17 କୁ ପରବର୍ତ୍ତୀ ପୁରାଣରେ ଏହି ଉପାଖ୍ୟାନର ସଂଯୋଗ କରନ୍ତି ।
9. ରେଭ୍ ଯୋସେଫ୍, ଭଲଫ୍ "ନେରେଟିଭ ଅଫ୍ ଏ ମିସନ୍ ଟୁ ବୋଖରା ଇନ୍ ଦି ଇଅରସ୍ 1843-1845." (ଲଣ୍ଡନ୍ : ଜୋନ୍ ଡବ୍ଲୁ ପାରକର, 1845), ପୃ. 16. ଏବଂ ଏଲ୍. ପି. ଫିରର୍ । "ହିଷ୍ଟ୍ରୀ ଅଫ୍ ଦି

ଆଫଗାନ୍ସ", ଅନୁ : ଡବ୍ଲ୍ୟୁ. ଏମ୍. କେସି (ଲଣ୍ଡନ୍ : ଜନ୍ ମୁର୍ରେ, 1858), ପୃ. 1 ପାଦଟିକା ।

10. ମନକଓର ଡେନଏଲ୍ କନ୍‌ୱେ, "ମାର୍ଡି ପିଲ୍‌ଗ୍ରିମେଜ୍ ଟୁ ଦ ଓ୍ୱାଇଜ୍ ମେନ୍ ଅଫ୍ ଦ ଇଷ୍ଟ" (ବୋଷ୍ଟନ୍ ଏବଂ ନ୍ୟୁୟର୍କ : ହ୍ୱଗଟନ୍ ମଫଲିନ୍, 1906.

11. "ଭବିଷ୍ୟପୁରାଣ", ସର୍ଗ 3, ଅଙ୍କ 2, ଶ୍ଳୋକ 21-26.

12. "ଟ୍ରୁଥ୍", (30 ଡିସେମ୍ବର 1977), 551.



# କୃଷ୍ଣଙ୍କ ଖ୍ରୀଷ୍ଟୀକରଣ

ପ୍ରକୃତରେ ପ୍ରଭୁ ଯୀଶୁ କ'ଣ ଜଣେ ଐତିହାସିକ ପୁରୁଷ ଥିଲେ ? ଯଦି ଥିଲେ, ତେବେ ସେ କ'ଣ ଭାରତକୁ ଆସିଥିଲେ କି ? କୃଷ୍ଣ ଓ ବୁଦ୍ଧଙ୍କ ଚରିତ ଓ ଉପଦେଶ ସହ ସେ ପରିଚିତ ଥିଲେ ନା ସେ ଦୁଇ ଚରିତର ସମ୍ମିଶ୍ରଣରେ ତାଙ୍କ ଚରିତ ଲିଖିତ ହୋଇଥିଲା ତାହା ବିଚାର୍ଯ୍ୟ । ତାଙ୍କ ଚରିତ ସହ ହରିବଂଶ, ବିଷ୍ଣୁପୁରାଣ ଓ ଭାଗବତରେ ଥିବା ସାମଞ୍ଜସ୍ୟ ଏବଂ ତାଙ୍କ ଉପଦେଶ ସହ ବୌଦ୍ଧ ଧର୍ମପଦରେ ଥିବା ସାଦୃଶ୍ୟ ଆମକୁ ସନ୍ଦେହ କରିଦିଏ । ଯେହେତୁ, ବହୁ ସାମଞ୍ଜସ୍ୟ ବହୁ ସନ୍ଦେହର ଜନ୍ମ ଦେଇଥାଏ । ଏହି ସାମଞ୍ଜସ୍ୟଗୁଡ଼ିକୁ ଖୁବ୍ ନିକଟରୁ ଦେଖିବା ପୂର୍ବରୁ ପାଲେଷ୍ଟାଇନ (ପାଲେଇଷ୍ଟାଇନ୍) ଓ ହିନ୍ଦୁସ୍ଥାନ ମଧ୍ୟରେ ଥିବା ଐତିହାସିକ ସେତୁ ସହ ଆମର ପରିଚୟ ହେବା ଏକାନ୍ତ ଆବଶ୍ୟକ ।

ଲୁହାଯାଏ ସେଣ୍ଟ ଥମାସ୍ ୭୮ ଖ୍ରୀଷ୍ଟାବ୍ଦରେ ଭାରତ ଭ୍ରମଣ କରି କୃଷ୍ଣଙ୍କ ଜୀବନୀ ନୋଟ୍ କରି ନେଇଥିଲେ ଯେଉଁ ଆଧାର ଉପରେ ଖ୍ରୀଷ୍ଟଙ୍କ ବିଭିନ୍ନ ସୁସମାଚାର ଲେଖାହେଲା । ଏହା ସତ୍ୟ ନା ମିଥ୍ୟା ତାହା ବିବାଦମାନ ବିଷୟ । ଆଉ କେତେକ ବିଦ୍ୱାନଙ୍କ ମତରେ ମହାଭାରତ ଯୁଦ୍ଧ ପରେ ପରେ ଯେଉଁ ଭାଗ୍ୟହୀନମାନେ ସେହି ଯୁଦ୍ଧର ଲୋମହର୍ଷକ ଓ ଦାରୁଣ ହୃଦୟ ବିଦାରକ ଦୃଶ୍ୟ ଦେଖିଥିଲେ ସେମାନେ ଭାରତଛାଡ଼ି ମିଶର ଓ ସିରିଆ ଆଦି ଅଞ୍ଚଳରେ ବାସ କରିବାକୁ ଚାଲିଗଲେ । ଏତଦ୍ ବ୍ୟତୀତ ଯାଦବଗଣ ଶ୍ରୀକୃଷ୍ଣଙ୍କ ମୃତ୍ୟୁ ପରେ ଘରେ ଗୃହ ଯୁଦ୍ଧରେ ବ୍ୟତିବ୍ୟସ୍ତ ହୋଇ କ୍ରମାନ୍ୱୟରେ ମିଶର, ମେସୋପଟାମିଆଁ ଓ ସିରିଆ ଆଦି ସ୍ଥାନରେ ବାସ କରିବାକୁ ଲାଗିଲେ । ସେମାନେ ନିଜ ସଙ୍ଗୀତ ସ୍ୱଗାଥା, କୃଷ୍ଣ ଚରିତ ଆଦି ନେଇ ଯାଇଥିଲେ । ତା'ପରେ କାଳକ୍ରମେ ବୌଦ୍ଧ ଧର୍ମ ମଧ୍ୟ ସେହି ଅଞ୍ଚଳରେ ବିସ୍ତାର ଲାଭ କଲା । କୃଷ୍ଣ ଓ ବୁଦ୍ଧଙ୍କ ଚରିତ ଓ ଉପଦେଶର ଆଧାର ଉପରେ ଖ୍ରୀଷ୍ଟଧର୍ମର ଜନ୍ମ ହେଲା ।

ଏହି ପ୍ରଚଳିତ ମତଗୁଡ଼ିକ ସତ୍ୟ ହୋଇପାରେ, ବିଶ୍ୱାସ ମଧ୍ୟ ହୋଇପାରେ କିନ୍ତୁ ଏହାର କାରଣ ଯେ ଦୁଇଟି ଧର୍ମ ମଧ୍ୟରେ ଥିବା ବହୁ ସାଦୃଶ୍ୟ, ତାହା ଅସ୍ୱୀକାର କରାଯାଇ ପାରିବ ନାହିଁ । ଯଦି କୌଣସି ବ୍ୟକ୍ତି ଖ୍ରୀଷ୍ଟ ଓ କୃଷ୍ଣଙ୍କ ନାମ ମଧ୍ୟରେ ଏକ ଶାବ୍ଦିକ ସାମଞ୍ଜସ୍ୟ ଦେଖି ହେବ୍ରୁ ମୂଳ ଶବ୍ଦ "ମସିହ"ର ଗ୍ରୀକ୍

ଅନୁବାଦ ଭାବରେ ଖ୍ରୀଷ୍ଟଙ୍କ ତୁଳନା କଲେ ତେବେ ଆମେ କ'ଣ କହିପାରିବା ? ସେହିପରି 'ଯାଦବ' ଶବ୍ଦ ସହ "ଜୁ", ଯଦୁବଂଶ ସହ "ଜୁଡା", "ଗ୍ଲାନ" ସହ "ଗାଲିଲ" "ଆଭୀର" ସହ 'ଇବ୍ରାନୀ' ଓ 'ପୁରୁବଂଶୀ' ସହ 'ଫାରୁସୀ' ଶବ୍ଦର ଏତେ ସନ୍ନିକଟ ସାମଞ୍ଜସ୍ୟ ରହିଛି ଆଶ୍ଚର୍ଯ୍ୟ ଲାଗିବାକୁ ପଡ଼େ । ପଣ୍ଡିତ ରଘୁନନ୍ଦନ ଶର୍ମା 'ବୈଦିକ ସମ୍ପତ୍ତି'ରେ ଯାଦବ ଶବ୍ଦରୁ 'ଜିହୁ' ଶବ୍ଦ ଆସିଛି କହିବାକୁ ଯାଇ ସଂସ୍କୃତର ଗୋଟିଏ ବାକ୍ୟାଂଶ ଉଦ୍ଧାର କରି କହନ୍ତି : "ଜୁହ୍ୱାକାରେ ସଂପ୍ରତାଂ ପିଶାଚେ ଯବନେ ଅପିଚ" । ଅର୍ଥାତ "ଜୁ" ଶବ୍ଦ ଯବନ ଶବ୍ଦର ଅପଭ୍ରଂଶ ମାତ୍ର ।

ବେଦ ବର୍ଣ୍ଣିତ ଏକ ବୃକ୍ଷରେ ଦୁଇଟି ପକ୍ଷୀ ବସିଥିବା ଏବଂ ଗୋଟିଏ ପକ୍ଷୀ ଫଳ ଖାଉଥିବା ଏବଂ ଅନ୍ୟଟି ସାକ୍ଷୀରୂପେ ଦେଖୁଥିବାର ଆଲଙ୍କାରିକ ବର୍ଣ୍ଣନା କି ପ୍ରକାର ଯେ ଯିହୁଦୀଶାସ୍ତ୍ରକୁ ଗୃହୀତ ହେଲା ତାହା ବିଚାର୍ଯ୍ୟ । ଆଦମ୍ ଯେତେବେଳେ ପର୍ଯ୍ୟନ୍ତ ଫଳ ନ ଖାଇଛି ସେ ଭଲରେ ରହିଛି । ଯେଉଁଦିନ ସେ ଫଳ ଖାଇଲା ସେହିଦିନଠାରୁ ସେ ପଥଭ୍ରଷ୍ଟ ହେବା କଥା ବେଦର ଆଲଙ୍କାରିକ ବର୍ଣ୍ଣନାର ଯେ ଏକ ନବ୍ୟରୂପ ଏହା କିପରି ଅସ୍ୱୀକାର କରାଯାଇ ପାରିବ ?

ପ୍ରାଚ୍ୟଦେଶ ବା ହିନ୍ଦୁସ୍ଥାନ ଯେ ଖ୍ରୀଷ୍ଟୀୟ ଜଗତ ପାଇଁ ଅଜ୍ଞାତ ଥିଲା ତାହା ତ କୁହାଯାଇ ପାରିବ ନାହିଁ । ବାଇବେଲର ଇଷ୍ଟର ପ୍ରାରମ୍ଭରେ ଏବଂ ଅଷ୍ଟପର୍ବ ନବମ ବାକ୍ୟରେ ପାରସ୍ୟର ରାଜାଙ୍କ ସାମ୍ରାଜ୍ୟ ଯେ ହିନ୍ଦୁସ୍ଥାନ ଠାରୁ କୃଶଦେଶ ପର୍ଯ୍ୟନ୍ତ ଏକଶହ ସତାଇଶ ପ୍ରଦେଶ ଉପରେ ଥିଲା ତାହା ଉଲ୍ଲେଖ କରାଯିବା ସଙ୍ଗେ ସଙ୍ଗେ ଏହା ମଧ୍ୟ କୁହାଯାଇଥିଲା ଯେ ଏ ବିଭିନ୍ନ ଦେଶଗୁଡ଼ିକରେ ବିଭିନ୍ନ ପ୍ରକାର ଭାଷାର ପ୍ରଚଳନ ମଧ୍ୟ ଥିଲା । "ହୋଦୁ" ଶବ୍ଦଟି ଶାରପାସ୍ତ "ହିନ୍ଦୁ" ଶବ୍ଦ ମାଧ୍ୟମରେ ହିଁ ସେମିଟିକ୍ ଭାଷାଗୁଡ଼ିକୁ ପଶିଥିଲା ବୋଲି ଏଣ୍ଡ୍ରୁ ସି ସିନୋସ୍ "ଇଣ୍ଡିଆ" ଶୀର୍ଷକ ଶବ୍ଦଟିରେ "ଫଙ୍କ ଏଣ୍ଡ ଓ୍ୱାଗନର ନ୍ୟୁଷ୍ଟାଣ୍ଡାର୍ଡ ଡିକ୍ସିନାରୀ"ରେ ମତ ଦିଅନ୍ତି । ବାଇବେଲରେ ହିନ୍ଦୁସ୍ଥାନ ବ୍ୟତୀତ ଆଉ ଯେଉଁ ଶବ୍ଦଟି ହିନ୍ଦୁସ୍ଥାନ ଉଦ୍ଦେଶ୍ୟରେ ଆସେ ତା' ହେଲା ପ୍ରାଚ୍ୟଦେଶ । ଯଦିଓ ଏହା ଅନେକ ସ୍ଥଳରେ ସୂର୍ଯ୍ୟ ଉଦୟ ସମସ୍ତ ବା ପୂର୍ବରୁ ଅର୍ଥରେ ବ୍ୟବହୃତ ହୋଇଛି ତଥାପି ଏହା ଯେ ଅନେକ ସ୍ଥଳରେ ଭାରତକୁ ହିଁ ବୁଝାଉଥାଏ ଏପରି ଏକ ତଥ୍ୟ ଆଦି ପୁସ୍ତକ (୨୯;୧)ରୁ ମିଳିବ : ଅନନ୍ତରେ ଯାକୁବ ଯାତ୍ରାରେ ଅଗ୍ରସର ହୋଇ ପୂର୍ବ ଦିଗସ୍ଥ ଲୋକଙ୍କ ଦେଶରେ ଉପସ୍ଥିତ ହେଲା ।

ମହାଭାରତରେ ବର୍ଣ୍ଣିତ ବାଳକୃଷ୍ଣ ଓ ଶ୍ୱେତଦ୍ୱୀପ ଗମନ ବିଷୟକ ଆଖ୍ୟାୟିକାରୁ ଜଣାପଡ଼େ ଯେ ଯୀଶୁଙ୍କ ପୂର୍ବରୁ ଭାରତ ମଧ୍ୟପ୍ରାଚ୍ୟ ସହ ଘନିଷ୍ଠ

ପଥରେ ସଂଯୁକ୍ତ ଥିଲା । ଜନ୍‌ଡୋଲ ମେକ୍‌ଡାନ୍‌ଡୋଲ ତାଙ୍କ ପ୍ରସିଦ୍ଧ ପୁସ୍ତକ "ଦି ଚଲ-କାସୁସ୍ କ୍ଲେଷ୍ଟ ଅଫ ଇଣ୍ଡିଆ : ଇଣ୍ଡିଅନ ଥେଉଜିମ୍ ଫ୍ରମ୍ ଦ ବେଦନ୍ ଟୁ ଦ ମହମଡ଼ିଆନ୍ ପିରିଅଡ"ରେ ଏହି ତିନୋଟି ପଥ ସମ୍ପର୍କରେ କହନ୍ତି :

୧ । ଇଜିପ୍ଟ ଓ ଆଲେକ୍‌ଜାଣ୍ଡ୍ରିଆ ଠାରୁ

୨ । ପରସିଆନ୍ ଗୁଲଫ୍ ଉପକୂଳରୁ

୩ । ମଧ୍ୟ ଏସିଆରୁ

ଏ ପ୍ରକାର ଭାରତ ସହ ପଥ ଓ ଭାରତଠାରୁ ପଥ ଉନ୍ମୁକ୍ତ ଥିଲା । ଏ ପଥ ଦେଇ ଲୋକେ ଆସୁଥିଲେ ଏବଂ ଏଠାରୁ ଯାଉଥିଲେ । ଐତିହାସିକ ଏ. ଭି ସ୍ମିଥ୍‌ଙ୍କ ମତରେ ମିଶରରେ ଖ୍ରୀଷ୍ଟପୂର୍ବ ୨୮୫-୨୪୭ରେ ଆଫ୍ରିକାରେ ଖ୍ରୀଷ୍ଟପୂର୍ବ ୩୫୪-୨୫୮ରେ ମେସିଡୋନିଆରେ ଖ୍ରୀଷ୍ଟପୂର୍ବ ୨୭୨-୨୩୫ରେ ବୌଦ୍ଧ ଭିକ୍ଷୁମାନଙ୍କ-ଦ୍ୱାରା ବୌଦ୍ଧଧର୍ମ ପ୍ରଚାର ହୋଇ ସାରିଥିଲା । ଐତିହାସିକ ମହାଫ ଖ୍ରୀଷ୍ଟପୂର୍ବ ୨୦୦ରେ ବୌଦ୍ଧ ପରିବ୍ରାଜକଗଣ ଶିରିଆ ଯିବା କଥା ଲେଖନ୍ତି । ଯିହୁଦୀ ଐତିହାସିକ ଫାଇଲୋଙ୍କ ଅନୁସାରେ ଇଜିପ୍ଟର ମଠଗୁଡ଼ିକରେ ସବୁଧର୍ମର ଲୋକେ ବାସ କରୁଥିଲେ । ପୂର୍ବ ଦେଶୀୟ କୃଷ୍ଣଭକ୍ତ ପତିତପାବନ ବ୍ରାହ୍ମଣମାନେ ମଧ୍ୟ ସେମାନଙ୍କ ମଧ୍ୟରୁ ଅନ୍ୟତମ । କୃଷ୍ଣଙ୍କ ଚରିତ ଏବଂ ବୁଦ୍ଧଙ୍କ ଜାତକ ଓ ଉପଦେଶର ପ୍ରଭାବ ଯେ ଖ୍ରୀଷ୍ଟଙ୍କ ଉପରେ ପଡ଼ି ନ ଥିବ ତାହା କିଏ କହିବ ? ଏହିସବୁ କାରଣରୁ ତ କୁହାଯାଉଛି ଯେ ଯୀଶୁ ଭାରତରେ ଅଜ୍ଞାତ ବାସ କରିଥିଲେ । ଯିରୁଶାଲମରୁ ଭାରତବର୍ଷକୁ ସେ କପରି ଆସିଥିବେ ? ଏହା ଅବିଶ୍ୱାସନୀୟ କହିବା ସମୟରେ ଜାଣିବା ଉଚିତ ଯେ ଖ୍ରୀଷ୍ଟଙ୍କ ବହୁବର୍ଷ ପୂର୍ବରୁ ପ୍ଲେଟୋ ମଧ୍ୟ ଭାରତକୁ ବିଦ୍ୟାଶିକ୍ଷା ଉଦ୍ଦେଶ୍ୟରେ ଆସିଥିଲେ । ଉଇଲ୍‌ଡୁରାଣ୍ଟ ତାଙ୍କ "ଷ୍ଟୋରି ଅଫ୍ ଫିଲୋସଫି"ରେ କହନ୍ତି ଯେ ପ୍ଲେଟୋ ସକ୍ରେଟିସ୍‌ଙ୍କ ପ୍ରାଣଦଣ୍ଡ ପରେ କେତେକ ବନ୍ଧୁଙ୍କ ସହ ଏଥେନ୍‌ସର ନିକଟବର୍ତ୍ତୀ ନଗରକୁ ଚାଲିଗଲେ । ଏହାପରେ ତାଙ୍କର ବାରବର୍ଷର ଇତିହାସ ଅଜ୍ଞାତ । ଯଦ୍ୟପି ଏ ସମ୍ପର୍କରେ ଏହି ଅନୁଶ୍ରୁତି ପ୍ରସିଦ୍ଧ ଅଛି ଯେ ସେ ଏହି ସମୟରେ ଅନବରତ ଇଟାଲି, ଗ୍ରୀସ୍ ଓ ମିଶରର ବିଭିନ୍ନ ନଗରରେ ବୁଲୁଥିଲେ । ଏପରିକି ସେ ଭାରତର ଗଙ୍ଗାତଟ ପର୍ଯ୍ୟନ୍ତ ଯାତ୍ରା ମଧ୍ୟ କରିଥିଲେ । ପ୍ଲେଟୋ ଯଦି ଆସିବାରେ ଗମ୍ଭୀର କଣ୍ଟକାକୀର୍ଣ୍ଣ ହୋଇନାହିଁ ଯୀଶୁଙ୍କ ଆସିବାରେ ଅସୁବିଧା କେଉଁଠି ?

ଭାରତସହ ପାଲେଷ୍ଟାଇନ ଅଞ୍ଚଳର ଯେ ଯୋଗାଯୋଗ ଘନିଷ୍ଠ ଥିଲା ତା'ର କେତେକ ଐତିହାସିକ ତଥ୍ୟ ଦେବା ଆବଶ୍ୟକ । ସନ୍ଥ ମାଥିଉଙ୍କଠାରୁ ଆମେ

ଜାଣିଛୁ ଯେ ଭାରତର ପଣ୍ଡିତମାନେ ଯୀଶୁଙ୍କ ଦର୍ଶନ କରିବା ପାଇଁ ଯାଇ ସୁନା, କୁନ୍ଦୁରୁ ଓ ଗନ୍ଧରସ ଦର୍ଶନୀ ରୂପେ ଦେଇଥିଲେ । ଐତିହାସିକ ପ୍ଲୁଟାର୍କଙ୍କ ଅନୁସାରେ ଲୋହିତ ସାଗର ଅତିକ୍ରମ କରି ବୌଦ୍ଧଭିକ୍ଷୁମାନେ ଆଲେକ୍‌ଜେଣ୍ଡ୍ରିଆରେ ପହଞ୍ଚିଥିଲେ । ମହାରାଜ ଅଶୋକଙ୍କର ଗିରନାର ଶିଳାଲେଖରୁ ମଧ୍ୟ ଜଣାଯାଏ ଯେ ବୌଦ୍ଧ ପ୍ରଚାରକଗଣ ସିରିଆ ଆଦି ଦେଶକୁ ପ୍ରଚାର ପାଇଁ ଯାଇଥିଲେ । ପ୍ରଥମ ଶତାବ୍ଦୀର ପ୍ରାରମ୍ଭରେ ଏସିଆବାସୀ କୁଶାଣ ଜାତି ଭାରତରେ ଆଧିପତ୍ୟ ବିସ୍ତାର କରିଥିଲେ । ସେମାନଙ୍କ ମଧ୍ୟରୁ ଶ୍ରେଷ୍ଠ ରାଜା କନିଷ୍କ ଅଶୋକଙ୍କ ପ୍ରଦର୍ଶିତ ବୌଦ୍ଧ ଧର୍ମରେ ଦୀକ୍ଷିତ ହୋଇ ବୌଦ୍ଧଧର୍ମକୁ ରାଷ୍ଟ୍ରଧର୍ମ ଭାବରେ ଘୋଷଣା କଲେ । ତତ୍କାଳୀନ ପ୍ରସିଦ୍ଧ ପଣ୍ଡିତ ବସୁମିତ୍ର, ନାଗାର୍ଜୁନ, ଅଶ୍ୱଘୋଷ ବୌଦ୍ଧଧର୍ମ ସହ ବେଦାନ୍ତ ଓ କପିଳଙ୍କ ଦର୍ଶନର ସମ୍ମିଶ୍ରଣରେ ମହାଯାନ ମତକୁ ସୁଦୃଢ଼ କଲେ ଯାହା ଗ୍ରୀକ୍ ଦର୍ଶନକୁ ମଧ୍ୟ ପରିପୁଷ୍ଟ କରିଥିଲା । ପ୍ରଥମ ଶତାବ୍ଦୀରେ ଏହା ସମଗ୍ର ଏସିଆରେ ପ୍ରସାରିତ ହେଲା ଏବଂ ଦ୍ୱିତୀୟ ଶତାବ୍ଦୀରେ ବିରଚିତ ସୁସମାଚାର ଚତୁଷ୍ଟୟ ଯେ ଏହାର ପରବର୍ତ୍ତୀ ରଚନା ତାହା ତତ୍କାଳୀନ ଐତିହାସିକ ଇରେନିଅସ୍, ଟର୍‌ଟୁଲିଏନ୍ ଏବଂ କ୍ଲେମେଣ୍ଟ କହନ୍ତି ।

ପୁନଶ୍ଚ ପ୍ରଥମ ଶତାବ୍ଦୀର ପ୍ରସିଦ୍ଧ ରୋମାନ ଐତିହାସିକ ପ୍ଲିନୀ ଉଲ୍ଲେଖ କରନ୍ତି ଯେ ପାଲେଷ୍ଟାଇନ୍‌ରେ ଯୀଶୁଙ୍କ କେତେ ଶତାବ୍ଦୀ ପୂର୍ବରୁ ଏସେନୈସ୍ ନାମକ ଏକ ସଂପ୍ରଦାୟ ଥିଲା । ଏହି ସମ୍ପ୍ରଦାୟର ସଂସ୍ଥାପକ ଥିଲେ ଏସୋ ବା ଏସିନ୍ । ମୃତସାଗରର ପଶ୍ଚିମ ତଟରେ ଏଙ୍ଗାଦି ନାମକ ନଗରରେ ଏମାନଙ୍କ ପ୍ରଧାନ ମଠ ଥିଲା । ଆଧୁନିକ ଗବେଷକଙ୍କ ଦ୍ୱାରା ଏହା ପ୍ରମାଣିତ ହୋଇ ସାରିଛି ଯେ ଏହି ସମ୍ପ୍ରଦାୟ ବୌଦ୍ଧ ଧର୍ମର ଏକ ଶାଖା ଥିଲା । ଏ ସମ୍ପ୍ରଦାୟ କାରଣରୁ ପରବର୍ତ୍ତୀ ଖ୍ରୀଷ୍ଟିୟାନ ଧର୍ମରେ ଭକ୍ତିଭାବର ପ୍ରଭାବ ପଡ଼ିଲା । ଏହା ବାସ୍ତବରେ ସ୍ଥାନୀୟ ଭାଷା ଓ ପରମ୍ପରା ସମ୍ମିଶ୍ରିତ ବୌଦ୍ଧ ଧର୍ମ ଥିଲା ତାହା ଏବେ ଜଣାପଡ଼ିଲା । ମିଶର ଦେଶରେ ମଧ୍ୟ ଏ ପ୍ରକାରର 'ଥେରାପେଉଟେ' ନାମକ ଏକ ସମ୍ପ୍ରଦାୟ ଥିଲା ଏ କଥା 'ଲାଇଫ୍ ଅଫ ଯୀଶସ୍'ର ସୁପ୍ରସିଦ୍ଧ ବିଦ୍ୱାନ ପାଦ୍ରୀ ଅର୍ନେଷ୍ଟ ରେନନ୍ ସ୍ୱୀକାର କରିବା ସଙ୍ଗେ ସଙ୍ଗେ କହନ୍ତି ଯେ ଏହା ଏସେନୈସ୍ ସମ୍ପ୍ରଦାୟର ଏକ ଶାଖାରୂପେ କାର୍ଯ୍ୟ କରୁଥିଲା ଯାହାର ମୂଳ ଥିଲା ବୌଦ୍ଧଧର୍ମରେ । ଏପରିକି ଯୀଶୁଙ୍କୁ ଜଳଦୀକ୍ଷା ଦେଇଥିବା ସନ୍ଥ ଯୋହନ ମଧ୍ୟ ଏହି ସମ୍ପ୍ରଦାୟର ସାଧୁ ଥିଲେ । ଏସେନୈସ୍ ସମ୍ପ୍ରଦାୟର ଜଳଦୀକ୍ଷା ଯୋହନଙ୍କ ମାଧ୍ୟମରେ ଖ୍ରୀଷ୍ଟଧର୍ମକୁ ପ୍ରବେଶ କଲା ଯାହା ବୌଦ୍ଧଧର୍ମର 'ଅଭିଷେକର' ଅନ୍ୟ ସ୍ୱରୂପ ଥିଲା । ଅଶୋକଙ୍କ ସମୟରେ ବୌଦ୍ଧଧର୍ମ ଓ ସଂଘକୁ ସ୍ୱୀକାର କରିବା ପରି ଖ୍ରୀଷ୍ଟଧର୍ମରେ ଏହା ପିତା, ପୁତ୍ର ଓ

ପବିତ୍ର ଆତ୍ମାଙ୍କୁ ସ୍ୱୀକାର କରିବା କଥା ନିର୍ଦ୍ଦେଶ ଦିଆଯାଇଛି । ଏସବୁ ଇତିହାସର ବିଷୟବସ୍ତୁ । ଏଥର ଆସନ୍ତୁ ଯୀଶୁଙ୍କ ଜୀବନ ଓ କାର୍ଯ୍ୟ ସହ କୃଷ୍ଣ ଓ ବୁଦ୍ଧଙ୍କ ଜୀବନ କାର୍ଯ୍ୟର ତୁଳନାତ୍ମକ ଅଧ୍ୟୟନ କରିବା । ସାମଞ୍ଜସ୍ୟ ଯେତେ ଘନିଷ୍ଠତର ହେଲେ ମଧ୍ୟ ଯୀଶୁଙ୍କ ଐତିହାସିକ ବ୍ୟକ୍ତିତ୍ୱକୁ ମୁଁ ବ୍ୟକ୍ତିଗତ ଭାବରେ ଅସ୍ୱୀକାର କରେନାହିଁ । ତେବେ ମୁଁ ଆଶ୍ଚର୍ଯ୍ୟ ନହୋଇ ରହିପାରେ ନା ଯେ କଥା ଓ କାର୍ଯ୍ୟରେ ଏତେ ସମାନତା କିପରି ଆସୁଛି । ପ୍ରଥମରେ କୃଷ୍ଣଙ୍କ ସହ ଏହି ତୁଳନା ହେଉ ।

କୃଷ୍ଣ ଓ ଖ୍ରୀଷ୍ଟଙ୍କ ଜନ୍ମ ପୂର୍ବରୁ ତାଙ୍କ ଜନ୍ମ ହେବାର ଭବିଷ୍ୟବାଣୀ ହୋଇଛି ଯେ ଧର୍ମରକ୍ଷା ପାଇଁ ସେ ସଂସାରରେ ଅବତୀର୍ଣ୍ଣ ହେବେ । ହରିବଂଶ ଓ ବିଷ୍ଣୁ ପୁରାଣରେ ବର୍ଣ୍ଣିତ ହୋଇଛି ଯେ କୃଷ୍ଣଙ୍କ ଜନ୍ମ ଅନ୍ଧାର ରାତିର ଅଷ୍ଟମୀ ତିଥିରେ ହୋଇଥିଲା । ତଦ୍ରୂପ ହେଣ୍ଡ୍ରାପଜଙ୍କ କେଲେଣ୍ଡର ଅନୁସାରେ ମରିୟମ ୮ ଡିସେମ୍ବରରେ ଗର୍ଭବତୀ ହେଲେ ଏବଂ ଆଠମାସ ପରେ ଅର୍ଥାତ୍ ୭ ଅଗଷ୍ଟରେ ଯୀଶୁ ଜନ୍ମ ହେଲେ । (ଏଠି ମୁଁ କହିରଖୁଛି ଯେ ଏ ତଥ୍ୟ ସମ୍ପର୍କରେ ଖ୍ରୀଷ୍ଟ ସଂପ୍ରଦାୟର ଅନେକ ମତପାର୍ଥକ୍ୟ ରହିଛି, ଏଣୁ ଏହାକୁ ମାନିନେବାର କୌଣସି କାରଣ ନାହିଁ) ।

ଯଦୁଙ୍କଠାରୁ କୃଷ୍ଣଙ୍କ ପର୍ଯ୍ୟନ୍ତ ୪୩ ବଂଶଧର ଥିଲେ । [ଭାଗବତ ସ୍କନ୍ଧ ୯, ବିଷ୍ଣୁପୁରାଣ ୪ : ୧୧-୧୪] ଠିକ୍ ଏହାର ଅନୁକରଣ ବାଇବେଲରେ ଅବ୍ରାମ ଅବ୍ରାହମ୍ ଅଙ୍କଠାରୁ ଖ୍ରୀଷ୍ଟଙ୍କ ପର୍ଯ୍ୟନ୍ତ ୪୨ ପିଢ଼ି ହୁଏ । ଆଉ ପୁସ୍ତକ କମ୍ପା ମାଥିଉ ଲିଖିତ ସୁସମାଚାର (୧ : ୧୭) ଅନୁସାରେ : ଏହି ପ୍ରକାର ସର୍ବସୁଦ୍ଧା ଅବ୍ରାହମଙ୍କ-ଠାରୁ ଦାଉଦଙ୍କ ପର୍ଯ୍ୟନ୍ତ ଚଉଦ ପୁରୁଷ, ଆଉ ଦାଉଦଙ୍କଠାରୁ ବାବିଲୋନ ନିର୍ବାସନ ପର୍ଯ୍ୟନ୍ତ ଚଉଦ ପୁରୁଷ, ପୁଣି ବାବିଲୋନ ନିର୍ବାସନଠାରୁ ଖ୍ରୀଷ୍ଟଙ୍କ ପର୍ଯ୍ୟନ୍ତ ଚଉଦ ପୁରୁଷ, ଏଥିରେ ଭୁଲବଶତଃ ଯାକୁବ ଓ ଯିହୁଦା ମଝିରେ ଚତୁର୍ଥ ପିଢ଼ିରେ ନହୁଷଙ୍କ ନାମ ଉଲ୍ଲେଖ କରାଯାଇ ନାହିଁ । ଏଣୁ ଏହା ୪୩ ପିଢ଼ି ନ ହୋଇ ୪୨ ହେଲା । ସେ ପ୍ରକାର ୫ମ ପିଢ଼ିରେ 'ଯଦୁ' କୃଷ୍ଣଙ୍କ ପିଢ଼ି ଥିଲା ତଦ୍ରୂପ ୫ମରେ ଯିହୁଦା ଖ୍ରୀଷ୍ଟଙ୍କ ପୂର୍ବ ପିଢ଼ିରେ ରହନ୍ତି ।

ଭାଗବତ [୧୦ : ୨ : ୧୭-୧୮]ରେ ଉଲ୍ଲେଖ ଅଛି ଭଗବାନ ବିଷ୍ଣୁ ସ୍ୱୟଂ ଦେବକୀଙ୍କ ଗର୍ଭରେ ଆସି କୃଷ୍ଣ ହୋଇ ଜନ୍ମନେଲେ । ବାଇବେଲରେ କୁହାଗଲା, ପବିତ୍ର ଆତ୍ମା ତୁମ୍ଭ ଉପରେ ଅବତରଣ କରିବେ ଓ ପରାତ୍ପରଙ୍କ ଶକ୍ତି ତୁମ୍ଭଙ୍କୁ ଆବୋରିବ । ଏଣୁ ଯେ ଜାତହେବେ ସେ ପବିତ୍ର ଓ ଈଶ୍ୱରଙ୍କ ପୁତ୍ର ବୋଲି ଖ୍ୟାତ ହେବେ । (ଲୂକ ୧ : ୩୫)

ଭାଗବତ (୧୦ : ୩ : ୧୭) ଲେଖନ୍ତି : ଦେବକୀ କହିଲେ—ସେ ପାପୀ କଂସକୁ ଏ କଥା ଜଣା ନ ପଡ଼ିବା କଥା ଯେ ତୁମ୍ଭର ଜନ୍ମ ମୋ ଗର୍ଭରେ ହୋଇଛି । ମୋର ଧୈର୍ଯ୍ୟ ଭାଙ୍ଗି ଯାଉଛି; ମୁଁ ଭୟ କରୁଛି । ସେ ସମୟର ଗର୍ଭବତୀ ମରିୟମ ଭୟଭୀତା ଥିବା କଥା ଲୂକ (୧ : ୩୦) ଲେଖନ୍ତି : ସେଥିରେ ଦୂତ ତାହାଙ୍କୁ କହିଲେ, ଆଗୋ ମରିୟମ, ଭୟ କରନାହିଁ ।

ଭାଗବତ (୧୦ : ୩ . ୫-୭) ରେ କୃଷ୍ଣଙ୍କ ଜନ୍ମ ପରେ ପରେ ଦେବତାଗଣ ଆନନ୍ଦୋତ୍ସବ କରିଥିବା କଥା ଖୁବ୍ ସୁନ୍ଦର ଭାବରେ ବର୍ଣ୍ଣିତ ହୋଇଛି । ଏକଥା ଲୂକ (୨ : ୧୩-୧୫) ଉଲ୍ଲେଖ କରନ୍ତି : ଅକସ୍ମାତ ସେହି ଦୂତଙ୍କ ସାଙ୍ଗରେ ସ୍ୱର୍ଗୀୟ ବାହିନୀର ଗୋଟିଏ ବୃହତ୍ତ ଦଳ ଉପସ୍ଥିତ ହୋଇ ଈଶ୍ୱରଙ୍କ ସ୍ତବଗାନ କରୁ କରୁ କହିଲନ୍ତି—

ଊର୍ଦ୍ଧ୍ୱ ଲୋକରେ ଈଶ୍ୱରଙ୍କ ମହିମା,
ପୁଣି ମର୍ତ୍ତ୍ୟରେ ତାହାଙ୍କ ସନ୍ତୋଷ ପାତ୍ର
ମନୁଷ୍ୟମାନଙ୍କ ମଧ୍ୟରେ ଶାନ୍ତି ।

କଂସ ଭୟରେ କୃଷ୍ଣ ବାସୁଦେବଙ୍କ ପ୍ରାର୍ଥନା ଶୁଣି କହିଛନ୍ତି, ମତେ ଗୋପନରେ ନନ୍ଦଘରେ ନେଇ ଛାଡ଼ି ଆସ । ମାଥିଉ (୨ : ୧୩-୧୪) କହନ୍ତି . ପ୍ରଭୁଙ୍କ ଦୂତ ସ୍ୱପ୍ନରେ ଯୋସେଫଙ୍କୁ ଦର୍ଶନ ଦେଇ କହିଲେ, ଉଠ, ଶିଶୁ ଓ ତାହାଙ୍କ ମାତାଙ୍କୁ ଘେନି ମିଶରକୁ ପଳାଅ, ପୁଣି ଆମ୍ଭେ ତୁମ୍ଭଙ୍କୁ ନ କହିବା ପର୍ଯ୍ୟନ୍ତ ସେଠାରେ ରୁହ, କାରଣ ଶିଶୁଙ୍କୁ ବିନାଶ କରିବା ନିମନ୍ତେ ହେରୋଦ ତାହାଙ୍କୁ ଅନ୍ୱେଷଣ କରିବାକୁ ଉଦ୍ୟତ । କଂସ ଦେବକୀ ପୁତ୍ର ଜନ୍ମ ହେବାମାତ୍ରେ ଖୋଜି ଖୋଜି ସମସ୍ତ ଶିଶୁଙ୍କୁ ବଧ କରୁଥିଲେ । ସେଥିପାଇଁ ବସୁଦେବ (ଯୋସେଫ) ନନ୍ଦ ଘରେ କୃଷ୍ଣଙ୍କୁ (ଖ୍ରୀଷ୍ଟଙ୍କୁ) ଛାଡ଼ି ଆସିଲେ । ନନ୍ଦଘର ଓ ନାଜରଥର ସାମଞ୍ଜସ୍ୟ ଖୁବ୍ ଆଶ୍ଚର୍ଯ୍ୟ ଲାଗେ । କୃଷ୍ଣ ଜନ୍ମ ହୋଇଛନ୍ତି ଶୁଣି କଂସ ମଥୁରାର ଆଖପାଖରେ ଜନ୍ମ ନେଇଥିବା ସମସ୍ତ ଶିଶୁଙ୍କୁ ବଧ କଲେ । (ଭାଗବତ ୧୦ : ୭) ସେହିପରି ଅଳ୍ପ ବୟସ୍କ ଯେତେ ବାଳକ ଥିଲେ ବେଥଲହମ୍ ନିକଟ ସେ (ହେରୋଦ) ସମସ୍ତଙ୍କୁ ବଧ କରାଇଥିଲେ । (ମାଥିଉ ୨ : ୧୬)

କୃଷ୍ଣଙ୍କ ଗୋବର୍ଦ୍ଧନ ପୂଜା, ଯୀଶୁଙ୍କ ପର୍ବତ ଉପରୁ ଉପଦେଶ ସହ ଘନିଷ୍ଠ ସମ୍ପର୍କ ରଖେ । କୃଷ୍ଣ କୁବ୍‌ଜାକୁ ସିଧା କଲାପରି ଯୀଶୁ 'କୁବଜା'କୁ ସିଧା କରନ୍ତି । [ଲୂକ ୧୩ : ୧୧-୧୪] ଗୋପୀ ପ୍ରେମ କୃଷ୍ଣ ଓ ଖ୍ରୀଷ୍ଟ ଉଭୟ ଚରିତ୍ରକୁ ଭକ୍ତି ପାବନ

କରନ୍ତି । ଗୋପୀମାନେ କୃଷ୍ଣଙ୍କ ପାଇଁ କ୍ରନ୍ଦନ କରୁଥିଲେ । ଅକ୍ରୁର କୃଷ୍ଣଙ୍କୁ ନେବା ସମୟରେ ବିଳାପ କରୁଥିଲେ । କୁବ୍‌ଜା କୃଷ୍ଣଙ୍କ ଶିରରେ ଚନ୍ଦନ ଲଗାଇଥିବା, ମାଲୀ ତାଙ୍କୁ ମାଲରେ ସୁସଜ୍ଜିତ କରିଥିବା ମାଥିଉ [୨୬ : ୭] ଖ୍ରୀଷ୍ଟଙ୍କ ଚରଣରେ ଅବିକଳ ଚିତ୍ରଣ କରିଥିବା ପରି ମନେ ହୁଏ । ଯୀଶୁ ବେଥନିଆଁରେ କୁଷ୍ଠୀ ଶିମୋନଙ୍କ ଗୃହରେ ଥିବା ସମୟରେ ଜଣେ ସ୍ତ୍ରୀ ଲୋକ ଗୋଟିଏ ପାତ୍ରରେ ବହୁମୂଲ୍ୟ ସୁଗନ୍ଧି ତୈଳ ନେଇ ତାହାଙ୍କ ନିକଟକୁ ଆସିଲେ ଏବଂ ସେ ଭୋଜନରେ ବସିଥିବା ସମୟରେ ତାହାଙ୍କ ମସ୍ତକରେ ଢାଳିବାକୁ ଲାଗିଲେ । ଯୀଶୁ ଭଲ ଓ ଖରାପ ମାଳୀର ଦୃଷ୍ଟାନ୍ତ ଦେଇ [ମାଥିଉ ୨୧, ୩୩-୪୧] କୃଷ୍ଣଙ୍କ ମାଳି କଥା ମନେ ପକାଇ ଦିଅନ୍ତି । କୃଷ୍ଣଙ୍କ ପଛରେ ଗୋପୀମାନେ ଅନୁଧାବନ କରିଥିବା ପରେ ଖ୍ରୀଷ୍ଟଙ୍କୁ ଅନେକ ସ୍ତ୍ରୀ ଯେରୂସାଲମରୁ ଆସି ଗାଲିଲିରେ ତାଙ୍କ ସେବାରତ ଥିଲେ । [ମାର୍କ ୧୫ : ୪୧] ସେ ଗାଲିଲରେ ଥିବା ସମୟରେ ସେମାନଙ୍କର ପଶ୍ଚାତ୍ ଗମନ କରି ତାହାଙ୍କ ସେବା କରୁଥିଲେ । ତାହାଙ୍କ ସହିତ ଯିରୂଶାଲମକୁ ଆସିଥିବା ଅନେକ ସ୍ତ୍ରୀ ଲୋକ ମଧ୍ୟ ଦେଖୁଥିଲେ । ଗୋପୀମାନେ କୃଷ୍ଣଙ୍କୁ ଯେପରି ପବିତ୍ର ଭାବରେ ପ୍ରେମ ଓ ଭକ୍ତି କରୁଥିଲେ, ତାଙ୍କ ପାଇଁ କାନ୍ଦୁଥିଲେ ଏବଂ ସମସୁଖୀ ଦୁଃଖୀ ଥିଲେ ଓ କୃଷ୍ଣମଧ୍ୟ ଅନୁରୂପ ସେମାନଙ୍କ କଥା ଚିନ୍ତା କରୁଥିଲେ ତଦ୍ରୂପ ଖ୍ରୀଷ୍ଟଙ୍କୁ ନାରୀମାନେ ପ୍ରେମ ଓ ଭକ୍ତି କରୁଥିଲେ, ତାଙ୍କ ଦୁଃଖରେ ବିଳାପ କରୁଥିଲେ । ଲୂକ ( ୨୩.୨୭ ) ରେ କହନ୍ତି ଯେ ଖ୍ରୀଷ୍ଟ କ୍ରୁଶକୁ ଯିବା ସମୟରେ ଲୋକମାନଙ୍କର ଓ ତାହାଙ୍କ ନିମନ୍ତେ ବକ୍ଷଘାତ କରି ବିଳାପ କରୁଥିବା ସ୍ତ୍ରୀ ଲୋକମାନଙ୍କର ମହା ଜନତା ତାହାଙ୍କର ପଶ୍ଚାଦଗମନ କରୁଥିଲେ । କିନ୍ତୁ ଯୀଶୁ ସେମାନଙ୍କ ଆଡ଼କୁ ବୁଲିପଡ଼ି କହିଲେ, ହେ ଯିରୂଶାଲମ୍‌ର କନ୍ୟାମାନେ, ମୋ ନିମନ୍ତେ, ରୋଦନ କରନାହିଁ, ବରଂ ଆପଣା ଆପଣା ନିମନ୍ତେ ଓ ଆପଣା ଆପଣା ସନ୍ତାନମାନଙ୍କ ନିମନ୍ତେ ରୋଦନ କର [୨୮] କୌଣସି ପୁରୁଷର ଉଲ୍ଲେଖ ନାହିଁ ଯିଏ ଖ୍ରୀଷ୍ଟଙ୍କ ପାଇଁ ବିଳାପ କରିଛି କିମ୍ବା ଖ୍ରୀଷ୍ଟଙ୍କ କବରକୁ ଦେଖିବାକୁ ଯାଇଛି । ସ୍ତ୍ରୀଗଣ କହିବା ପରେ ତାଙ୍କର ଦୁଇଜଣ ଶିଷ୍ୟ ତୃତୀୟ ଦିନ କବର ପାଖକୁ ଯାଇଛନ୍ତି । କୃଷ୍ଣଙ୍କ ସହ ଗୋପୀମାନଙ୍କ ପ୍ରସଙ୍ଗ ଖ୍ରୀଷ୍ଟଙ୍କ ସହ ସ୍ତ୍ରୀମାନଙ୍କ ପ୍ରସଙ୍ଗରେ ଅନୁରୂପ ନୁହେଁ କି ?

କୃଷ୍ଣ ଅର୍ଜ୍ଜୁନଙ୍କୁ ପ୍ରେମ କରିବା ପରି ବାର ଭାଇଙ୍କ ମଧ୍ୟରୁ ଖ୍ରୀଷ୍ଟ ଇଲିୟାଜର ସହ ଘନିଷ୍ଠ ଲଗାଇ ପ୍ରେମ କରୁଥିଲେ । ଇଲିୟାଜର ଖ୍ରୀଷ୍ଟଙ୍କ ପରେ ମଧ୍ୟ ବଞ୍ଚି ରହିଥିଲେ ଏବଂ ତାଙ୍କ ପିତାଙ୍କୁ ମହାରାଜ ପାଣ୍ଡୁଙ୍କ ପରି କୁଷ୍ଠରୋଗ ହୋଇ ଯାଇଥିଲା । ବହୁଥର କୃଷ୍ଣ ମଥୁରା ଆସିବାପରି ଖ୍ରୀଷ୍ଟ ବହୁଥର ଯିରୂଶାଲମ ଆସନ୍ତି । କୃଷ୍ଣ ଶିଆଳ

ଲଟାରେ ବସିଥିବା ସମୟରେ ଶତ୍ରୁ ତାଙ୍କୁ ଶରବିଦ୍ଧ କଲେ । ତଦ୍ରୂପ ଯୋହନ [୧୯ : ୩୪] ଲେଖନ୍ତି : ସୈନ୍ୟମାନଙ୍କ ମଧ୍ୟରୁ ଜଣେ ବର୍ଚ୍ଛାରେ ତାଙ୍କ ବକ୍ଷଦେଶକୁ ବିଦ୍ଧକଲେ । ଜନ୍ମ ଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଏକ ଓ ସମାନ ଚରିତ ନେଇ କୃଷ୍ଣ ଖ୍ରୀଷ୍ଟ ପ୍ରାଚ୍ୟ ଓ ପାଶ୍ଚାତ୍ୟର ବିଶ୍ୱାସର ପ୍ରମୂର୍ତ୍ତୀ ହୋଇ ରହିଛନ୍ତି । କୃଷ୍ଣଙ୍କ ଜନ୍ମରେ ଅଭିଜିତ ନକ୍ଷତ୍ର ଉଦୟ ହେବାପରି ଖ୍ରୀଷ୍ଟଙ୍କ ଜନ୍ମ ସ୍ଥାନରେ 'ଷ୍ଟାର ଅଫ୍ ଇଷ୍ଟ'' ଉଦୟ ହେବା, ଦୁହିଁଙ୍କ ଏକତର୍ଷ ବୟସରେ ନାମକରଣ ବାର ବର୍ଷରେ ଉପବୀତ ଧାରଣ ବା ବାପ୍ତିସ୍ମ ପୂର୍ଣ୍ଣତଃ ସମାନତା ରକ୍ଷାକରେ । ଫକୀରମୋହନଙ୍କ ''ଅବସର ବାସରେ'' ଗ୍ରନ୍ଥରେ ''କୃଷ୍ଣ ଓ ଖ୍ରୀଷ୍ଟ'' ଶୀର୍ଷକ କବିତାଟି ପଢ଼ାଯାଇପାରେ । ସେଥିରେ ସେ କ୍ରମ୍ପନ୍ତୋ ଅନେକ ସାମଞ୍ଜସ୍ୟ ଦେଖାଇଛନ୍ତି ।

ଯଦୁବଂଶ ଯୁଡାବଂଶ, ଯାଦବ, କୃଷ୍ଣ, ଯୀଶୁ ଖ୍ରୀଷ୍ଟ, କୃଷ୍ଣ, କଂସ ରାଜା ଡରରେ ଗୋପପୁର ଯିବାପରି ହେରୋଦ ଭୟରେ ଖ୍ରୀଷ୍ଟ ମିଶରକୁ ଯିବା, ଗୁରୁପୁତ୍ରଙ୍କୁ କୃଷ୍ଣ ଜୀବନ ଦାନ ଦେବାପରି ଖ୍ରୀଷ୍ଟ ଅନେକ ମୃତକଙ୍କୁ ଜୀବନ ଦାନଦେବା, କାମ୍ୟକ ବନରେ କୃଷ୍ଣ ଶାଳନଟାଶିଟାଚିକୁ ଦ୍ୱାଦଶ ହଜାର ବିପ୍ରଙ୍କୁ ଦେବା ପରି ଖ୍ରୀଷ୍ଟ କିଛି ରୁଟୀ ଓ ମାଛକୁ ସହସ୍ର ଲୋକଙ୍କୁ ଭୋଜନ କରାଇବା, କୃଷ୍ଣ ସାଗରକୁ ପ୍ରବେଶ କରିବାପରି ଖ୍ରୀଷ୍ଟ ସାଗର ଉପରେ ଚାଲିବା, କୃଷ୍ଣ ପଥରକୁ ଲକ୍ଷ୍ମୀ କରିବାପରି ଖ୍ରୀଷ୍ଟ ମଦରୁ ରକ୍ତକରିବା; କୃଷ୍ଣଙ୍କ ପିତା ବସୁଦେବଙ୍କ ଖ୍ରୀଷ୍ଟଙ୍କ ପିତା ଯୀଶୁ (ଯୋଶେଫ) ହେବା କୃଷ୍ଣଙ୍କ ଦ୍ୱାଦଶ ଗୋପାଳ ଥିବାପରି ଖ୍ରୀଷ୍ଟଙ୍କ ଦ୍ୱାଦଶ ଶିଷ୍ୟ ଥିବା; କୃଷ୍ଣ ମଧୁପାନ କରିବାପରି ଖ୍ରୀଷ୍ଟ ଦକ୍ଷ୍ୟମଧୁ ପାନ କରିବା; କୃଷ୍ଣ ଅର୍ଜ୍ଜୁନଙ୍କୁ ବିଶ୍ୱରୂପ ଦେଖାଇବା ପରି ଖ୍ରୀଷ୍ଟ ଯୋହନ ଓ ପିତରଙ୍କୁ ଐଶୀଶକ୍ତି ଦର୍ଶନ କରାଇବା; କୃଷ୍ଣ ଅର୍ଜ୍ଜୁନଙ୍କୁ ଆମେ ଅନନ୍ତ କହିବା ପରି ଖ୍ରୀଷ୍ଟ ସ୍ୱୟଂ ଜଗତର ଆଦି ମଧ୍ୟ ଓ ଅନ୍ତ କହିବା; କୃଷ୍ଣ ବିପ୍ରଙ୍କର ପଦାଧୌତ କରିବା ପରି ଖ୍ରୀଷ୍ଟ ଶିଷ୍ୟଙ୍କ ପଦଧୌତ କରିବା ସହ ବ ଅନ୍ତରଙ୍ଗ ସାମ୍ୟତ୍ୱ ରକ୍ଷାକରେ ।

ଏହି ସମସ୍ତ ସମାନତାକୁ ଲକ୍ଷ୍ୟକଲେ ଏହା ପ୍ରମାଣିତ ହେବାରେ କିଛି ଅସୁବିଧା ନାହିଁ ଯେ ଖ୍ରୀଷ୍ଟଙ୍କ ଚରିତ କୃଷ୍ଣଙ୍କ ଦ୍ୱାରା ପ୍ରଭାବିତ ହୋଇଥାଇ ପାରେ । ଉପଦେଶ ଗୁଡ଼ିକର ସମାନତା ହୁଏତ ଯୀଶୁଖ୍ରୀଷ୍ଟଙ୍କର ଐତିହାସିକତା ପ୍ରମାଣିତ କରିବା ମାତ୍ର ଘଟଣା ଓ ନାମର ସାଦୃଶ୍ୟକୁ ଆମେ କିପରି ବିଗ୍ଭର କରିବୁ ତାହା ବିବେଚକ ବିଗ୍ଭର କରନ୍ତୁ । ଏଠି ଖ୍ରୀଷ୍ଟଯେ କୃଷ୍ଣଙ୍କ ଚରିତ ଓ ଉପଦେଶ ଉପରେ ପ୍ରଭାବ ବିସ୍ତାର କରିଛନ୍ତି ତାହା ପ୍ରମାଣ କରାଯାଇ ପାରୁ ନାହିଁ । ମହାଭାରତର କାଳ ନିର୍ଣ୍ଣୟ କରିବାକୁ ଯାଇ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଗବେଷକଗଣ ଏଥିରେ ଏକ ମତ

ହୋଇଛନ୍ତି ଯେ ଏହା ଅନ୍ୟୂନ ସାଢ଼ିଛଅଶହ ବର୍ଷ ମଧ୍ୟରେ ସଂଗଠିତ ହୋଇଥିଲା । ଖ୍ରୀଷ୍ଟଙ୍କ ଜନ୍ମ ଏପର୍ଯ୍ୟନ୍ତ ଦୁଇହଜାର ବର୍ଷ ହୋଇନାହିଁ । ସେ ଦୃଷ୍ଟିରୁ ଖ୍ରୀଷ୍ଟ କିପରି କୃଷ୍ଣଙ୍କୁ ପ୍ରଭାବିତ କରିଥିବେ ବୋଲି ଆମେ ବିଶ୍ୱାସ କରିବା ? ବରଂ ଏହି ପ୍ରଭାବ ଓଲଟା ହୋଇଥିବାର ସମ୍ଭାବନା ବେଶୀ । ଏଥର କୃଷ୍ଣ ଓ ଖ୍ରୀଷ୍ଟଙ୍କ ଉପଦେଶ ଉପରେ କିଛି କୁହାଯାଉ ।

କୃଷ୍ଣ କହନ୍ତି : ହେ ଅର୍ଜୁନ ! ମୁଁ ସମ୍ପୂର୍ଣ୍ଣ ଜଗତର ଉତ୍ପତ୍ତି ଓ ପ୍ରଳୟସ୍ୱରୂପ ଅଟେ ଅର୍ଥାତ୍ ସମ୍ପୂର୍ଣ୍ଣ ଜଗତର ମୂଳ କାରଣ ଅଟେ । (ଗୀତା ୭ : ୬) ଯେଉଁ ସବୁ ଭୂତଗୁଡ଼ିକର ଉତ୍ପତ୍ତିର କାରଣ ଅଛି ସେ ସବୁଥିରେ ମୁଁ ଅଛି; କାହିଁକି, ତା ଏପରି ଏ ଚର ଓ ଅଚରରେ କୌଣସି ଭୂତ ନାହିଁ ଯାହା ମୋ ଠାରୁ ଉତ୍ପତ୍ତି ନୁହେଁ, ଏଣୁ ସବୁ କିଛି ମୋର ହିଁ ସ୍ୱରୂପ ଅଟେ । (ଗୀତା ୧୦ : ୩୯) ଠିକ୍ ଏହାର ଅବିକଳ ଯୋହନ ଲେଖନ୍ତି : ତାହାଙ୍କ ଦ୍ୱାରା ସମସ୍ତ ସୃଷ୍ଟି ହେଲା, ଆଉ ଯେ ସମସ୍ତ ସୃଷ୍ଟି ହୋଇଅଛି ସେଥି ମଧ୍ୟରୁ ଗୋଟିଏ ସୁଦ୍ଧା ତାହାଙ୍କ ବିନା ସୃଷ୍ଟି ହୋଇନାହିଁ । (୧ : ୩) ପ୍ରକାଶିତ ବାକ୍ୟ ପଢ଼ିଲେ ମନେ ହେବ ସତେ ଯେପରି ଆମେ ଗୀତାର କିଛି ଅଂଶ ପାଠ କରୁଛୁ । ଗୀତାର ୯:୨୯ ଓ ୧୦ : ୩୨, ୩୪ ଶ୍ଳୋକମାନ ପ୍ରକାଶିତବାକ୍ୟର ୧ : ୧୭-୧୮ ପଦ ଏବଂ ୮ ପର୍ବକୁ ଖୋଲି ଆସୁଥିବା ପରି ମନେହେବ । ଏ ପ୍ରକାର ଅଜସ୍ର ଉଦାହରଣ ରହିଛି ଯେଉଁଥିରେ କୃଷ୍ଣ ଖ୍ରୀଷ୍ଟଙ୍କ ମଧ୍ୟରେ ଶାବ୍ଦିକ ବିଷୟାତ୍ମକ ଓ ଘଟଣାଗୁଡ଼ିକର ସାମଞ୍ଜସ୍ୟ ହିଁ ଜଣା ପଡ଼ିବ ।

ମୁଁ ଆଗରୁ କହିଛି ଯୀଶୁଖ୍ରୀଷ୍ଟଙ୍କ ଜନ୍ମର ବହୁ ପୂର୍ବରୁ ବୁଦ୍ଧଧର୍ମ ପାଲେଷ୍ଟାଇନ୍ ଆଦି ଅଞ୍ଚଳରେ ବିସ୍ତାରିତ ହୋଇଥିଲା । ସ୍ୱୟଂ ସନ୍ଥ ଯୋହନ ଯିଏ ଯୀଶୁଙ୍କୁ ଜଳଦୀକ୍ଷା ଦେଇଥିଲେ ସେ ନିଜେ ଏ ସେନୈସ୍ ନାମକ ସଂପ୍ରଦାୟରେ ଥିଲେ ଯାହା ବୁଦ୍ଧଧର୍ମର ଆଞ୍ଚଳିକ ସ୍ୱରୂପ ଥିଲା । ଏଥର ଆସନ୍ତୁ, ଏ ଦୁଇଧର୍ମ ଓ ଧର୍ମ ଗୁରୁଙ୍କ କାର୍ଯ୍ୟ ଓ ଉପଦେଶଗୁଡ଼ିକୁ ତୁଳନା କରିବା ଦେଖିବା ।

ବୁଦ୍ଧଙ୍କ ଜୀବନରେ ଦେଖିବାକୁ ମିଳେ ଯେ ଗୌତମ ଯେବେ ଜନ୍ମ ହେଲେ ଅସିତ ନାମକ ଋଷି ମହାରାଜ ଶୁଦ୍ଧୋଦନଙ୍କ ପାଖକୁ ତାଙ୍କ ଦର୍ଶନ ଉଦ୍ଦେଶ୍ୟରେ ଆସିଥିଲେ । ଯୀଶୁଙ୍କୁ ଦର୍ଶନ କରିବାକୁ ସେହିପରି ପ୍ରାଚ୍ୟର ପଣ୍ଡିତମାନେ ଆସନ୍ତି । (ମାଥିଉ ୨ : ୧-୨) ଗୌତମ ବୁଦ୍ଧ ହେବା ପୂର୍ବରୁ "ମାର" ଦ୍ୱାରା ପ୍ରଲୋଭିତ ହେବା ଏବଂ ୪୯ ଦିନ ଉପବାସ କରି ସେ ସିଦ୍ଧିଲାଭ କରିବା, ଶୟତାନ ଯୀଶୁଙ୍କୁ ଭୁଲାଇବାକୁ ଆସିବା ଏବଂ ୪୦ ଦିନ ଉପବାସ କରି ସେ ସିଦ୍ଧିଲାଭ କରିବା (ମାଥିଉ ୪ : ୧-୨) ସହ ସମାନତା ରକ୍ଷା କରେ । ଏତଦ୍‌ବ୍ୟତୀତ ଏହା ଖ୍ରୀଷ୍ଟପୂର୍ବ ସପ୍ତମ

ଶତାବ୍ଦୀରେ ଲିଖିତ "କଠୋପନିଷଦ" ରେ ବର୍ଣ୍ଣିତ ଯମଦ୍ୱାରା ନଚିକେତାଙ୍କୁ ଦିଆଯାଇଥିବା ପ୍ରଲୋଭନ କଥା ମନେ ପଡ଼ିଯାଏ । ଠିକ୍ ଏପ୍ରକାର ଘଟଣା ପାରସୀ ଧର୍ମ ଶାସ୍ତ୍ରରେ ଦେଖିବାକୁ ମିଳେ, ଯେଉଁଠି ଯରାଥୁଷ୍ଟ୍ରଙ୍କୁ ଅସୁରମାନେ ପ୍ରଲୁବ୍ଧ କରନ୍ତି ।

ଖ୍ରୀଷ୍ଟ ଜନ୍ମର ଅନ୍ୟୂନ ତିନିଶହ ବର୍ଷ ପୂର୍ବରୁ ରଚିତ ଥିବା ବୌଦ୍ଧଶାସ୍ତ୍ର ଧମ୍ମପଦ ସହିତ ବାଇବେଲରେ ଲିଖିତ ଯୀଶୁଙ୍କ ଉପଦେଶର ଏକ ତୁଳନା ଏଠି କରାଗଲେ ବୁଦ୍ଧ ଓ ଯୀଶୁଙ୍କ ଉପଦେଶ ଯେ ପରସ୍ପର ସହିତ କେତେ ନିବିଡ଼ ତାହା ଜଣାଯିବ ।

ବୁଦ୍ଧ କହିଲେ : ହେ ଦୁର୍ବୋଧ ! ତୋର ଏହି ଜଟାରେ କି ଲାଭ ବା ତୋର ଏହି ମୃଗଚର୍ମ ବସନରେ କି ଲାଭ ? ତୋର ଭିତର ପାପମୟ ଏବଂ ତୁ କେବଳ ବାହାରକୁ ମାଜୁଅଛୁ, ଶୁଦ୍ଧ କରୁଅଛୁ, [ଧମ୍ମପଦ ୩୯୪] ଯୀଶୁ କହିଲେ : ହାୟ, ଦଣ୍ଡର ପାତ୍ର କପଟୀ ଶାସ୍ତ୍ରୀ ଓ ଫାରୂଶୀମାନେ, କାରଣ ତୁମ୍ଭେମାନେ ଶୁକ୍ଳୀକୃତ ସମାଧି ସ୍ୱରୂପ । ତାହା ବାହାରେ ସୁନ୍ଦର ଦେଖାଯାଏ, କିନ୍ତୁ ଭିତରେ ମୃତମାନଙ୍କ ଅସ୍ଥି ଓ ସର୍ବ ପ୍ରକାର ଅଶୁଚିତାରେ ପରିପୂର୍ଣ୍ଣ, ସେହି ପ୍ରକାରେ ତୁମ୍ଭେମାନେ ମଧ୍ୟ ବାହାରେ ଲୋକଙ୍କ ଦୃଷ୍ଟିରେ ଧାର୍ମିକ ଦେଖାଯାଅ, କିନ୍ତୁ ଭିତରେ କପଟ ଓ ଅଧର୍ମରେ ପରିପୂର୍ଣ୍ଣ । [ମାଥିଉ ୨୩ : ୨୭-୨୮] ସେଥିରେ ପ୍ରଭୁ ତାହାଙ୍କୁ କହିଲେ, ତୁମ୍ଭେ ଫାରୁଶୀମାନେ ପିଆଲା ଓ ଥାଳୀର ବାହାର ପରିଷ୍କାର କରୁଅଛ, ମାତ୍ର ତୁମ୍ଭମାନଙ୍କ ଭିତର ଲୁଣ୍ଠନ କର୍ମ ଓ ଦୁଷ୍ଟତାରେ ପରିପୂର୍ଣ୍ଣ [ଲୂକ ୧୧ ୩୯]

ବୁଦ୍ଧ କହନ୍ତି : ଦ୍ୱେଷ ଦ୍ୱେଷ ଦ୍ୱାରା କଦାପି ଦୂର ହୁଏ ନାହିଁ ବରଂ ଏହା ପ୍ରେମ ଦ୍ୱାରା ଦୂର ହୁଏ । ଆମେ ଆନନ୍ଦ ପୂର୍ବକ ରହିବା ଉଚିତ, ଯେ ଆମକୁ ବିରୋଧ କରେ ତାକୁ ଆମେ ବିରୋଧ ନକରିବା ଉଚିତ । ଯେ ଆମକୁ ଦ୍ୱେଷ କରେ ସେମାନଙ୍କ ସହିତ ରହିବା ସତ୍ତ୍ୱେ ଆମେ ତାଙ୍କୁ ଦ୍ୱେଷ ନକରିବା ଉଚିତ । କ୍ରୋଧକୁ ପ୍ରେମଦ୍ୱାରା ଏବଂ ଖରାପକୁ ଭଲଦ୍ୱାରା ବିଜୟ ପ୍ରାପ୍ତ କରିବା ଉଚିତ । (ଧମ୍ମପଦ ୫ ୧୯୭, ୨୨୩) ଯୀଶୁ କହନ୍ତି : ତୁମ୍ଭେମାନେ ଶତ୍ରୁମାନଙ୍କୁ ପ୍ରେମକର, ପୁଣି ଯେଉଁ-ମାନେ ତୁମ୍ଭମାନଙ୍କୁ ତାଡ଼ନା କରନ୍ତି, ସେମାନଙ୍କ ନିମନ୍ତେ ପ୍ରାର୍ଥନା କର । ( ମାଥିଉ ୫ : ୪୪ )

ବୁଦ୍ଧଙ୍କ ସୁତ୍ତନିପାତ ଅଗ୍ନିକସୁତ୍ତ ଅନୁସାରେ : ଜୀବହିଂସା, ହତ୍ୟାକରିବା, ହାଣିବା, ବାନ୍ଧିବା, ଚୋରି କରିବା, ମିଥ୍ୟା କହିବା, ଛଳ, କପଟ, ନିରର୍ଥକ ପୁସ୍ତକ

ପାଠ, ପର ସ୍ତ୍ରୀ ଗମନ ଆଦି ପାପ ମନୁଷ୍ୟଙ୍କୁ ପତିତ କରିଦିଏ । ସେହିପରି ଯୀଶୁ କହନ୍ତି : ହୃଦୟରୁ କୁଚିନ୍ତା, ନରହତ୍ୟା, ବ୍ୟଭିଚାର, ବେଶ୍ୟାଗମନ, ଚୌର୍ଯ୍ୟ, ମିଥ୍ୟା ସାକ୍ଷ୍ୟ ଓ ନିନ୍ଦା ବାହାରେ, ଏହି ସମସ୍ତ ହିଁ ମନୁଷ୍ୟକୁ ଅଶୁଚି କରେ ( ମାଥିଉ ୧୫ : ୧୯.୨୦)

ବୁଦ୍ଧ କହନ୍ତି, ସୁନ୍ଦର ଓ ବର୍ଣ୍ଣଯୁକ୍ତ ପୁଷ୍ପ ଗନ୍ଧଶୂନ୍ୟ ହେଲେ ଯେପରି ନିଷ୍ଫଳ, ସେହିପରି ସୁଭାଷିତ ବାଣୀ କାର୍ଯ୍ୟରେ ପାଳନ ନ କଲେ ନିଷ୍ଫଳ ହୁଏ । ( ଧମ୍ମପଦ ୫୧ ) ଯୀଶୁ କହିଲେ : ଅତଏବ ସେମାନେ ତୁମ୍ଭମାନଙ୍କୁ ଯାହାକିଛି କହନ୍ତି, ତାହା ମାନ ଓ ପାଳନ କର, ମାତ୍ର ସେମାନଙ୍କ କର୍ମ ଅନୁସାରେ କର୍ମ କରନାହିଁ, କାରଣ ସେମାନେ କରନ୍ତି ନାହିଁ । (ମାଥିଉ ୨୩ : ୩)

ବୁଦ୍ଧଙ୍କ ଅନୁସାରେ : ସମସ୍ତେ ମୃତ୍ୟୁକୁ ଭୟ କରନ୍ତି, ସମସ୍ତଙ୍କର ଜୀବନ ହେଉଛି ପ୍ରିୟ, ଏଣୁ ସମସ୍ତଙ୍କୁ ନିଜପରି ଜ୍ଞାନକରି କାହାରିକୁ ମାରିବ ନାହିଁ କିମ୍ବା କାହାରିକୁ ମରାଇବ ନାହିଁ (ଧମ୍ମପଦ ୧୩୦) । ଯୀଶୁ କହିଲେ : ଲୋକମାନେ ତୁମ୍ଭ-ମାନଙ୍କ ପ୍ରତି ଯେ ପ୍ରକାର ବ୍ୟବହାର କରନ୍ତୁ ବୋଲି ଇଚ୍ଛାକର, ତୁମ୍ଭେମାନେ ସେମାନଙ୍କ ପ୍ରତି ସେହିପ୍ରକାର କର (ଲୂକ ୬ : ୩୧)

କେବଳ ସେତିକି ନୁହେଁ ଆହୁରି ଅନେକ ବାକ୍ୟ ଏଠି ଉଦ୍ଧୃତ କରାଯାଇ ପାରିଥାନ୍ତା ମାତ୍ର ଏହା ଅଯଥା କଳେବର ବୃଦ୍ଧି କରିଦେବ ଭାବି କରାଗଲା ନାହିଁ । ସେହିପରି ବାଇବେଲର ବୀଜବୁଣାଳୀ କଥା ଆମେ ଭରଦ୍ୱାଜ ସୁତ୍ତ ଏବଂ ଧନୀୟା ସୁତ୍ତ ଲୂକ ରଚିତ [୧୨ : ୧୬] ଧନୀକଙ୍କ କଥା ସହ ବିଷୟ ବସ୍ତୁ ସହ ଯୋଗସୂତ୍ର ରକ୍ଷା କରେ । ସେହିପରି ଦୁଇ ମହାପୁରୁଷଙ୍କ ହୃଦୟରେ ଏକ ପ୍ରକାର ବିଶ୍ୱବ୍ୟାପୀ ଓ ମଙ୍ଗଳମୟ ପ୍ରେମଥିଲା ପରିଣାମତଃ ଦୁହେଁ ଜାତିଭେଦ ତ୍ୟାଗ କରି ମାନବ ସମାଜକୁ ସ୍ୱ ସ୍ୱ ମତାନୁସାରେ ସତ୍ୟର ଉପଦେଶ ଦେଇଥିଲେ । ଦୁହେଁ କୁଷ୍ଠରୋଗୀ, ଉତ୍କାନ୍ତ ଓ ବେଶ୍ୟାଙ୍କୁ ଉଦ୍ଧାର କଲେ । ପଡ଼ୋଶୀକୁ ପ୍ରେମ କରିବା, ଗୋଟିଏ ଗାଲରେ ଚାପୁଡ଼ା ମାରିଲେ ଅନ୍ୟଗାଲ ଦେଖାଇଦେବା ଆଦି ଯୀଶୁଙ୍କ ଉପଦେଶ ବୁଦ୍ଧଙ୍କ ଅହିଂସା, ପ୍ରେମ ଓ କରୁଣା ସମ୍ବନ୍ଧୀୟ ଶିକ୍ଷାର ଅନୁରୂପ ଥିଲା ।

ରମେଶ ଚନ୍ଦ୍ର ଦତ୍ତ ତାଙ୍କ "ସିଭିଲାଇଜେସନ୍ ଇନ୍ ଏନ୍‌ସିଏଣ୍ଟ ଇଣ୍ଡିଆ" ର ୨ୟ ଖଣ୍ଡରେ ଏବହୁ ନାମକ ଜଣେ କେଥୋଲିକ୍ ପାଦ୍ରୀ ତିବ୍ବତରେ ବୌଦ୍ଧଙ୍କର ଯେଉଁ ଦୃଶ୍ୟ ଦେଖିଲେ ସେଥିରେ ସେ ଆଶ୍ଚର୍ଯ୍ୟ ହୋଇ ଯାହା ଲେଖିଥିଲେ ତାହା ଉଦ୍ଧାର କରନ୍ତି : "ପୋପ୍‌ଙ୍କ ପରି ଦଣ୍ଡ, ଟୋପି; ଢିଲା ଯାହା ସେମାନେ ଧାର୍ମିକ

ଅସ୍ତ୍ରବରେ ପିନ୍ଧନ୍ତି, ପ୍ରାର୍ଥନା ସମୟରେ ଭଜନୀକମାନେ ଦୁଇ ପଂକ୍ତିରେ ଛିଡ଼ାହେବା ଭଜନ ଗାଇବା, ଭୂତ ଛଡ଼ାଇବା ପାଇଁ ଝଣ୍ଡା ପକ୍କା କରିବା ଲାମାଙ୍କର ନିଜ ଅନୁଗାମୀଙ୍କ ମୁଣ୍ଡ ଉପରେ ସିଧା ହାତ ରଖି ଆଶୀର୍ବାଦ ଦେବା, ସାଧୁମାନେ ବିବାହ ନକରିବା, ସନ୍ଥସେବା, ଉପବାସ, ମନ୍ତ୍ରଜପ, ପବିତ୍ର ଜଳ ଏହିପରି ଆହୁରି ଅନେକ ବିଷୟରେ ସମାନତା ଦେଖି ସେ ଆଶ୍ଚର୍ଯ୍ୟ ହେଲେ । ଅର୍ଥର ଲିଲି ଆହୁରି ଅନେକ ସମାନତାର କଥା ଉଲ୍ଲେଖ କରି କହନ୍ତି : "ଅପରାଧ ସ୍ୱୀକାର କରିବା, ମୁଣ୍ଡ ମୁଣ୍ଡିତ କରିବା, ପ୍ରତିମା ପୂଜା, ପୋପ୍ ବିଶପ ଆଦି ଅନେକ ପ୍ରକାର ପାଦ୍ରୀ ଥିବାପରି ଅନେକ ପ୍ରକାର ଲାମା ଠାରୁ ଭିକ୍ଷୁ ପର୍ଯ୍ୟନ୍ତ ରହିବା, ପୁନଶ୍ଚ ସ୍ୱସ୍ତିକ ଚିହ୍ନ ପରି କ୍ରସ୍ ଚିହ୍ନର ବହୁ ସମାନତା ରହିଛି । ଏଠାରେ ମନେ ରଖିବା ଉଚିତ ଯେ କ୍ରସ ଯଦିଓ ଖ୍ରୀଷ୍ଟଧର୍ମ ପାଇଁ ଏକ ଯନ୍ତ୍ରଣାର ପ୍ରତୀକ ଏକ ଶୂଳକାଠ ଅଟେ ତଥାପି ଏହାକୁ ଧାର୍ମିକ ପ୍ରତୀକ ଭାବରେ ପୂଜା କରିବା ହୁଏତ ହିନ୍ଦୁ ବୌଦ୍ଧ ଧର୍ମର ସ୍ୱସ୍ତିକ ଚିହ୍ନରୁ ସେମାନେ ଅନୁକରଣ କରି କାଳକ୍ରମେ ସ୍ୱୀକାର କରିଥିବେ । ଏହା ଲିଲିଙ୍କ "ବୁଦ୍ଧ ଏଣ୍ଡ ବୁଦ୍ଧିଜିମ୍" ଏବଂ "ବୁଦ୍ଧିଜିମ୍ ଇନ୍ କ୍ରୀଷ୍ଟିଆନ୍‌ଡମ," ଗ୍ରନ୍ଥରୁ ଆମେ ଜାଣିବାକୁ ପାଉଁ ।

ଯଦିଓ ଯୀଶୁ କହୁଥିଲେ ଯେ ସେ ଯିହୁଦୀମାନଙ୍କର ବ୍ୟବସ୍ଥା ଭାଙ୍ଗିବାକୁ ନ ଆସି ଯଥା ଯଥା ପାଳନ କରିବାକୁ ଆସିଛନ୍ତି ବୋଲି ତଥାପି ତାଙ୍କର ନୀତି ଓ ବ୍ୟବସ୍ଥା ଯେ ଯିହୁଦୀ ମାନଙ୍କ ଠାରୁ ଯଥେଷ୍ଟ ଉନ୍ନତ ଥିଲା ତାହା ପୁରାତନ ନିୟମ ସହ ତାଙ୍କର ନୂତନ ନିୟମର ତୁଳନାକରି ଆମେ କହିପାରିବୁ । ଯୀଶୁ ମଧ୍ୟ ତାଙ୍କ ଉପଦେଶରେ ପୁରାତନ ନିୟମଠାରୁ ସେ କିପରି ଭିନ୍ନ ତାହା କହିବାକୁ ଯାଇ ବାରମ୍ବାର କହିଛନ୍ତି : ମୁଁ ତୁମ୍ଭମାନଙ୍କୁ କହୁଛି, ତୁମ୍ଭମାନଙ୍କ ଧାର୍ମିକତା ଶାସ୍ତ୍ରୀ ଓ ଫାରୂଶୀମାନଙ୍କ ଧାର୍ମିକତା ଅପେକ୍ଷା ଅଧିକ ବେଶୀ ନହେଲେ ତୁମ୍ଭେମାନେ କୌଣସି ପ୍ରକାରେ ସ୍ୱର୍ଗରାଜ୍ୟରେ ପ୍ରବେଶ କରିବ ନାହିଁ । ତୁମ୍ଭେମାନେ ଶୁଣିଅଛ ଯେ···କିନ୍ତୁ ମୁଁ ତୁମ୍ଭମାନଙ୍କୁ କହୁଅଛି··· ଏପ୍ରକାର ଅନେକ ବ୍ୟବସ୍ଥା ବିରୁଦ୍ଧରେ ସେ ସ୍ୱର ଉତ୍ତୋଳନ କରିଛନ୍ତି ଏବଂ ବାରମ୍ବାର ଏ ଦୁଇଟି ବାକ୍ୟାଂଶ ସେ ବ୍ୟବହାର କରିଛନ୍ତି । ସଦାଚାରର ଦୃଷ୍ଟିରୁ ଯୀଶୁ ଯେ ପୁରାତନ ଭାବବାଦୀଙ୍କ ଠାରୁ ବହୁଗୁଣରେ ଉଚ୍ଚରେ ଥିଲେ ତାର ଗୋଟିଏ ଉଦାହରଣ ଦେଉଛୁ । ଯୀଶୁ କହିଲେ : ତୁମ୍ଭେମାନେ ଶୁଣିଅଛ, ଉକ୍ତ ଅଛି, ଚକ୍ଷୁର ପରିବର୍ତ୍ତେ ଚକ୍ଷୁ ଓ ଦନ୍ତର ପରିବର୍ତ୍ତେ ଦନ୍ତ, କିନ୍ତୁ ମୁଁ ତୁମ୍ଭମାନଙ୍କୁ କହୁଅଛି, ଦୁଷ୍ଟର ପ୍ରତିରୋଧ କରନାହିଁ, ମାତ୍ର ଯେ କେହି ତୁମ୍ଭର ଡାହାଣ ଗାଲରେ ଚାପୁଡ଼ା ମାରେ, ତାହାକୁ ଅନ୍ୟ ଗାଲ ମଧ୍ୟ ଦେଖାଇ ଦିଅ । [ମାଥିଉ ୫ : ୨୦.୪୮ ]

ଯୀଶୁଙ୍କ ଶିକ୍ଷା ଯିହୁଦୀମାନଙ୍କ ଶିକ୍ଷାଠାରୁ ଏତେ ଭିନ୍ନ ଓ ବୁଦ୍ଧଙ୍କ ଶିକ୍ଷାର ଏତେ ସମୀପବର୍ତ୍ତୀ ମନେହୁଏ ଯେ ତତ୍କାଳୀନ ପାଲେଷ୍ଟାଇନ୍‌ରେ ପ୍ରଚଳିତ ବୌଦ୍ଧ ଧର୍ମ ସମ୍ପର୍କରେ ସେ ଅବଗତ ନଥିବେ ତାହା ସମ୍ପୂର୍ଣ୍ଣରୂପେ ଅସ୍ୱୀକାର କରାଯାଇ ପାରିବ ନାହିଁ । ଆତ୍ମନମ୍ରତା, ସତ୍ୟବଚନତା, ଶୁଦ୍ଧତା, କ୍ଷମାଶୀଳତା, ଶାନ୍ତି, ଦାନ, ସହିଷ୍ଣୁତା ପ୍ରେମ ଓ ମନୁଷ୍ୟ ଜୀବନରେ ଉଚ୍ଚତମ ଆଦର୍ଶ ଆଦି ବୌଦ୍ଧ ସିଦ୍ଧାନ୍ତ ଖ୍ରୀଷ୍ଟଙ୍କ ସିଦ୍ଧାନ୍ତ ସହ ମିଶ୍ରିତ ହୋଇଯିବା ଫଳରେ ଏହା ଯିହୁଦୀ ଧର୍ମଠାରୁ ମଧ୍ୟ ଅଧିକ ସମ୍ପୂର୍ଣ୍ଣ ଓ ବିଶାଳ ହୋଇ ଉଠିଲା । ସେଫେନହର "ରେଲିଜନ୍ ଏଣ୍ଡ ଅଦର ଏସେଜ୍ ରେ ବାଧ୍ୟ ହୋଇ ସ୍ୱୀକାର କଲେ ଯେ : ଖ୍ରୀଷ୍ଟଧର୍ମ ଯାହା ଭାରତବର୍ଷର ଜ୍ଞାନରୁ ସମ୍ଭୂତ ଯିହୁଦୀ ମତ ରୂପୀ ବିଦେଶୀ ବୃକ୍ଷ ଉପରେ ଲଗାଯାଇଛି । ପୁରୁଣା ବୃକ୍ଷର ପ୍ରକୃତ ରୂପ କିଛି ରହିଛି, କିନ୍ତୁ ଏଥିରେ କହିବ କିଛି ପରିବର୍ତ୍ତନ ହୋଇ ତାହା ଜୀବନ ଓ ସତ୍ୟ ଦ୍ୱାରା ସୁଶୋଭିତ ହୋଇଯାଇଛି । ମିର୍ଜାଗୁଲାମ ଅହମ୍ମଦ ତାଙ୍କ "ଜିସସ୍ ଇନ୍ ଇଣ୍ଡିଆ" ରେ ମଧ୍ୟ କହନ୍ତି : ଅନେକ ଖ୍ରୀଷ୍ଟିୟାନ ଦାର୍ଶନିକଙ୍କ ମଧ୍ୟ ଏହି ମତ ଯେ ବୌଦ୍ଧଧର୍ମ ପ୍ରାଚ୍ୟର ଖ୍ରୀଷ୍ଟଧର୍ମ ଏବଂ ଖ୍ରୀଷ୍ଟଧର୍ମ ପାଶ୍ଚାତ୍ୟ ବୌଦ୍ଧଧର୍ମର ଅନ୍ୟରୂପ ଅଟେ ।

ସେଣ୍ଟ ଅଗଷ୍ଟାଇନ୍ କହନ୍ତି : ଯାହା ଆଜି ଖ୍ରୀଷ୍ଟିୟାନ ମତ ବୋଲି କୁହାଯାଉଛି, ତାହା ପ୍ରାଚୀନ ଲୋକଙ୍କ ମଧ୍ୟରେ ମଧ୍ୟ ଥିଲା ଓ ତାହା ମାନବ ଜାତିର ଆରମ୍ଭ କାଳ ଠାରୁ ନେଇ ଖ୍ରୀଷ୍ଟଙ୍କ ଶରୀର ଧାରଣ କରିବା ପର୍ଯ୍ୟନ୍ତ ବରାବର ଉପସ୍ଥିତ ଥିଲା ।

ଏ ସବୁ ଦୃଷ୍ଟିରୁ ଖ୍ରୀଷ୍ଟଧର୍ମକୁ ଯେଉଁମାନେ ଏ ପର୍ଯ୍ୟନ୍ତ ବିଦେଶୀ ଧର୍ମ କହି ପ୍ରତ୍ୟାଖ୍ୟାନ କରନ୍ତି ସେମାନେ ଜାଣି ରଖିବା ଉଚିତ ଯେ ହିନ୍ଦୁ ଧର୍ମ ସହ ପାରମ୍ପରିକ ଭାବରେ ଆଦାନ ପ୍ରଦାନ ତଳେ ଏହାର ଏକ ଆତ୍ମିକ ଯୋଗସୂତ୍ର ଥିଲା । "ଦ ମାଷ୍ଟର ଏଜ୍ ଆଇ ସ ହିମ୍" ପୁସ୍ତକରେ ଭଗିନୀ ନିବେଦିତା ଲେଖନ୍ତି ଯେ ସ୍ୱାମୀ ବିବେକାନନ୍ଦ ୟୁରୋପର କେଥଲିକ ଦେଶମାନଙ୍କରେ ଭ୍ରମଣ କରିବା ମଧ୍ୟରେ ହିନ୍ଦୁ ଧର୍ମ ସହିତ ଖ୍ରୀଷ୍ଟଧର୍ମର ସହସ୍ର ନିତ୍ୟ ନୈମିତ୍ତିକ ବ୍ୟାପାରରେ ସୌସାଦୃଶ୍ୟ ଦେଖି ଚମତ୍କୃତ ହୋଇଥିଲେ । ଖ୍ରୀଷ୍ଟିୟାନ ମାନଙ୍କର ଈଶ୍ୱରଙ୍କ ନିକଟରେ ରୁଟି ଓ ମଦ୍ୟ ନିବେଦନ ହିନ୍ଦୁମାନଙ୍କର ଭୋଗ ନିବେଦନରେ ରୂପାନ୍ତର ବୋଲି ତାଙ୍କର ବୋଧ ହେଉଥିଲା । ଯାଜକମାନଙ୍କର କିଛି ଅଂଶରେ ମୁଣ୍ଡିତ ମସ୍ତକ ଭାରତୀୟ ସନ୍ନ୍ୟାସୀମାନଙ୍କର ମସ୍ତକ ମୁଣ୍ଡନର କଥା ତାଙ୍କୁ ସ୍ମରଣ କରାଇ ଦେଉଥିଲା । କେଥଲିକମାନଙ୍କୁ ମଝିରେ ମଝିରେ ଦେହରେ ଆଙ୍ଗୁଳି ଦ୍ୱାରା ଚିହ୍ନ ଅଙ୍କିତ କରିବାର ଦେଖି ହିନ୍ଦୁମାନଙ୍କର ପୂଜାରେ ନ୍ୟାସ କଥା ତାଙ୍କର ମନେ ପଡୁଥିଲା ।

ଏମନ୍ତକି ସି ଏଫ୍ ଏଣ୍ଡ୍ରୁଜ ଭାରତର ଧାର୍ମିକ ବନ୍ଧୁଙ୍କ ସାଧୁତାରେ ଅତ୍ୟଧିକ ପ୍ରଭାବିତ ହୋଇ ଭାବିବାକୁ ଲାଗିଥିଲେ କି ଖ୍ରୀଷ୍ଟଙ୍କ ସୌନ୍ଦର୍ଯ୍ୟ ଅବଶ୍ୟ ଭାରତରୁ ଅନୁପ୍ରାଣିତ । ଏଣ୍ଡ୍ରୁ ସେ ରବୀନ୍ଦ୍ରନାଥଙ୍କ ପାଖକୁ ଯାହା ଲେଖିଥିଲେ ତାହା ରାଧାକୃଷ୍ଣନ୍ ତାଙ୍କ ପୂର୍ବ ଓ ପଶ୍ଚିମ'ରେ ଉଦ୍ଧାର କରିଛନ୍ତି : ଇତିହାସ ଅଧ୍ୟୟନରୁ ମୁଁ ବୁଝିବାକୁ ଆରମ୍ଭ କରି ଦେଲିଣି କି ଖ୍ରୀଷ୍ଟଧର୍ମ ସ୍ୱତନ୍ତ୍ର ସେମିଟିକ୍ ଉତ୍ପତ୍ତିର ନୁହେଁ ବରଂ ହିନ୍ଦୁ ବିଚାର ଓ ଜୀବନରୁ ଉଦ୍‌ଭୂତ । ଖ୍ରୀଷ୍ଟ, ମତେ ଅଦ୍ଭୁତ, ଦୁର୍ଲଭ ସୁନ୍ଦର ପୁଣ୍ୟ ମନେ ହେଉଛନ୍ତି; ଯା'ର ବୀଜ ହିନ୍ଦୁ ବିଦେଶ ଭୂମି ଉପରେ ଯାଇ ପଡ଼ିଛି ! ଏ ଦୃଷ୍ଟିରୁ ଭାରତ ବିଶ୍ୱଇତିହାସର ମହାଜନନୀ ଅଟେ । ଯିହୁଦୀ କୃଷ୍ଣଙ୍କ ଖ୍ରୀଷ୍ଟ ସ୍ୱଭାବତଃ, ସ୍ୱ ଦୈବୀ ପ୍ରକୃତିର ଏକ ଅଂଶରୂପରେ ଅଯିହୁଦୀ ଅହିଂସାର ଆଦର୍ଶକୁ, ଯାହା ମୂଳତଃ ହିନ୍ଦୁଧର୍ମ ଦ୍ୱାରା ସମ୍ପୃକ୍ତ ଅଟେ, ମାନିବାକୁ ଲାଗିଥିଲେ । ତାଙ୍କ-ଠାରେ ସାର୍ବଭୌମ କରୁଣା ଓ ସାର୍ବଭୌମ ସଦାଶୟତା ଥିଲା । ଯା'ର ପ୍ରମାଣ ଆମକୁ ଗାଲିଲିସ୍ଥ ପାହାଡ଼ ଉପରେ "କ୍ରୁଶ" ଚଢ଼ିବାର ଯନ୍ତ୍ରଣାରୁ ମିଳେ ।

"ହିନ୍ଦୁ ସୁପ୍ରିମ୍ୟାସି" ପୁସ୍ତକରେ ଡ଼ିଲବୋ ଲେଖିଲେ : ସହସ୍ର ସହସ୍ର ବର୍ଷ ପୂର୍ବେ ଭାରତରେ ଯେଉଁ ସଭ୍ୟତାର ସୃଷ୍ଟି ହୋଇଥିଲା, ତାହାର ପ୍ରବାହ ହିଁ ବର୍ତ୍ତମାନ ଆମ୍ଭେ ଚତୁର୍ଦ୍ଦିଗରେ ଦୈନନ୍ଦିନ ଜୀବନ ମଧ୍ୟରେ ଦେଖୁଅଛୁଁ । ତାହା ସଭ୍ୟଜଗତର ପ୍ରାନ୍ତ ସୀମା ପର୍ଯ୍ୟନ୍ତ ବିସ୍ତୃତ ହୋଇ ରହିଛି । ୟୁରୋପ ଓ ଆମେରିକା ଯାଆନ୍ତୁ ଦେଖିବେ ଅନ୍ତରଙ୍ଗ ପ୍ରଦେଶରୁ ପ୍ରଥମେ ଯେଉଁ ସଭ୍ୟତା ଆସିଥିଲା ତାହାର ହିଁ ପ୍ରଭାବ ସର୍ବତ୍ର ବିଦ୍ୟମାନ ।



# ପ୍ରଭୁ ଯୀଶୁ ମଧ୍ୟ ସ୍ୱ କର୍ମଫଳ ଭୋଗ କରିଥିଲେ

ବିଶ୍ୱର ସମସ୍ତ ଧର୍ମ ଶାସ୍ତ୍ରରେ ମର୍ତ୍ତ୍ୟ ଅପେକ୍ଷା ସ୍ୱର୍ଗର ମହତ୍ତ୍ୱ ପ୍ରତିପାଦନ କରାଯାଇଛି । ଏ ସଂସାର ମାୟା, ଶୂନ୍ୟ, କ୍ଷଣଭଙ୍ଗୁର, ଅସାର ଏବଂ ପାପପୂର୍ଣ୍ଣ କହି ପୁରୋହିତ, ପାଦ୍ରୀ ଏବଂ ମୌଲବିମାନେ ଆମକୁ ସାବଧାନ କରାଇ ଦିଅନ୍ତି । ମଣିଷ ନଶ୍ୱର ଜଗତରେ ମିଳୁଥିବା ଯନ୍ତ୍ରଣାଦାୟକ ଜୀବନରୁ ରକ୍ଷା ପାଇ ମୁକ୍ତି, ନିର୍ବାଣ ବା ପରିତ୍ରାଣ ପାଇ ପାରିବ, ସେଥିପାଇଁ ବିଭିନ୍ନ ମାର୍ଗ ପ୍ରଦର୍ଶନ କରିଥାନ୍ତି । କେତେକ କହନ୍ତି ପରିତ୍ରାଣ ପାଇବାକୁ ହେଲେ ପୁରୀ, ବଦ୍ରିକା, ମକ୍କା, ମଦିନା କିମ୍ବା ଜିରୁଶାଲମକୁ ତୀର୍ଥାଟନ କରିଯିବା ଦରକାର ତ ଆଉ କେତେକ ଦାନର ମହତ୍ତ୍ୱ ଉପଲବ୍ଧି କରି ପାପୀମାନଙ୍କୁ କହିଥାନ୍ତି ସେମାନେ ବ୍ରାହ୍ମଣ, ମୌଲବି କିମ୍ବା ପାଦ୍ରୀଙ୍କୁ ଦାନଦେବା, କିଛି [illegible] କରିବା ମୁକ୍ତିପତ୍ର କ୍ରୟ କରିବା ଦରକାର କିମ୍ବା ଏକ ଦଶମାଂଶ ଧାର୍ମିକ ମଠ, ମନ୍ଦିର, ମସ୍‌ଜିଦ୍ ବା ଗିର୍ଜାକୁ ମୁକ୍ତ ହସ୍ତରେ ଦାନଦେବା ଉଚିତ ।

ତେବେ ଯେବେ ଯେବେ ଧର୍ମର ଗ୍ଲାନି ଘଟେ, ଅଧର୍ମର ଅନୁପ୍ରବେଶ ହୁଏ, ପାପୀ, ପାଷଣ୍ଡ, କାଫେର ଓ ସୈତାନମାନେ ପ୍ରଭାବ ବିସ୍ତାର କରନ୍ତି. ସେ ସମୟରେ ସ୍ୱର୍ଗସ୍ଥ ପିତାଙ୍କ ବୈକୁଣ୍ଠ ଟଳମଳ ହୁଏ । ସେ ସ୍ୱକ୍ଷମତାର ପୁନଃ ପ୍ରତିଷ୍ଠା ପାଇଁ ଅବତାର ଧାରଣ କରନ୍ତି, ଦୂତରୂପେ କିମ୍ବା ପୁତ୍ର ରୂପେ ସଂସାରରେ ଅବତରଣ କରି ଈଶ୍ୱରଙ୍କ ଅସ୍ତିତ୍ୱବାଦର ସାମ୍ରାଜ୍ୟକୁ ଆଉ ଗୋଟିଏ ଯୁଗପାଇଁ ପୁଣି ସୁଦୃଢ଼ କରିଯାଆନ୍ତି । ପରମେଶ୍ୱରଙ୍କ ଅବତାରୀ, ଦୂତ ଏବଂ ପୁତ୍ରଙ୍କୁ ପ୍ରଥମରେ ଆମେ ଅସ୍ୱୀକାର କରୁଁ ଏବଂ ତାଡ଼ନା ଦେଇ ହତ୍ୟା ବା କ୍ରୁଶବିଦ୍ଧ କରିବାକୁ ପଛାଇ ନ ଥାଉଁ, ମାତ୍ର ତାଙ୍କ ଅନ୍ତେ ତାଙ୍କ ନାମରେ ମନ୍ଦିର, ସ୍ମୃତି ମନ୍ଦିର, କବର ବା ଉପାସନା ଗୃହମାନ ନିର୍ମାଣକରି ସ୍ୱର୍ଗ ସହିତ ମର୍ତ୍ତ୍ୟର ସମ୍ପର୍କକୁ [illegible] ପାଇଁ ଦୃଢ଼ୀଭୂତ କରିନେଉଁ ।

ପ୍ରେରିତ ମହାପୁରୁଷଗଣ ଆମକୁ ମୁକ୍ତିମନ୍ତ୍ର ଦିଅନ୍ତି । ତାଙ୍କ ସନ୍ନିଧ ପରମେଶ୍ୱରଙ୍କୁ ମାନି ପାପ ସ୍ୱୀକାର କଲେ ସେ ଆମକୁ ନର୍କରୁ ଉଦ୍ଧାର କରି ସ୍ୱର୍ଗରେ ସ୍ଥାନ ଦେବାପାଇଁ ପ୍ରତିଶ୍ରୁତି ଦେଇଯାଆନ୍ତି । ଯେଉଁମାନେ ଜାଣାବିସ୍ତରରେ ସ୍ୱୀକାର କରି ନଥାନ୍ତି ସେମାନେ ବିଶ୍ୱସ୍ତ ଭକ୍ତହୋଇ ସ୍ୱର୍ଗକୁ ନିଜର ପୈତୃକ ସମ୍ପତ୍ତି ବୋଲି ମନେ କରନ୍ତି । ମାତ୍ର ଯେଉଁମାନେ ଏହି ମହାପୁରୁଷମାନଙ୍କ କଥାରେ ସନ୍ଦେହ କରି ବସନ୍ତି ସେମାନଙ୍କୁ ଏହି ବିଶ୍ୱସ୍ତ ଭକ୍ତଗଣ ନାସ୍ତିକ କାଫେର୍ ବା ପାପୀ କହି ଅକଥନୀୟ ଯନ୍ତ୍ରଣା ଦିଅନ୍ତି ।

ବିଂଶ ଶତାବ୍ଦୀ ଏ ପ୍ରକାର ଅକଥନୀୟ ଯନ୍ତ୍ରଣା ଭୋଗ କରିବାକୁ ଆଉ ରାଜି ନୁହେଁ । ଯେଉଁ କଥା ଚିନ୍ତା କରିବାକୁ ଦିନେ ଲୋକେ ଭୟରେ ଥରି ଉଠୁଥିଲେ ସେ ପ୍ରକାର କଥା ଆଜି ଆମେ ବାଟରେ, ଘାଟରେ, ବିଦ୍ୟାଳୟ ଏବଂ ସଭା ସମିତିରେ କହିବାପାଇଁ ପ୍ରସ୍ତୁତ । ଯେଉଁକଥା ସେମାନେ କହିବାପାଇଁ ଭୁଲି ଯାଇଛନ୍ତି ସେଇକଥା ମନେ ପକାଇ ଦେବା ମଧ୍ୟ ଏକ ଗଣତାନ୍ତ୍ରିକ ଅଧିକାର ବୋଲି ଆମେ ମନେ କରୁଁ ।

ଆମେ ଆତ୍ମାର ଅମରତ୍ୱରେ ବିଶ୍ୱାସ କରୁଁ । ମୁଁ ଥିଲି, ମୁଁ ଅଛି ଏବଂ ମୁଁ ରହିବି ଏହା କେବଳ ପୂର୍ବଜନ୍ମ, ଏଇ ଜନ୍ମ ଏବଂ ପର ଜନ୍ମର କଥା । ଏ କର୍ମକ୍ଲାନ୍ତ ମଣିଷକୁ ନିତ୍ୟ କ୍ଷେତ୍ରରେ କର୍ମବିହୀନ କରିଦେବା ପାଇଁ ଯେଉଁମାନେ ପରିତ୍ରାଣର କଥା କହନ୍ତି ସେମାନେ ହୁଏତ ଏକଥା ଭୁଲି ଯାଇଥାନ୍ତି ଯେ, ମଣିଷ ଈଶ୍ୱରଙ୍କୁ ମାନିନେବା ପାପ ସ୍ୱୀକାର କରି ଅନୁତପ୍ତ ହେବାଦ୍ୱାରା ମୁକ୍ତି ପାଏନାହିଁ । ମୁକ୍ତି ହୁଏ କର୍ମଫଳ ଭୋଗରେ ।

ଏ କଥା ଅନେକେ ବୁଝି ପାରନ୍ତି ନାହିଁ । ଏଣୁ ସେମାନେ ମୁକ୍ତି ବା ପରିତ୍ରାଣ ପାଇବା ପାଇଁ ବ୍ୟଗ୍ରହୋଇ ପଡ଼ନ୍ତି । ପରିତ୍ରାଣ ପାଇବାପାଇଁ ସବୁଠାରୁ ସହଜତମ ପନ୍ଥା ଖୋଜି ସେମାନେ ସହଜ ଭାବରେ ସବୁକଥାକୁ ବିଶ୍ୱାସ କରିଯାନ୍ତି ।

ସେମାନେ କେବେ ଏ ପ୍ରଶ୍ନ ନିଜକୁ ପଚାରନ୍ତି ନାହିଁ ଯେ ପରିତ୍ରାଣ କାହାର ଓ କେଉଁଥିପାଇଁ ? ପରିତ୍ରାଣ ପାପରୁ ତ ? କେଉଁ ପାପ ? ଆଦିପିତା ଆଦମ କରିଥିବା ପାପ । ସେ ତ ପାପ କରିଥିଲା ଯେତେବେଳେ ତାର ପାପବୋଧ ବୋଲି କିଛି ନଥିଲା । ପାପର ସଂଜ୍ଞା ନିରୂପଣ ନକରି ତାକୁ ସ୍ୱର୍ଗଠାରୁ ନନ୍ଦନକାନନରୁ ବହିଷ୍କାର କରିଦେବା କ'ଣ ଈଶ୍ୱରଙ୍କ ପକ୍ଷରେ ଉଚିତ ଥିଲା ? ଯଦି ଆଦମ ଜାଣିଥାନ୍ତା ପାପ କ'ଣ, ପୁଣ୍ୟ କ'ଣ ତେବେ ସେ ଏ ପ୍ରକାର ତ୍ରୁଟି କରି ଅଯଥା

ପରମେଶ୍ୱରଙ୍କର କ୍ରୋଧର ପାତ୍ର ହୋଇ ନଥାନ୍ତା । ସେ ମୁଣ୍ଡପାତି ସବୁ ଅଭିଶାପକୁ ସହିନେନ୍ତା । କାରଣ ସେ ସବଳ ଥିଲେ । ସବଳ ଥିବାରୁ ଅଜ୍ଞ ଥିଲେ । ଅଜ୍ଞ ଥିବାରୁ ପାପକଲେ । ଯଦି ମଣିଷ ଭୁଲ୍ କରିଦେଲା ତେବେ ପରମେଶ୍ୱରଙ୍କର କ'ଣ ଏହା କର୍ତ୍ତବ୍ୟ ନଥିଲା କି ଅରକ ପାଇଁ ତାକୁ କ୍ଷମା କରି ଭୁଲ ଏବଂ ଠିକ ସମ୍ପର୍କରେ ସମ୍ୟକ୍ ଧାରଣା ଦେବା ? ମାତ୍ର ପରମେଶ୍ୱର ତାହା କଲେନାହିଁ । ତାଙ୍କ ମନରେ କ୍ରୋଧ ହେଲା ଯେ, ତାଙ୍କ ସୃଷ୍ଟ ମଣିଷ ତାଙ୍କୁ କାହିଁକି ମାନିଲା ନାହିଁ । ସେ ତାଙ୍କୁ ମାନୁ ନଥିବା ବ୍ୟକ୍ତିଙ୍କୁ ନର୍କରେ ପକାଇ କ'ଣ ନ୍ୟାୟକାରୀ ହୋଇ ପାରିବେ ? ମୋ ମନରେ ପ୍ରଶ୍ନ ଉଠେ ଯଦି ଆଦମ ଏବଂ ହୱା ପାପକଲେ ତାଙ୍କର ବଂଶଧର ହେବା କାରଣରୁ ଆମେ ପାପୀ ହେଲୁ କିପରି ? ଯଦି ପିତା ଦୁର୍ବୃତ୍ତ ହୁଏ ପୁଅ ମଧ୍ୟ ଦୁର୍ବୃତ୍ତ ହେବ ଏହାର କ'ଣ କିଛି ମାନେ ଅଛି ? ପାପ ତ କେବଳ ଗୋଟିଏ କାର୍ଯ୍ୟର ପରିଣାମ । ସେ ଦୃଷ୍ଟିରୁ ଜନ୍ମରୁ କେହି ପାପୀ ନୁହେଁ । ଯଦି କୌଣସି ପାପ କାର୍ଯ୍ୟ ମୁଁ କରେଁ ତେବେ ପାପୀ ହେବି ।

ସେ ଯାହା ହେଉ ତା କାହିଁକି ବର୍ତ୍ତମାନ ମୁଁ ମାନିନେଉଛି ଯେ ମୋର ପୂର୍ବଜ ଆଦିପିତା, ଆଦମ ତାଙ୍କ ପାପ ଆମକୁ ଲାଗିଲା, କାରଣ ସେ ପାପୀ ଥିଲେ ଏଣୁ ଆମେ ପାପୀ ହେଲୁ । ପୁଣି କୁହାଯାଉଛି ଯେ ଆମର ପାପ ପାଇଁ ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କୁ କ୍ରୁଶ ବିଦ୍ଧ ହେବାକୁ ପଡ଼ିଲା । ଯେହେତୁ ସେ ଆମ ପାପ ପାଇଁ କ୍ରୁଶବିଦ୍ଧ ହେଲେ, ସେହେତୁ ଆମେ ତାଙ୍କ ପାଇଁ କ୍ରୁଶବିଦ୍ଧ ହେବା ଦରକାର । ଅର୍ଥାତ୍ ତାଙ୍କୁ ବିଶ୍ୱାସ କରି ତାଙ୍କ ପାଖରେ ଆମେ ଆମର ପାପ ସ୍ୱୀକାର କରିବା ଦରକାର । ଏତିକ କରିପାରିଲେ ସେ ଆମର ମୁକ୍ତିପାଇଁ ପରମେଶ୍ୱରଙ୍କ ପାଖରେ ଲଢ଼ିବେ । ଏ ପ୍ରକାର ଏକ ସିଦ୍ଧାନ୍ତ ସନ୍ଥ ଯୋହନ ଆମ ଆଗରେ ରଖନ୍ତି । ସେ କହନ୍ତି : ଈଶ୍ୱର ଜଗତକୁ ଏତେ ପ୍ରେମ କଲେ ଯେ ସେ ଆପଣା ଅଦ୍ୱିତୀୟ ପୁତ୍ରଙ୍କୁ ଦାନକଲେ, ଯେପରି ଯେ କେହି ତାହାଙ୍କଠାରେ ବିଶ୍ୱାସ କରେ, ସେ ବିନଷ୍ଟ ନ ହୋଇ ଅନନ୍ତ ଜୀବନ ପ୍ରାପ୍ତ ହୁଏ । ଯେ ତାହାଙ୍କଠାରେ ବିଶ୍ୱାସ କରେ ସେ ବିଚାରିତ ହୁଏ ନାହିଁ, ଯେ ବିଶ୍ୱାସ କରେ ନାହିଁ, ସେ ବିଚାରିତ ହୋଇ ସାରିଲାଣି, କାରଣ ସେ ଈଶ୍ୱରଙ୍କ ଅଦ୍ୱିତୀୟ ପୁତ୍ରଙ୍କ ନାମରେ ବିଶ୍ୱାସ କରିନାହିଁ । ଯେ ପୁତ୍ରଙ୍କଠାରେ ବିଶ୍ୱାସ କରେ, ସେ ଅନନ୍ତ ଜୀବନ ପ୍ରାପ୍ତ ହୋଇଅଛି, ମାତ୍ର ଯେ ପୁତ୍ରଙ୍କୁ ଅମାନ୍ୟ କରେ, ସେ ଜୀବନ ଦେଖିବ ନାହିଁ, କିନ୍ତୁ ସେ ଈଶ୍ୱରଙ୍କ କ୍ରୋଧର ପାତ୍ର ହୋଇ ରହିଥାଏ । (୩ : ୧୬, ୧୮, ୩୬)

ଏଠାରେ ପାଠକଙ୍କୁ ମୁଁ ଅବଗତ କରାଇଦେବାକୁ ଚାହେଁ ଯେ ଯୀଶୁଖ୍ରୀଷ୍ଟଙ୍କୁ ଈଶ୍ୱରଙ୍କର ଏକମାତ୍ର ପୁତ୍ର କହି ଯୋହନ ଆମକୁ ସନ୍ଦେହରେ ପକାଇ ଦିଅନ୍ତି ।

କାରଣ ଆଦିପୁସ୍ତକ ( ୯: ୬ )ରେ ଲେଖାଅଛି ଯେ, ଈଶ୍ୱରଙ୍କର ବହୁ ସନ୍ତାନ ଥିଲେ । ବହୁ ସନ୍ତାନଙ୍କ ପରି ବହୁ ପିତା ବା ଈଶ୍ୱର ଥିଲେ ବୋଲି ଗୀତ ସଂହିତା (୮୨ : ୬) ରେ କୁହାଯାଇଛି । ଏଠି ପ୍ରଶ୍ନ ଉଠୁଛି ଅନେକ ପରମେଶ୍ୱରଙ୍କର ଯେଉଁ ଏକମାତ୍ର ପୁତ୍ର ଆମର ପରିତ୍ରାଣକର୍ତ୍ତା ଅଟନ୍ତି ? ସେମାନଙ୍କ ମତରେ ଯୀଶୁଖ୍ରୀଷ୍ଟ ପରମେଶ୍ୱରଙ୍କ ବହୁ ସନ୍ତାନଙ୍କ ମଧ୍ୟରେ ଏକମାତ୍ର ସନ୍ତାନ ଅଟନ୍ତି ।

ଅନେକ ସନ୍ଦେହ ସତ୍ତ୍ୱେ ଯେତେବେଳେ ପାଦ୍ରୀ ଆମକୁ ସମ୍ବୋଧନ କରି କହନ୍ତି ହେ ପାପୀ ! ତୁମେ ବିଶ୍ୱାସ କର । ପାପ ସ୍ୱୀକାର କର । ଅନୁତାପ କଲେ ସଦା ପ୍ରଭୁ ଯୀଶୁଖ୍ରୀଷ୍ଟ ତୁମକୁ ପରିତ୍ରାଣ କରିବେ । ସେତେବେଳେ ଇ ଏମ ଫୋଷ୍ଟରଙ୍କ ପ୍ରାର୍ଥନାଟି ସ୍ମରଣ ଆସେ । "ହେ ପ୍ରଭୋ ! ମୁଁ ବିଶ୍ୱାସ କରି ପାରୁନାହିଁ । ମୋର ଅବିଶ୍ୱାସକୁ ତୁମେ ସାହାଯ୍ୟ କର ।" ଖ୍ରୀଷ୍ଟଙ୍କୁ ବିଶ୍ୱାସ କରି ତାଙ୍କ କ୍ରୁଶବିଦ୍ଧ ବିଗ୍ରହ ସମ୍ମୁଖରେ ପାପ ସ୍ୱୀକାର କରିଦେଲେ କିଣ ମତେ ମୁକ୍ତି ମିଳିଯିବ ? ଖ୍ରୀଷ୍ଟ ଆମ୍ଭମାନଙ୍କ ପାପ ପାଇଁ କ୍ରୁଶବିଦ୍ଧ ହେବା କଥା ବିଶ୍ୱାସ ହୁଏନା । କ କପରି ଖ ପାଇଁ ଦୁଃଖ ପାଇବ ? ଯଦି ଙ ଜଣେ ପାପୀ ତେବେ ଖ କପରି ପାପ ପାଇଁ ଦଣ୍ଡିତ ହେବ ? କେବଳ ବିଶ୍ୱାସ କ'ଣ ଯଥେଷ୍ଟ ? ଏହା ଯଦି ସତ୍ୟ ବୋଲି ଧରାଯାଏ ତ ହେଲେ ସଂସାରରେ ଅନ୍ୟାୟ ବଢ଼ିବ । ଲୋକେ ନିର୍ଦ୍ଦୟ ପାପ କରି ଦୋଷ ସ୍ୱୀକାର କରିଦେବେ ଏବଂ କ୍ଷମା ପାଇଯିବେ ।

ଏତଦ୍‌ବ୍ୟତୀତ ଯୀଶୁଙ୍କୁ ବିଶ୍ୱାସ କରିନେଲେ ବା ପାପ ସ୍ୱୀକାର କରିଦେଲେ ଯେଉଁ କ୍ଷମା ବା ମୁକ୍ତି ମିଳିଯିବା କଥା କୁହାଯାଉଛି ତାହା ବାଇବଲ ସମ୍ମତ ନୁହେଁ । ବାଇବଲରେ କର୍ମଫଳ ଭୋଗ ଉପରେ ଭୂରିଭୂରି ପ୍ରମାଣ ରହିଛି । ଯାକୁବ (୨ : ୨୪)ରେ କୁହାଯାଇଛି —କେବଳ ବିଶ୍ୱାସ-ଦ୍ୱାରା ଯେ ଧାର୍ମିକ ଗଣିତ ହୁଏ, ଏହା ତୁମ୍ଭେମାନେ ଦେଖୁଅଛ । ପିତର (୩ : ୧୨) କହନ୍ତି କାରଣ ଧାର୍ମିକମାନଙ୍କ ପ୍ରତି ପ୍ରଭୁଙ୍କ ଦୃଷ୍ଟି ଅଛି, ସେମାନଙ୍କ ବିନତି ପ୍ରତି ତାହାଙ୍କ କର୍ଣ୍ଣ ଉନ୍ମୁକ୍ତ ଅଟେ । କିନ୍ତୁ ପ୍ରଭୁଙ୍କ ମୁଖ ଦୁଷ୍କର୍ମକାରୀମାନଙ୍କ ପ୍ରତିକୂଳ । ରୋମୀୟରେ (୨ : ୬-୮) ଏକଥା କୁହାଯାଇଛି ଯେ ପ୍ରତ୍ୟେକ ଲୋକଙ୍କୁ ନିଜ ନିଜ କର୍ମାନୁସାରେ ଫଳଦେବେ ଯେଉଁମାନେ ଧୈର୍ଯ୍ୟ ସହିତ ଉତ୍ତମ କର୍ମ କରି ଗୌରବ, ସମ୍ମାନ ଓ ଅମରତା ଅନ୍ୱେଷଣ କରନ୍ତି, ସେମାନଙ୍କୁ ଅନନ୍ତ ଜୀବନ ପ୍ରଦାନ କରିବେ, କିନ୍ତୁ ଯେଉଁମାନେ ସ୍ୱାର୍ଥପର ପୁଣି ସତ୍ୟର ଅନାଜ୍ଞାବହ, ମାତ୍ର ଅଧାର୍ମିକତାର ଆଜ୍ଞାବହ, ସେମାନଙ୍କ ପ୍ରତି କ୍ରୋଧ ଓ କୋପ ଘଟିବ ।

ପ୍ରକାଶିତ ବାକ୍ୟରେ କୁହାଯାଇଛି—ଦେଖ ଆମ୍ଭେ ଶୀଘ୍ର ଆସୁଅଛୁଁ । ପ୍ରତ୍ୟେକ ଲୋକକୁ ତାହାର କର୍ମାନୁସାରେ ଫଳ ଦେବାକୁ ଆମ୍ଭର ପୁରସ୍କାର ଆମ୍ଭ

ସଙ୍ଗରେ ଅଛୁ । (୨୨ : ୧୨) ଈଶ୍ୱରଙ୍କ ନିକଟରେ ମୁଖାପେକ୍ଷା ନାହିଁ । କେଣୁ ଯେତେ ବ୍ୟବସ୍ଥା ବିହୀନ ହୋଇ ପାପ କରିଅଛନ୍ତି, ସେମାନେ ମଧ୍ୟ ବ୍ୟବସ୍ଥା ବିନା ବିନଷ୍ଟ ହେବେ ଆଉ ଯେତେ ବ୍ୟବସ୍ଥା ପ୍ରାପ୍ତ ହୋଇ ପାପ କରିଅଛନ୍ତି, ସେମାନେ ବ୍ୟବସ୍ଥାନୁସାରେ ବିଚାରିତ ହେବେ, କାରଣ ବ୍ୟବସ୍ଥାର ଶ୍ରୋତାମାନେ ଈଶ୍ୱରଙ୍କ ସାକ୍ଷାତରେ ଧାର୍ମିକ ନୁହନ୍ତି; କିନ୍ତୁ ବ୍ୟବସ୍ଥା ପାଳନକାରୀମାନେ ଧାର୍ମିକ ଗଣିତ ହେବେ । (ରୋମୀୟ ୨ : ୧୧-୧୩)ହେ ନିର୍ବୋଧ ମନୁଷ୍ୟ, କର୍ମବିନା ବିଶ୍ୱାସ ଯେ ନିଷ୍ଫଳ, ଏହା କ'ଣ ଜାଣିବାକୁ ଇଚ୍ଛା କରୁଅଛ ? (ଯାକୁବ ୨ : ୧୯-୨୦)

ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ ବିଶ୍ୱାସ କରିଦେଲେ ଯେ, ମୁକ୍ତି ମିଳିଯିବ ଏ ପ୍ରକାର ଅନ୍ଧବିଶ୍ୱାସ ବିରୁଦ୍ଧରେ ସେ ନିଜେ ପର୍ବତ ଉପରୁ ଉପଦେଶରେ ଆମକୁ ସାବଧାନ କରି ଦଅନ୍ତି : ମତେ ପ୍ରଭୁ ପ୍ରଭୁ ବୋଲି ଡାକନ୍ତି, ଏପରି ପ୍ରତ୍ୟେକେ ସ୍ୱର୍ଗ ରାଜ୍ୟରେ ପ୍ରବେଶ କରିବେ ନାହିଁ; ମାତ୍ର ଯେ ମୋହର ସ୍ୱର୍ଗସ୍ଥ ପିତାଙ୍କ ଇଚ୍ଛା ସାଧନ କରେ, ସେ ପ୍ରବେଶ କରିବ । ସେଦିନ ଅନେକ ମତେ କହିବେ, ହେ ପ୍ରଭୁ ହେ ପ୍ରଭୁ ଆମ୍ଭେ-ମାନେ କି ତୁମ୍ଭ ନାମରେ ଭାବବାଣୀ କହିଲୁ ନାହିଁ ? ପୁଣି ତୁମ୍ଭ ନାମରେ କି ଭୂତମାନଙ୍କୁ ଛଡ଼ାଇଲୁ ନାହିଁ ? ଆଉ ତୁମ୍ଭନାମରେ କି ଅନେକ ଶକ୍ତିର କାର୍ଯ୍ୟ କଲୁ ନାହିଁ ? ସେତେବେଳେ ମୁଁ ସେମାନଙ୍କୁ ସ୍ପଷ୍ଟରୂପେ କହିବି, ମୁଁ ତୁମ୍ଭମାନଙ୍କୁ କେବେହେଁ ଜାଣିନାହିଁ । ହେ ଅଧର୍ମାଚାରୀମାନେ ମୋ ପାଖରୁ ଦୂରହୁଅ । (ମାଥିଉ ୭ : ୨୧-୨୩) ଉପରୋକ୍ତ ବାକ୍ୟଗୁଡ଼ିକରୁ ଏହା ପ୍ରମାଣିତ ହୁଏ ଯେ, ଜଣେ ଖ୍ରୀଷ୍ଟଙ୍କୁ ବିଶ୍ୱାସ କରୁ ବା ନକରୁ ତା'କୁ ସ୍ୱ କର୍ମଫଳ ଭୋଗିବାକୁ ହିଁ ହେବ । ଏହା ବିନା ଅନ୍ୟଗତି ନାହିଁ ।

ଏହି କର୍ମ ଭୂମିରେ ଯୀଶୁ ମଧ୍ୟ ସ୍ୱ କର୍ମଫଳ ଭୋଗ କରିଥିଲେ । ପରମେଶ୍ୱରଙ୍କ ପୁତ୍ର ହେବା ସତ୍ତ୍ୱେ ତାଙ୍କ କୃତକର୍ମ ପାଇଁ କ୍ରୁଶବିଦ୍ଧ ହେବାକୁ ପଡ଼ିଥିଲା । କ୍ରୁଶବିଦ୍ଧ ହେବା ପରେ ସେ ଯେତେ ଉଚ୍ଚ ସ୍ୱରରେ ଡାକିଲେ— ଏଲୀ, ଏଲୀ, ଲାମା ସବକ୍ଥାନୀ ? ଅର୍ଥାତ୍, ହେ ମୋହର ଈଶ୍ୱର, ହେ ମୋହର ଈଶ୍ୱର, ତୁମ୍ଭେ ମୋତେ କାହିଁକି ପରିତ୍ୟାଗ କଲ ? (ମାଥିଉ ୨୭ ୪୬) ମଧ୍ୟ ପରମେଶ୍ୱର ତାଙ୍କ ପ୍ରାର୍ଥନା ଶୁଣି ନ ଥିଲେ । ଏଣୁ ଗାଲାତୀୟ (୭ : ୭) କୁହାଗଲା : ଭ୍ରାନ୍ତ ନ ହୁଅ, ଈଶ୍ୱର ବିଦ୍ରୂପର ପାତ୍ର ନୁହନ୍ତି, କାରଣ ମନୁଷ୍ୟ ଯାହା ବୁଣିବ ତାହା ହିଁ ଘଟିବ । ଏ ବାକ୍ୟରେ କିଛିଟା ଯଦି ସତ୍ୟତା ଥାଏ ତାହେଲେ ଆମ ପାପ ପାଇଁ ଯୀଶୁ କ୍ରୁଶବିଦ୍ଧ ହେବା ଶାସ୍ତ୍ରସମ୍ମତ ନୁହେଁ । ତାଙ୍କ ଭାଗ୍ୟ ତାଙ୍କ ଚରିତ୍ର ନ ଥିଲା ବରଂ ତାଙ୍କ ଚରିତ୍ର ତାଙ୍କ ଭାଗ୍ୟ ଥିଲା । ତାଙ୍କ ବ୍ୟବହାର ହିଁ ତାଙ୍କୁ କ୍ରୁଶବିଦ୍ଧ କରାଇଲା । ନିଜକୁ ଈଶ୍ୱରଙ୍କ ଏକମାତ୍ର

ପୁଅ ବୋଲି ସ୍ୱୀକରିନେବା ପରେ ଜିରୁଶାଲମ ମନ୍ଦିରର ସଂସ୍କାର ଦିଗରେ ସେ ଯେଉଁସବୁ କାର୍ଯ୍ୟ କଲେ ତାହା ବୈପ୍ଳବିକ ହେଲେ ମଧ୍ୟ ଅଧାର୍ମିକ ବୋଲି ପ୍ରମାଣିତ ହେଲା ।

ଯୀଶୁ ଜିରୁଶାଲମ୍ ମନ୍ଦିରକୁ ଗଲେ ଏବଂ ସେହି ମନ୍ଦିରରେ ଗୋରୁ ମେଣ୍ଢା ଓ କପୋତ ବ୍ୟବସାୟୀମାନଙ୍କୁ ବସିଥିବା ଦେଖି ଦଉଡ଼ିରେ ଗୋଟିଏ କୋରଡ଼ା ବନାଇ ମେଣ୍ଢା ଓ ଗୋରୁ ସହିତ ସମସ୍ତଙ୍କୁ ମନ୍ଦିରରୁ ବାହାର କରିଦେଲେ, ପୁଣି ମୁଦ୍ରା ବ୍ୟବସାୟୀମାନଙ୍କର ମୁଦ୍ରା ସବୁ ବିଞ୍ଚିଦେଇ ସେମାନଙ୍କ ମେଜଗୁଡ଼ିକ ଓଲଟାଇ ପକାଇଲେ, ଆଉ ସେ କପୋତ ବ୍ୟବସାୟୀମାନଙ୍କୁ କହିଲେ, ଏଗୁଡ଼ିକୁ ଏଠାରୁ ନେଇଯାଅ, ମୋହର ପିତାଙ୍କ ଗୃହକୁ ବାଣିଜ୍ୟର ଗୃହ କର ନାହିଁ । (ଯୋହନ ୨ : ୧୪-୧୬, ମାର୍କ ୧୧ : ୧୫-୧୭) ଏବଂ ମନ୍ଦିରକୁ ଉପହାସ କରି କହିଲେ ତୁମ୍ଭେମାନେ ଏହି ମନ୍ଦିରକୁ ବିନାଶ କର, ଆଉ ମୁଁ ତିନିଦିନ ମଧ୍ୟରେ ତାହା ତୋଳି ଦେବି । ସେହି ମନ୍ଦିର ନିର୍ମାଣ ହେବାପାଇଁ ଛୟାଳିଶ ବର୍ଷ ଲାଗିଥିଲା । (ଯୋହନ ୨ : ୧୯-୨୧) ଏହା ହିଁ ଯୀଶୁଙ୍କର ପ୍ରଥମ ମୃତ୍ୟୁର କାରଣ ଥିଲା । ଜିରୁଶାଲମ ମନ୍ଦିରରେ ଛିଡ଼ାହୋଇ ସେ ଆପଣା ଶରୀର ରୂପୀ ମନ୍ଦିର ସମ୍ବନ୍ଧରେ ଏ ପ୍ରକାର କଥା କହିବା ସମ୍ପୂର୍ଣ୍ଣ ଅପ୍ରାସଙ୍ଗିକ ଥିଲା । ନିସ୍ତାର ପର୍ବ ସମୟ । ବଣିକମାନେ ଆସିବାର ତ ସ୍ୱାଭାବିକ କଥା । ତେବେ ଯୀଶୁ ସେମାନଙ୍କୁ କେଉଁ ଅଧିକାରରେ ତଡ଼ିଦେଲେ । ଆଜିକାଲି ଯଦି କୌଣସି ଏକ ଗୀର୍ଜା, ମସଜିଦ୍ କିମ୍ବା ମନ୍ଦିର ଆଗରେ ଠିକ୍ ଏ ପ୍ରକାର ଅନଧିକାର ଓ ବହୁ ଅଧିକାରେ ଚର୍ଚ୍ଚା ବା କାର୍ଯ୍ୟ କରନ୍ତି ଜନତା କଣ ତାଙ୍କୁ ସରକାରଙ୍କ ହାତରେ ଅର୍ପଣ କରିବେ ନାହିଁକି ?

ଯୀଶୁଙ୍କ ବାରଜଣ ଶିଷ୍ୟ ଥିଲେ । ସେ ସର୍ବଦା ସନ୍ଦେହ କରୁଥିଲେ ଏବଂ ନିଜ ଶିଷ୍ୟମାନଙ୍କୁ କହୁଥିଲେ, ମୁଁ ତୁମ୍ଭମାନଙ୍କୁ ସତ୍ୟ କହୁଅଛି । ତୁମ୍ଭମାନଙ୍କ ମଧ୍ୟରୁ ଜଣେ ମତେ ଶତ୍ରୁ ହସ୍ତରେ ଅର୍ପଣ କରିବ । ସେଥିରେ ସେମାନେ ଅତ୍ୟନ୍ତ ଦୁଃଖିତ ହୋଇ ପ୍ରତ୍ୟେକ ତାହାଙ୍କୁ ପଚାରିବାକୁ ଲାଗିଲେ, ପ୍ରଭୋ, ସେ କ'ଣ ମୁଁ ? ସେ ଉତ୍ତର ଦେଲେ, ଯେ ମୋ ସହିତ ପାତ୍ରରେ ହାତ ବୁଡ଼ାଇଲା, ସେ ମତେ ଶତ୍ରୁ ହସ୍ତରେ ସମର୍ପଣ କରିବ ।··· · ଏଥିରେ ଯେଉଁ ଯିହୂଦା ତାହାଙ୍କୁ ଶତ୍ରୁ ହସ୍ତରେ ଅର୍ପଣ କଲା, ସେ ଉତ୍ତର ଦେଲା, ହେ ଗୁରୁ ସେ କଅଣ ମୁଁ ? ସେ ତାହାକୁ କହିଲେ, ତୁମ୍ଭେ କହୁଅଛ । (ମାଥିଉ ୨୬ : ୨୧-୨୩, ୨୫) ଯୀଶୁ ଇସ୍କାରିଆ ଯିହୂଦା ଆଗରେ ଏ ପ୍ରକାର କଥା କହିବା କ'ଣ ଉଚିତ ଥିଲା ? ଯିହୁଦା ଦେଖିଲା ତାର ସ୍ୱୟଂଙ୍କରୁ ତାକୁ ସନ୍ଦେହ ଦୃଷ୍ଟିରେ ଦେଖୁଛନ୍ତି । ପୁନଶ୍ଚ ସମସ୍ତଙ୍କ ସାମ୍ନାରେ

ତାଙ୍କୁ ଏ ପ୍ରକାର କହିବା ଦ୍ୱାରା ସେ ନିଜକୁ ଅପମାନିତ ମନେ କରିଥିଲା । ଏହାର ଫଳରେ ତା' ମନରେ ବିଦ୍ରୋହ ଉଠିଲା । ସେ ଶତ୍ରୁମାନଙ୍କ ସହ ଗୁପ୍ତରେ ହାତ ମିଳାଇ ମାତ୍ର ତିରିଶଟି ମୁଦ୍ରା ବିନିମୟରେ ଯୀଶୁଙ୍କୁ ଶତ୍ରୁମାନଙ୍କୁ ଧରାଇ ଦେଲା । କଥାରେ ଅଛି ସନ୍ଦେହାତ୍ମା ବିନଶ୍ୟତି, ଅଯଥା ଯିହୂଦାକୁ ସନ୍ଦେହ କରି ସେ ନିଜର ଶତ୍ରୁ ନିଜେ ତିଆରି କଲେ ଏବଂ ଏ କର୍ମଫଳ ସେ ନିଜେ ଭୋଗିଲେ ।

ଯୀଶୁ ଜଣେ ଯିହୁଦୀ ଥିଲେ । ଯିହୁଦୀମାନଙ୍କର ରାଜା ହେବାପାଇଁ ସେ ଚାହୁଁଥିଲେ । ଯଦିଓ ଏହା ଏତେ ସହଜ ନଥିଲା ତଥାପି ସେ ଜନମତ ସୃଷ୍ଟି କରିବା ପାଇଁ ତାଙ୍କ ହାତରେ ଥିବା ମୁଷ୍ଟିମେୟ ଶିଷ୍ୟଙ୍କୁ ପ୍ରସ୍ତୁତ କରୁଥିଲେ । ମୁଷ୍ଟିମେୟ ଅନୁଯାୟୀଙ୍କ ମଧ୍ୟରେ ତାଙ୍କ ସମୟରେ ତାଙ୍କ ଦ୍ୱାଦଶ ପ୍ରେରିତ ଏବଂ ଯେଉଁ ସ୍ତ୍ରୀମାନେ ଦୁଷ୍ଟ ଆତ୍ମା ଓ ରୋଗରୁ ସୁସ୍ଥ କରାଯାଇଥିଲେ, ଏପରି କେତେକ ସ୍ତ୍ରୀଲୋକ, ଅର୍ଥାତ୍ ମଗ୍ଦଲୀନୀ ନାମ୍ନୀ ମରିୟମ, ଯାହାଙ୍କଠାରୁ ସାତଭୂତ ବାହାରି ଯାଇଥିଲେ, ହେରୋଦଙ୍କ ବେବର୍ତ୍ତା ଖୁଜାଙ୍କ ଭାର୍ଯ୍ୟା ଯୋହାନା, ଶୋଶନ୍ନା ଆଦି ଥିଲେ । (ଲୂକ ୮ : ୨-୩) ଯୀଶୁ ଏମାନଙ୍କୁ ନେଇ ରାଜ୍ୟର ବ୍ୟବସ୍ଥା ବିରୁଦ୍ଧରେ ଷଡ଼ଯନ୍ତ୍ର ଆରମ୍ଭ କରିଦେଲେ । ସେ ଏକଥା ନିଃସନ୍ଦେହରେ ଜାଣିଥିଲେ ଯେ ଫାରୂଶୀମାନେ ଓ ହେରୋଦ ତାଙ୍କୁ ଓ ତାଙ୍କ ଅନୁଯାୟୀଙ୍କୁ ଜୀବନରେ ଛାଡ଼ି ଦେବେ ନାହିଁ । ଖାଦ୍ୟ ପଦାର୍ଥରେ ମଧ୍ୟ ବିଷ ଦେଇ ପାରନ୍ତି । ଏଣୁ ସେ ଶିଷ୍ୟମାନଙ୍କୁ ଦୃଢ଼ ଆଜ୍ଞା ଦେଇଥିଲେ—ସତର୍କ ହୁଅ, ଫାରୂଶୀମାନଙ୍କ ଓ ହେରୋଦଙ୍କ ଖମୀରଠାରୁ ସାବଧାନ ହୋଇଯାଅ । (ମାର୍କ ୮ : ୧୫) ସମସ୍ତ ପ୍ରକାର ସାବଧାନ ହେବା ସତ୍ତ୍ୱେ ଯୀଶୁ ଯିହୁଦୀମାନଙ୍କଦ୍ୱାରା ଧରା ପଡ଼ିଲେ ଏବଂ ସୈନ୍ୟଦଳ, ପ୍ରଧାନ ସେନାପତି ପୁଣି ପଦାତିକମାନଙ୍କଦ୍ୱାରା ବନ୍ଦୀ ହୋଇ ହାନାନଙ୍କ ନିକଟକୁ ଆଣୀତ ହେଲେ । ଯେଉଁ ହାନାନ ସେହି ବର୍ଷର ମହାଯାଜକ କୟାଫାଙ୍କର ଶ୍ୱଶୁର ଥିଲେ । ଶିମୋନ ପିତର ଏବଂ ଆଉ ଜଣେ ଶିଷ୍ୟ ମହାଯାଜକଙ୍କର ପରିଚିତ ଥିବା ଦୃଷ୍ଟିରୁ ଯୀଶୁଙ୍କ ପଛେ ପଛେ ଅନୁଧାବନ କଲେ । (ଯୋହନ ୧୮ : ୧୨-୧୫) ତଥାପି ଯୀଶୁଙ୍କ ଶିଷ୍ୟ ଯୀଶୁଙ୍କୁ ରକ୍ଷା କରିପାରିଲେ ନାହିଁ । ମହାଯାଜକ ଯୀଶୁ ତାହାଙ୍କ ଶିଷ୍ୟମାନଙ୍କ ବିଷୟରେ ଓ ତାଙ୍କ ଶିକ୍ଷା ସମ୍ବନ୍ଧରେ କିଛି କଥାବାର୍ତ୍ତା କରୁଛନ୍ତି । ପଦାତିକମାନଙ୍କ ମଧ୍ୟରୁ ପାଖରେ ଠିଆ ହୋଇଥିବା ଜଣେ; ଯୀଶୁଙ୍କୁ ଚାପୁଡ଼ା ମାରି କହିଲା, 'ତୁ ମହାଯାଜକଙ୍କୁ ଏପରି ଉତ୍ତର ଦେଉଛୁ ?' ଏ ପରିସ୍ଥିତିରେ ହାନାନ ତାଙ୍କୁ ବନ୍ଧା ହୋଇଥିବା ଅବସ୍ଥାରେ ମହାଯାଜକ କୟାଫାଙ୍କ ନିକଟକୁ ପଠାଇବାକୁ ବାଧ୍ୟ ହେଲେ । (ଯୋହନ ୧୮ : ୧୯, ୨୨, ୨୪) ପରେ ସେମାନେ ଯୀଶୁଙ୍କୁ କୟାଫାଙ୍କ ନିକଟରୁ

ପ୍ରାସାଦକୁ ନେଇଗଲେ, ସେତେବେଳେ ପ୍ରାତଃକାଳ ହୋଇଥିଲା । ନିସ୍ତାର ପର୍ବର ପବିତ୍ରତା ରକ୍ଷା କରି ସେମାନେ ପ୍ରାସାଦ ମଧ୍ୟକୁ ପ୍ରବେଶ କଲେ ନାହିଁ । ଅତଏବ ପିଲାତ ସେମାନଙ୍କ ନିକଟକୁ ବାହାରି ଆସି ଯୀଶୁଙ୍କ ଉପରେ ତଦନ୍ତ ଆରମ୍ଭ କଲେ । (ଯୋହନ ୧୮ : ୨୮-୨୯) ପିଲାତ ତାଙ୍କୁ ସର୍ବପ୍ରଥମ ପ୍ରଶ୍ନ କଲେ—ତୁମ୍ଭେ କଅଣ ଯିହୁଦୀମାନଙ୍କର ରାଜା ? ଯୀଶୁ ତାଙ୍କୁ ସ୍ୱର୍ଗ ରାଜ୍ୟ ବିଷୟରେ କହିବା ଆରମ୍ଭ କରିଦେଲେ । ପିଲାତ ତାଙ୍କ ଏତାଦୃଶ ଉତ୍ତରରେ ଖୁବ୍ ସନ୍ତୁଷ୍ଟ ହୋଇ ତାହାଙ୍କୁ ମୁକ୍ତ କରିବାକୁ ଚେଷ୍ଟା କଲେ, କିନ୍ତୁ ଯିହୁଦୀମାନେ ଚିତ୍କାର କରି କହିଲେ, ଯଦି ତୁମ୍ଭେ ଏହି ଲୋକକୁ ମୁକ୍ତ କର, ତାହାଲେ ତୁମ୍ଭେ କାଇସରଙ୍କ ମିତ୍ର ନୁହଁ ; ଯେକେହି ଆପଣାକୁ ରାଜା ବୋଲି କହେ, ସେ କାଇସରଙ୍କ ବିପକ୍ଷରେ କଥା କହେ । (ଯୋହନ ୧୯ : ୧୨) ବ୍ୟକ୍ତିଗତ ଭାବରେ ପିଲାତ ଯୀଶୁଙ୍କର ସପକ୍ଷରେ ଥିଲେ । ତେଣୁ ସେ ତାଙ୍କୁ ରକ୍ଷା କରିବାକୁ ଆପ୍ରାଣ ଚେଷ୍ଟା କଲେ । ପିଲାତ କହିଲେ ଆମ୍ଭେ ଯେ ନିସ୍ତାର ପର୍ବ ସମୟରେ ତୁମ୍ଭମାନଙ୍କ ନିମନ୍ତେ ଜଣକୁ ମୁକ୍ତ କରିଦେଉଁ, ଏହା ତୁମ୍ଭମାନଙ୍କର ପ୍ରଥା ଅଛି; ଅତଏବ ଯିହୁଦୀମାନଙ୍କର ରାଜାଙ୍କୁ ଆମ୍ଭେ ତୁମ୍ଭମାନଙ୍କ ନିମନ୍ତେ ମୁକ୍ତ କରିଦେବୁ ବୋଲି କଅଣ ତୁମ୍ଭମାନଙ୍କର ଇଚ୍ଛା ? ସେଥିରେ ଜନତା ଚିତ୍କାର କରି ଉଠିଲେ, ଏ ଲୋକଟାକୁ ନୁହେଁ, କିନ୍ତୁ ବରବ୍ବାକୁ । ସେହି ବରବ୍ବା ଜଣେ ଡକାଇତ ଥିଲା । (ଯୋହନ ୧୮ : ୩୯-୪୦) ଜନତା ଯୀଶୁଙ୍କ କାର୍ଯ୍ୟକଳାପରେ ଏତେ ଅସନ୍ତୁଷ୍ଟ ଓ ସତର୍କ ଥିଲେ ଯେ, ଗୋଟିଏ ଡକାଇତକୁ ପଛେ ମୁକ୍ତ କରାଯାଉ ମାତ୍ର ଯୀଶୁଙ୍କୁ ନୁହେଁ ବୋଲି ସେମାନେ କହୁଥିଲେ । ସେମାନେ ଆଶଙ୍କା କରୁଥିଲେ ଯୀଶୁ ରାଜ୍ୟରେ ଏ ପ୍ରକାର ରାଜଦ୍ରୋହର ଜାଲ ବିସ୍ତାରିଛନ୍ତି, ଯାହାଙ୍କୁ ଛାଡ଼ିଦେଲେ ସଂପୂର୍ଣ୍ଣ ରାଜ୍ୟ ସେ ନଷ୍ଟଭ୍ରଷ୍ଟ କରିଦେଇ ପାରନ୍ତି । ଏହା ସତ୍ତ୍ୱେ ପିଲାତ ପୁନର୍ବାର ବାହାରକୁ ଯାଇ ସେମାନଙ୍କୁ କହିଲେ, ଦେଖ ଆମେ ଯେ ତାହାଠାରେ କୌଣସି ଦୋଷ ପାଉ ନାହୁଁ । (ଯୋହନ ୧୯ : ୪) ସେଥିରେ ପ୍ରଧାନ ଯାଜକ ଓ ପଦାତିକମାନେ ତାହାଙ୍କୁ ଦେଖି ଚିତ୍କାର କରି କହିଲେ, କ୍ରୁଶରେ ଚଢ଼ାଅ, କ୍ରୁଶରେ ଚଢ଼ାଅ, ପିଲାତ ସେମାନଙ୍କୁ କହିଲେ, ତୁମ୍ଭେମାନେ ତାହାଙ୍କୁ ନେଇଯାଇ କ୍ରୁଶରେ ଚଢ଼ାଅ, କାରଣ ଆମ୍ଭେ ତାହାଠାରେ କୌଣସି ଦୋଷ ପାଉ ନାହୁଁ । (ଯୋହନ ୧୯ : ୬-୭) ପିଲାତଙ୍କ ରାଜଦ୍ରୋହ ଭାବନାକୁ ଜନତା ପସନ୍ଦ କରନ୍ତି ନାହିଁ । କାରଣ ଯିହୁଦୀ-ମାନଙ୍କର ଗୋଟିଏ ବ୍ୟବସ୍ଥା ଅଛି ଓ ସେହି ବ୍ୟବସ୍ଥା ଅନୁସାରେ ସେ ପ୍ରାଣଦଣ୍ଡର ଯୋଗ୍ୟ, କାରଣ ସେ ନିଜକୁ ଈଶ୍ୱରଙ୍କ ପୁତ୍ର ବୋଲି କହିଅଛି । (ଯୋହନ ୧୯ : ୭) ଅଥଚ ପିଲାତ ମୋହବଶତଃ ଯୀଶୁଙ୍କୁ ଛାଡ଼ିଦେବାକୁ ଚାହୁଁଥିଲେ । ଅନେକ ଚେଷ୍ଟା କରି ମଧ୍ୟ ସେ ଯୀଶୁଙ୍କୁ ରକ୍ଷା କରି ପାରିଲେ ନାହିଁ । ଯୀଶୁଙ୍କୁ କ୍ରୁଶରେ ଚଢ଼ାଗଲା । ଆଉ ପିଲାତ ଅଭିଯୋଗ ପତ୍ର ମଧ୍ୟ ଲେଖି କ୍ରୁଶ ଉପରେ ଲଗାଇଦେଲେ ।

ସେଥିରେ ଲେଖାଥିଲା—ନାଜରିତର ଯୀଶୁ ଯିହୁଦୀମାନଙ୍କ ରାଜା । ଯିହୁଦୀମାନଙ୍କ ମଧ୍ୟରୁ ଅନେକେ ଏହି ଅଭିଯୋଗପତ୍ର ପାଠ କଲେ, କାରଣ ଯେଉଁ ସ୍ଥାନରେ ଯୀଶୁଙ୍କୁ କ୍ରୁଶରେ ଚଢ଼ାଯାଇଥିଲା, ତାହା ନଗରର ନିକଟରେ ଥିଲା; ପୁଣି ସେହି ପତ୍ର ଏବ୍ରୀ, ଲାଟିନ୍ ଓ ଗ୍ରୀକ୍ ଭାଷାରେ ଲେଖା ହୋଇଥିଲା । ତେଣୁ ଯିହୁଦୀମାନଙ୍କର ପ୍ରଧାନ ଯାଜକମାନେ ପିଲାତଙ୍କୁ କହିଲେ, ଯିହୁଦୀମାନଙ୍କର ରାଜା ବୋଲି ନଲେଖି ବରଂ ମୁଁ ଯିହୁଦୀମାନଙ୍କର ରାଜା ବୋଲି ସେ କହିଲା, ଏହା ଲେଖନ୍ତୁ । ମାତ୍ର ପିଲାତ ମାନିଲେ ନାହିଁ । (ଯୋହନ ୧୯ : ୧୯-୨୨) ଏକଥା ଯିହୁଦୀମାନେ କହିବାକୁ ଚାହୁଁଥିଲେ ଯେ, ଯେ ରାଜା ହେବାପାଇଁ ଷଡ଼ଯନ୍ତ୍ର କରେ ସେ ମୃତ୍ୟୁଦଣ୍ଡ ହିଁ ଭୋଗ କରିବା ଉଚିତ ।

କେବଳ ସେତିକି ନୁହେଁ । ଯୀଶୁ ଯିହୁଦୀମାନଙ୍କୁ ଉପହାସ କରୁଥିଲେ । ସେ ନିଜକୁ ଈଶ୍ୱରଙ୍କ ସହ ସମଜ୍ଞାନ କରି ଯିହୁଦୀମାନଙ୍କ ପରମ୍ପରା ଓ ବ୍ୟବସ୍ଥା ବିରୁଦ୍ଧରେ ପଦକ୍ଷେପମାନ ନେଉଥିଲେ । ଯାହା ଫଳରେ ଲୋକେ ତାଙ୍କ ଉପରେ ଅସନ୍ତୁଷ୍ଟ ହୋଇ ପଥର ଫୋପାଡ଼ୁଥିଲେ ଏବଂ ସେ ମଧ୍ୟ ସେ ସ୍ଥାନ ତ୍ୟାଗ କରି ପଳାଇ ଯାଉଥିଲେ । ଥରେ ଯୀଶୁ ଯିହୁଦୀମାନଙ୍କ ସମ୍ମୁଖରେ ତାଙ୍କ ପୂର୍ବଜଙ୍କୁ ଉପହାସ କରି କହିଲେ ଯେ, ସତ୍ୟ ସତ୍ୟ ମୁଁ ତୁମ୍ଭମାନଙ୍କୁ କହୁଛି ଅବ୍ରାହାମଙ୍କ ଜନ୍ମ ପୂର୍ବରୁ ମୁଁ ଅଛି । ସେଥିରେ ସେମାନେ ତାହାଙ୍କ ଉପରକୁ ଫୋପାଡ଼ିବା ପାଇଁ ପଥର ଉଠାଇଲେ, କିନ୍ତୁ ଯୀଶୁ ଗୋପନରେ ମନ୍ଦିରରୁ ବାହାରି ଗଲେ । (ଯୋହନ ୮ : ୫୮-୫୯) ଜଣେ ଯୁବକ ନିଜକୁ ସହସ୍ର ବର୍ଷ ପୂର୍ବ ଅବ୍ରାହମଙ୍କ ବିଷୟରେ କହନ୍ତି କି ଅବ୍ରାହମଙ୍କ ଜନ୍ମ ପୂର୍ବରୁ ସେ ଥିଲେ । ଯିହୁଦୀମାନେ ଏ ପ୍ରକାର କଥାକୁ ପୂର୍ବଜଙ୍କ ପ୍ରତି ଘୋର ଅପମାନ ବୋଲି ଭାବୁଥିଲେ । ସେହିପରି ସେ ନିଜକୁ ଈଶ୍ୱର ଜ୍ଞାନ କରି କହୁଥିଲେ—ମୁଁ ଏବଂ ମୋର ପିତା ଏକ । ଏହା ଶୁଣି ଯିହୁଦୀମାନେ ତାହାଙ୍କୁ ଫୋପାଡ଼ିବା ନିମନ୍ତେ ଆଉ ଥରେ ପଥର ଆଣିଲେ । ଯୀଶୁ ସେମାନଙ୍କୁ ଉତ୍ତର ଦେଲେ, ମୁଁ ପିତାଙ୍କଠାରୁ ଅନେକ ଉତ୍ତମ କର୍ମ ତୁମ୍ଭମାନଙ୍କୁ ଦେଖାଇଛି; ସେହି ସବୁ କର୍ମ ମଧ୍ୟରୁ କେଉଁ କର୍ମ ନିମନ୍ତେ ମତେ ପଥର ଫୋପାଡ଼ୁଛ ? ଯିହୁଦୀମାନେ ତାଙ୍କୁ ଉତ୍ତର ଦେଲେ, ଉତ୍ତମ କର୍ମ ନିମନ୍ତେ ଆମ୍ଭେମାନେ ତୋତେ ପଥର ଫୋପାଡ଼ୁ ନାହୁଁ, କିନ୍ତୁ ଈଶ୍ବର ନିନ୍ଦା ନିମନ୍ତେ, ପୁଣି ତୁ ମନୁଷ୍ୟ ହୋଇ ଆପଣାକୁ ଈଶ୍ୱର ବୋଲାଉ ଥିବାରୁ (ଯୋହନ ୧୦-୩୦-୩୩) ଆଜି ମଧ୍ୟ ଯଦି କୌଣସି ବ୍ୟକ୍ତି ନିଜକୁ ଭଗବାନ ବା ଈଶ୍ୱର ବୋଲି କହନ୍ତି ତାହାଙ୍କୁ ଲୋକେ ଯାହା କହିବା କଥା ତାହା କହିଲେ । ଯିହୁଦୀମାନେ ତାଙ୍କ କଥାରେ ଭୀଷଣ ବିରକ୍ତ ହେଉଥିଲେ ଏବଂ ତାଙ୍କୁ ମାରିବା ପାଇଁ ଚାହୁଁଥିଲେ । ସେଥିରେ ସେମାନେ ତାହାଙ୍କୁ ଧରିବାକୁ ପୁନର୍ବାର ଚେଷ୍ଟା

ଭଲେ ମାତ୍ର ସେ ସେମାନଙ୍କ ହସ୍ତରେ ନ ପଡ଼ି ବାହାରି ଗଲେ । (୧୦ : ୩୯) ତେଣୁ ସେମାନେ କ୍ରୋଧରେ ଉନ୍ମତ୍ତ ହେଲେ, ଆଉ ଯୀଶୁଙ୍କ ପ୍ରତି କ'ଣ କରିପାରନ୍ତ, ସେ ବିଷୟରେ ପରସ୍ପର କଥାବାର୍ତ୍ତା କରିବାକୁ ଲାଗିଲେ । (ଲୂକ ୬ : ୧୧) ।

ଯୀଶୁ କେବଳ ଏ ପ୍ରକାର ପ୍ରଶ୍ନରେ ନିଜକୁ ସୀମିତ ନ ରଖି ଯିହୁଦୀଙ୍କ ବ୍ୟବସ୍ଥା ଓ ପରମ୍ପରା ଉପରେ ମଧ୍ୟ ଦାରୁଣ ପ୍ରହାର କରିବାକୁ ପଛାଇଲେ ନାହିଁ । ଯିହୁଦୀ, ଫାରୂଶୀ ଏବଂ ଅଧ୍ୟାପକ ଗଣଙ୍କ ବିଶ୍ୱାସ ଥିଲା ଯେ ପରମେଶ୍ୱର ଦିନରେ ସୃଷ୍ଟି ରଚନା କରି ସପ୍ତମ ଦିନ ବିଶ୍ରାମ କରିଥିଲେ । ଏ ଦୃଷ୍ଟିରୁ ସପ୍ତମ ଦିନକୁ ବିଶ୍ରାମ ଦିବସ ମାନି କୌଣସି କାର୍ଯ୍ୟ କରୁ ନ ଥିଲେ ଏବଂ ସେଥିପାଇଁ ନିୟମ ମଧ୍ୟ ପ୍ରସ୍ତୁତ କରିଥିଲେ । ମାତ୍ର ଯୀଶୁ କୌଣସି ବିଶ୍ରାମ ଦିବସରେ ଶସ୍ୟ କ୍ଷେତ ଦେଇ ଗମନ କଲେ, ଆଉ ତାହାଙ୍କର ଶିଷ୍ୟମାନେ କ୍ଷୁଧିତ ହୋଇ ଶସ୍ୟର ଶିଂଷା ଛିଣ୍ଡାଇ ଖାଇବାକୁ ଲାଗିଲେ । (ମାଥିଉ ୧୨ : ୧-୨, ମାର୍କ ୨ : ୨୩-୨୪, ଲୂକ ୬ : ୧) ଯାହା ବିଶ୍ରାମ ବାରଦିନ ନିଷେଧ ଥିଲା । ପୁଣି ଆଉ ଏକ ବିଶ୍ରାମ ବାରଦିନ ସମାଜ ଗୃହରେ ପ୍ରବେଶ କରି ଶିକ୍ଷା ଦେଉଥିଲେ, ସେଠାରେ ଜଣେ ଲୋକଙ୍କ ଡାହାଣ ହାତ ଶୁଖି ଯାଇଥିଲା ତାଙ୍କୁ ଭଲ କଲେ । (ଲୂକ ୬ : ୬-୧୦) ଏ ପ୍ରକାର ସେ ବହୁଥର ରାଜକୀୟ ନିୟମ ଲଙ୍ଘିଲେ ଏବଂ ନିଜର ଅପରାଧ ଲୁଚାଇବା ପାଇଁ ଅନେକ ତର୍କ କଲେ । ମାତ୍ର ତର୍କଦ୍ୱାରା ଅପରାଧ କ୍ଷମା ହେଲା ନାହିଁ । ଶେଷରେ ତାଙ୍କୁ ସେମାନେ କ୍ରୁଶବିଦ୍ଧ କରିବା ପାଇଁ ବାଧ୍ୟ ହେଲେ ।

ପାପପୁଣ୍ୟ ଦୃଷ୍ଟିରୁ ଯଦି ଏଠି ବିଚାର କରାଯାଏ ତାହାହେଲେ ଶ୍ରୀକୃଷ୍ଣଙ୍କପରି ଯୀଶୁଖ୍ରୀଷ୍ଟ ମଧ୍ୟ ବହୁ ଶିଶୁଙ୍କ ହତ୍ୟାପାଇଁ ଦାୟୀ ଥିଲେ । ମଥୁରାରେ ଜନ୍ମ ହୋଇ ଗୋପପୁରକୁ ଚାଲିଯିବା ଦ୍ୱାରା କଂସ ଅଯଥା ମଥୁରାର ସହସ୍ର ଶିଶୁଙ୍କୁ ବଧ କରିବା କାରଣରେ କୃଷ୍ଣ ଭବ ହତ୍ୟା କଲାପରି ଯୀଶୁ ବେଥଲେହମ୍‌ରେ ଜନ୍ମ ହୋଇ ମିଶରକୁ ପଳାଇଯିବା ଦ୍ୱାରା ଦୁଇବର୍ଷ ଓ ସେଥିରୁ ନ୍ୟୂନ ବୟସ୍କ ଯେତେ ବାଳକ ବେଥଲେହମ୍ ପୁଣି ସେଥିର ସୀମା ମଧ୍ୟରେ ଥିଲେ, ଲୋକ ପଠାଇ ହେରୋଦ ସେମାନଙ୍କୁ ବଧ କରାଇଲେ । (ମାଥିଉ ୨ : ୧୬) ଅତଏବ ଏ ଶିଶୁମାନଙ୍କର ହତ୍ୟାପାଇଁ କଣ ଅବତାରୀ କୃଷ୍ଣ ଓ ତ୍ରାଣକର୍ତ୍ତା ଯୀଶୁ ଦାୟୀ ନୁହନ୍ତି କି ? ଏ ପାପ ପାଇଁ କୃଷ୍ଣ ଶରରେ ବିଦ୍ଧ ହେଲେ ଓ ଖ୍ରୀଷ୍ଟ କ୍ରୁଶବିଦ୍ଧ ହେଲେ ବୋଲି କହିଲେ କ'ଣ ଯଥାର୍ଥ ହେବ ନାହିଁ ।

କୁହାଯାଏ ଯେ, ଯୀଶୁ ବ୍ୟବସ୍ଥା ଲଙ୍ଘନ କରିଥିବାରୁ କ୍ରୁଶବିଦ୍ଧ ହେଲେ । ଥରେ ଯେତେବେଳେ ତାହାଙ୍କ ମା ଓ ଭାଇମାନେ ଆସି ବାହାରେ ଠିଆ ହୋଇ

ତାହାଙ୍କୁ ଡକାଇ ପଠାଇଲେ, ସେଥିରେ ତାହାଙ୍କ ଚତୁର୍ଦ୍ଦିଗରେ ବସିଥିବା ଲୋକ ସମୂହ ତାହାଙ୍କୁ କହିଲେ ଦେଖନ୍ତୁ, ଆପଣଙ୍କ ମା, ଭାଇ ଓ ଭଉଣୀମାନେ ବାହାରେ ଥାଇ ଆପଣଙ୍କୁ ଖୋଜୁଛନ୍ତି । ସେ ସେମାନଙ୍କୁ ଉତ୍ତର ଦେଲେ, ମୋହର ମା ଓ ଭାଇମାନେ କିଏ ? ଆଉ ସେ ଆପଣା ଚାରିଆଡ଼େ ବସିଥିବା ଲୋକମାନଙ୍କ ପ୍ରତି ଦୃଷ୍ଟିପାତ କରି କହିଲେ, ଦେଖ, ମୋହର ମା ଓ ମୋହର ଭାଇମାନେ ଯେ କେହି ଈଶ୍ୱରଙ୍କ ଇଚ୍ଛା ସାଧନ କରେ ସେ ମୋହର ଭାଇ ଭଉଣୀ ଓ ମା । (ମାର୍କ ୩ : ୩୧-୩୫, ମାଥିଉ ୧୨ : ୪୬-୫୦) ଯୀଶୁଙ୍କ ନିଜ ଭାଷାରେ ମୋଶା କହିଛନ୍ତି, ଆପଣା ପିତା ମାତାଙ୍କୁ ସମାଦର କର, ଆଉ ଯେ କେହି ପିତାମାତାଙ୍କୁ ଅଭିଶାପ ଦିଏ, ନିଶ୍ଚୟ ପ୍ରାଣଦଣ୍ଡ ଭୋଗ କରିବ । (ମାର୍କ ୭ : ୧୦ ମାଥିଉ ୧୫ : ୪) ପ୍ରକୃତରେ ଯୀଶୁ ସ୍ୱ ମାତା ପିତାଙ୍କ ପ୍ରତି କଣ ଆଦରର ଧ୍ୟାନପ୍ରକଟ କରିଛନ୍ତି କି ? ମା ଓ ଭାଇ ବାହାରେ ପ୍ରତୀକ୍ଷା କରିଛନ୍ତି । ଏ ସମୟରେ ତାଙ୍କୁ ସ୍ୱାଗତ କରି ନଆଣି ଏ ପ୍ରକାର ବଚନ ବ୍ୟବହାର କରିବା ଦ୍ୱାରା କଣ ସେ ବ୍ୟବସ୍ଥା ଲଙ୍ଘନ କରି ନାହାନ୍ତି କି ? ଏ ଦୃଷ୍ଟିରୁ ହୁଏତ ସେ ଦଣ୍ଡ ଭୋଗ କରିଥାଇ ପାରନ୍ତି । ଆମକୁ ଯେପରି କୁହାଯାଇଛି ଯେ ସେ ଆମ୍ଭମାନଙ୍କର ପାପ ପାଇଁ କ୍ରୁଶବିଦ୍ଧ ହେଲେ ତାହା କପଟ ମନାଯାଇ ପାରିବ ।

ବହୁଳ ଭାବରେ ଏହା ମଧ୍ୟ ପ୍ରଚାର ହୋଇଛି ଯେ ଯୀଶୁ ପରମ ପିତା ପରମେଶ୍ୱରଙ୍କ ଇଚ୍ଛା ପୂର୍ତ୍ତି ନିମନ୍ତେ ସ୍ୱ ଇଚ୍ଛାରେ ହସି ହସି କ୍ରୁଶବିଦ୍ଧ ହେଲେ । ସେ ସ୍ୱ ଇଚ୍ଛାରେ ମୃତ୍ୟୁବରଣ କଲେ ନା ଅନିଚ୍ଛାରେ ? ଯଦି କୁହାଯାଏ ଈଶ୍ୱରଙ୍କ ଇଚ୍ଛାରେ ସେ ମୃତ୍ୟୁ ବରଣ କଲେ, ତେବେ ତ ସମସ୍ତ ଜୀବଜନ୍ତୁ ଈଶ୍ୱରଙ୍କ ଇଚ୍ଛାରେ ମୃତ୍ୟୁ ବରଣ କରନ୍ତି । ଯୀଶୁଖ୍ରୀଷ୍ଟଙ୍କ ମୃତ୍ୟୁର ବିଶେଷ ତାତ୍ପର୍ଯ୍ୟ ଏଠି ରହିଲା କେଉଁଠି ? ଯଦି କୁହାଯାଏ ସେ ସ୍ୱ ଇଚ୍ଛାରେ ମୃତ୍ୟୁ ବରଣ କଲେ ତାହେଲେ ସେ ଏତେ ଶୋକାକୁଳ ହୋଇ ପଡ଼ିଥିଲେ କାହିଁକି ?

ଯୀଶୁ ଗେଥ୍‌ଶିମାନୀରେ ପହଞ୍ଚି ଆପଣା ଶିଷ୍ୟମାନଙ୍କୁ କହିଲେ, ମୁଁ ପ୍ରାର୍ଥନା କରୁଥିବା ପର୍ଯ୍ୟନ୍ତ ତୁମ୍ଭେମାନେ ଏଠାରେ ବସିଥାଅ । ପୁଣି ସେ ପିତର, ଯାକୁବ ଓ ଯୋହନଙ୍କୁ ସାଙ୍ଗରେ ନେଇ ଅତ୍ୟନ୍ତ ଭୟାନ୍ୱିତ ଓ ବ୍ୟଥିତ ହେବାକୁ ଲାଗିଲେ । ସେଥିରେ ସେ ସେମାନଙ୍କୁ କହିଲେ, ମୋହର ପ୍ରାଣ ମୃତ୍ୟୁ ଭୋଗ କରିବା ପରି ଅତ୍ୟନ୍ତ ଶୋକାକୁଳ ହେଉଅଛି. ତୁମ୍ଭେମାନେ ଏଠାରେ ରହି ଜାଗିଥାଅ । ପୁଣି ସେ ଅଳ୍ପଦୂର ଆଗକୁ ଭୂମିରେ ପଡ଼ି ଯଦି ହୋଇପାରେ, ତେବେ ସମୟ ତାହାଙ୍କଠାରୁ ଯେପରି ଦୂର ହୁଏ, ଏଥି ନିମନ୍ତେ ପ୍ରାର୍ଥନା କରିବାକୁ ଲାଗିଲେ । ଆଉ ସେ କହିଲେ, ଅବ୍ବା, ପିତଃ, ସମସ୍ତ ତୁମ୍ଭର ସାଧ୍ୟ, ଏହି ପାନପାତ୍ର ମୋଠାରୁ

ଦୂର କର, ତଥାପି ମୋହର ଇଚ୍ଛା ନୁହେଁ । ମାତ୍ର ତୁମ୍ଭର ଇଚ୍ଛା । (ମାର୍କ ୧୪ : ୩୨-୩୬) ଏ ମାର୍ମିକ ହୃଦୟ ବିଦାରକ ବର୍ଣ୍ଣନା ଜଣାଇଦିଏ ଯେ, ଯୀଶୁଙ୍କ ଇଚ୍ଛା ନ ଥିଲା, ମାତ୍ର ସେସବୁ ଅତି ଜଟିଳ ହୋଇଯାଇଥିଲା ।

ମୃତ୍ୟୁ ଯୀଶୁଙ୍କ ପାଇଁ ଭୀଷଣ ଯନ୍ତ୍ରଣାଦାୟକ ଥିଲା । ଈଶ୍ବର କେବଳ ତାଙ୍କୁ କ୍ଷମା କରିପାରିଲେ ନାହିଁ । ତାଙ୍କୁ କ୍ରୁଶବିଦ୍ଧ କରାଗଲା । ତାହାଙ୍କ ଦକ୍ଷିଣ ପାର୍ଶ୍ବରେ ଜଣେ ଓ ବାମ ପାର୍ଶ୍ବରେ ଜଣେ, ଏହିପରି ଦୁଇଜଣ ଡକାଇତ, ତାହାଙ୍କ ସହିତ କ୍ରୁଶରେ ଚଢ଼ାଗଲେ । ଆଉ ସେହି ବାଟ ଦେଇ ଯାଉଥିବା ଲୋକମାନେ ଆପଣା ଆପଣା ମୁଣ୍ଡ ହଲାଇ ତାହାଙ୍କର ନିନ୍ଦା କରି କହିବାକୁ ଲାଗିଲେ, ହେ ମନ୍ଦିର ଭଙ୍ଗକାରୀ ଓ ତିନିଦିନରେ ତାହା ନିର୍ମାଣକାରୀ; ତୁ ଯେବେ ଈଶ୍ବରଙ୍କ ପୁତ୍ର, ତେବେ ଆପଣାକୁ ରକ୍ଷା କର, କ୍ରୁଶରୁ ଓହ୍ଲାଇ ଆ । ପ୍ରଧାନ ଯାଜକମାନେ ମଧ୍ୟ ସେହି ପ୍ରକାରେ ଶାସ୍ତ୍ରୀ ଓ ପ୍ରାଚୀନବର୍ଗଙ୍କ ସହିତ ପରିହାସ କରି କହିବାକୁ ଲାଗିଲେ; ସେ ଅନ୍ୟମାନଙ୍କୁ ରକ୍ଷା କଲା, ନିଜକୁ ରକ୍ଷା କରିପାରୁ ନାହିଁ । ସେ ପରା ଇସ୍ରାଏଲର ରାଜା; ସେ ଏହିକ୍ଷଣି କ୍ରୁଶରୁ ଓହ୍ଲାଇ ଆସୁ, ତେବେ ଆମ୍ଭେମାନେ ତାହାଠାରେ ବିଶ୍ବାସ କରିବା, ସେ ଈଶ୍ବରଙ୍କ ଉପରେ ନିର୍ଭର କରେ; ସେ ଯଦି ତାହାଠାରେ ସନ୍ତୁଷ୍ଟ, ତା'ହେଲେ ଏହିକ୍ଷଣି ତାହାକୁ ରକ୍ଷା କରନ୍ତୁ । ସେ ତ କହିଥିଲା, ମୁଁ ଈଶ୍ବରଙ୍କ ପୁତ୍ର, ପୁଣି ଯେଉଁ ଡକାଇତମାନେ ତାହାଙ୍କ ସହିତ କ୍ରୁଶରେ ଚଢ଼ାଯାଇଥିଲେ, ସେମାନେ ସୁଦ୍ଧା ତାହାଙ୍କୁ ସେହି ପ୍ରକାରେ ନିନ୍ଦା କରିବାକୁ ଲାଗିଲେ । (ମାଥିଉ ୨୭ : ୩୮-୪୪) ଏ ପ୍ରକାର ଆକ୍ଷେପପୂର୍ଣ୍ଣ ଖ୍ରୀଷ୍ଟଙ୍କ ପାଇଁ ଯେତେ କଷ୍ଟପ୍ରଦ ନଥିଲା ସେତେ ଯନ୍ତ୍ରଣା-ଦାୟକ ଥିଲା ତାଙ୍କ କ୍ରୁଶର ଯନ୍ତ୍ରଣା, ସେ ଖୁବ ଉଚ୍ଚ ସ୍ବରରେ ପାଟିକରି ଉଠିଲେ— ଏଲୀ, ଏଲୀ, ଲାମା ସବକ୍ତାନୀ ? ଅର୍ଥାତ୍—ହେ ମୋହର ଈଶ୍ବର, ତୁମ୍ଭେ ମତେ କାହିଁକି ପରିତ୍ୟାଗ କଲ ? ଏ ପ୍ରକାର ଯୀଶୁ ପୁନର୍ବାର ଉଚ୍ଚ ସ୍ବରରେ ଡାକି ପ୍ରାଣତ୍ୟାଗ କଲେ । (ସେହି ୨୭ : ୪୬.୫୦) ଯଦି ଆମେ ବିଶ୍ବାସ କରିବାକୁ ବାଧ୍ୟ ଯେ ପରମେଶ୍ବରଙ୍କ ଏକମାତ୍ର ପୁତ୍ର ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କୁ ପାପମୁକ୍ତ କରି ଆମର ପରିତ୍ରାଣ ପାଇଁ ପଠାଇଥିଲେ ଏବଂ ତାଙ୍କୁ ବିଶ୍ବାସ କଲେ ଆମେ ମୁକ୍ତି ପାଇବୁ ତାହେଲେ ଖ୍ରୀଷ୍ଟଙ୍କ ପୂର୍ବରୁ ଯେଉଁମାନେ ମୃତ ହୋଇଛନ୍ତି ସେମାନେ କେଉଁ ଦଶା ପ୍ରାପ୍ତ ହୋଇଥିବେ ? ସେମାନେ ତ ମୁକ୍ତି ପାଇ ନ ଥିବେ । ପରମେଶ୍ବରଙ୍କ ପକ୍ଷରୁ ଦୂରଦର୍ଶୀତାପୂର୍ଣ୍ଣ କାର୍ଯ୍ୟ ହୋଇଥାନ୍ତା ଯଦି ସେ ପ୍ରଥମରୁ ହିଁ ଯୀଶୁ ଖ୍ରୀଷ୍ଟଙ୍କୁ ପଠାଇ ମଣିଷକୁ ପ୍ରାରମ୍ଭିକ ପାପରୁ କ୍ଷାନ୍ତ କରିଥାନ୍ତେ । ପ୍ରଥମେ ପ୍ରଶ୍ନ ଉଠେ ବାସ୍ତବରେ ପରମେଶ୍ବର କଣ ଯୀଶୁଖ୍ରୀଷ୍ଟଙ୍କର ଲୌକିକ ପିତା ଥିଲେ କି ? ଯଦି ସେ ଲୌକିକ ପିତା ଥିଲେ ତେବେ ତାଙ୍କୁ ଲୌକିକ ଶ୍ବଶୁର, ଶାଳକ ଆଦି ହେବାକୁ ବାଧ୍ୟ । ଏ ଦୃଷ୍ଟିରୁ ସେ ଦୋଷମୁକ୍ତ ହୋଇପାରିବେ ନାହିଁ ।

ଅନ୍ୟକଥା ହେଲା ଯଦି ଈଶ୍ୱର ଯୀଶୁଖ୍ରୀଷ୍ଟଙ୍କ ପରାମର୍ଶରେ ଲୋକଙ୍କୁ କ୍ଷମା ଓ ପରିତ୍ରାଣ କରିବା କଥା ସତ୍ୟ ହୁଏ ତେବେ କୁରାନ୍‌ର ପୈଗମ୍ବର ମହମ୍ମଦ ଏବଂ ଗୀତାର ଅବତାରୀ କୃଷ୍ଣଙ୍କ ଏତାଦୃଶ ପ୍ରତିଶ୍ରୁତିକୁ ସତ୍ୟ ବୋଲି କାହିଁକି ମନାଯିବ ନାହିଁ ? ମନୁଷ୍ୟ ଓ ପରମାତ୍ମାଙ୍କ ମଧ୍ୟରେ କୌଣସି ମଧ୍ୟସ୍ଥତାର ଆବଶ୍ୟକତା କ'ଣ ? ପୁନଶ୍ଚ ଏମାନଙ୍କ ସମ୍ମୁଖରେ ପାପ ସ୍ୱୀକାର କରିଦେଲେ କପରି ଆମେ ମୁକ୍ତି ପାଇଯିବୁ ? ଯଦି ଆମେ ମୁକ୍ତି ପାଇଯିବୁ ତେବେ ଆମର ଶୁଭ ଅଶୁଭ କର୍ମର ଫଳ କିଏ ଭୋଗ କରିବ ? ପାପ ତ କୌଣସି ଦ୍ରବ୍ୟ ନୁହେଁ ଯେ କିଏ ଏହାକୁ ପିଠିରେ ବୋହି ଆମ ପାଇଁ ଗ୍ରହଣ କରିବ । ଯଦି ପ୍ରଭୁ ଯୀଶୁଖ୍ରୀଷ୍ଟ ମଧ୍ୟ ସ୍ୱ-କର୍ମଫଳ ଭୋଗ କଲେ ତେବେ ଆମେ କପରି ଆମ କର୍ମଫଳ ଭୋଗରୁ ସହଜରେ କେବଳ ବିଶ୍ୱାସ କରି-ଦେଲେ ରକ୍ଷା ପାଇଯିବୁ ?

କୁହାଯାଏ ପାଇଯିବୁ, ଯେହେତୁ ଖ୍ରୀଷ୍ଟ ଧର୍ମରେ ଜୀବାତ୍ମାକୁ ଅନାଦି ଓ ଅନନ୍ତ ସତ୍ତା ବୋଲି ମନାଯାଏ ନାହିଁ କିମ୍ବା ପୁନର୍ଜନ୍ମକୁ ମଧ୍ୟ ସ୍ୱୀକାର କରାଯାଏ ନାହିଁ । ତେବେ ଯଦି ଆମେ ଏ ସିଦ୍ଧାନ୍ତର ଆଧାର ଉପରେ ଏହା କାହିଁକି ଜନ୍ମ ସମୟରେ ଆତ୍ମା ଈଶ୍ୱର ସୃଷ୍ଟି କରିଦିଅନ୍ତି ଓ ମୃତ୍ୟୁ ପରେ ଏହା ନଷ୍ଟ ହୋଇଯାଏ, ତେବେ ମୃତ୍ୟୁ ପରେ କୌଣସି ଜୀବାତ୍ମା ରହେ ନାହିଁ ଯେପରି ସ୍ୱର୍ଗ ଓ ନର୍କକୁ ପରମେଶ୍ୱର ପଠାନ୍ତି । ଏଥିରେ ମୁକ୍ତି ନାହିଁ କିମ୍ବା ସ୍ୱର୍ଗ ନର୍କର ମୂଲ୍ୟ ନାହିଁ । ଯେବେ ପୁନର୍ଜନ୍ମ ନାହିଁ ଏବଂ ଜୀବଗଣ ଭଲମନ୍ଦ କର୍ମ ଅନୁସାରେ ଫଳଭୋଗ କରନ୍ତି ନାହିଁ, ତେବେ ମୃତ୍ୟୁ ପରେ ସ୍ୱର୍ଗ ବା ନର୍କର ପ୍ରତିଶ୍ରୁତି ଦେବାର ଅର୍ଥ ଜଣାପଡ଼େ ନାହିଁ । ଏଠି ଜଣେ ମନନଶୀଳ ମଣିଷ "ବିଶ୍ୱାସ" ପାଇଁ "କାରଣ"କୁ ଆନୁଷ୍ଠାନିକ ଧାର୍ମିକ ସଂସ୍ଥାକୁ ସମର୍ପଣ କରିପାରିବ ନାହିଁ ।



# ଯୀଶୁଖ୍ରୀଷ୍ଟଙ୍କ ଜନ୍ମ ଓ ମୃତ୍ୟୁ ସମ୍ପର୍କରେ

ପ୍ରଭୁ ଯୀଶୁଖ୍ରୀଷ୍ଟ ଆଜି ବିଶ୍ୱବ୍ୟାପ୍ତ । ପୃଥିବୀରେ ଏପରି କୌଣସି ଦେଶ ନାହିଁ ଯେଉଁଠି ଖ୍ରୀଷ୍ଟ ସ୍ଥାନ ନାହାନ୍ତି । ଏପରିକି କୌଣସି ସହର ନାହିଁ, ଯେଉଁଠି ଗୀର୍ଜା ନାହିଁ । ସବୁଠାରୁ ଅନୁନ୍ନତ ଗ୍ରାମ ଏପରି ବନବାସୀ କ୍ଷେତ୍ର ମଧ୍ୟକୁ ମଧ୍ୟ ସୁସମାଚାର ପହଞ୍ଚି ସାରିଛି । ବାଇବେଲ ସୋସାଇଟି ମାଧ୍ୟମରେ ଯେପରି ଜଗତର ସବୁଦେଶର ଲୋକେ ନିଜ ନିଜ ଭାଷାରେ ବାଇବେଲ ଓ ତାହାର ଅଂଶବିଶେଷ ପାଇପାରିବେ ସେଥିପାଇଁ ୧୮୦୪ ମସିହାଠାରୁ ପ୍ରାୟ ୧୯୬୬ ପର୍ଯ୍ୟନ୍ତ ସବୁ ଭାଷାରେ ବାଇବେଲ ଓ ତାହାର ଅଂଶ ପ୍ରକାଶିତ କରି ଜନସାଧାରଣଙ୍କୁ ଖ୍ରୀଷ୍ଟଧର୍ମ ଓ ଯୀଶୁଙ୍କ ଜୀବନୀ ଯୋଗାଇ ଦିଆଯାଇଛି । ପୃଥିବୀର ବିଭିନ୍ନ ସଂସ୍ଥା ଡାକଯୋଗେ କିପରି ଅଣ୍ଟଲୋକେ ପ୍ରଭୁଙ୍କ ପରିଚୟ ପାଇ ପାରିବେ ଏଥିପାଇଁ ଶିକ୍ଷାକେନ୍ଦ୍ର ଗୁଡ଼ିକ ମାଗଣାରେ ଏହି ପବିତ୍ରତମ କାର୍ଯ୍ୟ କରି ଆସୁଛନ୍ତି ।

ବାଇବେଲର ବିଶିଷ୍ଟ ଚରିତ୍ର ହେଉଛନ୍ତି ପ୍ରଭୁ ଯୀଶୁଖ୍ରୀଷ୍ଟ । ନୂତନ ନିୟମ ହେଉଛି ତାଙ୍କର ଜୀବନୀ ଓ ଶିକ୍ଷାର ପ୍ରତ୍ୟକ୍ଷ ବିବରଣୀ । ସନ୍ଥ ଯୋହନ ସେହି ପ୍ରଭୁ ଯୀଶୁଙ୍କ ସମ୍ପର୍କରେ ସାକ୍ଷ୍ୟ ଦେବାକୁ ଯାଇ କହନ୍ତି : ଈଶ୍ୱର ଜଗତକୁ ଏତେ ପ୍ରେମ କଲେ ଯେ, ସେ ଆପଣା ଅଦ୍ୱିତୀୟ ପୁତ୍ରଙ୍କୁ ଦାନ କଲେ, ଯେପରି ଯେ କେହି ତାହାଙ୍କଠାରେ ବିଶ୍ୱାସ କରେ, ସେ ବିନଷ୍ଟ ନ ହୋଇ ଅନନ୍ତ ଜୀବନ ପ୍ରାପ୍ତ ହୁଏ । [୩ : ୧୬] ଯୀଶୁ ମଧ୍ୟ ସ୍ୱ ଶକ୍ତି ସମ୍ପର୍କରେ ଆମକୁ କହନ୍ତି ଯେ ସେ ପଥ, ସତ୍ୟ ଓ ଜୀବନ, ତାଙ୍କ ଦେଇ ନଗଲେ କେହି ପିତା (ଈଶ୍ୱର)ଙ୍କ ନିକଟକୁ ଯାଏ ନାହିଁ । [୧୪ : ୬] ତାଙ୍କର ଜନ୍ମ ନିମ୍ନ ପ୍ରକାରେ ହୋଇଥିଲା :

ପରମେଶ୍ୱର, ଦୂତ ଗାବ୍ରିୟେଲଙ୍କୁ ଗାଲିଲୀର ନାଜରିଥ ନାମକ ନଗରକୁ ମରିୟମଙ୍କ ପାଖକୁ ପ୍ରେରଣ କଲେ । ମରିୟମ ଦୂତଙ୍କୁ ଦେଖି ଭୟ କଲେ । ଦୂତ ଅଭୟବାଣୀ ଦେଇ କହିଲେ, ତୁମେ ଗର୍ଭଧାରଣ କରି ଗୋଟିଏ ପୁତ୍ର ପ୍ରସବ କରିବ ଓ ତାହାର ନାମ ଯୀଶୁ ଦେବ । ସେ ମହାନ୍ ହେବେ ଓ ପରାତ୍ପରଙ୍କ ପୁତ୍ର ବୋଲି ଖ୍ୟାତ ହେବେ । ଈଶ୍ୱର ତାଙ୍କୁ ଦାଉଦଙ୍କ ସିଂହାସନ ଦାନ

କରିବେ । ସେ ଯାକୁବ ବଂଶ ଉପରେ ଯୁଗେ ଯୁଗେ ରାଜତ୍ୱ କରିବେ । ପୁଣି ତାହାଙ୍କ ରାଜ୍ୟର ଶେଷ ହେବ ନାହିଁ । ମରିୟମ ଦୂତଙ୍କୁ କହିଲେ, ମୁଁ ତ କୌଣସି ପୁରୁଷଙ୍କୁ ଜାଣେନି ନାହିଁ । ଦୂତ ତାଙ୍କୁ କହିଲେ ଈଶ୍ୱର ତୁମ୍ଭ ଉପରେ ଅବତରଣ କରିବେ ଓ ତୁମ୍ଭେ ତାଙ୍କଦ୍ୱାରା ଗର୍ଭବତୀ ହେବ । (ଲୂକ ୧ : ୨୬-୩୫)

ଯୀଶୁଙ୍କ ଜନ୍ମ ଏହି ପ୍ରକାରେ ହେଲା । ତାହାଙ୍କ ମାତା ମରିୟମଙ୍କର ଯୋସେଫଙ୍କ ସହିତ ବିବାହ ନିର୍ବନ୍ଧ ହେଲା ପରେ, ସେମାନଙ୍କ ସହବାସ ହେବା ପୂର୍ବରୁ ସେ ଗର୍ଭବତୀ ହୋଇଅଛନ୍ତି ବୋଲି ଜଣା ପଡ଼ିଲା । ଏଥିରେ ତାହାଙ୍କ ସ୍ୱାମୀ ଯୋସେଫ ଧାର୍ମିକ ଥିବାରୁ ଏବଂ ସ୍ତ୍ରୀଙ୍କୁ ପ୍ରକାଶରେ ନିନ୍ଦାର ପାତ୍ର କରିବାକୁ ଇଚ୍ଛା କରୁ ନ ଥିବାରୁ ଗୋପନରେ ତାହାଙ୍କୁ ପରିତ୍ୟାଗ କରିବାକୁ ସ୍ଥିର କଲେ । ତାପରେ ଯୋସେଫ ଦୂତଙ୍କୁ ସ୍ୱପ୍ନରେ ଦର୍ଶନ କରି ଜାଣିଲେ ପରମେଶ୍ୱର ତାଙ୍କର ଗର୍ଭର କାରଣ । ଜଣେ କନ୍ୟା ଗର୍ଭବତୀ ହୋଇ ପୁତ୍ର ପ୍ରସବ କରୁ ଏବଂ ଲୋକେ ତାହାଙ୍କ ନାମ "ଇମ୍ମାନୁୟେଲ" ବା "ଆମ୍ଭମାନଙ୍କ ସହିତ ଈଶ୍ୱର" ଏହା ହିଁ ଡାକନ୍ତୁ ଏହା ପରମେଶ୍ୱରଙ୍କ ଇଚ୍ଛା ଥିଲା । [ମାଥିଉ ୧ : ୧୮-୨୫]

ଏଥର ଆସନ୍ତୁ, ଯୀଶୁଙ୍କ ଜନ୍ମ ସ୍ଥାନ ଓ କାଳ ସମ୍ପର୍କରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରିବା । ନୂତନ ନିୟମରେ ପ୍ରଭୁ ଯୀଶୁଙ୍କ ଜନ୍ମ ରହସ୍ୟପୂର୍ଣ୍ଣ ଭାବରେ ଗଦ୍ୟମୟ ହୋଇ ଉଠିଛି । କେବେ, କେଉଁଠାରେ କିପରି ସେ ଜନ୍ମ ହେଲେ ସେ ସମ୍ପର୍କରେ କହିବାକୁ ଯାଇ କେତେକ ତାଙ୍କ ଜନ୍ମସ୍ଥାନ ଯିହୁଦାର ନାଜରେଥ ଓ ବେଥଲହିମ କଥା କହନ୍ତି । ସ୍ଥାନୀୟ କାହାଣୀଗୁଡ଼ିକରୁ ଜଣାପଡ଼େ ସେ ବେଥଲହିମ୍‌ରେ ଜନ୍ମ ହୋଇଥିଲେ । କାରଣ ତାହା ଦାଉଦଙ୍କ ସହର ଥିଲା ଏବଂ ମୀଖାରେ ଏହି ଭବିଷ୍ୟତ ବାଣୀ ହୋଇଥିଲା : "ମାତ୍ର ହେ ବୈଥଲେହମ-ଇଫ୍ରାଥା, ଯିହୁଦାର ସହସ୍ରଗଣର ମଧ୍ୟରେ କ୍ଷୁଦ୍ର ଯେ ତୁମ୍ଭେ, ତୁମ୍ଭ ମଧ୍ୟରୁ ଇସ୍ରାଏଲର ଶାସନକର୍ତ୍ତା ହେବା ନିମନ୍ତେ ଆମ୍ଭ ଉଦ୍ଦେଶ୍ୟରେ ଏକ ବ୍ୟକ୍ତି ଉତ୍ପନ୍ନ ହେବେ । [୫:୨] ମାତ୍ର ଯୋହନ [୭ : ୪୨-୪୩] ଲିଖିତ ସୁସମାଚାର ଆମକୁ ସନ୍ଦେହ କରି ଦିଅନ୍ତି ପ୍ରକୃତରେ ସେ କେଉଁଠି ଜନ୍ମ ହୋଇଥିଲେ । ଲୂକ [୨ : ୪]ଙ୍କ ଅନୁସାରେ ଯୀଶୁ ବେଥଲହିମ୍‌ରେ ଜନ୍ମ ହେଲେ ଏବଂ ଯୋହନ [୭ : ୪୧]ଙ୍କ ଅନୁସାରେ ଗାଲିଲୀରେ ।

ଲୂକ ଯୀଶୁଙ୍କ ବେଥଲହିମ୍‌ରେ ଜନ୍ମ ହେବା କଥାକୁ ସ୍ପଷ୍ଟ କରିବାକୁ ଯାଇ ବର୍ଣ୍ଣନା ଦିଅନ୍ତି : ସେ ସମୟରେ ସମସ୍ତ ସାମ୍ରାଜ୍ୟବାସୀଙ୍କ ନାମ ଲେଖାଯିବା

ସେସମୟରେ କାଇସର ଅଗଷ୍ଟସଙ୍କଠାରୁ ଆଜ୍ଞା ଘୋଷଣା କରାଗଲା । ସିରିଆର ଶାସନକର୍ତ୍ତା କ୍ୱିରିଣିଙ୍କ ସମୟରେ ପ୍ରଥମଥର ଏହି ନାମଲେଖା ହୋଇଥିଲା । ସେଥିନିମନ୍ତେ ସମସ୍ତେ ନାମ ଲେଖାଇବା ପାଇଁ ଆପଣା ଆପଣା ନଗରକୁ ଯାଉଥିଲେ । ପୁଣି ଯୋସେଫ ମଧ୍ୟ ନାମ ଲେଖାଇବା ନିମନ୍ତେ ମରିୟମଙ୍କ ସହିତ ଗାଲିଲୀର ନାଜରିଥ ନଗରରୁ ଯିହୂଦା ପ୍ରଦେଶର ବେଥଲେହମ ନାମକ ଦାଉଦଙ୍କ ନଗରକୁ ଗଲେ, କାରଣ ସେ ଦାଉଦଙ୍କ ବଂଶ ଓ ଗୋଷ୍ଠୀର ଲୋକ ଥିଲେ । ତାହାଙ୍କ ସହିତ ମରିୟମଙ୍କ ବିବାହ ସମ୍ବନ୍ଧ ହୋଇଥିଲା ଓ ସେ ଗର୍ଭବତୀ ଥିଲେ । ସେମାନେ ସେହି ସ୍ଥାନରେ ଥିବା ସମୟରେ ତାହାଙ୍କର ପ୍ରସବକାଳ ଉପସ୍ଥିତ ହେଲା । ପୁଣି ସେ ଆପଣା ପ୍ରଥମଜାତ ପୁତ୍ର ପ୍ରସବ କଲେ । [୨ : ୧-୭]

ରୋମାନ ସମ୍ରାଟ ଅଗଷ୍ଟସଙ୍କ ରାଜ୍ୟକାଳରେ ଜନଗଣନା ହୋଇଥିଲା । ସେ ସମୟରେ ଇସ୍ରାଏଲରେ ହେରୋଦଙ୍କ ରାଜ୍ୟ ଥିଲା ବୋଲି କୁହାଯାଉଛି । ନିୟମ ଅନୁସାରେ ପ୍ରତ୍ୟେକ ସ୍ୱ ପୂର୍ବଜଙ୍କ ସ୍ଥାନରେ ପହଞ୍ଚି ସ୍ୱନାମ ଓ ଫର୍ମ ଭରୁଥିଲେ । ଏ ଫର୍ମ ଭରିବା ପାଇଁ ଯୋସେଫ ଓ ମରିୟମ ନାଜରିଥ ନଗରରୁ ସ୍ୱ ପୂର୍ବଜଙ୍କ ନିବାସ ବେଥଲେହମ ନଗରକୁ ଗଲେ । ତାଙ୍କପରି ଅନେକ ହଜାର ହଜାର ବ୍ୟକ୍ତି ଏ ପ୍ରକାର ଭିଡ଼ରେ ଚାଲିଥିଲେ । ସେଠାରେ ପହଞ୍ଚିବା ପରେ ମଧ୍ୟ ଏପରି ଭିଡ଼ ହେଲା ଯେ ନିବାସ ପାଇଁ ମଧ୍ୟ ସ୍ଥାନଟିଏ ମିଳିଲା ନାହିଁ । ଶେଷରେ ଯୋସେଫ ଓ ମରିୟମଙ୍କୁ ଗୋଟିଏ ଗୁହାଳଘରେ ରହିବାକୁ ହେଲା । ସେଇଠି ଯୀଶୁ ଜନ୍ମ ହେଲେ । ଏଠି ପ୍ରଶ୍ନ ଉଠେ ନିଜ ନିଜ ସ୍ଥାନରେ ଫର୍ମ ପୂରଣ କରିବାରେ ଅସୁବିଧା କଣ ଥିଲା ? ସ୍ୱ ସ୍ୱ ପୂର୍ବଜଙ୍କ ସ୍ଥାନରେ ଫର୍ମ ପୂରଣ କରାଯିବା ଦ୍ୱାରା ରୋମର ପ୍ରଜାଗଣଙ୍କୁ ବହୁ ସଂଖ୍ୟାରେ ପଦଯାତ୍ରା ପୁଣି ଗଧ ଉପରେ ଯାତ୍ରା କରିବାକୁ ପଡ଼ିଲା । ଏତଦ୍ୱାରା ଅଯଥା ଧନ ବ୍ୟୟ ଓ ସମୟ ନଷ୍ଟ ହେଲା । ସମ୍ରାଟ ଅଗଷ୍ଟସଙ୍କ ପରି ଜଣେ ବିଚାରବାନ ରାଜା ଯେ ଏ ପ୍ରକାର ଆଦେଶ ଦେଇଥିବେ ତାହା ବିଶ୍ୱାସ କରାଯାଇ ନ ପାରେ । ଏଠି ଅନ୍ୟ ଏକ ପ୍ରଶ୍ନ ହୋଇପାରେ, ଲୋକେ କହନ୍ତି ଯେ ନାଜରିଥରୁ ବେଥଲେହମ ସିଧା ଦୂରତା ଅଶୀମାଇଲ୍ । ରାସ୍ତା ବାଲୁକାଯୁକ୍ତ ଓ ମରୁସ୍ଥଳ । ମରିୟମ ସେତେବେଳେ ଗର୍ଭର ଅନ୍ତିମ ଦିନରେ, ଏପରି ଅବସ୍ଥାରେ ଅଶୀ ମାଇଲ୍ ରାସ୍ତା ଯିବା ବଡ଼ ଅସୁବିଧା ଜନକ ଏବଂ ଅସମ୍ଭବ ମଧ୍ୟ । ପୁନଶ୍ଚ ସନ୍ଦେହ ହୁଏ ଯୋସେଫ୍ ଓ ମରିୟମ ବେଥେଲେହମକୁ କାହିଁକି ଯାଉଥିଲେ ? ଯେହେତୁ ତାହା ଯୋସେଫଙ୍କ ଜନ୍ମସ୍ଥାନ ଥିଲା । ମରିୟମଙ୍କର ପୂର୍ବଜଙ୍କ ଆରୋନ ବଂଶର, ସେ ଦୃଷ୍ଟିରୁ ସେ ଅନ୍ୟ ସ୍ଥାନକୁ ଯିବା ଉଚିତ ଥିଲା ।

ଯୀଶୁଙ୍କ ଜନ୍ମତିଥି ସମ୍ପର୍କରେ ମଧ୍ୟ ଏ ପ୍ରକାର ଦ୍ୱନ୍ଦ୍ୱ ରହିଛି । ରୋମାନ କେଥଲିକ ସମ୍ପ୍ରଦାୟ ମତରେ ଯୀଶୁ ୨୫ ଡିସେମ୍ବରରେ ଜନ୍ମ ହୋଇଥିଲେ । ଗ୍ରୀକ୍

ଅର୍ଥୋଡକ୍ସମାନଙ୍କର ଅନୁରୂପ ମତ ଥିବା ସତ୍ତ୍ୱେ ସେମାନେ ଜାନୁଆରୀ ୬ ତାରିଖକୁ ସ୍ୱୀକାର କରନ୍ତି । ସେମାନେ ତର୍କ କରନ୍ତି ଯେ ସେହିଦିନ ଯୀଶୁଙ୍କ ବାପ୍ତିସ୍ମ ହୋଇଥିଲା ଏବଂ ସେହିଦିନରୁ ହିଁ ସେ ଖ୍ରୀଷ୍ଟ ହେଲେ । ତା' ପୂର୍ବରୁ ସେ ଜଣେ ସାଧାରଣ ଯୀଶୁ ଥିଲେ । ଏହା ଯଦି ସ୍ୱୀକାର କରାଯାଏ ତା ହେଲେ ଖ୍ରୀଷ୍ଟଙ୍କ ଜନ୍ମ ଜଣେ ସାଧାରଣ ମନୁଷ୍ୟର ଜନ୍ମ ପରି ଥିଲା ବୋଲି ଆମେ ମାନିବାକୁ ବାଧ୍ୟ ।

ଏଠି ପ୍ରଶ୍ନ ଉଠୁଛି, ଯୀଶୁ କ'ଣ ଡିସେମ୍ବର ୨୫ରେ ଜନ୍ମ ହୋଇଥିଲେ କି ? ଲୂକଙ୍କ ଅନୁସାରେ, ସେହି ଅଞ୍ଚଳରେ କେତେକ ମେଷପାଳକ ପଦାରେ ରହି ରାତିରେ ସେମାନଙ୍କର ପଲ ଜଗୁଥିଲେ । (୨:୮) ଯଦି ପଲ ଜଗୁଥିଲେ ତେବେ ତାହା କେବେ ମଧ୍ୟ ଡିସେମ୍ବର ୨୫ ହୋଇ ନପାରେ । କାରଣ ସେ ସମୟରେ ମେଷପାଳକଗଣ ମେଷଗୁଡ଼ିକୁ ପର୍ବତ ଉପରୁ ଚରାଭୂମି ଆଡ଼କୁ ଆଣନ୍ତି ଏବଂ ୧୫ ଅକ୍ଟୋବର ପ୍ରଥମରୁ ହିଁ ସେମାନଙ୍କୁ ଏକାଠି କରି ପାହାଡ଼ରୁ ଚାଲିଯା'ନ୍ତି । କାରଣ ସେ ସମୟଠାରୁ ସେଠାରେ ବରଫପାତ ଆରମ୍ଭ ହୋଇଯାଏ । ଏପରି ଅବସ୍ଥାରେ ପଡ଼ିଆରେ ରାତିରେ ପଲ ଜଗିବା ସେମାନଙ୍କ ପକ୍ଷରେ କଷ୍ଟକର କଥା ନୁହେଁ କି ? ପରମଗୀତ ୨:୧୧ ଏବଂ ଏଜ୍ରା ୧୦:୯,୧୩ ପଦଗୁଡ଼ିକରୁ ଏହା ପ୍ରମାଣିତ ହୋଇଯାଏ ଯେ ପାଲେଷ୍ଟାଇନରେ ଡିସେମ୍ବର ମାସରେ ଶୀତ କାଳର ବୃଷ୍ଟି ହୁଏ । ଏ ସ୍ଥିତିରେ ମେଷମାନଙ୍କୁ ଖୋଲା ପଡ଼ିଆରେ ରଖି ମେଷପାଳକ ରାତିରେ ଜଗିବା ସମ୍ଭବ କି ?

ବାଇବେଲର ମହାନ ଭାଷ୍ୟକାର ଆଦମ କ୍ଲାର୍କଙ୍କ ମତରେ ସେ ସମୟରେ ଯିହୁଦୀମାନଙ୍କ ମଧ୍ୟରେ ଏହା ଏକ ପ୍ରଚୀନ ପରମ୍ପରା ଥିଲା ଯେ ସେମାନେ ବସନ୍ତ ଆଖପାଖ ନିଜମେଷଙ୍କୁ ପଡ଼ିଆ ଓ ରେଗିସ୍ଥାନକୁ ପଠାଇ ଦେଉଥିଲେ ଏବଂ ପ୍ରଥମ ବର୍ଷା ଆରମ୍ଭ ହେବା ପୂର୍ବରୁ ନିଜ ଘରକୁ ନେଇ ଆସୁଥିଲେ । ଅନେକ ସମୟରେ ମେଷଗଣ ପଦାକୁ ବାହାରି ପଡ଼ୁଥିଲେ ଏବଂ ପାଳକ ସେମାନଙ୍କୁ ରାତି ଦିନ ଜଗାରଖା କରୁଥିଲେ । ମାର୍ଚ୍ଛେସ୍ୱନ (ମଧ୍ୟ ଅକ୍ଟୋବର)ରେ ହେଉଥିବା ବର୍ଷାର ପ୍ରଥମ ଝଡ଼ ପର୍ଯ୍ୟନ୍ତ ମେଷଗଣ ଖୋଲା ପଡ଼ିଆରେ ରହୁଥିଲେ । ସାରା ଗ୍ରୀଷ୍ମରେ ମଧ୍ୟ ସେମାନେ ଖୋଲା ପଡ଼ିଆରେ ରହୁଥିଲେ । ଯେତେଦିନ ପର୍ଯ୍ୟନ୍ତ ମେଷଗଣ ଘରକୁ ଫେରୁ ନ ଥିଲେ ସେତେଦିନ ପର୍ଯ୍ୟନ୍ତ ଲୋକେ ଏହା ଭାବୁଥିଲେ ଯେ ଏବେ ଅକ୍ଟୋବର ଆରମ୍ଭ ହୋଇ ନାହିଁ । ଏଣୁ ଯୀଶୁଙ୍କ ଜନ୍ମ ସେପଟେମ୍ବର ପରେ ମଧ୍ୟ ହୋଇ ନାହିଁ, କାରଣ ସେ ସମୟରେ ମେଷଗଣ ରାତିରେ ପଡ଼ିଆରେ ରହୁଥିଲେ । ଏ ପ୍ରକାର ଜଟିଳତାକୁ ନଯାଇ କେଥଲିକ୍ ଏନ୍‌ସାଇକ୍ଲୋପିଡ଼ିଆ ଲେଖିବାକୁ ବାଧ୍ୟ ହୁଅନ୍ତି ଯେ "ଯୀଶୁଙ୍କ ନିଶ୍ଚିତ ଜନ୍ମତଥିର କିଛି ଠିକଣା ନାହିଁ ।"

ଐତିହାସିକଙ୍କ ମତରେ ପ୍ରଥମ ଜନଗଣନା ହେରୋଦ ରାଜାଙ୍କ ମୃତ୍ୟୁ ପରେ ଏବଂ ତାଙ୍କ ପୁତ୍ର ଆର୍ଚେଲସଙ୍କ ରାଜଗାଦିରୁ ଓହ୍ଲାଇବା ପରେ ହେଲା । ଏ ଦୃଷ୍ଟିରୁ ଯୀଶୁଙ୍କ ଜନ୍ମ ଖ୍ରୀଷ୍ଟପୂର୍ବ ୬ରେ ପଡ଼େ । ପ୍ରଫେସର ଫେରାରଙ୍କ ଗଣନା ଅନୁସାରେ ଖ୍ରୀଷ୍ଟପର ୪ ହେଲେ ଗୌମ୍‌କେଲଙ୍କ ଅନୁସାରେ ଖ୍ରୀଷ୍ଟପର ୮ରେ । ତାଙ୍କ ଜନ୍ମତିଥି ସମ୍ବନ୍ଧରେ ପରସ୍ପର ମଧ୍ୟରେ ୧୩ ବର୍ଷର ବ୍ୟବଧାନ ରହେ, ସେହି ବିଶୃଙ୍ଖଳା ତାଙ୍କ ମୃତ୍ୟୁ ସମ୍ପର୍କରେ ମଧ୍ୟ ରହିଛି । ଯଦି ଆମେ ସୁରିଆର ଶାସନକର୍ତ୍ତା କ୍ୱିରିଣିୟସଙ୍କ ସମୟକୁ ବିଚାରକୁ ନେଉଁ ତା'ହେଲେ ତାହା ଖ୍ରୀଷ୍ଟପର ୬ ବା ୭ରେ ହିଁ ପଡ଼ିବ । ତିବେରିଅ କାଇସରଙ୍କ ରାଜତ୍ୱର ପଞ୍ଚଦଶ ବର୍ଷରେ ଯୋହନ ବାପ୍ତିଜ ପ୍ରଚାର କରୁଥିଲେ (ଲୂକ ୩ : ୧, ୩) ତାହା ଖ୍ରୀଷ୍ଟପର ୨୮ ବା ୨୯ରେ ପଡ଼େ । ଯେବେ ଯୀଶୁଙ୍କୁ ସେ ଜଳଦୀକ୍ଷା ଦେଲେ ସେତେବେଳେ ଯୀଶୁଙ୍କୁ ତିରିଶ ବର୍ଷ ହୋଇଥିଲା (ଯୋହନ ୩ : ୨୩) ତେବେ ଖ୍ରୀଷ୍ଟପର ୩୫ରେ ଯୀଶୁଙ୍କୁ ୨୯ ବର୍ଷ ହେବା କଥା । ମାଥିଉ ଯୀଶୁଙ୍କ ଦୀର୍ଘକାଳ ଓ କ୍ରୁଶବିଦ୍ଧ ସମୟ ଦ୍ୱାରା ପ୍ରଭାବିତ ନୁହଁନ୍ତି; ମାତ୍ର ଯୀଶୁଙ୍କୁ ସେ ଆହୁରି ପୁରାତନ ବ୍ୟକ୍ତି ଭାବରେ ବର୍ଣ୍ଣନା କରନ୍ତି । ତାଙ୍କ ମତରେ ମହାନ ହେରୋଦଙ୍କ ସମୟରେ (ଅର୍ଥାତ୍ ଖ୍ରୀଷ୍ଟପୂର୍ବ ୫ ବା ୬ରେ) ଖ୍ରୀଷ୍ଟ ଜନ୍ମ ହୋଇଥିଲେ ଯାହାଙ୍କ ମୃତ୍ୟୁ ଖ୍ରୀଷ୍ଟପୂର୍ବ ୪ରେ ହେଲା । ଏ ଦୃଷ୍ଟିରୁ କ୍ରୁଶବିଦ୍ଧ ସମୟ ଖ୍ରୀଷ୍ଟପର ୩୬ରେ ପଡ଼େ । ସେହି ସମୟରେ ଯୀଶୁଙ୍କୁ ୪୧ ବର୍ଷ ବୟସ ହେବା ଉଚିତ । କାରଣ ଜିରୁସାଲମରେ ଯିହୁଦୀମାନେ ଯୀଶୁଙ୍କୁ କହିଛନ୍ତି "ତୁମ୍ଭକୁ ତ ଏଯାଏ ପଚାଶ ବର୍ଷ ହୋଇନାହିଁ । (ଯୋହନ ୮ : ୫୭ ).

ହୁଏତ ଗଣନାକାରୀମାନଙ୍କ ପାଇଁ କିମ୍ବା ସୁସମାଚାରକମାନଙ୍କ ବିଭିନ୍ନ ସମୟରେ ଯୀଶୁଙ୍କ ଚରିତ ଲେଖିବା କାରଣରୁ ଏ ପ୍ରକାର ତ୍ରୁଟି ଇତିହାସରେ ହୋଇଗଲା । କୁହାଯାଏ, ଯୀଶୁଙ୍କ ଜନ୍ମର ଶହେ ବର୍ଷ ପରେ ପ୍ରଥମରେ ଗୋଟିଏ ସୁସମାଚାର ମିଳିଲା । ଚାରୋଟି ସୁସମାଚାରର ନାମକରଣ ଓ ଉତ୍ପତ୍ତି ତୃତୀୟ ଶତାବ୍ଦୀର ପ୍ରାରମ୍ଭ ଏବଂ ଖ୍ରୀଷ୍ଟଙ୍କ ମୃତ୍ୟୁର ଶହେ ସତୁରୀ ବର୍ଷ ପରେ ହୋଇଥିଲା । ଚାରୋଟି ସୁସମାଚାର ବ୍ୟତୀତ ଆହୁରି ଅନେକ ସୁସମାଚାର ମଧ୍ୟ ଥିଲା । ସେମାନଙ୍କ ମଧ୍ୟରୁ ପାଉଲ, ଜୁଡ଼ାସ୍, ଥୋମସ୍, ଅମାସ୍, ମେଥି, ଏନ୍‌ଡ୍ରୁ, ନିକୋଡ଼ମସ୍, ମାର୍ସିଅନ୍ ଆଦି । କାଳକ୍ରମେ ଏପରି ଅନେକ ସୁସମାଚାର ନଷ୍ଟ ହୋଇଗଲା । ଖ୍ରୀଷ୍ଟାବ୍ଦ ୩୨୫ରେ ମହାରାଜା କାନ୍‌ଷ୍ଟେଣ୍ଟାଇନ୍‌ଙ୍କ ସଭାପତିତ୍ୱରେ ଏକ ବିଶାଳ ସଭା ଡକାଯାଇଥିଲା । ସେଠି କେଉଁ ପୁସ୍ତକ ଗ୍ରହଣୀୟ କେଉଁ ପୁସ୍ତକ ତେଜ୍ୟ ସେ ବିଷୟରେ ଅନେକ ବାଦବିବାଦ ହେଲା ଏବଂ ଅବଶେଷରେ ସେମାନେ ବିଭିନ୍ନ ଲେଖକଙ୍କ ୨୭ଟି ଲେଖା ଗ୍ରହଣ କଲେ, ଯା ଆଜି 'ନୂତନ ନିୟମ" ଭାବରେ ପରିଚିତ ।

ଏ ନୂତନ ନିୟମ ଲେଖିଲା କିଏ ? ବଙ୍କ ଖ୍ରିଷ୍ଟିୟାନମାନେ ମାନି ନିଅନ୍ତି ଯେ ସେମାନେ ଜାଣିନାହାନ୍ତି । ସେମାନେ ସ୍ୱୀକାର କରନ୍ତି ଯେ ଚାରି ସୁସମାଚାର ଗ୍ରୀକ୍‌ରେ ଲିଖିତ ଯଦିଓ ଏହା ହେବ୍ରୁରେ ଲେଖାହେବା ଉଚିତ ଥିଲା । ଶିକ୍ଷିତ ଯାଜକଗଣ ମାନନ୍ତି ଯେ, ଇପିଷ୍ଟଲ୍‌ସ ଜେମ୍‌ସ ଓ ଜୁଡେ ଯେଉଁମାନଙ୍କ ଦ୍ୱାରା ଲେଖା ହୋଇଥିଲା, ସେମାନେ ଏ ଚାରି ସୁସମାଚାର ଦେଖି ନ ଥିଲେ । ଉପରୋକ୍ତ ସୁସମାଚାରକମାନେ ପ୍ରଚଳିତ ଚାରି ସୁସମାଚାର ଦେଖି ନ ଥିଲେ ଏଣୁ କୌଣସି ଆଶ୍ଚର୍ଯ୍ୟ କର୍ମର ଉଲ୍ଲେଖ ସେମାନେ କରି ନାହାନ୍ତି । ଏହି ସବୁ କାରଣରୁ ଯୀଶୁଙ୍କ ନିର୍ଦ୍ଦିଷ୍ଟ ଜନ୍ମତିଥି ଜଣାପଡ଼େ ନାହିଁ । ଏହାପରେ ଯେବେ ଷଷ୍ଠ ଶତାବ୍ଦୀରେ ରୋମୀୟ ସାଧୁ ଡାଓନଂସିଅସ୍ ଯୀଶୁଙ୍କ ଅବ୍ଦ ପ୍ରଚଳନ କରିବାକୁ ଯାଇ ବିସି (ଜନ୍ମପୂର୍ବ) ଓ ଏଡ଼ି (ଜନ୍ମପର) ଗଣନା କରି ବସିଲେ, ସୁଷମ ବୃତଗୁଡ଼ିକ ପାଇଁ ତାହା ମଧ୍ୟ ତ୍ରୁଟିପୂର୍ଣ୍ଣ ହୋଇଗଲା । ଏଣୁ ଯୀଶୁ ଜନ୍ମଦିନରେ ଜନ୍ମ ନ ହୋଇ ତାଙ୍କ ଜନ୍ମର ଚାରି ବର୍ଷ ପୂର୍ବରୁ ଜନ୍ମ ହୋଇଗଲେ । ତାଙ୍କର ପରବର୍ତ୍ତୀ ଗଣନାକାରୀମାନେ ଯଦିଓ ଏଥିରେ ତ୍ରୁଟି ଦେଖିପାରିଲେ ତଥାପି ଏଥିରେ ସଂଶୋଧନ ନ କରିବା ଫଳରେ ଖ୍ରୀଷ୍ଟ ତାଙ୍କ ଜନ୍ମର ଚାରିବର୍ଷ ପୂର୍ବରୁ ହିଁ ଜନ୍ମ ନେଇଥିଲେ ବୋଲି ପ୍ରବାଦ ରହିଲା । ବାଇବେଲରୁ ଜଣାଯାଏ ଯେ ବେଥଲେହେମର ରାଜା ହେରୋଦ ଯଦିଓ ପ୍ରାଚ୍ୟ ପଣ୍ଡିତମାନଙ୍କ ପାଖରୁ ଯୀଶୁଙ୍କ ଜନ୍ମ ସହ ଏକ ନକ୍ଷତ୍ରର ଆବିର୍ଭାବ ହୋଇଛି ବୋଲି ଜାଣିପାରିଥିଲେ ତଥାପି ପ୍ରକୃତ ସମ୍ପୃକ୍ତି ଜାଣି ନ ପାରିବା ଫଳରେ ଦୁଇବର୍ଷ ବୟସ ପର୍ଯ୍ୟନ୍ତ ସମସ୍ତ ଶିଶୁଙ୍କୁ ହତ୍ୟା କରିବାକୁ ସେ ଆଦେଶ ଦେଇଥିଲେ । ଜ୍ୟୋତିର୍ବିଦ୍‌ମାନଙ୍କ ମତରେ ଯୀଶୁଙ୍କ ଜନ୍ମ ପୂର୍ବରୁ ଯେଉଁ ନକ୍ଷତ୍ର ଉଦୟ ହୋଇଥିଲା, ସେ ସମୟରେ ବୁଧ, ବୃହସ୍ପତି, ଶନି, ଜୁପିଟର ଓ ସେରଶାନ ଯୋଗଥିଲା । ଏ ଯୋଗ ଖ୍ରୀଷ୍ଟଙ୍କ କଥିତ ଜନ୍ମ ଠାରୁ ୭ ବର୍ଷ ପୂର୍ବରୁ ହିଁ ହୋଇଥିଲା ।

ଏଠି ଆମେ ସନ୍ଦେହରେ ପଡ଼ଯାଉଁ ହେରୋଦଙ୍କ ସମକାଳୀନ ଐତିହାସିକ ଜମିସ୍କର ନିକୋଲସ, ହେରୋଦ ଯୀଶୁଙ୍କୁ ମାରିବା ପାଇଁ ସବୁ ଶିଶୁଙ୍କୁ ମାରପକାଇବା ପରି ଏକ ଉଲ୍ଲେଖଯୋଗ୍ୟ ଘଟଣା ସମ୍ପର୍କରେ ପଦେ ଉଲ୍ଲେଖ ନ କରିଥିବା ଜାଣି, ପୁଣି ଆମେ ଆଶ୍ଚର୍ଯ୍ୟ ହେଉ ମହାନ ଐତିହାସିକ ଜୋସେଫସ୍ ଯେ ହେରଦଙ୍କ ରାଜଦରବାରରେ ଥିଲେ ଏବଂ ତାଙ୍କ ସମୟର ଇତିହାସ ଲେଖିଥିଲେ, ସେ ଯୀଶୁଙ୍କ ବିଷୟରେ କିଛି ଉଲ୍ଲେଖ କଲେ ନାହିଁ କିପରି ? ଲୁହାସ ଉପରେ ଯେ ହେରୋଦଙ୍କ ଦରବାରୀ ଭାବରେ ସେ ଯୀଶୁଙ୍କ ଶତ୍ରୁ ଥିଲେ ଏଣୁ ପୂର୍ବଗ୍ରହ କାରଣରୁ ଯୀଶୁଙ୍କ ସମ୍ପର୍କରେ କିଛି ନ ଲେଖିବା ତାଙ୍କର ନୈତିକ ଦାୟିତ୍ୱ ଥିଲା । କିନ୍ତୁ ୩୭ ଖ୍ରୀଷ୍ଟାବ୍ଦରେ ଜନ୍ମ ନେଇଥିବା ଜଷ୍ଟସିସ୍ ଅଫ୍ ଟିବେରିଆ ମଧ୍ୟ ଯୀଶୁଙ୍କ ସମ୍ପର୍କରେ ନୀରବ ରହିବା କ'ଣ ଅଧିକ ସନ୍ଦେହଜନକ ନୁହେଁ କି ? ସିକନ୍ଦରିଆର ବିଦ୍ୱାନ ଫିଲୋଜୁଡ଼ସ ୪୨

ଖ୍ରୀଷ୍ଟାବ୍ଦରେ ରୋମ ଯାଇଥିଲେ କିନ୍ତୁ ତାଙ୍କ ଡାଇରୀର କୌଣସି ପୃଷ୍ଠାରେ ଯୀଶୁଙ୍କ ବିଷୟରେ ଉଲ୍ଲେଖ ନ କରିବା, ଏପରି କି ମହାନ ଲେଖକ ଓ ଐତିହାସିକ ପ୍ଲୁଟାର୍ଚ୍ଚ, ଜୁଭେନାଲ୍, ଏପ, ଲୁସିୟନ, ଡ ନ କେସିଟୋ, ଭର୍ଜିଲ୍, ହୋରେସ ଏବଂ ମାର୍ତ୍ତୀ ମଧ୍ୟ ଯୀଶୁଙ୍କ ବିଷୟରେ କିଛି ନ ଜାଣିବା ଯୀଶୁଙ୍କ ଐତିହାସିକ ବ୍ୟକ୍ତିତ୍ୱ ପ୍ରତି କମ୍ ପ୍ରବଂଚନା ନୁହେଁ ।

ଯୀଶୁଙ୍କ ସମୟରେ ଜେରୁସାଲମର ଗଭର୍ଣ୍ଣର ପୋଣ୍ଟିୟସ ପାଏଲେଟ ଥିଲେ । ସେ ଦେଶ ରୋମାନ ରାଜ୍ୟର ଅଧୀନରେ ଥିଲା । ଟାୟବରିୟସ୍ ରୋମର ସମ୍ରାଟ ଥିଲେ । ପାଏଲେଟ ନିଜ ପ୍ରାନ୍ତର ସମ୍ବାଦ ଓ ସୂଚନା ସମ୍ରାଟଙ୍କୁ ପ୍ରେରଣ କରୁଥିଲେ । କିନ୍ତୁ ଖ୍ରୀଷ୍ଟଙ୍କ ଅଲୌକିକ ଜନ୍ମ, ରାଜଦ୍ରୋହ, ମୃତ୍ୟୁ ଶବକୁ କମ୍ବା କବରରୁ ଉଠି ସ୍ୱର୍ଗକୁ ଚାଲିଯିବା ଖବର ସେ ଆଦୌ ସମ୍ରାଟଙ୍କୁ ଦେଇ ନ ଥିଲେ । ଯଦି ଯୀଶୁ ଏ ସବୁ କର୍ମମାନ କରୁଥିଲେ ତାର ସମ୍ବାଦ ତ ଅବଶ୍ୟ ରାଜାଙ୍କ ପାଖକୁ ପହଞ୍ଚି ଥାନ୍ତା ? ମାତ୍ର ତାଙ୍କ ସଂପର୍କରେ କୌଣସି କଥା ଉଲ୍ଲେଖ ନ ଥିବା କଣ ଆଶ୍ଚର୍ଯ୍ୟ କଥା ନୁହେଁକି ?

ସେମାନେ ନ ଜାଣନ୍ତୁ ମାତ୍ର ଆମେ ଜାଣିଛୁ ଯୀଶୁ ଥିଲେ ଏଣ୍ଡ ଅଛନ୍ତି ଓ ରହିବେ । ହୁଏତ ତାଙ୍କର ଜୟନ୍ତୀ ଡିସେମ୍ବର 25ରେ ପାଳନ କରିବା ଆଧାର ସ୍ଥାନ ଏଣ୍ଡ ତେଜା । ମୋ ମତରେ ଯୀଶୁ ସାଢ଼େ ତିନିବର୍ଷ ପ୍ରଚାର କାର୍ଯ୍ୟ କରିଥିଲେ ଏବଂ ଏ ପ୍ରଚାରର ସମାପ୍ତି ହୋଇଥିଲା ନିସ୍ତାର ପର୍ବ ସମୟରେ ( ଯୋହନ ୧୮ : ୩୯ ) ଯାହା ବସନ୍ତ ଋତୁରେ ହିଁ ସଂଗଠିତ ହୋଇଥିଲା । ସାଢ଼େ ତିନିବର୍ଷ ପୂର୍ବରୁ ଯେଉଁ ସମୟରେ ସେ ପ୍ରଚାର ଆରମ୍ଭ କଲେ ତାହା ଶେଷ ହେମନ୍ତ ଋତୁରେ ପଡ଼େ । ପ୍ରଚାର କାର୍ଯ୍ୟ ଆରମ୍ଭ କରିବା ସମୟରେ ତାଙ୍କର ବୟସ ପ୍ରାୟ ତିରିଶ ଥିଲା । [ ଲୂକ ୩ : ୨୯ ] କାରଣ ପୁରାତନ ନିୟମାନୁସାରେ ଜଣେ ପ୍ରଚାରକ ହୋଇ ପାରୁଥିଲା । [ ଗଣନା ୪ : ୩ ] ସେ ଦୃଷ୍ଟିରୁ ତିରିଶବର୍ଷ ପୂର୍ବରୁ ସେ- ହେମନ୍ତ ଋତୁରେ ହିଁ ହୋଇଥିବ ଏଥିରେ ସନ୍ଦେହ ନାହିଁ ।

ଯୀଶୁଙ୍କ ଜନ୍ମ ସଂପର୍କରେ ଖ୍ରୀଷ୍ଟିୟାନମାନଙ୍କ ବିଶ୍ୱାସର ହୁଏତ ମୁଁ ସହଭାଗିତା କରିପାରୁନାହିଁ । ଯୀଶୁଙ୍କୁ କୁମାରୀ ଗର୍ଭଜାତ ବୋଲି କହିବା ଦ୍ୱାରା ସେମାନେ ଯୀଶୁଙ୍କ ଐତିହାସିକ ବ୍ୟକ୍ତିତ୍ୱ ପ୍ରତି ଅପମାନ ପ୍ରଦର୍ଶନ ହିଁ କରିଛନ୍ତି ଏବଂ ପରମେଶ୍ୱରଙ୍କ ଏକମାତ୍ର ଔରସ ସନ୍ତାନ କହିବାଦ୍ୱାରା ଐତିହାସିକମାନଙ୍କୁ ଆହୁରି ବିଭ୍ରାନ୍ତ କରୁଛନ୍ତି । ଏହାର ପରିଣାମ କ'ଣ ହେଲା ଦେଖନ୍ତୁ । ବ୍ରୁନୋଙ୍କ ଭାଷାରେ କହିବାକୁ ଗଲେ ଯୀଶୁ ଇତିହାସରେ ଏକ ରୂପକ ଏବଂ ତାଙ୍କ ଜୀବନ ଚରିତ୍ର ଏକ

ସାହିତ୍ୟର କଳ୍ପନା ମାତ୍ର । ଖ୍ରୀଷ୍ଟିୟାନ ଧର୍ମକୁ ଜନ୍ମ ଦେଇ ନ ଥିଲେ, ଖ୍ରୀଷ୍ଟିୟାନ ଧର୍ମ ଖ୍ରୀଷ୍ଟଙ୍କୁ ଜନ୍ମ ଦେଇଥିଲା । ଆର୍ଥର ଡ୍ରଓସ ଙ୍କ ସମାଲୋଚନା କରି କହନ୍ତି, ଖ୍ରୀଷ୍ଟଙ୍କ ଜୀବନ ପ୍ରଚଳିତ ଅନ୍ଧବିଶ୍ୱାସର ପରିଣାମ । ଐତିହାସିକ ସାମିଥ୍ ବିଶ୍ୱାସ କରନ୍ତି ଜେସସ, ଜେଶୁଆ ଶବ୍ଦର ଗ୍ରୀକ୍ ରୂପ । ଖ୍ରୀଷ୍ଟଙ୍କ ଗାଥା, ଜେଶୁଆଙ୍କ ଗାଥାର ରୂପାନ୍ତର ମାତ୍ର ଯାହାଙ୍କ ପୂଜା ଯୀଶୁଙ୍କ ବହୁପୂର୍ବରୁ ହୋଇ ଆସୁଥିଲା । ଜେନ୍-ସନ୍ଙ୍କ ମତରେ ଖ୍ରୀଷ୍ଟ ବାବିଲ ଦେଶର ପ୍ରଚଳିତ “ଗିଲଗାମେଶ” ପୌରାଣିକ ଗାଥାରୁ ଆସିଛି । ବିପନ୍ସ୍ଙ୍କ ଅନୁସାରେ ଯୀଶୁଙ୍କ ଜୀବନ ଗାଥା ପଶ୍ଚିମ ଏସିଆର ସୂର୍ଯ୍ୟଗାଥାରୁ ଆସିଛି ଏଣୁ ଏଥିରେ ଇତିହାସ ଖୋଜିବା ନିରର୍ଥକ । ବ୍ରାଟ୍ରାଣ୍ଡ ରସେଲ ତାଙ୍କ “ହ୍ୱାଏ ଆଇ ଏମ୍ ନଟ ଏ ଖ୍ରୀଷ୍ଟିୟାନ” ଗ୍ରନ୍ଥରେ ମାନନ୍ତି : “ଐତିହାସିକ ଦୃଷ୍ଟିରୁ ଏହା ସମ୍ପୂର୍ଣ୍ଣ ସନ୍ଦେହ ଜନକ ଯେ ପ୍ରକୃତରେ ଖ୍ରୀଷ୍ଟଙ୍କର ଅସ୍ତିତ୍ୱ କେବେ ଥିଲା ଏବଂ ଯଦି ଥିଲା ତେବେ ଆମେ ତାଙ୍କ ସଂପର୍କରେ କିଛି ଜାଣୁ ନା । ଏଣୁ ମୁଁ ଏ ଐତିହାସିକ ପ୍ରଶ୍ନ ଉପରେ କୌଣସି ସନ୍ଦେହ ରଖେନା, ଯା ଖୁବ ଜଟିଳ ।”

ଯୀଶୁ କୁମାରୀ ଗର୍ଭରୁ ପରମେଶ୍ୱରଙ୍କ ଦ୍ୱାରା ଜନ୍ମ ନେବା କଥା ମରିୟମ ଓ ଯୋସେଫ ଶୁଣିଲେ ସ୍ୱର୍ଗଦୂତଙ୍କ ଠାରୁ । ଆମ୍ଭେମାନେ କ'ଣ ଏ ପ୍ରକାର ସ୍ୱର୍ଗଦୂତଙ୍କୁ ବିଶ୍ୱାସ କରିବା ବୁଦ୍ଧିସଙ୍ଗତ ହେବ କି ? ଏ ସ୍ୱର୍ଗଦୂତମାନେ ବଡ଼ ଅଜବ ପ୍ରାଣୀ । କାହାର ପକ୍ଷୀ ଲାଗିଛି ତ କାହାର ପକ୍ଷୀ ଲାଗିନାହିଁ । ପୁଣି ଆକାର ଓ ଆଚରଣରେ ଏମାନେ ଅନେକ ପ୍ରକାର । କା'ର ନାମ ଗେବ୍ରୀଏଲ ହେଲେ କା'ର ନାମ ମାଇକେଲ । ସ୍ୱର୍ଗଦୂତ ବିଶ୍ୱାସୀଙ୍କୁ ମୁଁ ପଚାରିବାକୁ ଚାହେଁ ସେମାନେ ଆଗପରି ମନୁଷ୍ୟ ଆଗକୁ ଆସିବା ପାଇଁ ଆଜିକାଲି କାହିଁକି ସାହସ କରୁନାହାନ୍ତି । ଏଠି ଏହା ନିସଙ୍କୋଚରେ ମୁଁ କହିବାକୁ ଚାହେଁ ଯେ ଯୀଶୁ ଇହୁଦୀ ହେବା କାରଣରୁ ଏପ୍ରକାର ସ୍ୱର୍ଗଦୂତଙ୍କ ଉପରେ ବିଶ୍ୱାସ କରୁଥିଲେ ।

ପୁନଶ୍ଚ ଆଧୁନିକ ବିଶ୍ୱରେ କୁମାରୀ କନ୍ୟାଦ୍ୱାରା ବାଳକ ଜନ୍ମ ହେବା ହାସ୍ୟାସ୍ପଦ କଥା । ଏହା ପ୍ରକୃତି ଓ ଈଶ୍ୱରଙ୍କ ନିୟମ ବିରୁଦ୍ଧ । ପରମେଶ୍ୱର ତାଙ୍କର ପୂଜକକନ୍ୟା ବିନ୍ଦୁ ମରିୟମଙ୍କ ସହ ଏ କର୍ମ ତାଙ୍କର ଗୌରବକୁ ହିଁ ହ୍ରାସ କରିଛି । ଈଶ୍ୱର ଯଦି କାହାରି ବିନା ସାହାଯ୍ୟରେ ଏ ବିଶାଳ ସୃଷ୍ଟି ରଚନା କରି ପାରିଲେ ଏବଂ ଆଦମ ଓ ହବାଙ୍କୁ ମଧ୍ୟ ମାଟିରୁ ନିର୍ମାଣ କରି ନାକରେ ଫୁଙ୍କି ଜୀବନ୍ୟାସ ଦେଇ ପାରିଲେ, ସେହି ଈଶ୍ୱର ନିଜର ପୁତ୍ରକୁ ଜନ୍ମ ଦେବା ସମୟରେ ଏ ନିର୍ମାଣ କୌଶଳ କିପରି ଲୋପ ପାଇଗଲା । ଯଦ୍ଦ୍ୱାରା ତାଙ୍କୁ ମରିୟମଙ୍କ ଆଶ୍ରା ନେବାକୁ ପଡ଼ିଲା । ମୋ ମନରେ ପ୍ରଶ୍ନ ଉଠେ ଯୀଶୁ କୁମାରୀ

ଗର୍ଭରେ ଜନ୍ମ ହେବାପରେ ଈଶ୍ୱରଙ୍କ ପୁତ୍ର ହେଲେ ନା ପ୍ରଥମରୁ ହିଁ ଥିଲେ ? ଯଦି କୁମାରୀ ଗର୍ଭଜାତ ପରେ ଈଶ୍ୱରଙ୍କ ପୁତ୍ର ହେଲେ, ତାହେଲେ ପିତାପୁତ୍ର ଏବଂ ପବିତ୍ରଆତ୍ମା ଏ ନିତ୍ୟ ସିଦ୍ଧାନ୍ତ ସ୍ୱୟଂ ବିନଷ୍ଟ ହୋଇଗଲା । ଯଦି କୁହାଯାଏ ଯୀଶୁ ପ୍ରଥମରୁ ହିଁ ଈଶ୍ୱରଙ୍କ ପୁତ୍ର ଥିଲେ ତାହେଲେ ପିତାପୂର୍ବରୁ ପୁତ୍ରର କଳ୍ପନା କରିବା କ'ଣ ହାସ୍ୟାସ୍ପଦ କଥା ନୁହେଁ କି । ଯୀଶୁଙ୍କୁ ଯଦି ପରମେଶ୍ୱରଙ୍କ ଏକମାତ୍ର ସନ୍ତାନ ବୋଲି ଆମେ କହୁଁ ତାହେଲେ ମାନବସମାଜ କାହାର ସନ୍ତାନ ? ଯୀଶୁ ଯଦି ଈଶ୍ୱରଙ୍କର ଉତ୍ତମପୁତ୍ର ତାହେଲେ ଯୀଶୁଙ୍କ ପରି ଅନ୍ୟ ପୁତ୍ରମାନଙ୍କୁ ଉତ୍ତମକରି ନିର୍ମାଣ ନ କରି ଈଶ୍ୱର କ'ଣ ମାନବସମାଜ ପ୍ରତି ଅନ୍ୟାୟ କରିନାହାନ୍ତି କି ? ଗାନ୍ଧିଜୀ ତ ଏହା ମାନିବାପାଇଁ ଅସ୍ୱୀକାର କରିଦେଇଥିଲେ ଯେ ଯୀଶୁ ହିଁ ପରମେଶ୍ୱରଙ୍କ ଏକମାତ୍ର ସନ୍ତାନ । ପରମେଶ୍ୱରଙ୍କ ସନ୍ତାନ ହେବା ସତ୍ତ୍ୱେ ନାରୀଗର୍ଭରୁ ଜାତ ହେବାଦ୍ୱାରା ଯୀଶୁଙ୍କ ପାଖକୁ ପାପର ସଂସ୍କାର ଆସିଯାଇ ନାହିଁ ତ, ଯାହା ସୈତାନ ଆଦମର ସ୍ତ୍ରୀଦ୍ୱାରା ସ୍ତ୍ରୀଜାତି ଦେହରେ ଭରି ଦେଇଥିଲା ।

ବାଇବେଲରେ ଯୀଶୁଙ୍କ ବଂଶାବଳୀରୁ ସିଦ୍ଧ ହୁଏ କି ସେ ଈଶ୍ୱରଙ୍କ ସନ୍ତାନ ନ ଥିଲେ । ଯୋସେଫ ଆବ୍ରାହମ୍‌ଙ୍କ ୪୧ ପିଢ଼ି ଏବଂ ଯୀଶୁଙ୍କୁ ମିଶାଇ ୪୨ ପିଢ଼ି । ଯଦି ଯୀଶୁ ଯୋସେଫଙ୍କ ଔରସ ପୁତ୍ର ନୁହଁନ୍ତି ତେବେ ଆବ୍ରାହମଙ୍କ ବଂଶଧର କିପରି ? ଯେଉଁ ବ୍ୟକ୍ତି ବାପର ପୁଅ ହୋଇ ନ ପାରେ ସେ ଅଜାର ନାତି କିପରି ହୋଇ ପାରିବ ? ଦେଖିବାକୁ ଗଲେ ସେ ଈଶ୍ୱରଙ୍କ ପୁତ୍ର ନ ଥିଲେ । ଈଶ୍ୱର ନିଜେ ନିୟମଦାତା ହୋଇ ନିୟମ ଭଙ୍ଗ କରି ନ ପାରନ୍ତି । ମୋଶାଙ୍କ ଦ୍ୱିତୀୟ ବିବରଣ (୨୨ : ୨୧) ଅନୁସାରେ ଇହୁଦୀମାନଙ୍କର ଏ ବ୍ୟବସ୍ଥା ପ୍ରଚଳିତ ଥିଲା ଯେ କୌଣସି ବ୍ୟଭିଚାରିଣୀ କନ୍ୟାକୁ ବାହାର କରି ପିତୃଗୃହର ଦ୍ୱାର ନିକଟକୁ ଆଣି ନଗରସ୍ଥ ଲୋକମାନେ ତାକୁ ପ୍ରସ୍ତରାଘାତ କରି ବଧ କରୁଥିଲେ । କାରଣ ପିତୃଗୃହରେ ବ୍ୟଭିଚାର କରିବାରୁ ସେ ଇସ୍ରାଏଲ ମଧ୍ୟରେ ମୂଢ଼ତାର କର୍ମ କଲା; ଏହିରୂପେ ସେମାନେ ଆପଣା ମଧ୍ୟରୁ ଦୁଷ୍ଟତା ଦୂର କରୁଥିଲେ । ଏଠି ଅନୁମାନ ଲଗାଯାଇ ପାରେ ଯେ ମରିୟମ ଗର୍ଭବତୀ ହେବା କଥା ଯଦି ତାଙ୍କ ବିବାହ ସମୟରେ ଜଣାପଡ଼ି ଯାଇଥାନ୍ତା ତାହେଲେ ତାଙ୍କୁ ନିଶ୍ଚୟ ପଥରାଘାତରେ ଲୋକେ ମାରିଦେଇଥାନ୍ତେ । କିନ୍ତୁ ଏ କଥା କେବଳ ଯୁସେଫଙ୍କୁ ସେତେବେଳେ ଜଣାପଡ଼ିଲା ଯେବେ ସେ ବିବାହପରେ ତାଙ୍କ ପାଖକୁ ଗଲେ । ଏ ଦୃଷ୍ଟିରୁ ଈଶ୍ୱରଙ୍କ ପୁତ୍ର ବୋଲି କହିବାଦ୍ୱାରା ଆମେ ଯୀଶୁଙ୍କୁ ଇତିହାସଠାରୁ ପୃଥକ କରୁଛୁ ବୋଲି ବୁଝିବାକୁ ହେବ । "ଦି ପାସ୍ ଓଭର ପ୍ଲଟ" ପୁସ୍ତକରେ ଡା. ହୁଗ୍‌ଜେ

ସୋନଫିଲ୍ଡ କହନ୍ତି ଯେ "କନ୍ୟାଜାତ" କଥାଟି ହୁଏତ ଖ୍ରୀଷ୍ଟିୟାନମାନେ ଗ୍ରୀକ୍ ଵୀର ପାରସୀୟସ ଏବଂ ଆଲେକଜାଣ୍ଡାର ଆଦିଙ୍କ ଆଖ୍ୟାୟିକାରୁ ନିଆଯାଇଥିବ ।

ଏଥର ଆସନ୍ତୁ ଯୀଶୁଙ୍କ ମୃତ୍ୟୁ ସମ୍ପର୍କରେ କିଛି ବିଚାର କରିବା । ପରମେଶ୍ୱରଙ୍କ ଏକମାତ୍ର ପୁତ୍ର କ୍ରୁଶରେ ନିସହାୟ ଭାବରେ ହତ ହେଲେ ଏହା ମୋ ବିଶ୍ୱାସକୁ ପ୍ରଚଣ୍ଡ ଭାବରେ ଆଘାତ କରେ । ସେ ଯଦି କ୍ରୁଶରେ ହତ ହୋଇଛନ୍ତି ତେବେ ମୁଁ ତାହାକୁ ନେଇ ମୁକ୍ତିର ଅନ୍ୱେଷଣ କରିବି ? ଏଣୁ ମୋର ପ୍ରତ୍ୟୟ ହୁଏ ସେ କ୍ରୁଶରେ ହତହୋଇ ନ ଥିଲେ । ଯେହେତୁ ଯୀଶୁ କହିଥିଲେ : ଦୁଷ୍ଟ ଓ ବ୍ୟଭିଚାରୀ ବଂଶ ଚିହ୍ନ ଅନ୍ୱେଷଣ କରନ୍ତି । ମାତ୍ର ଭାବବାଦୀ ଯୂନସଙ୍କ ଚିହ୍ନ ବିନା ଅନ୍ୟ କୌଣସି ଚିହ୍ନ ସେମାନଙ୍କୁ ଦିଆଯିବ ନାହିଁ । କାରଣ ଯୂନସ ଯେପରି ତିନଦିନ ଓ ତିନରାତି ବୃହତ ମତ୍ସ୍ୟ ଉଦରରେ ଥିଲେ, ମନୁଷ୍ୟପୁତ୍ର ସେହିପରି ତିନଦିନ, ତିନରାତି ଭୂଗର୍ଭରେ ରହିବେ । [ମାଥିଉ ୧୨ : ୩୯-୪୦] ଭାବବାଦୀ ଯୂନସ ବୃହତ୍ତ ମତ୍ସ୍ୟ ଉଦରରେ ଜୀବିତ ଅବସ୍ଥାରେ ପ୍ରବେଶ କରି ପୁଣି ଫେରି ଆସିଥିଲେ । ଏହା ଯଦି ସତ୍ୟ ତେବେ ଆମର ପ୍ରଭୁ ସମାଧିକୁ ଜୀବିତାବସ୍ଥାରେ ପ୍ରବେଶ କରିବା ଓ ସେଠୁ ପୁଣି ବାହାର ଆସିବା କଥା ।

ଅନ୍ୟ ଏକ ବିଷୟ ଆମେ ବିଚାରକୁ ନେବା ଉଚିତ ଯେ ପରମେଶ୍ୱର ଯୀଶୁଙ୍କ ପ୍ରାର୍ଥନା ଶୁଣିଲେ । ଆମେ ଯଦି କହିବା ସେ ଶୁଣିଲେ ନାହିଁ ତେବେ ଆମର ପ୍ରାର୍ଥନା ଶୁଣିବେ ବୋଲି କ'ଣ ମାନେ ଅଛି ? କ୍ରୁଶବିଦ୍ଧ ହେବା ପୂର୍ବରୁ ଯୀଶୁ ଜାନୁପାତି ଏହି ପ୍ରାର୍ଥନା କଲେ : ହେ ପିତା, ଯଦି ତୁମର ଇଚ୍ଛା ଥାଏ, ତେବେ ପାନପାତ୍ର ମୋଠାରୁ ଦୂରକର । [ଲୂକ ୨୨ : ୪୨] ଆଉ ସେ କହିଲେ : ଆବ୍ବା, ପିତଃ, ସମସ୍ତ ତୁମ୍ଭର ସାଧ୍ୟ; ଏହି ପାନପାତ୍ର ମୋଠାରୁ ଦୂର କର । (ମାର୍କ ୧୪ : ୩୬) ପୁନଶ୍ଚ କ୍ରୁଶ ଉପରୁ ଯୀଶୁ ଉଚ୍ଚ ସ୍ୱରରେ ଡାକି କହିଲେ : ଏଲି, ଏଲି, ଲାମା ସବକ୍ଥାନି ? ଅର୍ଥାତ୍ ହେ ମୋହର ଈଶ୍ୱର, ହେ ମୋହର ଈଶ୍ୱର ତୁମ୍ଭେ ମତେ କାହିଁକି ପରିତ୍ୟାଗ କଲ ? (ମାଥିଉ ୨୭ : ୪୬)

ଏହି ପ୍ରାର୍ଥନାରୁ ଏହା ସୁସ୍ପଷ୍ଟ ଯେ ଯୀଶୁ କ୍ରୁଶରେ ରକ୍ଷା ପାଇଗଲେ, କାରଣ ପରମେଶ୍ୱର ତାଙ୍କର ପ୍ରାର୍ଥନା ଶୁଣିଲେ । ତାଙ୍କର ଏକମାତ୍ର ପୁତ୍ରଙ୍କ ପ୍ରାର୍ଥନା ଯଦି ସେ ଶୁଣିବେନି ତେବେ କାହାର ପ୍ରାର୍ଥନା ଶୁଣିବେ ? ଆଉ ଯୀଶୁ ଊର୍ଦ୍ଧ୍ୱ ଦୃଷ୍ଟି କରି କହିଲେ, ପିତଃ ତୁମ୍ଭେ ମୋହର ପ୍ରାର୍ଥନା ଶୁଣିଲ ବୋଲି ମୁଁ ତୁମକୁ ଧନ୍ୟବାଦ ଦେଉଅଛି । ତୁମ୍ଭେ ଯେ ସର୍ବଦା ମୋହର ପ୍ରାର୍ଥନା ଶୁଣିଥାଅ । ଏହା ମୁଁ

ଜାଣିଥିଲି; କିନ୍ତୁ ଯେଉଁ ଲୋକସମୂହ ଚତୁର୍ଦ୍ଦିଗରେ ଠିଆ ହୋଇଅଛନ୍ତି । ତୁମ୍ଭେ ମୋତେ ପ୍ରେରଣ କରିଅଛ ବୋଲି ସେମାନେ ଯେପରି ବିଶ୍ୱାସ କରିବେ, ସେଥିପାଇଁ ସେମାନଙ୍କ ହେତୁ ମୁଁ ଏହା କହିଲି । (ଯୋହନ ୧୧ : ୪୧-୪୨) ପୁଣି ଯୀଶୁ କହୁଛନ୍ତି : ତୁମ୍ଭମାନଙ୍କ ମଧ୍ୟରେ ଏପରି କେଉଁ ଲୋକ ଅଛି ଯେ ନିଜ ପୁଅ ରୋଟୀ ମାଗିଲେ ତାହାକୁ ପଥର ଦେବ, କି ଅବା ମାଛ ମାଗିଲେ ତାହାକୁ ସାପ ଦେବ ? (ମାଥିଉ ୭ : ୯)

ଉପରୋକ୍ତ ବାକ୍ୟଗୁଡ଼ିକରୁ ଏହା ସୁସ୍ପଷ୍ଟ ଯେ ପରମେଶ୍ୱର କେବେ ହେଁ ଯୀଶୁଙ୍କ ପ୍ରାର୍ଥନାକୁ ପ୍ରତ୍ୟାଖ୍ୟାନ କରି ନାହାନ୍ତି । ସେ ଦୃଷ୍ଟିରୁ ସେ ଯୀଶୁଙ୍କୁ ଯେ କ୍ରୁଶରେ ହତ ହେବାକୁ ଦେଇଛନ୍ତି ତା'ମନାଯାଇ ପାରିବ ନାହିଁ ।' ଏ କଥାକୁ ସ୍ପଷ୍ଟ ବୁଝିବା ପାଇଁ ଏବ୍ରୀ (୬ : ୭)ର ଗୋଟିଏ ବାକ୍ୟ ପଢ଼ନ୍ତୁ : ଯେ ତାହାଙ୍କୁ ମୃତ୍ୟୁରୁ ରକ୍ଷା କରିବାକୁ ସମର୍ଥ, ତାହାଙ୍କ ନିକଟରେ ସେ ଆପଣା ପାର୍ଥିବ ଜୀବନରେ ଥିବା ସମୟରେ ପ୍ରବଳ ଆର୍ତ୍ତନାଦ ଓ ଅଶ୍ରୁ ସହକାରେ ପ୍ରାର୍ଥନା ଓ ବିନତି ଉତ୍ସର୍ଗ କରିଥିଲେ, ଆଉ ଉତ୍ତର ସ୍ୱରୂପେ ଆଶଙ୍କାରୁ ରକ୍ଷା ପାଇଥିଲେ ।



# ପୁରାତନ ନିୟମ ପରିପ୍ରେକ୍ଷୀରେ
# ନୂତନ ନିୟମର ଭାବବାଣୀ

ଏହା ସର୍ବଜନ ସ୍ୱୀକୃତ ହୋଇ ଆସୁଅଛି ଯେ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ ଆଗମନ ବିଷୟରେ ପୁରାତନ ନିୟମର ଭାବବାଦୀମାନେ ସ୍ପଷ୍ଟ ସୂଚନା ଦେଇଥିଲେ। ଭାବବାଦୀଗଣ ତାହାଙ୍କ ବିଷୟରେ ହିଁ କହିଥିଲେ ଯେ ସେ ଇସ୍ରାଏଲ ଲୋକଙ୍କୁ ପ୍ରତିପାଳନ କରିବେ, ତାହାଙ୍କ ପାଇଁ ପଥ ପ୍ରସ୍ତୁତ କରିବେ। ତାହାଙ୍କୁ ହିଁ ପରମେଶ୍ୱର ମିଶରରୁ ଆହ୍ୱାନ କରିବେ। ସେ ଜଣେ କୁମାରୀ କନ୍ୟା ଗର୍ଭରୁ ଜାତ ହେବେ। ସେ ଆମ୍ଭମାନଙ୍କ ପାଇଁ ବିଦ୍ଧ ହେବେ ମାତ୍ର ତାହାଙ୍କ କୌଣସି ଅସ୍ଥି ଭଙ୍ଗ ହେବ ନାହିଁ। ନୂତନ ନିୟମର ସୁସମାଚାରକଗଣ ପୁରାତନ ନିୟମର ଏହି ଉଦ୍ଧୃତମାନ ଦେଇ ଏହା ହିଁ ପ୍ରତିପାଦନ କରି ଦେଇଅଛନ୍ତି ଯେ, ଯାହାକିଛି ସେମାନେ ପୁରାତନ ନିୟମରେ କହିଛନ୍ତି ସେ ସବୁ ପ୍ରଭୁ ଯୀଶୁଖ୍ରୀଷ୍ଟ ଉପରେ ହିଁ କହିଛନ୍ତି। ଯିହୁଦୀମାନେ ଏହା ମାନିବାକୁ ନାରାଜ କାରଣ ଯୀଶୁ ଯିହୁଦୀ ହେବା ସତ୍ତ୍ୱେ ଯିହୁଦୀ ଧର୍ମର ବିରୁଦ୍ଧାଚରଣ କରିଛନ୍ତି। ପ୍ରକୃତରେ ପୁରାତନ ନିୟମରେ ଯୀଶୁଙ୍କ ସମ୍ପର୍କରେ କିଛି କୁହାଯାଇଛି, ନା ନାହିଁ ତାହା ପୂର୍ବାପର ସମ୍ପର୍କ ସହ ବିଚାର କରିବା ଆବଶ୍ୟକ।

ମାଥିଉଙ୍କ ଅନୁସାରେ ଯୀଶୁଙ୍କ ଜନ୍ମ ଏହି ପ୍ରକାରେ ହେଲା। ତାହାଙ୍କ ମାତା ମରିୟମଙ୍କର ଯୋସେଫଙ୍କ ସହିତ ବିବାହନିର୍ବନ୍ଧ ହେଲା ପରେ ସେମାନଙ୍କ ସହବାସ ପୂର୍ବେ ସେ ପବିତ୍ର ଆତ୍ମାଙ୍କ କର୍ତ୍ତୃକ ଗର୍ଭବତୀ ହୋଇଛନ୍ତି ବୋଲି ଜଣା ପଡ଼ିଲା। ଏଥିରେ ତାହାଙ୍କ ସ୍ୱାମୀ ଯୋସେଫ ଧାର୍ମିକ ଥିବାରୁ ଏବଂ ତାହାଙ୍କୁ ପ୍ରକାଶରେ ନିନ୍ଦାର ପାତ୍ର କରିବାକୁ ଇଚ୍ଛା ନ କରିବାରୁ ଗୋପନରେ ତାହାଙ୍କୁ ପରିତ୍ୟାଗ କରିବାକୁ ସ୍ଥିର କଲେ। ତା'ପରେ ଯୋସେଫ ସ୍ୱପ୍ନ ଦେଖିଲେ। ସ୍ୱପ୍ନରେ ଜଣେ ସ୍ୱର୍ଗଦୂତ ତାଙ୍କୁ ଏହା ପବିତ୍ର ଆତ୍ମାଙ୍କ କର୍ତ୍ତୃକରେ ହୋଇଛି ବୋଲି କୁହନ୍ତି। ପୁନଶ୍ଚ ତାଙ୍କ ନାମ ଯୀଶୁ ରଖିବାକୁ କୁହନ୍ତି କାରଣ ସେ ଆପଣା ଲୋକଙ୍କୁ ସେମାନଙ୍କ ସମସ୍ତ ପାପରୁ ପରିତ୍ରାଣ କରିବେ। ଏ ସବୁ କହିବା ପରେ ମାଥିଉ କୁହନ୍ତି, ଭାବବାଦୀଙ୍କ ଦ୍ୱାରା ପ୍ରଭୁଙ୍କ ଏହି ବାକ୍ୟ ଯେପରି ସଫଳ ହୁଏ। ଏଥିନିମନ୍ତେ ଏ ସମସ୍ତ ଘଟିଲା :

ଦେଖ, ଜଣେ କନ୍ୟା ଗର୍ଭବତୀ ହୋଇ ପୁତ୍ର ପ୍ରସବ କରିବେ,
ଆଉ ଲୋକେ ତାହାଙ୍କ ନାମ ଇମ୍ମାନୁୟେଲ ଦେବେ, ଏହି
ନାମର ଅର୍ଥ 'ଆମ୍ଭମାନଙ୍କ ସହିତ ଈଶ୍ୱର'। [୧ : ୨୩]

ଏଠାରେ ଦୁଇଟି ବିଷୟ ବିଶେଷ ବିଚାରଯୋଗ୍ୟ। ପ୍ରଥମଟି ଯୋସେଫଙ୍କ ସ୍ୱପ୍ନ ଏବଂ ତାହା ବିଶ୍ୱାସ କରିବା। ଦ୍ୱିତୀୟଟି ଭବିଷ୍ୟଦ୍‌ବାଦୀଙ୍କ ଦ୍ୱାରା କଥିତ ବାକ୍ୟ ସହିତ ଯୀଶୁଙ୍କ ଜନ୍ମ ବୃତ୍ତାନ୍ତ ଯୋଡ଼ିବା।

ସ୍ୱପ୍ନର ସମ୍ପର୍କ ଇତିହାସ ସହିତ ନୁହେଁ, ମନସ୍ତତ୍ତ୍ୱ ସହିତ। ଯୋସେଫ ଧାର୍ମିକ ଥିବାରୁ ଏବଂ ମରିୟମଙ୍କୁ ପ୍ରକାଶ୍ୟରେ ଅପମାନ ଦାନ କରିବାକୁ ଇଚ୍ଛା କରୁ ନ ଥିବାରୁ ଏବଂ ଗୋପନରେ ତାଙ୍କୁ ପରିତ୍ୟାଗ କରିବାକୁ ସ୍ଥିର କରିଥିବାରୁ ହୁଏତ ମାନସିକ ଚିନ୍ତା ରୂପରେ ଏହା ସ୍ୱପ୍ନ ମାଧ୍ୟମରେ ଚାଲିଆସିଥିବ। ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ। ସ୍ୱପ୍ନ ଏକ ଚମତ୍କାରପ୍ରଦ, ବୁଦ୍ଧି ଓ ତର୍କ ବହିର୍ଭୂତ ମାନସିକ ପରିସ୍ଥିତି। ଏହା ଉପରେ ଆମେ ଆସ୍ଥା ରଖି ନ ପାରୁଁ। ନ ରଖିବା ମଧ୍ୟ ବିଧେୟ। ତେବେ ମାଥିଉ ଯେଉଁ ଭବିଷ୍ୟଦ୍‌ବାଦୀ ସହିତ ଘଟଣାଟିକୁ ସଂଯୋଗ କରନ୍ତି ତାହା ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ। ପ୍ରକୃତ ପକ୍ଷେ ମାଥିଉ ଯିଶାଇୟଙ୍କୁ ଉଦ୍ଧୃତ କରିଛନ୍ତି। ଯେଉଁଠି ସେହି ପ୍ରକାର ବାକ୍ୟଟିଏ ଅଛି :

ଏ ହେତୁ ପ୍ରଭୁ ଆପେ ତୁମ୍ଭମାନଙ୍କୁ ଏକ ଚିହ୍ନ ଦେବେ; ଦେଖ ଏକ
କନ୍ୟା ଗର୍ଭବତୀ ହୋଇ ଏକ ପୁତ୍ର ପ୍ରସବ କରିବ ଓ ତାହାର ନାମ
ଇମ୍ମାନୁୟେଲ (ଆମ୍ଭମାନଙ୍କ ସହିତ ପରମେଶ୍ୱର) ରଖିବ।
[୭ : ୧୪]

ଯଦିଓ ପରବର୍ତ୍ତୀ ଲେଖକ ଭାବରେ ମାଥିଉ ପୂର୍ବବର୍ତ୍ତୀ ଯିଶାଇୟରୁ ସାତଶ ବର୍ଷ ପରେ ବିନା ଦ୍ୱିଧାରେ ବାକ୍ୟଟି ଉଦ୍ଧାର କରିଛନ୍ତି, କେଉଁ ପରିପେକ୍ଷୀରେ ଯିଶାଇୟ ଏହା କହିଛନ୍ତି ତାକୁ ସେ ବିଚାରକୁ ନେଇ ନାହାନ୍ତି। ଦେଖିବାକୁ ଗଲେ ଏ ଭବିଷ୍ୟବାଣୀ ଯିଶାଇୟ ଯୀଶୁଙ୍କ ସନ୍ଦର୍ଭରେ ନୁହେଁ ବରଂ ନିଜ ସନ୍ତାନ ପାଇଁ ହିଁ କହିଥିଲେ।

ସୋଲେମନଙ୍କ ମୃତ୍ୟୁରେ ଇହୁଦୀ ଦେଶ ଦୁଇଭାଗରେ ବିଭକ୍ତ ହୋଇଗଲା। ଯିହୁଦା ପ୍ରଦେଶଟିର ରାଜଧାନୀ ଜିରୂଶାଲମରେ ରହିଲା ଏବଂ ଇସ୍ରାୟେଲ ପ୍ରଦେଶର ରାଜଧାନୀ ଶମରିୟାରେ ହେଲା। ଯିହୁଦା ଦାଉଦଙ୍କ ପଦାଙ୍କ ଅନୁସରଣ କଲେ ତ ଇସ୍ରାୟେଲଗଣ ଶାଉଲଙ୍କୁ ଆଦର୍ଶ ମାନି ପରସ୍ପର ସହିତ ଭୟଙ୍କର ଯୁଦ୍ଧରେ ରତ ରହୁଥିଲେ।

ଯିଶାଇୟଙ୍କ ସମୟରେ ଯିହୁଦାର ରାଜା ଉଷିୟର ଥିଲେ । ପେକହ ଇସ୍ରାଏଲର ରାଜା ଥିଲେ ସେ ଆରାମର ରତ୍ସୀଙ୍କ ସହ ମିଶି ଜିହୁଦା ରାଜା ଉଷିୟରଙ୍କ ସହ ଯୁଦ୍ଧ କରୁଥିଲେ । ଏ ଦୁଇ ରାଜା ଜିରୁଶାଲମ ବିରୁଦ୍ଧରେ ଯୁଦ୍ଧ କରିବାକୁ ସେଠାକୁ ଗଲେ । ଉଷିୟର ଏବଂ ତାଙ୍କ ଲୋକେ ବିପଦ ପଡ଼ିବାର ଜାଣିଲେ । ଏଥିରେ ତାଙ୍କ ହୃଦୟ ଓ ତାଙ୍କର ଲୋକମାନଙ୍କ ହୃଦୟ ବାୟୁରେ କମ୍ପିତ ଓ ବନବୃକ୍ଷ ତୁଲ୍ୟ କମ୍ପିତ ହେଲା । [ଯିଶାଇୟ ୭ : ୨] ଏ ପରିସ୍ଥିତିରେ ଯିଶାଇୟ ଉଷିୟରଙ୍କୁ ପ୍ରଭୁଙ୍କ ନାମରେ ସାନ୍ତ୍ୱନା ଦିଅନ୍ତି ଏବଂ ଏ ରାଜାଦ୍ୱୟ ଯେପରି ବିଜୟୀ ନ ହୁଅନ୍ତି ସେଥିପାଇଁ ଉଷିୟରଙ୍କୁ, ପ୍ରଭୁଙ୍କୁ ଏକ ଚିହ୍ନ ମାଗିବାକୁ କୁହନ୍ତି । ମାତ୍ର ସେ ପ୍ରଭୁଙ୍କୁ ପରୀକ୍ଷା କରିବାକୁ ଚାହାନ୍ତି ନାହିଁ ବୋଲି କହିବାରୁ ଯିଶାଇୟ ଯେ ଈଶ୍ୱର ପ୍ରେରିତ, ସେ ଦୃଷ୍ଟିରୁ ସେ କୁହନ୍ତି .

> ଏ ହେତୁ ପ୍ରଭୁ ଆପେ ତୁମ୍ଭମାନଙ୍କୁ ଏକ ଚିହ୍ନ ଦେବେ; ଦେଖ, ଏକ କନ୍ୟା ଗର୍ଭବତୀ ହୋଇ ଏକ ପୁତ୍ର ପ୍ରସବ କରିବ ଓ ତାହାର ନାମ ଇମ୍ମାନୁୟେଲ (ଆମ୍ଭମାନଙ୍କ ସହିତ ପରମେଶ୍ୱର) ରଖିବ । ମନ୍ଦକୁ ଅଗ୍ରାହ୍ୟ ଓ ଭଲକୁ ମନୋନୀତ କରିବାର ଜାଣିବାବେଳେ ସେ ଦଧି ଓ ମଧୁ ଖାଇବ । କାରଣ ବାଳକ ମନ୍ଦକୁ ଅଗ୍ରାହ୍ୟ ଓ ଭଲକୁ ମନୋନୀତ କରିବାର ଜାଣିବା ପୂର୍ବେ ଯେଉଁ ଦେଶର ଦୁଇ ରାଜାଙ୍କୁ ତୁମ୍ଭେ ଘୃଣା କରୁଅଛ ସେ ଦେଶ ପରିତ୍ୟକ୍ତ ହେବ । [ଯିଶାଇୟ ୭ : ୧୪-୧୬].

ଅର୍ଥାତ୍, ଇସ୍ରାଏଲର ରାଜା ଓ ଅରାମର ରାଜା ଯେଉଁମାନେ ତାଙ୍କୁ ଆକ୍ରମଣ କରିଛନ୍ତି ସେମାନେ ପରିତ୍ୟକ୍ତ ହେବେ । ଯିଶାଇୟଙ୍କ ପାଇଁ ଏହା କ'ଣ ହାସ୍ୟାସ୍ପଦ କଥା ହେବ ନାହିଁ ଯେ ସେ ଉଷିୟରଙ୍କୁ ନର୍ଭର ପ୍ରତିଶ୍ରୁତି ଦିଅନ୍ତି ଯେ ଯେଉଁ ଦୁଇଟି ରାଜା ତାଙ୍କ ବିରୁଦ୍ଧରେ ଲଢ଼ୁଛନ୍ତି ସେମାନେ ପରିତ୍ୟକ୍ତ ହେବେ, କାରଣ ଗୋଟିଏ ଶିଶୁ ତାଙ୍କ ମୃତ୍ୟୁର ସାତଶ ବର୍ଷପରେ ଜନ୍ମ ହେବ, ଯିଏ ତାଙ୍କୁ ଉପସ୍ଥିତ ହୋଇଥିବା ବିପଦରୁ ରକ୍ଷା କରିବ ?

ଯିଶାଇୟ ତାଙ୍କ ନିଜ ଶିଶୁପାଇଁ ହିଁ ବାକ୍ୟଟି କହିଥିଲେ । କାରଣ ସେ ସମୟରେ ତାଙ୍କ ସ୍ତ୍ରୀ ଗର୍ଭବତୀ ଥିଲେ ଏବଂ କୁହାଯାଉଥିଲା—ଆଉ ମୁଁ ପ୍ରମାଣର ନିମନ୍ତେ ଉଭୟ ଯାଜକ ଓ ଯିବୋରେଖିୟର ପୁତ୍ର ସଖରିଅକୁ ଆପଣାର ବିଶ୍ୱସ୍ତ ସାକ୍ଷୀ କରିବି । ଅନନ୍ତର ମୁଁ ଭବିଷ୍ୟଦ୍‌ବକ୍ତ୍ରୀଠାରେ ଗମନ କରନ୍ତେ ସେ ଗର୍ଭବତୀ ହୋଇ ଏକ ପୁତ୍ର ପ୍ରସବ କଲା । [୮ : ୨-୩] ପୁନଶ୍ଚ ସେହି ଅଧ୍ୟାୟରେ କୁହାଗଲା, ଦେଖ ମୁଁ ଓ ସଦାପ୍ରଭୁଙ୍କଦ୍ୱାରା ମତେ ଦତ୍ତ ସନ୍ତାନଗଣ ସିୟୋନ ପର୍ବତ ନିବାସି ସୈନ୍ୟାଧିପତି ସଦାପ୍ରଭୁଙ୍କଠାରୁ ଇସ୍ରାୟେଲ ମଧ୍ୟରେ ଚିହ୍ନ ଓ ଅଦ୍ଭୁତ ଲକ୍ଷଣ ସ୍ୱରୂପ ଅଛୁ । [୧୮]

ମାଥିଉ ପୁନଶ୍ଚ କୁହନ୍ତି, ହେରୋଦ ରାଜାଙ୍କ ସମୟରେ ଯିହୂଦା ପ୍ରଦେଶରେ ବେଥଲେହମରେ ଯୀଶୁଙ୍କ ଜନ୍ମ ହେବାପରେ, ଦେଖ, ପୂର୍ବଦେଶର କେତେକ ଜ୍ୟୋତିର୍ବେତ୍ତା ପଣ୍ଡିତ ଯିରୂଶାଲମକୁ ଆସି କହିଲେ, ଯିହୁଦୀମାନଙ୍କର ଯେଉଁ ରାଜା ଜନ୍ମଗ୍ରହଣ କରିଛନ୍ତି, ସେ କେଉଁଠାରେ ? କାରଣ ଆମ୍ଭେମାନେ ପୂର୍ବଦେଶରେ ତାହାଙ୍କ ତାରା ଦେଖି ତାହାଙ୍କୁ ପ୍ରଣାମ କରିବାକୁ ଆସିଅଛୁଁ । ଏହା ଶୁଣି ହେରୋଦ ରାଜା ଓ ତାହାଙ୍କ ସହିତ ସମୁଦାୟ ଯିରୂଶାଲମ ନିବାସୀ ଉଦ୍‌ବିଗ୍ନ ହେଲେ; ପୁଣି ସେ ଲୋକଙ୍କର ସମସ୍ତ ପ୍ରଧାନ ଯାଜକ ଓ ଶାସ୍ତ୍ରୀଙ୍କୁ ଏକତ୍ର କରି, ଖ୍ରୀଷ୍ଟ ଯେଉଁଠାରେ ଜନ୍ମଗ୍ରହଣ କରିବେ, ତାହା ସେମାନଙ୍କଠାରୁ ବୁଝିନେବାକୁ ଚେଷ୍ଟାକଲେ । ସେମାନେ ତାହାଙ୍କୁ କହିଲେ, ଯିହୁଦା ପ୍ରଦେଶର ବେଥଲେହମ୍‌ରେ, କାରଣ ଭାବବାଦୀଙ୍କ ଦ୍ୱାରା ଏପରି ଲେଖାଅଛି :

ଆଉ ଗୋ ଯିହୁଦାଙ୍କ ପ୍ରଦେଶର ବେଥ୍‌ଲେହମ୍,
ତୁ ଯିହୁଦାର ପ୍ରଧାନ ନଗରସମୂହ ମଧ୍ୟରେ
କୌଣସି ପ୍ରକାରେ କ୍ଷୁଦ୍ରତମ ନୋହୁ,
କାରଣ ଯେ ଆମ୍ଭର ଇସ୍ରାୟେଲ ଲୋକଙ୍କୁ
ପ୍ରତିପାଳନ କରିବେ,
ଏପରି ଜଣେ ଶାସନକର୍ତ୍ତା ତୋଠାରୁ ଉତ୍ପନ୍ନ ହେବ । [୨ : ୧-୬]

ଉପରୋକ୍ତ ଉକ୍ତିଟି ମୀଖାରୁ ଆନୀତ । ସେଥିରେ କୁହାଯାଇଛି :

ହେ ବୈତ୍‌ଲେହମ୍—ଇଫ୍ରାଥା, ଯିହୁଦାର ସହସ୍ରଗଣର ମଧ୍ୟରେ କ୍ଷୁଦ୍ର ଯେ ତୁମ୍ଭେ, ତୁମ୍ଭ ମଧ୍ୟରୁ ଇସ୍ରାୟେଲର ଶାସନକର୍ତ୍ତା ହେବା ନିମନ୍ତେ ଆମ୍ଭ ଉଦ୍ଦେଶ୍ୟରେ ଏକ ବ୍ୟକ୍ତି ଉତ୍ପନ୍ନ ହେବେ; ପୁରାତନ କାଳରୁ, ଅନାଦି କାଳରୁ ତାହାଙ୍କର ଉତ୍ପତ୍ତି । [୫ : ୨]

ଏହି ବାକ୍ୟଟି କ'ଣ ଯୀଶୁଙ୍କ ସମ୍ପର୍କରେ ଭାବବାଣୀ ଭାବରେ କୁହାଯାଇଛି କି ? ଯଦି କୁହାଯାଇଥାନ୍ତା ତାହେଲେ ସେହି ଅଧ୍ୟାୟରେ ଲେଖାଯାଇ ନ ଥାନ୍ତା :

ଆଉ ଏହି ମନୁଷ୍ୟ ଆମ୍ଭମାନଙ୍କର ଶାନ୍ତି ସ୍ୱରୂପ ହେବେ; ଯେଉଁ ସମୟରେ ଅଶୂର ଆମ୍ଭମାନଙ୍କ ଦେଶକୁ ଆସିବ ଓ ଆମ୍ଭମାନଙ୍କ ଅଟ୍ଟାଳିକାମାନରେ ପଦାର୍ପଣ କରିବ, ସେ ସମୟରେ ଆମ୍ଭେମାନେ ତାହା ବିରୁଦ୍ଧରେ ସାତ ଜଣ ପାଳରକ୍ଷକ ଓ ଆଠ ଜଣ ପ୍ରଧାନ ଲୋକ ଉତ୍ଥାପନ କରିବା, ପୁଣି ସେମାନେ ଖଡ୍ଗ ଦ୍ୱାରା ଅଶୂର ଦେଶ ଓ ନିମ୍ରୋଦ ଦେଶର ପ୍ରବେଶସ୍ଥାନ

> ସକଳ ଉଚ୍ଛିନ୍ନ କରିବେ; ପୁଣି ଅଶୂର ଆମ୍ଭମାନଙ୍କ ଦେଶକୁ ଆସି ଆମ୍ଭମାନଙ୍କ ସୀମାରେ ପଦାର୍ପଣ କଲେ ସେ ତାହାଠାରୁ ଆମ୍ଭମାନଙ୍କୁ ଉଦ୍ଧାର କରିବେ । [୫ : ୫-୬]

ଉପରୋକ୍ତ ବାକ୍ୟଟିରୁ ଜଣାପଡ଼େ ଯେ ଏହା ଜଣେ ସାମରିକ ମୁଖ୍ୟଙ୍କ ସମ୍ପର୍କରେ ହିଁ ଲେଖାଯାଇଛି । ଏହା ଯଦି ଯୀଶୁଙ୍କ ଉଦ୍ଦେଶ୍ୟରେ କୁହାଯାଇଥାନ୍ତା ତେବେ "ଅଶୂର" ଶବ୍ଦ ପରିବର୍ତ୍ତେ "ରୋମାନ" ଶବ୍ଦଟି ହୁଏତ ଲେଖା ଯାଇଥାନ୍ତା ।

ଯୋସେଫ ଦେଖିଥିବା ଆଉ ଏକ ସ୍ୱପ୍ନ ବିଷୟରେ ଏଠି ଉଲ୍ଲେଖ କରିବା ଅବାନ୍ତର ମନେ ହେବ ନାହିଁ କାରଣ ଏ ସ୍ୱପ୍ନ କୁ ମଧ୍ୟ ଭାବ ସହ ମାଥିଉ ଯୋଡ଼ି-ବାକୁ ଭୁଲ ନାହାନ୍ତି । ସ୍ୱପ୍ନରେ 'ପ୍ରଭୁଙ୍କର ଜଣେ ଦୂତ ଯୋସେଫଙ୍କୁ ଦର୍ଶନ ଦେଇ କୁହନ୍ତି, ଉଠ, ଶିଶୁ ଓ ତାହାଙ୍କ ମାତାଙ୍କୁ ଘେନି ମିଶରକୁ ପଳାଅ, ପୁଣି ଆମ୍ଭେ ତୁମ୍ଭକୁ ନ କହିବା ପର୍ଯ୍ୟନ୍ତ ସେଠାରେ ରୁହ, କାରଣ ଶିଶୁଙ୍କୁ ବିନାଶ କରିବା ନିମନ୍ତେ ହେରୋଦ ତାହାଙ୍କୁ ଅନ୍ୱେଷଣ କରିବାକୁ ଉଦ୍ୟତ । ଏଥିରେ ସେ ଉଠି ରାତ୍ରିରେ ଶିଶୁ ଓ ତାହାଙ୍କ ମାତାଙ୍କୁ ଘେନି ମିଶରକୁ ପଳାଇଗଲେ ଆଉ ହେରୋଦଙ୍କ ମରଣ ପର୍ଯ୍ୟନ୍ତ ସେଠାରେ ରହିଲେ, ଯେପରି ଭାବବାଦୀଙ୍କ ଦ୍ୱାରା ପ୍ରଭୁଙ୍କ ଉକ୍ତ ଏହି ବାକ୍ୟ ସଫଳ ହୁଏ :

> ମିଶରରୁ ଆମ୍ଭେ ଆପଣା ପୁତ୍ରଙ୍କୁ ଆହ୍ୱାନ କଲୁଁ । [୨ : ୧୫]

ଉକ୍ତ ଉକ୍ତି ହୋଶେୟରେ ନିମ୍ନୋକ୍ତ ପ୍ରକାରେ ବର୍ଣ୍ଣିତ ହୋଇଛି :

> ଇସ୍ରାଏଲର ବାଲ୍ୟ କାଳରେ ଆମ୍ଭେ ତାହାକୁ ସ୍ନେହ କଲୁଁ ଓ ଆମ୍ଭ ପୁତ୍ରକୁ ମିଶରରୁ ଡାକିଲୁଁ । ସେମାନେ ଯେତେ ସେମାନଙ୍କୁ ଡାକିଲେ, ତେତେ ସେମାନେ ସେମାନଙ୍କ ଠାରୁ ଦୂରକୁ ଗଲେ; ସେମାନେ ବାଲ-ଦେବଗଣ ଉଦ୍ଦେଶ୍ୟରେ ବଳିଦାନ କଲେ ଓ ଖୋଦିତ ପ୍ରତିମାଗଣ ଉଦ୍ଦେଶ୍ୟରେ ଧୂପ ଜ୍ୱଳାଇଲେ । [୧୧ : ୧-୨]

ମାଥିଉ ସ୍ୱ ଇଚ୍ଛାନୁସାରେ ବାକ୍ୟଟିକୁ ବ୍ୟବହାର କରି ପାରିବେ ନାହିଁ । ଯେହେତୁ ଏହା ଇସ୍ରାଏଲର ଶିଶୁମାନଙ୍କୁ ମିଶରରୁ ଚାଲିଆସିବା ପାଇଁ ଫାରୋଙ୍କ ସମୟରେ କୁହାଯାଇଛି, ଯେଉଁମାନେ ଖୋଦିତ ପ୍ରତିମାଗଣ ଉଦ୍ଦେଶ୍ୟରେ ବଳିଦାନ କରିଥିଲେ ଏବଂ ଖୋଦିତ ପ୍ରତିମାଗଣ ଉଦ୍ଦେଶ୍ୟରେ ଧୂପ ଜ୍ୱଳାଇଲେ । ଏହା ଯଦି ଯୀଶୁଙ୍କ ଉଦ୍ଦେଶ୍ୟରେ ଉଦ୍ଧୃତ କରାଯାଏ ତା' ହେଲେ ସେ ନିଶ୍ଚୟ ସେହି ବ୍ୟକ୍ତି ଯେ ଖୋଦିତ

ପ୍ରତିମାଗଣ ଉଦ୍ଦେଶ୍ୟରେ ବଳିଦାନ କରିଛନ୍ତି ଓ ଖୋଦିତ ପ୍ରତିମାଗଣଙ୍କ ଉଦ୍ଦେଶ୍ୟରେ ଧୂପ ଜ୍ୱଳାଇଛନ୍ତି । ଏହା ବ୍ୟତୀତ ଆମେ ଆଉ କେଉଁ ପ୍ରକାରେ ବାକ୍ୟଟିକୁ ବୁଝିବାରେ ସମର୍ଥ ହେବୁ ?

ସେହି ପ୍ରସଙ୍ଗରେ ଯିରିମିୟ ଭବିଷ୍ୟଦ୍ୱାଣୀଦ୍ୱାରା ଉକ୍ତ ବାଣୀ ଉଦ୍ଧାର କରି ମାଥିଉ ହେରୋଦଙ୍କ ଶିଶୁମାନଙ୍କ ବଧ କରିବା ପ୍ରସଙ୍ଗରେ କୁହନ୍ତି :

ରାମାରେ ସ୍ୱର ଶୁଣାଗଲା,
ରୋଦନ ଓ ଅତିଶୟ ବିଳାପ,
ରାହେଲ ଆପଣା ସନ୍ତାନମାନଙ୍କ ନିମନ୍ତେ ରୋଦନ କରୁଥିଲେ;
ଆଉ ସେମାନେ ନାହାନ୍ତି ବୋଲି ସେ ସାନ୍ତ୍ୱନାର
କଥା ମାନିବାକୁ ଇଚ୍ଛା କରୁ ନ ଥିଲେ । [୨ : ୧୮]

ଉକ୍ତ ବାକ୍ୟଟି ଯିରିମିୟରେ କିପରି ଓ କେଉଁ ଉଦ୍ଦେଶ୍ୟରେ ଲେଖାଅଛି, ତାହା ପାଠ କରାଯାଉ :

ସଦାପ୍ରଭୁ ଏହି କଥା କହନ୍ତି, ରାମାରେ ହାହାକାର ଓ ତୀବ୍ର ରୋଦନର ଶବ୍ଦ ଶୁଣାଯାଏ । ରାହେଲ ଆପଣା ସନ୍ତାନମାନଙ୍କ ନିମନ୍ତେ ରୋଦନ କରୁଅଛି; ସେ ଆପଣା ସନ୍ତାନଗଣର ବିଷୟରେ ପ୍ରବୋଧ କଥା ମାନୁ ନାହିଁ, କାରଣ ସେମାନେ ନାହାନ୍ତି । ସଦାପ୍ରଭୁ ଏହି କଥା କହନ୍ତି, ତୁମ୍ଭ କ୍ରନ୍ଦନର ଶବ୍ଦ ଓ ଚକ୍ଷୁର ଲୋତକ ନିବୃତ୍ତ କର; କାରଣ ତୁମ୍ଭ କର୍ମର ପୁରସ୍କାର ଦତ୍ତ ହେବ, ଏହା ସଦାପ୍ରଭୁ କହନ୍ତି; ଆଉ ସେମାନେ ଶତ୍ରୁର ଦେଶରୁ ଫେରି ଆସିବେ । ସଦାପ୍ରଭୁ କହନ୍ତି, ତୁମ୍ଭର ଅନ୍ତିମକାଳ ବିଷୟରେ ପ୍ରତ୍ୟାଶା ଅଛି; ଆଉ ତୁମ୍ଭର ସନ୍ତାନଗଣ ପୁନର୍ବାର ଆପଣ-ମାନଙ୍କର ସୀମାକୁ ଆସିବେ । [୩୧ : ୧୫-୧୭]

ଏଠାରେ "ସନ୍ତାନ" ଶବ୍ଦ ଦୁଇବର୍ଷ ଓ ସେଥିରୁ ନ୍ୟୁନବୟସ୍କମାନଙ୍କୁ ବୁଝାଏ ନାହିଁ । ଏ ଶବ୍ଦଟି, ଧର୍ମପୁସ୍ତକ ଅନୁସାରେ ଯିହୁଦୀ ଜାତିପାଇଁ ହିଁ ବ୍ୟବହାର ହୋଇଛି । ପୁନଶ୍ଚ କିଏ "ଶତ୍ରୁର ଦେଶରୁ ଫେରି ଆସିବେ" ଓ କିଏ ପୁନର୍ବାର ଆପଣମାନଙ୍କର ସୀମାକୁ ଆସିବେ" ମାଥିଉ ଯେଉଁରି କୁହନ୍ତି, ସେହିପରି ହେରୋଦଙ୍କଦ୍ୱାରା ବଧ ଶିଶୁମାନଙ୍କ ଉଦ୍ଦେଶ୍ୟରେ ଏହାକୁ ବୁଝାଯାଇ ପାରିବ ନାହିଁ । ଏଠାରେ ସେହି ମୃତ ଶିଶୁମାନେ ଫେରିବେ ଓ ସୀମାକୁ ଆସିବେ ଏହା ଚିନ୍ତା କରାଯାଇ ପାରିବ କି ?

ମାଥିଉ ଯୋସେଫଙ୍କ ତୃତୀୟ ସ୍ୱପ୍ନ ଦେଖିଲେ । ହେରୋଦଙ୍କ ମୃତ୍ୟୁ ଉତ୍ତାରେ, ଦେଖ, ପ୍ରଭୁଙ୍କର ଜଣେ ଦୂତ ମିଶରରେ ଯୋସେଫଙ୍କୁ ସ୍ୱପ୍ନରେ ଦର୍ଶନ ଦେଇ କହିଲେ, ଉଠ, ଶିଶୁ ଓ ତାହାର ମାତାଙ୍କୁ ଘେନି ଇସ୍ରାଏଲ ଦେଶକୁ ଗମନ କର, କାରଣ ଯେଉଁମାନେ ଶିଶୁଙ୍କ ପ୍ରାଣ ବିନାଶ କରିବା ନିମନ୍ତେ ଚେଷ୍ଟା କରୁଥିଲେ, ସେମାନଙ୍କର ମୃତ୍ୟୁ ଘଟିଅଛି । ସେଥିରେ ସେ ଉଠି ଶିଶୁ ଓ ତାହାଙ୍କ ମାତାଙ୍କୁ ଘେନି ଇସ୍ରାଏଲ ଦେଶକୁ ଆସିଲେ । ମାତ୍ର ଆର୍ଖିଲାୟ ଆପଣା ପିତା ହେରୋଦଙ୍କ ସ୍ଥାନରେ ଯିହୁଦା ପ୍ରଦେଶର ରାଜା ହୋଇଛନ୍ତି, ଏହା ଶୁଣି ସେଠାକୁ ଯିବାପାଇଁ ସେ ଭୟ କଲେ; କିନ୍ତୁ ସ୍ୱପ୍ନରେ ପ୍ରତ୍ୟାଦେଶ ପାଇ ସେ ଗାଲିଲୀ ଅଞ୍ଚଳକୁ ପଳାଇଗଲେ ଓ ନାଜରିତ ନାମକ ନଗରରେ ଯାଇ ବାସ କଲେ, ଯେପରି ଭାବବାଦୀମାନଙ୍କ ଦ୍ୱାରା ଉକ୍ତ ବାକ୍ୟ ସଫଳ ହୁଏ ଯେ :

ସେ ନାଜରିତୀୟ ବୋଲି ଖ୍ୟାତ ହେବେ । [୨ : ୨୩]

ଯୀଶୁ ଯେ ନାଜରିତୀୟ ବୋଲି ଖ୍ୟାତ ହେବେ ଏ ବାକ୍ୟଟି ମାଥିଉ କେଉଁ ଭାବବାଦୀଙ୍କ କେଉଁ ଗ୍ରନ୍ଥରୁ ଉଦ୍ଧାର କରିଛନ୍ତି ତାହା ଆମେ ଜାଣୁନା । ଏପରି କି କୌଣସି ଯାଜକ ଜାଣନ୍ତି ନାହିଁ । ଏପରି କି ବାଇବେଲ ବିଦ୍ୱାନ ଜାଣନ୍ତି ନାହିଁ । ବିସପ, ଆର୍ଚ୍ଚବିସପ, ପୋପ ମଧ୍ୟ ଜାଣନ୍ତି ନାହିଁ । ବୋଧହୁଏ ମାଥିଉ ସ୍ୱପ୍ନବିଭୋର ହୋଇ ଏ କଥାଟି ଲେଖି ଦେଇଛନ୍ତି ।

ସ୍ୱପ୍ନ ପରେ ସ୍ୱପ୍ନ ଅନେକ ସ୍ୱପ୍ନର ଐତିହାସିକ ମାଥିଉ ପ୍ରଥମ ସ୍ୱପ୍ନରେ ଜାଣିଲେ ଯେ ମରିୟମ ପବିତ୍ରଆତ୍ମାଙ୍କ କର୍ତ୍ତୃକରେ ଗର୍ଭବତୀ ହୋଇଛନ୍ତି । ଆଉ ଏକ ସ୍ୱପ୍ନରେ ଜାଣିଲେ ଯେ ଶିଶୁ ଓ ତାହାଙ୍କ ମାତାଙ୍କୁ ଘେନି ଯୋସେଫ ମିଶରକୁ ପଳାଇଯିବା ଉଚିତ । ପୁନଶ୍ଚ ଏକ ସ୍ୱପ୍ନାଦେଶ ପାଇଲେ ଯେ ଶିଶୁ ଓ ତାହାଙ୍କ ମାତାଙ୍କୁ ଘେନି ସେ ଇସ୍ରାଏଲ ଦେଶକୁ ଯିବା ଆବଶ୍ୟକ । ଏ ପ୍ରକାର ଅନେକ ସ୍ୱପ୍ନର ଇତିହାସ ନେଇ ସ୍ୱପ୍ନର ଐତିହାସିକ ମାଥିଉ ଯୀଶୁଙ୍କ ଜୀବନକୁ ପୁରାତନ ନିୟମ ସହ ସଂଯୋଗ କରନ୍ତି । ଏଠି ଆପଣଙ୍କୁ ଗୋଟିଏ ପ୍ରଶ୍ନ ପଚାରିବାକୁ ମୁଁ ଅନୁମତି ଦେବି ନାହିଁ ଯେ ମାଥିଉ କିପରି ଯୋସେଫଙ୍କ ସ୍ୱପ୍ନ କଥା ଜାଣିଲେ ? ହୁଏତ ଆପଣଙ୍କ ମନରେ ଏ ପ୍ରଶ୍ନ ଆସିପାରେ ଯେ ଯୋସେଫ ସ୍ୱପ୍ନ ଦେଖି ନ ଥିବେ, ସ୍ୱୟଂ ମାଥିଉ ହିଁ ଯୋସେଫଙ୍କ ପାଇଁ ସ୍ୱପ୍ନ ଦେଖିଥିବେ ।

ମାଥିଉ ପୁନଶ୍ଚ କହନ୍ତି, ପରେ ଯୋହନ ଧରାପଡ଼ିଲେଣି ବୋଲି ଶୁଣି ସେ ଅନ୍ତର ହୋଇ ଗାଲିଲୀକି ପ୍ରସ୍ଥାନ କଲେ; ଆଉ ସେ ନାଜରିତ ପରିତ୍ୟାଗ କରି

ଜବୁଲୂନ ଓ ନପ୍ତାଲୀ ଅଞ୍ଚଳରେ ଥିବା ସମୁଦ୍ର କୂଳସ୍ଥିତ କଫର୍ନାହୂମକୁ ଯାଇ ସେଠାରେ ବାସ କଲେ, ଯେପରି ଯିଶାୟ ଭାବବାଦୀଙ୍କ ଦ୍ୱାରା ଉକ୍ତ ବାକ୍ୟ ସଫଳ ହୁଏ :

ଜବୂଲୂନ ଦେଶ ଓ ନପ୍ତାଲୀ ଦେଶ,
ସମୁଦ୍ର ନିକଟବର୍ତ୍ତୀ ଓ ଯର୍ଦ୍ଦନର ଅପର ପାର୍ଶ୍ୱସ୍ଥ ବିଜାତିମାନଙ୍କ ଗାଲିଲୀ
ଅନ୍ଧକାରବାସୀ ଲୋକେ ମହା ଆଲୋକ ଦର୍ଶନ କଲେ,
ଆଉ ମୃତ୍ୟୁର ଅଞ୍ଚଳ ଓ ଛାୟାରେ ଅବସ୍ଥିତ ଲୋକଙ୍କ ନିମନ୍ତେ ଆଲୋକ ଉଦିତ ହେଲା । [୪ : ୧୫-୧୬]

ଯିଶାଇୟ ବାକ୍ୟଟି ଏଠି ପଢ଼ାଯାଇ ତାର ତୁଳନା ଉକ୍ତ ବାକ୍ୟ ସହ କରାଯାଉ । ଯେଉଁଥିରେ ଲେଖା ଅଛି :

ମାତ୍ର ପୂର୍ବେ (ଯେଉଁ ଦେଶ) ବେଦନା ଗ୍ରସ୍ତ ଥିଲା, ତାହା ତମିସ୍ରାବୃତ ହୋଇ ରହିବ ନାହିଁ । ପୂର୍ବକାଳରେ ସେ ସବୂଲୂନ ଦେଶ ଓ ନପ୍ତାଲି ଦେଶକୁ ତୁଚ୍ଛୀକୃତ କରିଥିଲେ, ମାତ୍ର ଶେଷକାଳରେ ସେ ତାହାକୁ ସମୁଦ୍ର ପଥର ନିକଟବର୍ତ୍ତୀ, ଯର୍ଦ୍ଦନର ସେପାରିସ୍ଥ, ଗୋଷ୍ଠୀଗଣର ଗାଲିଲ ସମ୍ମାନ୍ତ କରିବେ । ଯେଉଁ ଗୋଷ୍ଠୀ ଅନ୍ଧକାରରେ ଭ୍ରମଣ କଲେ ସେମାନେ ମହାଆଲୁଅ ଦେଖିଛନ୍ତି, ଯେଉଁମାନେ ମୃତ୍ୟୁ ଛାୟାରୂପ ଦେଶରେ ବାସକଲେ ସେମାନଙ୍କ ଉପରେ ଦୀପ୍ତି ଉଦିତ ହୋଇଅଛି । [୯ : ୧, ୨]

ମାଥିଉ ବାକ୍ୟଟିକୁ ଭୂତକାଳରେ ବ୍ୟବହାର କଲେ ଯିଶାଇୟରେ ଏହା ବର୍ତ୍ତମାନ କାଳରେ ବ୍ୟବହୃତ ହୋଇଛି । ଘଟିଯାଇଥିବା ଏକ ଘଟଣାକୁ ଭାବବାଣୀ ଭାବରେ ପ୍ରୟୋଗ କରିବା ଦ୍ୱାରା ମାଥିଉ ଯେ ଶାସ୍ତ୍ରକୁ ସଇଚ୍ଛାନୁରୂପେ ଉଦ୍ଧୃତ କରିଛନ୍ତି ଏଥିରେ ସନ୍ଦେହ ନାହିଁ । ଇତିହାସ କ'ଣ କେବେ ଭାବବାଣୀ ହୋଇପାରେ କି ?

ଯୀଶୁଙ୍କ ଭୂତ ଛଡ଼ାଇବା ପ୍ରସଙ୍ଗଟିକୁ ଉଲ୍ଲେଖ କରିବାକୁ ଯାଇ ମାଥିଉ ଉଲ୍ଲେଖ କରନ୍ତି, ସନ୍ଧ୍ୟା ହୁଅନ୍ତେ ଲୋକମାନେ ଅନେକ ଭୂତଗ୍ରସ୍ତ ଲୋକଙ୍କୁ ତାହାଙ୍କ ନିକଟକୁ ଆଣିଲେ । ସେଥିରେ ସେ କଥା ମାତ୍ରକେ ଭୂତଗୁଡ଼ାକୁ ଛଡ଼ାଇଲେ ଏବଂ ସମସ୍ତ ପୀଡ଼ିତ ଲୋକଙ୍କୁ ସୁସ୍ଥ କଲେ, ଯେପରି ଯିଶାୟ ଭାବବାଦୀଙ୍କ ଦ୍ୱାରା ଉକ୍ତ ଏହି ବାକ୍ୟ ସଫଳ ହୁଏ :

ସେ ନିଜେ ଆମ୍ଭମାନଙ୍କ ଦୁର୍ବଳତା ସବୁ ଗ୍ରହଣ କଲେ ଓ ବ୍ୟାଧି ସବୁ ବହନ କଲେ । [୮ : ୧୭]

ଯିଶାଇୟରେ କୁହାଯାଇଛି :

> ନିଶ୍ଚୟ ସେ ଆମ୍ଭମାନଙ୍କର ଯାତନା ସବୁ ଧାରଣ କରିଅଛନ୍ତି,
> ଓ ଆମ୍ଭମାନଙ୍କର ବ୍ୟଥାସବୁ ବହି ଅଛନ୍ତି । [୫୩ : ୪]

ଏହି ପ୍ରସଙ୍ଗଟିରେ ଭୂତ ଛଡ଼ାଇବା କିମ୍ବା ପୀଡ଼ିତ ଲୋକଙ୍କୁ ସୁସ୍ଥ କରିବାର ସୂଚନା ନାହିଁ । ପୁରାତନ ନିୟମରେ ଭୂତ ଛଡ଼ାଇବା ପରି ଅନ୍ଧବିଶ୍ୱାସର ଉଲ୍ଲେଖ ନାହିଁ । ଠିକ୍ ସେହିପରି ଆଜିକାଲି ମଧ୍ୟ ସେ ବିଶ୍ୱାସ କରିଥିବା ଅନ୍ଧବିଶ୍ୱାସୀ ନାହାନ୍ତି । ଏହା ଯୀଶୁଙ୍କ ସମୟରେ ବହୁଳ ଭାବରେ ପ୍ରଚଳିତ ଅନ୍ଧବିଶ୍ୱାସର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ଅଟେ । ଯିଶାଇୟ ତାଙ୍କ ୫୩ ପଦରେ ଅସୁସ୍ଥ ବ୍ୟକ୍ତିଙ୍କ ପାଇଁ ଦୁଃଖ ପ୍ରକାଶ କରିଛନ୍ତି, ବ୍ୟଥିତ ହୋଇଛନ୍ତି । ଜଣେ ବନ୍ଧୁଙ୍କ ବିୟୋଗରେ ସେ ବ୍ୟଥିତ ହୋଇଛନ୍ତି । ଯଦିଓ ବନ୍ଧୁଙ୍କ ନାମଟି ଉଲ୍ଲେଖ ସେ କରିନାହାନ୍ତି । ଏହାମଧ୍ୟ କୁହାଯାଏ ସେ ନିଜ ସମ୍ପର୍କରେ ହିଁ ଏହା କହିଛନ୍ତି । ସେହି ଅଧ୍ୟାୟରେ ଯିଶାଇୟ ଯେବେ କୁହନ୍ତି :

> ସେ ଆମ୍ଭମାନଙ୍କ ଅଧର୍ମ ନିମନ୍ତେ କ୍ଷତବିକ୍ଷତ ହେଲେ, ଓ ଆମ୍ଭମାନଙ୍କ ଅପରାଧ ନିମନ୍ତେ ଚୂର୍ଣ୍ଣ ହେଲେ, ଆମ୍ଭମାନଙ୍କର ଶାନ୍ତିଜନକ ଶାସ୍ତି ତାହାଙ୍କ ଉପରେ ବର୍ତ୍ତିଲା; ଓ ତାହାଙ୍କ ପ୍ରହାରରେ ଆମ୍ଭେମାନେ ସୁସ୍ଥ ହେଲୁଁ । ଆମ୍ଭେମାନେ ସମସ୍ତେ ମେଷଗଣ ତୁଲ୍ୟ ବିପଥଗାମି ହୋଇଅଛୁଁ; ଆମ୍ଭେମାନେ ପ୍ରତ୍ୟେକେ ଆପଣା ଆପଣା ବାଟ ଆଡ଼େ ଫେରିଅଛୁଁ : ଆଉ ସଦାପ୍ରଭୁ ଆମ୍ଭ ସମସ୍ତଙ୍କର ଅପରାଧ ତାହାଙ୍କ ଉପରେ ବର୍ତ୍ତାଇଅଛନ୍ତି । ସେ ଉପଦ୍ରବ ପ୍ରାପ୍ତ ହେଲେ, ତଥାପି ସେ ଆପଣାକୁ ନମ୍ର କରି ଆପଣା ମୁଖ ଫିଟାଇଲେ ନାହିଁ, ବଧସ୍ଥାନକୁ କଢ଼ାଯିବା ମେଷଶାବକ ତୁଲ୍ୟ, ଲୋମ-ଛେଦକମାନଙ୍କ ସମ୍ମୁଖରେ ନୀରବ ମେଷୀ ତୁଲ୍ୟ ହୋଇ ସେ ଆପଣା ମୁଖ ଫିଟାଇଲେ ନାହିଁ । ...ଆମ୍ଭ ଲୋକମାନଙ୍କର ଅପରାଧ ନିମନ୍ତେ ସେ ପ୍ରହାରିତ ହେଲେ । ...ସେ ଅନେକଙ୍କର ପାପଭାର ବହିଲେ, ଓ ଅଧାର୍ମିକ-ମାନଙ୍କ ନିମନ୍ତେ ପ୍ରାର୍ଥନା କଲେ । [୫-୮, ୧୨]

ଉକ୍ତ ପଦମାନ ପାଠକଲେ ମନେହେବ ସତେ ଯେପରି ଯିଶାଇୟ ଯୀଶୁଙ୍କୁ ଲକ୍ଷ୍ୟକରି ହିଁ ଏକଥାମାନ କହିଛନ୍ତି । ଯିଏ ଆମପାଇଁ ଯାତନା ଭୋଗ କରିଛନ୍ତି; କ୍ରୁଶବିଦ୍ଧ ହୋଇଛନ୍ତି ଏହା ସତ୍ତ୍ୱେ ପ୍ରାର୍ଥନା କରିଛନ୍ତି ସେ ଆଉ କିଏ ହୋଇପାରନ୍ତି ? ମାଥିଉ ଯିଶାଇଙ୍କ ଏହି ଉକ୍ତି ମଧ୍ୟ ଏହି ଭ୍ରମ ସୃଷ୍ଟି କରେ ଏଣୁ ସେ ତାଙ୍କୁ ଉଦ୍ଧୃତ କରି ଯୀଶୁଙ୍କୁ ମସୀହ ଭାବରେ ପ୍ରମାଣ କରି ଚାଲିଛନ୍ତି । ମାତ୍ର ଯୀଶୁ ହିଁ କଣ କେବଳ ମାତ୍ର ଜଣେ ଯେ ଆମପାଇଁ ଯାତନା ଭୋଗ କରିଛନ୍ତି ?

ପୁରାତନ ନିୟମରେ ଅନ୍ୟପାଇଁ ନିର୍ଯ୍ୟାତିତ ହୋଇଥିବା ଘଟଣାର ଅଭାବ ନାହିଁ, ପୂର୍ବାପର ସମ୍ପର୍କ ରକ୍ଷାକରି ଯଦି କୁହାଯାଏ ତ'ହେଲେ ହୁଏତ ଯିଶାଇୟ ଯୀଶୁଙ୍କ ଉପରେ ନୁହେଁ ଯିରମିୟଙ୍କ ଉଦ୍ଦେଶ୍ୟରେ ହିଁ ସେସବୁ ଲେଖିଥିଲେ । ଯିରମିୟ ନିଜେ ନିଜର ପ୍ରମାଣ । ଦେଖନ୍ତୁ :

ମାତ୍ର ମୁଁ ହତ୍ୟା ନିମନ୍ତେ ନିଆଯାଉଥିବା ଶାନ୍ତ ମେଷଶାବକ ପରି ଥିଲି, ପୁଣି, ଆମ୍ଭେମାନେ ଫଳଯୁକ୍ତ ବୃକ୍ଷ ନଷ୍ଟ କରୁଁ, ଓ ତାହାର ନାମ ନିମନ୍ତେ ଆଉ ସ୍ମରଣ ନ ଥାଏ, ଏଥିପାଇଁ ଜୀବିତ ଲୋକମାନଙ୍କ ଦେଶରୁ ତାହାକୁ କାଟି ପକାଉ, ଏହି କଥା କହି ସେମାନେ ଯେ ମୋ ବିରୁଦ୍ଧରେ କୁମନ୍ତ୍ରଣା କରିଥିଲେ, ଏହା ମୁଁ ଜାଣି ନ ଥିଲି । [୧୧ : ୧୯]

ମାଥିଉ କିପରି ପୂର୍ବାପର ସମ୍ପର୍କ ନ ବିଚାର କରି ଯିଶାଇୟ ଭବିଷ୍ୟଦ୍‌ବାଦୀଙ୍କୁ ଉଦ୍ଧାର କରନ୍ତି ତାର ଆଉ ଏକ ଉଦାହରଣ ଏଠି ଦିଅନ୍ତୁ । ଫାରୂଶୀମାନେ ବାହାରିଯାଇ ତାହାଙ୍କୁ ବିନାଶ କରିବା ନିମନ୍ତେ ଯୀଶୁ ବିରୁଦ୍ଧରେ ମନ୍ତ୍ରଣା ଦେଲେ । ଯୀଶୁ ତାହା ଜାଣି ସେଠାରୁ ଅନ୍ତର ହୋଇ ବାହାରି ଗଲେ, ପୁଣି ଅନେକେ ତାହାଙ୍କ ପଛେ ପଛେ ଗଲେ, ଆଉ ସେ ସମସ୍ତଙ୍କୁ ସୁସ୍ଥ କଲେ ଏବଂ ତାହାଙ୍କୁ ପ୍ରକାଶ ନ କରିବା ପାଇଁ ସେ ସେମାନଙ୍କୁ ଦୃଢ଼ ରୂପେ ଆଜ୍ଞା ଦେଲେ, ଯେପରି ଯିଶାଇୟ ଭବିଷ୍ୟଦ୍‌ବାଦୀଙ୍କ ଦ୍ୱାରା ଉକ୍ତ ଏହି ବାକ୍ୟ ସଫଳ ହୁଏ :

ଦେଖ, ଆମ୍ଭର ଦାସ, ଯାହାଙ୍କୁ ଆମ୍ଭେ ମନୋନୀତ କରିଅଛୁ;
ଆମ୍ଭର ପ୍ରିୟପାତ୍ର, ଯାହାଙ୍କଠାରେ ଆମ୍ଭ ଆତ୍ମାର ପରମ ସନ୍ତୋଷ;
ଆମ୍ଭେ ତାହାଙ୍କ ଉପରେ ଆପଣା ଆତ୍ମା ଅଧିଷ୍ଠାନ କରାଇବା,
ଆଉ ସେ ବିଜାତିମାନଙ୍କ ନିକଟରେ ନ୍ୟାୟ ବିଚାର ପ୍ରଚାର କରିବେ ।

ସେ ବିବାଦ କରିବେ ନାହିଁ, କିମ୍ବା ଉଚ୍ଚସ୍ୱର କରିବେ ନାହିଁ, କିମ୍ବା ଦାଣ୍ଡରେ କେହି ତାହାଙ୍କ ସ୍ୱର ଶୁଣିବ ନାହିଁ ।

ନ୍ୟାୟକୁ ଜୟଯୁକ୍ତ ନ କରିବା ପର୍ଯ୍ୟନ୍ତ ସେ ଛେଚା ନଳ ଭାଙ୍ଗିବେ ନାହିଁ ।
ପୁଣି ସଧୂମ ସଳିତା ଲିଭାଇବେ ନାହିଁ ।
ଆଉ ତାହାଙ୍କ ନାମରେ ବିଜାତିମାନେ ଭରସା ରଖିବେ ।
[୧୨ : ୧୮-୨୧]

ଯିଶାଇୟ କେବେ ମଧ୍ୟ ଏହା ଯୀଶୁଙ୍କ ସମ୍ପର୍କରେ କହି ନାହାନ୍ତି । ଯିଶାଇୟ କୋରସ ରାଜାଙ୍କ ସମୟରେ ବାସ କରୁଥିଲେ ଓ ଏହା ତାଙ୍କ ସମ୍ପର୍କରେ ହିଁ କହିଥିଲେ । ଯିଶାଇୟ ସ୍ପଷ୍ଟ ଭାଷାରେ କହନ୍ତି :

ଆମ୍ଭେ କୋରସ ବିଷୟରେ ବୋଲୁଁ, ସେ ଆମ୍ଭ ଦଳର ପାଳକ ଓ ଆମ୍ଭର ଇଷ୍ଟ ସାଧନ କରିବ : ସେ ଯିରୂଶାଲମ ବିଷୟରେ କହିବ, ତାହା ପୁନର୍ନିର୍ମିତ ହେବ ଓ ମନ୍ଦିରକୁ ବୋଲିବ, ତୁମ୍ଭର ଭିତ୍ତିମୂଳ ସ୍ଥାପିତ ହେବ । [୪୪ : ୨୮]

ଯିଶାଇୟ ଏତେ ସ୍ପଷ୍ଟ ଶବ୍ଦରେ ଏହା କହିବା ସତ୍ତ୍ୱେ ମାଁଥିଉ ଆଦି ଓ ଯୋହନ ଏହାକୁ ଯୀଶୁଙ୍କ ଅର୍ଥରେ କାହିଁକି ବ୍ୟବହାର କରିବାକୁ ପସନ୍ଦ କଲେ ନାହିଁ ତାହା ଜଣାପଡ଼େ ନାହିଁ ।

ସେହିପରି ଆଉ ଏକ ପ୍ରସଙ୍ଗ ନିଅନ୍ତୁ । ଯେତେବେଳେ ସେମାନେ ଯିରୂଶାଲମର ନିକଟବର୍ତ୍ତୀ ହୋଇ ବେଥଫାଗୀ ଓ ଜୀତ ପର୍ବତ ନିକଟରେ ଉପସ୍ଥିତ ହେଲେ, ସେତେବେଳେ ଯୀଶୁ ଦୁଇ ଶିଷ୍ୟଙ୍କୁ ଏହି କଥା କହି ପଠାଇଲେ । ତୁମ୍ଭମାନଙ୍କ ସମ୍ମୁଖସ୍ଥ ସେହି ଗ୍ରାମକୁ ଯାଅ, ଆଉ ଯିବା ମାତ୍ର ବନ୍ଧା ହୋଇଥିବା ଗୋଟିଏ ଗର୍ଦ୍ଦଭୀ ଓ ତାହା ସହିତ ଗୋଟିଏ ଶାବକକୁ ଦେଖିବ, ସେମାନଙ୍କୁ ଫିଟାଇ ମୋ ନିକଟକୁ ଘେନି ଆସ । ଆଉ ଯେବେ କେହି ତୁମ୍ଭମାନଙ୍କୁ କିଛି କହେ, ତେବେ କହିବ, ଏମାନଙ୍କଠାରେ ପ୍ରଭୁଙ୍କର ପ୍ରୟୋଜନ ଅଛି । ସେହିକ୍ଷଣି ସେ ସେମାନଙ୍କୁ ପଠାଇଦେବ । ଭବିଷ୍ୟଦ୍‌ବାଦୀଙ୍କ ଦ୍ୱାରା ଉକ୍ତ ଏହି ବାକ୍ୟ ଯେପରି ସଫଳ ହୁଏ, ସେଥିନିମନ୍ତେ ଏହା ଘଟିଲା :

ସିୟୋନର କନ୍ୟାକୁ କୁହ,
ଦେଖ, ତୋର ରାଜା ତୋ ନିକଟକୁ ଆସୁଅଛନ୍ତି;
ସେ ନମ୍ର ଓ ଗର୍ଦ୍ଦଭାରୋହୀ,
ଶାବକ, ଗର୍ଦ୍ଦଭଶାବକାରୋହୀ । [ ମାଥିଉ ୨୧ : ୫ ]

ଉକ୍ତ ବାକ୍ୟଟି ଯିଶଇୟ ଭବିଷ୍ୟଦ୍‌ବକ୍ତାଙ୍କ ପୁସ୍ତକ (୯ : ୯)ରୁ ନିଆ ଯାଇଛି । ଯିରୂଶାଲମକୁ ଫେରିଯିବାର ଯେଉଁ ଆନନ୍ଦ ତାହା ଯିଶଇୟ ଏ ପ୍ରକାର ବର୍ଣ୍ଣନା କରିଛନ୍ତି । ତାଙ୍କ ଭାଷାରେ :

ଏଥିପାଇଁ ସଦାପ୍ରଭୁ ଏହି କଥା କହନ୍ତି; ଆମ୍ଭେ ଦୟା ସହିତ ଯିରୂଶାଲମ ପ୍ରତି ଫେରିଲୁ; ତହିଁ ମଧ୍ୟରେ ଆମ୍ଭ ଗୃହ ନିର୍ମିତ ହେବ ଓ ଯିରୂଶାଲମରେ ସୂତ୍ରପାତ ହେବ । ଏହା ସୈନ୍ୟାଧିପତି ସଦାପ୍ରଭୁ କହନ୍ତି । (୧ : ୧୬)

ଏହା ଏଠି ଭୁଲିଯିବା ଅନୁଚିତ ଯେ ସେ କାଳରେ ଲୋକେ ଗଧ ଉପରେ ଯିବାଆସିବା କରୁଥିଲେ । ଯୀଶୁଙ୍କ ଗର୍ଦ୍ଦଭାରୋହୀ ହେବାରେ କିଛି ଆଶ୍ଚର୍ଯ୍ୟ ହେବାର ନାହିଁ । ବିଚାରକର୍ତ୍ତାରେ ମଧ୍ୟ ଉଲ୍ଲେଖ ଅଛି, ପୁଣି ତାହାଙ୍କର ତିରିଶ ପୁତ୍ର ଥିଲେ, ସେମାନେ ତିରିଶ ଗର୍ଦ୍ଦଭରେ ଚଢ଼ିଲେ । (୧୦ : ୪)

ମାଥିଉଙ୍କ ଭାବବାଦୀଗଣଙ୍କ ଉକ୍ତ ଅଂଶ ଯେ କିପରି ପୂର୍ବାପର ସମ୍ପର୍କ ସହ ସମ୍ପର୍କ ରଖେ ନାହିଁ ତା'ର ଆଉ ଏକ ଉଦାହରଣ ନିଅନ୍ତୁ । ଯେତେବେଳେ ଯୀଶୁଙ୍କୁ ଶତ୍ରୁ ହସ୍ତରେ ସମର୍ପଣକାରୀ ଯିହୂଦା, ସେ ପ୍ରାଣଦଣ୍ଡାଜ୍ଞା ପାଇଅଛନ୍ତି, ଏହା ଦେଖି ଅନୁତାପ କରି ପ୍ରଧାନ ଯାଜକ ଓ ପ୍ରାଚୀନବର୍ଗଙ୍କ ନିକଟକୁ ସେହି ତିରିଶଗୋଟି ରୌପ୍ୟମୁଦ୍ରା ଫେରାଇ ଆଣି କହିଲା, ମୁଁ ନିର୍ଦ୍ଦୋଷ ରକ୍ତ ସମର୍ପଣ କରି ପାପ କରିଅଛି । କିନ୍ତୁ ସେମାନେ କହିଲେ, ସେଥିରେ ଆମ୍ଭମାନଙ୍କର କଅଣ ଅଛି ? ତୁ ତାହା ବୁଝ୍ । ତହିଁରେ ସେ ରୌପ୍ୟମୁଦ୍ରାଗୁଡ଼ାକ ମନ୍ଦିର ଭିତରକୁ ଫୋପାଡ଼ି ଦେଇ ଚାଲିଗଲା, ପୁଣି ଯାଇ ଆପଣାକୁ ଫାଶୀଦେଲା । କିନ୍ତୁ ପ୍ରଧାନ ଯାଜକମାନେ ସେହି ରୌପ୍ୟ ମୁଦ୍ରାଗୁଡ଼ାକ ଘେନି କହିଲେ, ଏହା ଭଣ୍ଡାରରେ ରଖିବା ବିଧିସଙ୍ଗତ ନୁହେଁ, କାରଣ ଏ ତ ରକ୍ତର ମୂଲ୍ୟ । ପୁଣି ସେମାନେ ମନ୍ତ୍ରଣା କରି ବିଦେଶୀମାନଙ୍କର ସମାଧି ନିମନ୍ତେ ସେହି ମୁଦ୍ରାରେ କୁମ୍ଭକାରର କ୍ଷେତ୍ର କିଣିଲେ । ଏଣୁ ଆଜି ପର୍ଯ୍ୟନ୍ତ ସେହି କ୍ଷେତ୍ରକୁ ରକ୍ତକ୍ଷେତ୍ର ବୋଲି କହନ୍ତି । ଏଥିରେ ଯିରମିୟ ଭାବବାଦୀଙ୍କଦ୍ୱାରା ଉକ୍ତ ଏହି ବାକ୍ୟ ସଫଳ ହେଲା :

ଇସ୍ରାଏଲ ସନ୍ତାନମାନେ ଯାହାଙ୍କ ମୂଲ୍ୟ ନିରୂପଣ କରିଥିଲେ, ତାହାଙ୍କ ମୂଲ୍ୟ ସ୍ୱରୂପ ସେହି ତିରିଶଗୋଟି ରୌପ୍ୟମୁଦ୍ରା ସେମାନେ ଘେନି ମୋ ପ୍ରତି ପ୍ରଭୁଙ୍କ ଆଦେଶ ଅନୁସାରେ କୁମ୍ଭକାରର କ୍ଷେତ୍ର ନିମନ୍ତେ ଦେଲେ । [୨୭ : ୯-୧୦]

ଯିରମିୟରେ ଏ ରୂପେ ବିଷୟଟିର ଉପସ୍ଥାପନା କରାଯାଇଛି :

ଅନନ୍ତର ଯିରମିୟ କହିଲେ, ସଦାପ୍ରଭୁଙ୍କର ଏହି ବାକ୍ୟ ମୋ ନିକଟରେ ଉପସ୍ଥିତ ହେଲା, ଯଥା; ଦେଖ, ତୁମ୍ଭ ପିତୃବ୍ୟ ଶଲ୍ଲୁମର ପୁତ୍ର ହନମେଲ ତୁମ୍ଭ ନିକଟକୁ ଆସି ଏହି କଥା କହିବ, ଅନାଥୋତରେ ମୋର ଯେଉଁ କ୍ଷେତ୍ର ଅଛି, ତାହା ତୁମ୍ଭେ ଆପଣାପାଇଁ କ୍ରୟ କର; କାରଣ କ୍ରୟଦ୍ୱାରା ମୁକ୍ତ କରିବାର ଅଧିକାର ତୁମ୍ଭର ଅଛି । ତହିଁରେ ସଦାପ୍ରଭୁଙ୍କ ବାକ୍ୟ ଅନୁସାରେ ମୋ ପିତୃବ୍ୟର ପୁତ୍ର ହନମେଲ ପ୍ରହରୀପ୍ରାଙ୍ଗଣରେ ମୋ ନିକଟକୁ ଆସି କହିଲା, ବିନୟ କରୁଅଛି, ବିନ୍ୟାମୀନ ପ୍ରଦେଶସ୍ଥ ଅନାଥୋତରେ ମୋହର ଯେଉଁ କ୍ଷେତ୍ର ଅଛି, ତାହା ତୁମ୍ଭେ କ୍ରୟ କର : କାରଣ ତହିଁର ଉତ୍ତରାଧିକାରୀ ହେବାର ଓ ତାହା ମୁକ୍ତ କରିବାର ଅଧିକାର ତୁମ୍ଭର ଅଛି; ତୁମ୍ଭେ ଆପଣା ପାଇଁ ତାହା କ୍ରୟ କର । ତେବେ ଏହା ସଦାପ୍ରଭୁଙ୍କର ବାକ୍ୟ ବୋଲି ମୁଁ ବୁଝିଲି । ପୁଣି ମୋ ପିତୃବ୍ୟର

ପୁଅ ହନମେଲଠାରୁ ଅନାଥୋତସ୍ଥିତ ସେହି କ୍ଷେତ୍ର କ୍ରୟ କରି ତହିଁର ମୂଲ୍ୟ ସତର ଶେକଲ ରୂପା ତୌଲି ତାହାକୁ ଦେଲି । ଆଉ ମୁଁ କ୍ରୟପତ୍ରରେ ସ୍ୱାକ୍ଷର କରି ମୁଦ୍ରାଙ୍କ କଲି ଓ ସାକ୍ଷୀ ରଖି ନିକ୍ତିରେ ରୂପା ତୌଲି ତାହାକୁ ଦେଲି । ତହୁଁ ମୁଁ କ୍ରୟପତ୍ରର ଦୁଇ କିତା ଅର୍ଥାତ୍ ବ୍ୟବସ୍ଥା ଓ ଧାରାନୁସାରେ ମୁଦ୍ରାଙ୍କିତ ଏକ କିତା ଓ ଖୋଲା ଏକକିତା ନେଲି; ପୁଣି ମୋ ପିତୃବ୍ୟର ପୁଅ ହନମେଲର ସାକ୍ଷାତରେ ଓ କ୍ରୟପତ୍ରରେ ସ୍ୱାକ୍ଷରକାରୀ ସାକ୍ଷୀମାନଙ୍କ ସାକ୍ଷାତରେ ଓ ପ୍ରହରି-ପ୍ରାଙ୍ଗଣରେ ଉପବିଷ୍ଟ ସମସ୍ତ ଯିହୁଦୀମାନଙ୍କ ସାକ୍ଷାତରେ ମୁଁ ସେହି କ୍ରୟପତ୍ର ମହସେୟର ପୌତ୍ର ନେରୀୟର ପୁତ୍ର ବାରୂକର ହସ୍ତରେ ସମର୍ପଣ କଲି । ଆଉ ସେମାନଙ୍କ ସାକ୍ଷାତରେ ମୁଁ ବାରୂକକୁ ଏହି ଆଜ୍ଞା ଦେଲି, ସୈନ୍ୟାଧିପତି ସଦାପ୍ରଭୁ ଇସ୍ରାଏଲର ପରମେଶ୍ୱର ଏହି କଥା କହନ୍ତି, ତୁମ୍ଭେ ଏହି ମୁଦ୍ରାଙ୍କିତ ଓ ଖୋଲା ଦୁଇଖଣ୍ଡ କ୍ରୟପତ୍ର ନେଇ ତାହା ଯେମନ୍ତ ଅନେକ ଦିନ ରହିବ ଏଥିପାଇଁ ଏକ ମୃତ୍ତିକାପାତ୍ରରେ ରଖ । କାରଣ ସୈନ୍ୟାଧିପତି ସଦାପ୍ରଭୁ ଇସ୍ରାଏଲର ପରମେଶ୍ୱର ଏହି କଥା କହନ୍ତି, ଏହି ଦେଶରେ ଆଉ ଗୃହ ଓ କ୍ଷେତ୍ର ଓ ଦ୍ରାକ୍ଷାକ୍ଷେତ୍ର କ୍ରୟ କରାଯିବ । [୩୨ : ୯-୧୫]

ଯିରିମିୟ ଉଲ୍ଲେଖ କରିଥିବା ପ୍ରସଙ୍ଗ ଯେ ମାଥିଉଙ୍କ ପ୍ରସଙ୍ଗଠାରୁ ସମ୍ପୂର୍ଣ୍ଣ ଭିନ୍ନ ତାହା ଉକ୍ତ ଉଦ୍ଧୃତାଂଶରୁ ବେଶ ଜଣାପଡ଼େ । ତେବେ ମାଥିଉ ଯିରିମିୟଙ୍କ ଉଲ୍ଲେଖ ନକରି ଯିଖରିୟଙ୍କ ଉଲ୍ଲେଖ କରିଥିଲେ କିଛିଟା ସାମଞ୍ଜସ୍ୟ ଘଟଣା ପ୍ରବାହରେ ଆସିଥାନ୍ତା । ଯିଖରିୟ ଲେଖନ୍ତି, ମୁଁ ସେହି ବଧର ଅଧୀନ ପଲକୁ, ପ୍ରକୃତରେ ପଲର ଦୁଃଖିମାନଙ୍କୁ ଚରାଇଲି । ପୁଣି ମୁଁ ଦୁଇଗୋଟି ଯଷ୍ଟି ନେଲି; ଗୋଟିକର ନାମ ଶୋଭା ଓ ଅନ୍ୟଟିର ନାମ ବନ୍ଧନୀ ଦେଲି; ଆଉ ମୁଁ ପଲ ଚରାଇଲି; ଆଉ ମୁଁ ଏକ ମାସ ମଧ୍ୟରେ ତିନିଜଣ ପାଳକଙ୍କୁ ଉଚ୍ଛିନ୍ନ କଲି; କାରଣ ସେମାନଙ୍କ ବିଷୟରେ ମୋର ପ୍ରାଣ କ୍ଳାନ୍ତ ହୋଇଥିଲା ଓ ମଧ୍ୟ ସେମାନଙ୍କ ପ୍ରାଣ ମତେ ଘୃଣା କଲା । ସେତେବେଳେ ମୁଁ କହିଲି, ମୁଁ ତୁମ୍ଭମାନଙ୍କୁ ଚରାଇବି ନାହିଁ; ଯେ ମରିବ ସେ ମରୁ ଓ ଯାହାର ଉଚ୍ଛିନ୍ନ ହେବାର ଅଛି, ସେ ଉଚ୍ଛିନ୍ନ ହେଉ ଓ ଯେଉଁମାନେ ଅବଶିଷ୍ଟ ରହନ୍ତି ସେମାନଙ୍କର ଏକ ଜଣ ଅନ୍ୟର ମାଂସ ଖାଉ । ପୁଣି ମୁଁ ଆପଣା ଶୋଭା ନାମକ ଯଷ୍ଟି ନେଲି ଓ ସବୁ ଗୋଷ୍ଠୀ ସଙ୍ଗରେ ମୁଁ ଯେଉଁ ନିୟମ କରିଥିଲି, ତାହା ଭାଙ୍ଗିବା ନିମନ୍ତେ ସେହି ଯଷ୍ଟିକି ଖଣ୍ଡ ଖଣ୍ଡ କରି କାଟିଲି । ଆଉ ତାହା ସେହିଦିନ ଭଗ୍ନ ହେଲା : ତହିଁରେ ପଲ ମଧ୍ୟରୁ ଯେଉଁ ଦୁଃଖିମାନେ ମୋ କଥାରେ ମନୋଯୋଗ କଲେ ସେମାନେ ତାହା ଯେ ସଦାପ୍ରଭୁଙ୍କର ବାକ୍ୟ ଏହା ଜାଣିଲେ ।

ପୁଣି ମୁଁ ସେମାନଙ୍କୁ କହିଲି, ଯେବେ ତୁମ୍ଭେମାନେ ଭଲ ବୋଧକର, ତେବେ ମୋର ବେତନ ମୋତେ ଦିଅ ନୋହିଲେ କ୍ଷାନ୍ତ ହୁଅ ।

> ତହିଁରେ ସେମାନେ ମୋର ବେତନ ନିମନ୍ତେ ତିରିଶ ରୌପ୍ୟ ମୁଦ୍ରା ତୌଲି କରି ଦେଲେ । ଆଉ ସଦାପ୍ରଭୁ ମୋତେ କହିଲେ, ଏହା କୁମ୍ଭକାର ନିକଟରେ ପକାଇ ଦିଅ, ଏହି ବିଲକ୍ଷଣ ମୂଲ୍ୟରେ ସେମାନେ ଆମ୍ଭର ମୂଲ୍ୟ ନିର୍ଦ୍ଧିଷ୍ଟ କରିଅଛନ୍ତି । ତହିଁରେ ମୁଁ ସେହି ତିରିଶ ରୌପ୍ୟ ମୁଦ୍ରା ନେଇ ସଦାପ୍ରଭୁଙ୍କ ଗୃହରେ କୁମ୍ଭକାର ନିକଟରେ ପକାଇ ଦେଲି । ଏ ଉତ୍ତାରେ ମୁଁ ବନ୍ଧନୀ ନାମକ ମୋହର ଅନ୍ୟ ଯଷ୍ଟି ନେଇ ଯିହୁଦାର ଓ ଇସ୍ରାଏଲର ମଧ୍ୟରେ ଭ୍ରାତୃଭାବ ଭଗ୍ନ କରିବା ନିମନ୍ତେ ତାହା ଖଣ୍ଡ ଖଣ୍ଡ କରି କାଟିଲି ।
>
> [ ୧୧ : ୭-୧୪ ]

ଉକ୍ତ କଥନ ଅନୁସାରେ ପ୍ରଭୁଙ୍କ ଦ୍ୱାରା ନିର୍ଦ୍ଧିତ ତିରିଶ ରୌପ୍ୟ ମୁଦ୍ରା ମାଥିଉଙ୍କ ବର୍ଣ୍ଣିତ ତିରିଶ ରୌପ୍ୟମୁଦ୍ରା (ଯାହା କି ରକ୍ତର ମୂଲ୍ୟ ଭାବରେ ଉଲ୍ଲେଖ କରାଯାଇଛି) ଗୋଟିଏ ପ୍ରକାରର କଥା ନୁହେଁ । ତିରିଶ ସଂଖ୍ୟା ଦେଖି ମାଥିଉ ଯିଶାଇୟଙ୍କ ପ୍ରସଙ୍ଗଟିକୁ ଭାବବାଣୀ ଭାବରେ ବ୍ୟବହାର କରି ପୁଣିଥରେ ଆମକୁ ଦ୍ୱନ୍ଦରେ ପକାଇ ଦିଅନ୍ତି । ମାଥିଉଙ୍କ ଉଲ୍ଲେଖିତ ଅନେକ ଭାବବାଣୀ ମୁଁ ଆଗ-ଧାରରେ ଛାଡିଦେଇଛି । କାରଣ "ଅବଶ୍ୟ ଘଟିବ ବୋଲି ଧର୍ମଶାସ୍ତ୍ରରେ ଅଛି ।" (୨୬ : ୫୪), "ଯେପରି ଭାବବାଦୀମାନଙ୍କ ଧର୍ମଶାସ୍ତ୍ର ସଫଳ ହୁଏ, ଏଥିନିମନ୍ତେ ଏ ସମସ୍ତ ଘଟିଅଛି" (୫୬) ଇତ୍ୟାଦି ବାକ୍ୟ ବିନା ପ୍ରମାଣଦେଇ ସେ ବ୍ୟବହାର କରିବାରେ ସିଦ୍ଧହସ୍ତ ଥିଲେ । ତେବେ ମାଥିଉ ତ ଜଣେ ବିଦ୍ୱାନ ନଥିଲେ । ଜଣେ କର ଆଦାୟକାରୀ (୯:୯) ଭାବରେ ଯେତିକ ସେ ଶିଖିପାରିଛନ୍ତି ତାହା ହିଁ ଲେଖିଛନ୍ତି ଏ ଦୃଷ୍ଟିରୁ ତାଙ୍କ ପୁସ୍ତକର ବିଚାର ହେବା ଉଚିତଥିଲା ।

ଏଥର ଆସନ୍ତୁ ମାର୍କ ସୁସମାଚାର ପାଠ କରିବା । ସୁସମାଚାର ଆରମ୍ଭରେ ହିଁ ଯିଶାଇୟ ଭାବବାଦୀଙ୍କ ଶାସ୍ତ୍ର ଉଲ୍ଲେଖ କରି ସେ କୁହନ୍ତି :

> ୨—ଦେଖ, ଆମ୍ଭେ ଆପଣା ଦୂତକୁ ତୁମ୍ଭ ଆଗରେ ପ୍ରେରଣ କରୁଅଛୁଁ ।
> ସେ ତୁମ୍ଭର ପଥ ପ୍ରସ୍ତୁତ କରିବ,
> ୩—ପ୍ରାନ୍ତରରେ ଉଚ୍ଚ ଶବ୍ଦ କରୁଥିବା ଜଣକର ସ୍ୱର,
> ପ୍ରଭୁଙ୍କ ପଥ ପ୍ରସ୍ତୁତ କର,
> ତାହାଙ୍କ ରାଜଦଣ୍ଡ ସଳଖ କର ।

ମାର୍କ ଦ୍ୱିତୀୟ ବାକ୍ୟଟି ନେଇଛନ୍ତି ମଲାଖିରୁ । ସେଥିରେ ଲେଖାଅଛି :

> ଦେଖ, ଆମ୍ଭେ ଆପଣା ଦୂତଙ୍କୁ ପ୍ରେରଣ କରୁଅଛୁଁ ଓ ସେ ଆମ୍ଭ ଆଗରେ ପଥ ପ୍ରସ୍ତୁତ କରିବ । (୩ : ୧)

> ମାର୍କ ଦ୍ବିତୀୟ ବାକ୍ୟଟି ଆଣିଛନ୍ତି ଯିଶାଇୟଙ୍କରୁ । ସେଥିରେ ଲେଖାଅଛି :
> ଏକ ଜଣର ରବ ପ୍ରଚାର କରଇ, ତୁମ୍ଭେମାନେ ପ୍ରାନ୍ତରରେ ସଦାପ୍ରଭୁଙ୍କ ପଥ ପ୍ରସ୍ତୁତ କର, ମରୁଭୂମି ମଧ୍ୟରେ ଆମ୍ଭମାନଙ୍କ ପରମେଶ୍ବରଙ୍କ ନିମନ୍ତେ ରାଜପଥ ସଳଖ କର । (୪୦ : ୩)

ଚର୍ଚ୍ଚ ପକ୍ଷରୁ ଆମକୁ ବୁଝାଇ ଦିଆଯାଉଛି ଯେ ମାର୍କ ଭାବବାଣୀଟି ଉଲ୍ଲେଖ କରିଛନ୍ତି ବାପ୍ତିଜକ ଯୋହନଙ୍କ ଉଦ୍ଦେଶ୍ୟରେ । ପ୍ରଭୁ ଯୀଶୁ ଆସିବେ ଏଣୁ ଯୋହନ ତାଙ୍କ ପାଇଁ ପଥ ପ୍ରସ୍ତୁତ କରିବେ । ଏ କଥା ମାର୍କ ଯଦି ନିଜ ଭାଷାରେ ବ୍ୟକ୍ତ କରିଥାନ୍ତେ କଥାଟି ଆହୁରି ସୁନ୍ଦର ହୋଇଥାନ୍ତା । ମାତ୍ର ମାର୍କ ମଲାଖି ଓ ଯିଶାଇୟଙ୍କ ଭାଷାରେ ବ୍ୟକ୍ତ କରିଥିବାରୁ ଆମେ ମଲାଖି ଓ ଯିଶାଇୟ କେଉଁ ଉଦ୍ଦେଶ୍ୟରେ ବାକ୍ୟଟି ବ୍ୟବହାର କରିଛନ୍ତି ତାହା ଅନୁସନ୍ଧାନ କରିବାକୁ ବାଧ୍ୟ ହେଲୁଁ । ମଲାଖି ଲେଖିଲେ, ଦେଖ, ଆମ୍ଭେ ଆପଣା ଦୂତଙ୍କୁ ପ୍ରେରଣ କରୁଅଛୁଁ । କେଉଁ ଦୂତଙ୍କୁ ? ବାପ୍ତିଜକ ଯୋହନଙ୍କୁ ନା ଏଲୀୟ ଭବିଷ୍ୟଦ୍‌ବକ୍ତାଙ୍କୁ ? ଯୋହନଙ୍କ ପାଇଁ ମାର୍କ ଏ ବାକ୍ୟଟି କେବେ ମଧ୍ୟ ବ୍ୟବହାର କରିପାରିବେ ନାହିଁ । ଯେହେତୁ ମଲାଖିରେ କୁହାଯାଇଛି :

> କାରଣ ଦେଖ, ସେ ଦିନ ଆସୁଅଛି, ତାହା ତୁନ୍ଦୁର ପରି ଜଳୁଅଛି; ପୁଣି ଅହଂକାରୀ ଓ ଦୁଷ୍କାରୀ ସମସ୍ତେ ନଡ଼ାପରି ହେବେ; ଆଉ ସେମାନଙ୍କର ମୂଳ କି ଡାଳ କେଉଁମନ୍ତ ଅବଶିଷ୍ଟ ନ ରହିବ, ଏଥିପାଇଁ ସେଉଁଦିନ ଆସୁଅଛି, ତାହା ସେମାନଙ୍କୁ ଦଗ୍ଧ କରିବ, ଏହା ସୈନ୍ୟାଧିପତି ସଦାପ୍ରଭୁ କହନ୍ତି ।

> ଦେଖ, ସଦାପ୍ରଭୁଙ୍କର ମହତ୍ ଓ ଭୟଙ୍କର ଦିନର ଆଗମନ ପୂର୍ବେ ଆମ୍ଭେ ତୁମ୍ଭମାନଙ୍କ ନିକଟକୁ ଏଲୀୟ ଭବିଷ୍ୟଦ୍‌ବକ୍ତାଙ୍କୁ ପ୍ରେରଣ କରିବା ।
> [୪ : ୧,୫]

ଉକ୍ତ ବାକ୍ୟରୁ ଏହା ସ୍ପଷ୍ଟ ଯେ ପରମେଶ୍ବର ଯୋହନଙ୍କ ଉଦ୍ଦେଶ୍ୟରେ ନ କହି ଏଲୀୟଙ୍କ ଉଦ୍ଦେଶ୍ୟରେ ହିଁ ଏହା କହିଥିଲେ । ଏଥର ଯିଶାଇୟଙ୍କ ଭାବବାଣୀ କଥା ବିଚାରକୁ ନିଅନ୍ତୁ । ସେ କୁହନ୍ତି ଏକ ଜଣର ରବ ପ୍ରଚାର କରଇ [୪୦ : ୩] ତହିଁରେ ଜଣେ କହିଲା, କଅଣ ପ୍ରଚାର କରିବା ? ମର୍ତ୍ତ୍ୟ ମାତ୍ର ତୃଣ-ସ୍ବରୂପ, ଓ ତାହାର ସମସ୍ତ ଶୋଭା କ୍ଷେତ୍ରସ୍ଥ ପୁଷ୍ପର ତୁଲ୍ୟ; ତୃଣ ଶୁଷ୍କ ହୋଇଯାଏ ପୁଷ୍ପ ମ୍ଲାନ ହୁଏ, କାରଣ ତହିଁ ଉପରେ ସଦା ପ୍ରଭୁଙ୍କର ଶ୍ବାସବାୟୁ ବହେ, ନିଶ୍ଚୟ

ଲୋକମାନେ ତୃଣ ସ୍ୱରୂପ । ତୃଣ ଶୁଷ୍କ ହୋଇଯାଏ, ପୁଷ୍ପ ମଳିନ ହୁଏ; ମାତ୍ର ଆମ୍ଭମାନଙ୍କ ପରମେଶ୍ୱରଙ୍କ ବାକ୍ୟ ଅନନ୍ତକାଳ ସ୍ଥାୟୀ । [୪୦ : ୭-୮] ଆଲଙ୍କାରିକ ଭାଷାରେ ଯିଶାଇୟ ତୃଣ ସମ୍ପର୍କରେ କହନ୍ତି । କୌଣସି ମନୁଷ୍ୟ ସମ୍ପର୍କରେ ନୁହେଁ । ଏଣୁ ମାର୍କଙ୍କ ଉଦ୍ଧୃତାଂଶଟି ପ୍ରଭୁ ଯୀଶୁଙ୍କ ଜନ୍ମ ସମ୍ପର୍କରେ ବା ବାପ୍ତିଜକ ଯୋହନଙ୍କ ବିଷୟରେ କିପରି ବୁଝାଯାଇ ପାରିବ ? ତତ୍ସଙ୍କାନ୍ତରେ ବର୍ଣ୍ଣିତ ଭୟଙ୍କର ଓ ଭୀତିପ୍ରଦ ବର୍ଣ୍ଣନା ଯୀଶୁଙ୍କ ଜନ୍ମସହ ଯୋଡ଼ାଯାଇ ପାରିବ ନାହିଁ କାରଣ ଯୀଶୁଙ୍କ ଜନ୍ମ ଉଲ୍ଲାସ ଓ ଆନନ୍ଦରେ ପାଳନ କରାଯାଇଥାଏ । ଏତଦ୍ବ୍ୟତୀତ ମାର୍କ ଏଲୀୟଙ୍କୁ ବାପ୍ତିଜକ ଯୋହନ ଭାବରେ ଉଲ୍ଲେଖ କରିବା ଓ ମନଲଖି ଏହାକୁ ବସ୍ତୁଗନ୍ଧିକ ଭାବରେ ଖ୍ରୀଷ୍ଟଙ୍କ ଜନ୍ମସହ ଯୋଡ଼ିବା ଦ୍ୱାରା ମାର୍କ ଯିଏକି ପ୍ରଥମ ସୁସମାଚାର ଲେଖିଥିବାର ଗୌରବ ପ୍ରାପ୍ତ କରିଛନ୍ତି ସତ୍ୟ ସହ ସେ ଯେ ବିରୋଧା-ଚରଣ କରିଛନ୍ତି ତାହା ହିଁ ପାଠକମାନେ ବୁଝିବେ ।

ପୂର୍ବବତ୍ ଲୂକ ମଧ୍ୟ ଭାବବାଦୀଙ୍କ କଥନ ସହ ଖ୍ରୀଷ୍ଟଙ୍କୁ ସଂଯୋଗ କରନ୍ତି, ଯେପରି ମାଥିଉ ଓ ମାର୍କ ତାଙ୍କ ସୁସମାଚାର ଗୁଡ଼ିକରେ କରିଛନ୍ତି । ତେବେ ମାଥିଉ ଓ ମାର୍କ ଯେପରି ଭାବବାଣୀ ଗ୍ରସ୍ତ ହୋଇପଡ଼ନ୍ତି ଯୋହନ ସେପରି ନୁହନ୍ତି । ଏହାସତ୍ତ୍ୱେ ଯୋହନ ଯୀଶୁଙ୍କ ମୁଖରୁ ଗୋଟିଏ କଥା କୁହାଇବାକୁ ଛାଡ଼ି ନାହାନ୍ତି । ତା'ହେଲା :

ତୁମ୍ଭେମାନେ ଯଦି ମୋଶାଙ୍କୁ ବିଶ୍ୱାସ କରନ୍ତ, ତେବେ ମତେ ବିଶ୍ୱାସ କରନ୍ତ, ଯେଣୁ ସେ ମୋ ବିଷୟରେ ଲେଖିଛନ୍ତି । [୫ : ୪୬]

ପ୍ରେରିତ ପୁସ୍ତକରେ ମଧ୍ୟ ତଦ୍ରୂପ କଥା ଉଲ୍ଲେଖ କରାଯାଇଛି :

> ମୋଶା ତ କହିଥିଲେ, ପ୍ରଭୁ ଈଶ୍ୱର ତୁମ୍ଭମାନଙ୍କର ଭ୍ରାତୃଗଣ ମଧ୍ୟରୁ ତୁମ୍ଭମାନଙ୍କ ନିମନ୍ତେ ମୋହର ସଦୃଶ ଜଣେ ଭାବବାଦୀଙ୍କି ଉତ୍ପନ୍ନ କରିବେ, ଯେଉଁ ଯେଉଁ ବିଷୟରେ ସେ ତୁମ୍ଭମାନଙ୍କୁ କହିବେ, ସେହି ସବୁ ବିଷୟରେ ତୁମ୍ଭେମାନେ ତାହାଙ୍କ କଥା ଶୁଣିବ । [୩ : ୨୨]

ଏହି ବାକ୍ୟଗୁଡ଼ିକ ପ୍ରକୃତରେ ଦ୍ୱିତୀୟ ବିବରଣରୁ ଆସିଛି । ମୋଶା କହିଛନ୍ତି :

> ସଦାପ୍ରଭୁ ତୁମ୍ଭ ପରମେଶ୍ୱର ତୁମ୍ଭ ନିମନ୍ତେ ତୁମ୍ଭ ଭିତରୁ, ତୁମ୍ଭ ଭାଇ-ମାନଙ୍କ ମଧ୍ୟରୁ ଆମ୍ଭର ସଦୃଶ ଏକ ଭବିଷ୍ୟଦ୍‌ବକ୍ତା ଉତ୍ପନ୍ନ କରିବେ; ତୁମ୍ଭେମାନେ ତାହାଙ୍କ ବାକ୍ୟରେ କର୍ଣ୍ଣପାତ କରିବ । [୧୮ : ୧୫]

ଉକ୍ତ ବାକ୍ୟଟିକୁ ଯୋହନ ଓ ପ୍ରେରିତଗଣ ଯୀଶୁଙ୍କ ଉଦ୍ଦେଶ୍ୟରେ ଉଦ୍ଧୃତ ବୋଲି କହିବା କେତେଦୂର ସମୀଚୀନ ତାହା ବିଚାର୍ଯ୍ୟ । ମୋଶା "ତୁମ୍ଭ ଭାଇମାନଙ୍କ ମଧ୍ୟରୁ ଆମ୍ଭର ସଦୃଶ ଏକ ଭବିଷ୍ୟଦ୍‌ବକ୍ତା ଉତ୍ପନ୍ନ କରିବେ" ଅର୍ଥ ତାଙ୍କଠାରୁ ପନ୍ଦର ଶହ ବାବନ ବର୍ଷ ପରେ ମୋଶାଙ୍କ ଉତ୍ତରଦାୟାଦ ଆସିବା କଥା କିପରି ବୁଝାଯାଇ ପାରିବ ? ମୋଶା କେଉଁ ପ୍ରସଙ୍ଗରେ ଏ କଥାଟି କହିଛନ୍ତି ତାହା ଚିନ୍ତା କରାଯାଉ । ମୋଶା ଯେବେ ବୃଦ୍ଧ ହୋଇଗଲେ ଏବଂ ତାଙ୍କର ଅନ୍ତିମ ସମୟ ପାଖେଇ ଆସିଲା, ସେତେବେଳେ ସେ ଭାବିଲେ ତାଙ୍କ ମୃତ୍ୟୁ ପରେ ତାଙ୍କର ଉତ୍ତରଦାୟାଦ ହେବାପାଇଁ ହୁଏତ ଅନେକ ଦ୍ୱନ୍ଦ୍ୱ ଉପୁଜିପାରେ । ଏହାର ନିରାକରଣ ପାଇଁ ସେ ସ୍ୱ ପ୍ରତିନିଧି ନିର୍ବାଚନ କରିବା ଉଦ୍ଦେଶ୍ୟରେ ଏହା କହିଛନ୍ତି । ସତକଥା ହେଲା ମୋଶା ଯୀଶୁଙ୍କୁ ଆଖି ଆଗରେ ରଖି ଏକଥା କହି ନ ଥିଲେ ବରଂ ଯିହୋଶୂୟଙ୍କୁ ଲକ୍ଷ୍ୟରଖି ସେ ଏକଥା କହିଥିଲେ । ଗଣନା ପୁସ୍ତକରେ ଯେହେତୁ କୁହାଯାଇଛି :

> ଅନନ୍ତରେ ସଦାପ୍ରଭୁ ମୋଶାଙ୍କୁ କହିଲେ, ତୁମ୍ଭେ ଏହି ଅବାରୀମ୍ ପର୍ବତ ଆରୋହଣ କର, ପୁଣି ଆମ୍ଭେ ଇସ୍ରାଏଲ ସନ୍ତାନଗଣଙ୍କୁ ଯେଉଁ ଦେଶ ଦେଇଅଛୁଁ ତାହା ନିରୀକ୍ଷଣ କର । [୨୭ : ୧୨]

> ତହିଁରେ ମୋଶା ସଦାପ୍ରଭୁଙ୍କୁ କହିଲେ, ସଦାପ୍ରଭୁ ସର୍ବଶରୀରସ୍ଥ ଆତ୍ମାଗଣର ପରମେଶ୍ୱର ମଣ୍ଡଳୀ ଉପରେ ଏକ ଜଣ ନିଯୁକ୍ତ କରନ୍ତୁ, ଯେ ସେମାନଙ୍କ ଅଗ୍ରଗାମୀ ହୋଇ ବାହାରକୁ ଯାଇ ପାରିବ, ଓ ସେମାନଙ୍କ ଅଗ୍ରଗାମୀ ହୋଇ ଭିତରକୁ ଆସିପାରିବ, ପୁଣି ଯେ ସେମାନଙ୍କର ପଥପ୍ରଦର୍ଶକ ହୋଇ ସେମାନଙ୍କୁ ବାହାରକୁ ନେଇ ପାରିବ, ଓ ଭିତରକୁ ଆଣିପାରିବ, ତାହା କଲେ ସଦାପ୍ରଭୁଙ୍କର ମଣ୍ଡଳୀ ପାଳକ ବିହୀନ ମେଷପଲ ତୁଲ୍ୟ ହେବନାହିଁ । ତହୁଁ ସଦା ପ୍ରଭୁ ମୋଶାଙ୍କୁ କହିଲେ, ନୂନର ପୁତ୍ର ଯିହୋଶୂୟଙ୍କୁ ନିଅ, ସେହି ଲୋକଠାରେ ଆତ୍ମା ଅଛନ୍ତି, ପୁଣି ତୁମ୍ଭେ ତାହା ଉପରେ ହସ୍ତାର୍ପଣ କର, ଆଉ ଇଲୀୟାସର ଯାଜକ ସମ୍ମୁଖରେ ଓ ସମସ୍ତ ମଣ୍ଡଳୀ ସମ୍ମୁଖରେ ତାହାକୁ ଉପସ୍ଥିତ କରାଇ ସେମାନଙ୍କ ସାକ୍ଷାତରେ ଆଜ୍ଞାଦିଅ । ଆହୁରି ଇସ୍ରାଏଲ ସନ୍ତାନଗଣର ସମସ୍ତ ମଣ୍ଡଳୀ ଯେମନ୍ତ ତାହାର ଆଜ୍ଞାବହ ହେବେ, ସେଥିପାଇଁ ତୁମ୍ଭେ ଆପଣା ସମ୍ଭ୍ରମ ତାହା ଉପରେ ଅର୍ପଣ କର ।
>
> [୨୭ : ୧୮-୨୦]

> ପୁଣି ସେ ତାଙ୍କ ଉପରେ ହସ୍ତାର୍ପଣ କଲେ, ପୁଣି ସଦାପ୍ରଭୁ ମୋଶାଙ୍କ ହାତରେ ଯେ ରୂପ କହିଥିଲେ, ସେ ରୂପ ସେ ତାହାଙ୍କୁ ଆଜ୍ଞା ଦେଲେ ।
>
> [୨୭ : ୨୦]

ଏଠି ତାହାର କିଛି କହିବାର ନାହିଁ । ମୋଶା ନିଜ ଭାଷାରେ ସବୁକିଛି ସ୍ପଷ୍ଟ ଭାବରେ କହି ଦେଇଛନ୍ତି । ଏହା ଜାଣିବା ସତ୍ତ୍ୱେ ଯଦି ଯୋହନ ଓ ପ୍ରେରିତଗଣ ଭାବିଲେ ଯେ ମୋଶା ଯୀଶୁଙ୍କ ଉପରେ ହିଁ ଭବିଷ୍ୟବାଣୀ କରିଥିଲେ ତାହେଲେ କଅଣ ଭଲ କରିପାରିବ ? ଯୋହନଙ୍କ ଯେ ଅନ୍ୟାନ୍ୟ ସୁସମାଚାରକଙ୍କ ଭଳି ପୁରାତନ ନିୟମର ଭବିଷ୍ୟବାଣୀ ଉଦ୍ଧୃତ କରିଛନ୍ତି, ଆଉ ଏକ ଉଦାହରଣରୁ ଏହା ବୁଝାପଡ଼ିବ । କ୍ରୁଶବିଦ୍ଧ ପରେ ଯୀଶୁଙ୍କ ପାର୍ଶ୍ୱଦେଶରେ ଦୁଇଜଣ ଡକାୟତଙ୍କ ଗୋଡ଼ ଭଙ୍ଗା ଗଲା, ମାତ୍ର ସୈନ୍ୟମାନେ ଯୀଶୁଙ୍କ ନିକଟକୁ ଆସି ସେ ମରିଗଲେଣି ବୋଲି ଦେଖି ତାହାଙ୍କ ଗୋଡ଼ ଭାଙ୍ଗିଲେ ନାହିଁ । ଯୋହନ ଧାରଣା ଦର୍ଶାନ୍ତି :

> ଧର୍ମଶାସ୍ତ୍ରରେ ଏହି ବାକ୍ୟ ସଫଳ ହେବା ନିମନ୍ତେ ଏ ସମସ୍ତ ବିଷୟ ଘଟିଲା, ତାହାଙ୍କର ଖଣ୍ଡେ ଅସ୍ଥି ଭଗ୍ନ ହେବନାହିଁ । [୧୯ : ୩୬]

ଏହି ପ୍ରସଙ୍ଗଟି ଯାତ୍ରାପୁସ୍ତକର ନିସ୍ତାର ପର୍ବ ଉପଲକ୍ଷେ କୁହାଯାଇଛି :

> ଅନନ୍ତର ମିଶର ଦେଶରେ ସଦାପ୍ରଭୁ ମୋଶା ଓ ହାରୋଣଙ୍କୁ କହିଲେ ଏହି ମାସ ତୁମ୍ଭମାନଙ୍କର ପ୍ରଧାନ ମାସ ଓ ବର୍ଷର ପ୍ରଧାନ ମାସ ହେବ । ତୁମ୍ଭେମାନେ ମେଷପଲ ବା ଛାଗପଲ ମଧ୍ୟରୁ ଶାବକ ନେବ; ତାହା ନିର୍ଦ୍ଦୋଷ, ଏକବର୍ଷୀୟ ଓ ପୁଂଶାବକ ହେବ । ନିସ୍ତାର ପର୍ବର ଏହି ବିଧି । ଏକ ଗୃହ ମଧ୍ୟରେ ତାହା ଭୋଜନ କରାଯିବ; ତୁମେ ସେହି ମାଂସର କିଛିମାତ୍ର ଗୃହ ବାହାରକୁ ନେଇଯିବ ନାହିଁ; କିଅବା ତାହାର ଗୋଟିଏ ଅସ୍ଥି ହିଁ ଭାଙ୍ଗିବ ନାହିଁ । [୧୨ : ୧, ୫, ୪୩, ୪୬]

> ଏଥିରୁ ଏହା ସୁସ୍ପଷ୍ଟ ଯେ, "ତାହାଙ୍କର ଖଣ୍ଡେ ଅସ୍ଥି ଭଗ୍ନ ନ ହେବା" କଥା ନିସ୍ତାରପର୍ବରେ ବ୍ୟବହୃତ ହେଉଥିବା ପଶୁ ଉପରେ କୁହାଯାଇଛି, ଯୀଶୁଙ୍କ ଉପରେ ନୁହେଁ । ଭବିଷ୍ୟଦ୍‌ବକ୍ତା ଭ୍ରାନ୍ତ ହୋଇ ଯେବେ କୌଣସି କଥା କହେ ତାହେଲେ ସଦାପ୍ରଭୁ ତାହାଙ୍କ ବିରୁଦ୍ଧରେ ଆପଣା ହସ୍ତ ବିସ୍ତାର କରିବା ଛଡ଼ା ଅନ୍ୟ କୌଣସି ଉପାୟ ନାହିଁ । [ଯିହିଜିକଲ ୧୪ : ୯]

ପରିଚ୍ଛେଦଟିରେ କେତେକ ଭବିଷ୍ୟବାଣୀର ପୂର୍ବାପର ସମ୍ପର୍କ ସହ ପରୀକ୍ଷା କରାଗଲା । ନୂତନ ନିୟମରେ ପୁରାତନ ନିୟମର ଏପରି ଅନେକ କଥା ପ୍ରସଙ୍ଗକ୍ରମେ ଅପ୍ରାସଙ୍ଗିକ ଭାବରେ ଉଦ୍ଧୃତ କରାଯାଇଛି, ଯାହା ପରୀକ୍ଷା କଲେ ସେହି ପ୍ରକାର ତ୍ରୁଟି ପରିଲକ୍ଷିତ ହେବ ଯାହା ପରିଲକ୍ଷିତ ହୋଇଛି । ତେବେ ନୂତନ ନିୟମର ବହୁ ଲେଖକମାନେ ପୁରାତନ ନିୟମକୁ ଏତେପରିମାଣରେ

ଉଦ୍ଧୃତ କରିଛନ୍ତି ନାହିଁକି ? ଏତେ ସ୍ୱପ୍ନର କଥା କହିଛନ୍ତି ନାହିଁକି ? ତା'ର ସରଳ ଅର୍ଥ ହେଲା ଯେଉଁ ୟିହୁଦୀମାନେ ଯୀଶୁଙ୍କୁ ଅବିଶ୍ୱାସ କରୁଥିଲେ ସେମାନେ ସ୍ୱ ଶାସ୍ତ୍ରୀୟ ବାକ୍ୟ ପଢ଼ି ବିଶ୍ୱାସ କରିବେ । ଲୋକଙ୍କୁ ଯୀଶୁଙ୍କୁ ବିଶ୍ୱାସ କରାଇବା ଉଦ୍ଦେଶ୍ୟରେ ଏ ସମସ୍ତ ଉଦ୍ଧୃତ କରାଯାଇଛି ।

ମୁଁ ଏଠି ପାଠକଙ୍କୁ ବିଶ୍ୱାସ କରିବାକୁ ବାଧ୍ୟ କରୁ ନାହିଁ, ଯାହା ମୁଁ ବିଶ୍ୱାସ କରେ । ମୋ ମତରେ ଯୀଶୁ ଥିଲେ ଏଣ୍ଡୁ ଅଛନ୍ତି ଓ ରହିଥିବେ । ତାଙ୍କ ଆଗମନ ପାଇଁ ପୁରାତନ ନିୟମର ଭାବବାଦୀମାନଙ୍କର ମାନପତ୍ରର କୌଣସି ଆବଶ୍ୟକତା ନାହିଁ । କାରଣ ସେ ଭାବବାଦୀମାନଙ୍କଠାରୁ ମଧ୍ୟ ମହାନ ଥିଲେ । ସେ ବିଶ୍ୱରେ ଯେଉଁ ଇତିହାସ ସୃଷ୍ଟି କରିଛନ୍ତି ତାହା ପୁରାତନ ନିୟମର ନିୟମଦାତା ମୋଶା ମଧ୍ୟ କରିପାରି ନାହାନ୍ତି ।



# ନୂତନ ନିୟମ : ଅନେକ ଶାଙ୍କା—
# ମାତ୍ର ଏକମାତ୍ର ପାଠକୀୟ ଜିଜ୍ଞାସା

ଚାରୋଟି ସୁସମାଚାର ପଢ଼ିସାରିବା ପରେ ମୁଁ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କୁ ମୋର ପରିତ୍ରାଣ କର୍ତ୍ତା ଭାବରେ ନ ଦେଖି ଜଣେ ମହାନ ବିପ୍ଳବୀ ଓ ସଂସ୍କାରକ ଭାବରେ ଦେଖେଁ । ସେତେ ଯେପରି ସେ ଜନ୍ମଦେବାଙ୍କ ନିଷ୍ଠୁରତମ ଆଚରଣରେ କ୍ଷୁବ୍ଧ ହୋଇ ପଡ଼ନ୍ତି, ଦଳିତ ନିଃସହାୟ ମନୁଷ୍ୟପାଇଁ କ୍ରୁଶବିଦ୍ଧ ହେବାପାଇଁ ପଛାନ୍ତି ନାହିଁ । ପିତାଙ୍କ କୃତ ନିଷ୍ଠୁରତମ କାର୍ଯ୍ୟର ଜଣେ ନିଷ୍ପାପର ପ୍ରାୟଶ୍ଚିତ୍ତକାରୀ ଭାବରେ ପୁରାତନ ନିୟମର, "ଆଖି ପରିବର୍ତ୍ତେ ଆଖି ଓ ଦାନ୍ତ ପରିବର୍ତ୍ତେ ଦାନ୍ତର" ନିୟମକୁ ସେ, "ପିତଃ, ଏମାନଙ୍କୁ କ୍ଷମାକର, କାରଣ ଏମାନେ କଅଣ କରୁଛନ୍ତି, ତାହା ଜାଣନ୍ତି ନାହିଁ" ଭାବରେ ପରିବର୍ତ୍ତନ କରି ଦିଅନ୍ତି ।

ପିତା ନିର୍ଦ୍ଦୟ ହେଲେ ପୁଅ ଦୟାର ଅବତାର । ନନ୍ଦନକାନନର ଜଣେ ଧ୍ୱଂସକାରୀ ହେଲେ ଆଉ ଜଣେ ତା'ର ପୁନର୍ଜୀବନ ପ୍ରଦାନକାରୀ ଭାବରେ ଆମ ମନକୁ ଆକୃଷ୍ଟ କରି ନିଅନ୍ତି । ଖ୍ରୀଷ୍ଟଙ୍କୁ ଗ୍ରହଣ କରିନେବା ପରେ ଜଣେ ଖ୍ରୀଷ୍ଟିୟାନ ହୋଇଯାଏ; ମାତ୍ର ସେ ଭୁଲିଯାଏ ଯେ ସ୍ୱୟଂ ଯୀଶୁ ଖ୍ରୀଷ୍ଟିୟାନ ନ ଥିଲେ । ସେ ଥିଲେ ଜଣେ ଚିନ୍ତାଶୀଳ ଯିହୁଦୀ ଯେ ଯିହୁଦୀ ଧର୍ମରେ ପଶିଆସିଥିବା କୁସଂସ୍କାର ବିରୁଦ୍ଧରେ ସାରାଜୀବନ ସଂଘର୍ଷ କରି କରି ଶେଷରେ କ୍ରୁଶବିଦ୍ଧ ହୋଇଯାନ୍ତି ।

ସାରା ନୂତନ ନିୟମ ପଢ଼ନ୍ତୁ କେବଳ ସେହି ପ୍ରଭୁଙ୍କ ବିଷୟରେ ହିଁ ତାହା ଲିଖିତ । ଏଥିରେ ରହିଛି ଗ୍ରେଟବଜ ସତାଇଶଟି ପୁସ୍ତକ । ତା'ହେଲା ଚାରୋଟି ସୁସମାଚାର,

ଗୋଟିଏ ପ୍ରେରିତମାନଙ୍କ କାର୍ଯ୍ୟର ବିବରଣ
ଚଉଦଟି ପାଉଲଙ୍କ ପତ୍ର,
ଗୋଟିଏ ଯାକୁବଙ୍କ ପତ୍ର,
ଦୁଇଟି ପିତରଙ୍କ ପତ୍ର,
ତିନୋଟି ଯୋହନଙ୍କ ପତ୍ର,
ଗୋଟିଏ ଯିହୁଦାଙ୍କ ପତ୍ର, ଏବଂ
ସର୍ବଶେଷଟି ପ୍ରକାଶିତ ବାକ୍ୟ ଅଟେ ।

ମୋ ମନରେ ସନ୍ଦେହ ହୁଏ—ଏ ନୂତନ ନିୟମ ଲେଖିଲା କିଏ ? ମୁଁ କହି ପାରିବି ନାହିଁ । ତେବେ କିଏ କହିପାରିବ ତା' ମଧ୍ୟ କହିବା ମୋ ପକ୍ଷରେ ସମ୍ଭବ ନୁହେଁ । ଯଦିଓ ଏହା ଗ୍ରୀକ୍ ବଡ଼ ଅକ୍ଷରରେ ଲେଖାଯାଇଥିଲା, ଯାହାକୁ ଅନସିଏଲ ପାଣ୍ଡୁଲିପି ବୋଲି କୁହାଯାଏ, ତଥାପି ମୂଳ ସୁସମାଚାରଗୁଡ଼ିକରେ କାହାର ସ୍ୱାକ୍ଷର ନ ଥିଲା । ମୂଳ ପାଣ୍ଡୁଲିପି ସମ୍ପର୍କରେ ଏତିକି କୁହାଗଲେ ଅଯଥାର୍ଥ ହେବ ନାହିଁ ଯେ ଏହା ମୁଁ ତୁମେ ବା ସେମାନେ କେହି ଦେଖି ନାହାନ୍ତି କିମ୍ବା ଅମୁକ ବ୍ୟକ୍ତିଙ୍କୁ ମୁଁ ଭଲଭାବରେ ଜାଣିଛି ଯେ କହୁଥିଲେ ତାଙ୍କ ଅଜାଙ୍କ ବନ୍ଧୁଙ୍କ ବନ୍ଧୁ କହୁଥିବା ଶୁଣିଥିଲେ ଯେ ତାଙ୍କ ବାପା ଏହା ଦେଖିଛନ୍ତି । ଏହା ମଧ୍ୟ କହିବା କଷ୍ଟକର କଥା ।

ଏହା ଯେ କେହି କହିପାରିବେ ଯେ ଯୀଶୁ ଏଥିରେ ଗୋଟିଏ ଶବ୍ଦ ମଧ୍ୟ ଲେଖି ନାହାନ୍ତି । କଥିତ ଅଛି ଯେ ଯୀଶୁ ବାଲି ଉପରେ କିଛି ଲେଖିଥିଲେ, ମାତ୍ର ତାହା ଆମେ ସୁରକ୍ଷା କରିପାରିଲୁ ନାହିଁ । ଏପରିକି ସେ କାହାକୁ ଏହାର ଗୋଟିଏ ଶବ୍ଦ ମଧ୍ୟ ଲେଖିବାକୁ ନିର୍ଦ୍ଦେଶ ଦେଇ ନଥିଲେ । ସେ କେବେ କହି ନଥିଲେ—

ମାଥିଉ—ଏ କଥା ମନେ ରଖ ।
ମାର୍କ—ଏହା ଲେଖିବାକୁ ଭୁଲିବ ନାହିଁ ।
ଲୂକ—ତୁମେ ଏକଥା ନିଶ୍ଚୟ ଲେଖିବ ।
ଯୋହନ—ଏହା ଠିକ୍ ଭାବରେ ଲେଖ ।

ଯେଉଁ ବାକ୍ୟଗୁଡ଼ିକଦ୍ୱାରା ଆମେ ଅନନ୍ତ ଜୀବନର ଅଧିକାରୀ ହେଉ, ସେଥିର ଗୋଟିଏ ଶବ୍ଦ ମଧ୍ୟ ପ୍ରଭୁଙ୍କ ଲିଖିତ ନୁହେଁ ଜାଣିଲେ ଦୁଃଖ ଆସେ । ଯେଉଁ ବାକ୍ୟ ଉପରେ ନିର୍ଭରକରି ମାନବଜାତି ମୁକ୍ତିର ଅଧିକାରୀ ହେବ ସେହି ଗ୍ରନ୍ଥ ଶେଷରେ ହେଲେ ପ୍ରଭୁଙ୍କ ସ୍ୱାକ୍ଷରଟିଏ ଥାଆନ୍ତା ? ସେଥିରୁ ବି ମନୁଷ୍ୟ ବଞ୍ଚିତ ହେଲା ।

ସବୁକିଛି ଗ୍ରୀକ୍‌ରେ ଲିଖିତ । ଏଥିରେ ଥିବା ଚାରୋଟି ସୁସମାଚାର ହେଲେ—

୧ । ମାଥିଉ ଲିଖିତ ସୁସମାଚାର
୨ । ମାର୍କ ଲିଖିତ ସୁସମାଚାର
୩ । ଲୂକ ଲିଖିତ ସୁସମାଚାର
୪ । ଯୋହନ ଲିଖିତ ସୁସମାଚାର ।

ସୁସମାଗ୍ରରଗୁଡ଼ିକ ସହ "ଲିଖିତ" ଶବ୍ଦଟି ଯୋଡ଼ା ହୋଇଥିବାରୁ ଏହା ସ୍ୱାଭାବିକ ପ୍ରଶ୍ନଉଠେ, ମାଥିଉ କ'ଣ ମାଥିଉ, ମାର୍କ କ'ଣ ମାର୍କ, ଲୁକ କ'ଣ ଲୁକ ଏବଂ ଯୋହନ କ'ଣ ଯୋହାନଙ୍କ ଲିଖିତ ସୁସମାଗ୍ରର ଲେଖକ ହୋଇପାରନ୍ତି କି ? ତେବେ ଏ "ଲିଖିତ ଶବ୍ଦଟି କ'ଣ ମାଥିଉ ମାର୍କ ଲୁକ ଓ ଯୋହନ ପ୍ରଥମ ପୁରୁଷ ହୋଇମଧ୍ୟ ତୃତୀୟ ପୁରୁଷ ଭାବରେ ଉଲ୍ଲେଖ କରାଯାଇ ପାରେ କି ? ନତୁବା ଲେଖାଯାଇଥାନ୍ତା—"ମାଥିଉ ଲିଖିତ ସୁସମାଗ୍ରର" ମାଥିଉଙ୍କଦ୍ୱାରା ।

ଇନ୍‌ଗରସୋଲ୍, ଡାଂକ୍ରିସ୍କ୍ରି ତାଙ୍କ "ଓ୍ୱାର୍କସ୍" ଅଷ୍ଟମଖଣ୍ଡର ୪୭୪-୪୭୫ ପୃଷ୍ଠାରେ ଉଦ୍ଧୃତ କରି କହିଥିବା ଦର୍ଶାନ୍ତି ସେ ଜାଣନ୍ତି ଯେ ମାଥିଉ ଜଣେ, ମାର୍କ ଜଣେ, ଲୁକ ଜଣେ ଏବଂ ଯୋହନ ଜଣେ । କିଏ ଲେଖିଛନ୍ତି ତାହା କେହି ଜାଣନ୍ତି ନାହିଁ । ସେ ଜାଣନ୍ତି ଯେ ଯୋହନ ଲେଖି ନାହାନ୍ତି ଏବଂ ଯୋହନ ଲିଖିତ ସୁସମାଗ୍ରର ଯୋହନଙ୍କ ବହୁ ପରେ ହିଁ ଲେଖାଯାଇଛି । ସେ ଜାଣନ୍ତି "ଏବ୍ରୀମାନଙ୍କ" ମଧ୍ୟ କାହାଦ୍ୱାରା ଲେଖାଯାଇଛି କେହି ଜାଣନ୍ତି ନାହିଁ ଏବଂ ସେ ଏକଥା ଜାଣନ୍ତି ପ୍ରକାଶିତ ବାକ୍ୟ ଏକ ସୁସ୍ଥମସ୍ତିଷ୍କର କୃତି ହୋଇ ନପାରେ । ସେ ଏକଥା ଜାଣନ୍ତି "ମାର୍କ"ର ଶେଷପର୍ବ ନବମ ଶ୍ଲୋକଠାରୁ ବାକ୍ୟ ଶେଷ ପର୍ଯ୍ୟନ୍ତ ପ୍ରକ୍ଷେପ ଅଟେ । ସେ ଏହା ଜାଣନ୍ତି ଯେ ଯୋହନରେ ମଧ୍ୟ ସେହି ଅସୁବିଧା ରହିଛି । ବୋଧହୁଏ ଖ୍ରୀଷ୍ଟଙ୍କ ମୃତ୍ୟୁର ଏକଶ ପଚାଶ ବର୍ଷ କିମ୍ବା ନିଶ୍ଚିତରୂପେ ଦୁଇଶ ବର୍ଷ ପରେ ଏହା ଲିଖିତ ଏବଂ ପବିତ୍ର ଆତ୍ମା ବିରୁଦ୍ଧରେ ପାପ ଏକ ପ୍ରକ୍ଷେପ, ପୁନଶ୍ଚ—ଭୂମିକୁ ଶାନ୍ତି ଦେବାକୁ ଆସି ନାହିଁ ଯଦିଓ ପ୍ରକ୍ଷେପ ନୁହେଁ ଏହା ପରସ୍ପର ବିରୋଧୀ ବାକ୍ୟ ଅଟେ ।

ସୁସମାଗ୍ରରଗୁଡ଼ିକ ପରେ "ପ୍ରେରିତମାନଙ୍କ କାର୍ଯ୍ୟ ବିବରଣ" କାହାଦ୍ୱାରା ଲିଖିତ ତାହା ଆମେ ଜାଣୁ ନା । ତେବେ ଗୀର୍ଜା ଅଧିକାରୀମାନେ କହନ୍ତି ଏ ବେନାମୀ ପୁସ୍ତକଟି ସନ୍ଥ ଲୁକଙ୍କଦ୍ୱାରା ଲିଖିତ । "ସନ୍ଥ ଲୁକ" ଏବଂ "ପ୍ରେରିତ" ପୁସ୍ତକ ଯଦି ଜଣେ ବ୍ୟକ୍ତିଙ୍କଦ୍ୱାରା ଲିଖିତ, ତେବେ ସେଥିରେ ପରସ୍ପର ବିପରୀତ କଥା ରହିବା ଅନୁଚିତ; ମାତ୍ର ଲୁକ ଓ ପ୍ରେରିତ କ'ଣ ଗୋଟିଏ କଥା କହନ୍ତି କି ? ଲୁକଙ୍କ ଅନୁସାରେ ଯୀଶୁ ଯେଉଁଦିନ ସମାଧିରୁ ଉଠିଲେ ସେହିଦିନ ସ୍ୱର୍ଗକୁ ନୀତ ହେଲେ [୨୪ : ୨୧, ୫୧], କହିଲାବେଳେ "ପ୍ରେରିତ"ରେ କୁହାଯାଇଛି, ସେ ଜନକୁ ସଜୀବ ଚାଳିଶ ଦିନ ପର୍ଯ୍ୟନ୍ତ ବାରମ୍ବାର ଦର୍ଶନ ଦେଉଥିଲେ [୧ : ୩], ଏଥିରୁ ପ୍ରମାଣିତ ହୋଇଯାଏ ଯେ ଲୁକ "ପ୍ରେରିତ" ପୁସ୍ତକର ଲେଖକ କେବେ ମଧ୍ୟ ହୋଇ ନ ପାରନ୍ତି ।

ଚଉଦଟି ପାଉଲଙ୍କ ପତ୍ର ମଧ୍ୟରୁ ପ୍ରଥମ ପତ୍ର "ରୋମୀୟ ମଣ୍ଡଳୀ ନିକଟକୁ ପାଉଲଙ୍କ ପତ୍ର" ପାଉଲଙ୍କ ଲିଖିତ ନୁହେଁ । ଯେହେତୁ ପତ୍ରଟିର ଶେଷ ଅଧ୍ୟାୟରେ

ଲେଖାଅଛନ୍ତି—ଏହି ପତ୍ର ଲେଖକ ଯେ ମୁଁ ତର୍ତ୍ତିୟ, ମୁଁ ପ୍ରଭୁଙ୍କ ନାମରେ ତୁମ୍ଭମାନଙ୍କୁ ନମସ୍କାର ଜଣାଉଛି [ ୧୬ : ୨୨ ] । ତର୍ତ୍ତିୟ ଏହାର ଲେଖକ ଏତେ ସ୍ପଷ୍ଟଭାବରେ ଲେଖାଥିବା ସତ୍ତ୍ୱେ ଗୀର୍ଜା ଏହାକୁ ପାଉଲଙ୍କ ଲିଖିତ ବୋଲି ଭାବୁଛନ୍ତି କାହିଁକି ତା'ମଧ୍ୟ ଜଣାପଡ଼େ ନାହିଁ ।

ନୂତନ ନିୟମର ପ୍ରଥମ ସୁସମାଚାର ମାଥିଉଥିବା ଦେଖି ଆଶ୍ଚର୍ଯ୍ୟ ଲାଗେ । ଏହା ମାର୍କ ହେବା ଉଚିତ । ଚତୁର୍ଥ ଓ ପଞ୍ଚମ ଶତାବ୍ଦୀର ପାଶ୍ଚାତ୍ୟ ଧର୍ମଯାଜକ ଅଗଷ୍ଟାଇନ୍ ମାଥିଉଙ୍କୁ ମାର୍କର ସଂକ୍ଷିପ୍ତୀକରଣ ଭାବୁଥିଲେ । ଯେହେତୁ ମାଥିଉ ଓ ଲୂକ ଖ୍ରୀଷ୍ଟଙ୍କ ଇତିହାସ ଓ ବର୍ଣ୍ଣନା ମାର୍କଙ୍କଠାରୁ ହିଁ ନେଇଛନ୍ତି ।

ମାର୍କରେ ଥିବା ୬୬୧ ପଦ ମଧ୍ୟରୁ ମାଥିଉ ୬୦୦ ଓ ଲୂକ ୩୫୦ ପଦ ନେଇଛନ୍ତି । ମାର୍କର କେବଳ ୩୧ ବାକ୍ୟ ମାଥିଉ ଓ ଲୂକ ମଧ୍ୟକୁ ଆସିପାରି ନାହିଁ । ପ୍ରଭୁଙ୍କ କଥା ଭାବରେ ଅନ୍ୟ ପକ୍ଷରେ ମାଥିଉ ଓ ଲୂକ ମଧ୍ୟରେ ୨୦୦ ଓ ୨୫୦ ବାକ୍ୟ ସମାନ ଅଛି, ଯାହା ମାର୍କରେ ଦେଖିବାକୁ ମିଳେ ନାହିଁ । ଏଥିରୁ ଏହା ପ୍ରମାଣିତ ହୋଇଯାଏ ଯେ ମାର୍କ ସର୍ବପ୍ରଥମ ସୁସମାଚାର ଯାହା ମାଥିଉ ଓ ଲୂକ ତାଙ୍କ ସୁସମାଚାରରେ ବ୍ୟବହାର କରିଛନ୍ତି ।

ଏହି ସର୍ବପ୍ରଥମ ସୁସମାଚାର ମାର୍କ ପ୍ରଥମ ଶତାବ୍ଦୀର ଷାଠିଏ ପରବର୍ତ୍ତୀ ହୁଏତ ଲେଖାଯାଇ ଥାଇପାରେ । ସମ୍ରାଟ ନିରୋଙ୍କ ସମୟରେ ଖ୍ରୀଷ୍ଟିୟାନମାନଙ୍କୁ ଯେଉଁ ତାଡ଼ନା ଆସିଲା, ତା'ର ପରିଣାମ ସ୍ୱରୂପ ଖ୍ରୀଷ୍ଟିୟାନ ବିଶ୍ୱାସର ସୁରକ୍ଷା ପାଇଁ ଏହା ଲେଖାଯାଇଥିଲା । କୁହାଯାଏ ମାର୍କ ପିତରଙ୍କ ଭାଷ୍ୟକାର ଥିଲେ । ଯଦିଓ ଶୃଙ୍ଖଳାର ଅଭାବ ପରିଲକ୍ଷିତ ହୁଏ । ଶୈଳୀଦୃଷ୍ଟିରୁ ଦେଖିଲେ ମନେହୁଏ ଲେଖକ ଅଳ୍ପ ଶିକ୍ଷିତ ପ୍ରକୃତିର ଥିଲେ ।

ଯଦି ଧରିଯାଏ ମାର୍କ ମାର୍କ ହିଁ ଲେଖିଛନ୍ତି, ତେବେ ପ୍ରଶ୍ନ ଉଠେ, ମାର୍କଙ୍କ ସମୟଠାରୁ ଯୀଶୁଙ୍କ ଜୀବନୀ ୩୦ରୁ ୪୦ ବର୍ଷର ଏତେ ବ୍ୟବଧାନ ରହିଲା କାହିଁକି ? ଏ ବ୍ୟବଧାନର କାରଣ ହୁଏତ ଅନୁମାନ କରାଯାଇପାରେ ଶିଷ୍ୟଗଣ ବୋଧହୁଏ ଖ୍ରୀଷ୍ଟ ସ୍ୱର୍ଗାରୋହଣପରେ ଶୀଘ୍ର ଆସିବେ ବୋଲି କହିଥିବାରୁ ସେମାନେ ଏତେ ବର୍ଷ ଅପେକ୍ଷା କଲେ । ଅନ୍ୟ କାରଣ ହୋଇପାରେ ଶିଷ୍ୟମାନେ ନିମ୍ନଶ୍ରେଣୀ ବା ସ୍ତରରୁ ଆସିଥିବାରୁ ଯଥେଷ୍ଟ ଶିକ୍ଷା ନ ଥିଲା । ଏଣୁ ଲେଖିବାକୁ ବହୁ ସମୟ ଲାଗିଗଲା ।

ପ୍ରେରିତ, ଯାକୁବ ଓ ଯିହୁଦା ଏପରି ଅନୁଗାମୀମାନଙ୍କଦ୍ୱାରା ଲିଖିତ ଯେଉଁମାନେ ଗ୍ରବେଷ୍ଟି ସୁସମାଚାର କେବେ ଦେଖି ନ ଥିଲେ । କାରଣ କୌଣସି

ସୁସମାଗ୍ଭର ଉଲ୍ଲେଖ ଏଥିରେ ନାହିଁ । କିମ୍ବା ସୁସମାଗ୍ଭରଗଣ ଉଲ୍ଲେଖ କରିଥିବା ପ୍ରଭୁଙ୍କ ଆଶ୍ଚର୍ଯ୍ୟ କର୍ମର ଗୋଟିଏ ଉଦାହରଣ ମଧ୍ୟ ନ ଥିବା ଅଜ୍ଞତା ହୋଇ ନ ପାରେ । ବୋଧହୁଏ ଆଶ୍ଚର୍ଯ୍ୟ କର୍ମଗୁଡ଼ିକ ଉଲ୍ଲେଖଯୋଗ୍ୟ ବୋଲି ସେମାନେ ମନେକରିନାହାନ୍ତି ।

ଏତେଗୁଡ଼ିଏ ସମସ୍ୟା ଥିବାସତ୍ତ୍ୱେ ଆଉ ଏକ ସମସ୍ୟାରେ ଆମେ ପଡ଼ୁଯାଉଁ, ଯେବେ ପାଦ୍ରି ନୂତନ ନିୟମକୁ ଈଶ୍ୱର ପ୍ରଣୋଦିତ ବୋଲି ଦାବୀ କରି ବସନ୍ତି । ପ୍ରଥମେ କେବଳ ପୁରାତନ ନିୟମକୁ ପରମେଶ୍ୱରଙ୍କ ପ୍ରତ୍ୟାଦେଶ କୁହାଯାଉଥିଲା ଏବଂ ନୂତନ ନିୟମକୁ ମନୁଷ୍ୟକୃତ ବୋଲି କୁହାଯାଉଥିଲା । ବିଶ୍ୱାସର ଦୃଢ଼ୀକରଣ ପାଇଁ ଏହାକୁ ମଧ୍ୟ ଈଶ୍ୱର ପ୍ରଣୋଦିତ ବା ପ୍ରତ୍ୟାଶିତ ବୋଲି କୁହାଗଲା ।

ତେବେ ପ୍ରଶ୍ନଉଠେ ଚାରି ସୁସମାଗ୍ଭର କ'ଣ ଈଶ୍ୱର ପ୍ରଣୋଦିତ ? ଯଦି ପ୍ରଣୋଦିତ, ତେବେ ସେମାନେ ସତ୍ୟ । ସେମାନେ ଯଦି ସତ୍ୟ, ତେବେ ସେମାନେ ଏକମତ ହେବା ଉଚିତ ।

ମାତ୍ର ଚାରିଜଣ ଏକମତ ନୁହନ୍ତି ।

ମାଥିଉ, ମାର୍କ ଓ ଲୂକ ପରିତ୍ରାଣ ବିଷୟରେ କିଛି କୁହନ୍ତି ନାହିଁ । ବିଶ୍ୱାସଦ୍ୱାରା ଯେ ଆମେ ମୁକ୍ତିର ଅଧିକାରୀ ହେବା, ତାହା ମଧ୍ୟ କୁହନ୍ତି ନାହିଁ । ସେମାନେ ତ କୁହନ୍ତି—ନରହତ୍ୟା କରନାହିଁ । ବ୍ୟଭିଚାର କରନାହିଁ, ଚୋରି କରନାହିଁ, ମିଥ୍ୟା ସାକ୍ଷ୍ୟ ଦିଅନାହିଁ, ପିତାମାତାଙ୍କୁ ସମାଦର କର; ପୁଣି ତୁମର ପ୍ରତିବାସୀକି ଆତ୍ମତୁଲ୍ୟ ପ୍ରେମ କର [ ମାଥିଉ ୧୯ : ୧୮-୧୯; ମାର୍କ ୧୦ : ୧୯ ] ସେମାନେ ତ ପ୍ରଗ୍ଭର କରୁଥିଲେ ଯଦି ଆମେ ଅନ୍ୟକୁ କ୍ଷମା ଦେବା ତା'ହେଲେ ଈଶ୍ୱର ଆମକୁ କ୍ଷମାଦେବେ ।

ଯୋହନ ଏ କଥାରେ ସହମତ ନୁହଁନ୍ତି । ସେ କୁହନ୍ତି, ଆମେ ପ୍ରଭୁ ଯୀଶୁଙ୍କୁ ବିଶ୍ୱାସ କରିବା ଉଚିତ । ଯେ କେହି ତାହାଙ୍କଠାରେ ବିଶ୍ୱାସକରେ, ସେ ବିନଷ୍ଟ ନ ହୋଇ ଅନନ୍ତ ଜୀବନ ପ୍ରାପ୍ତ ହୁଏ । ଯେ ତାହାଙ୍କଠାରେ ବିଶ୍ୱାସକରେ, ସେ ବିଗ୍ଭରିତ ହୁଏ ନାହିଁ; ଯେ ବିଶ୍ୱାସ କରେ ନାହିଁ, ସେ ବିଗ୍ଭରିତ ହୋଇ ସାରିଲାଣି; କାରଣ ସେ ଈଶ୍ୱରଙ୍କ ଅଦ୍ୱିତୀୟ ପୁତ୍ରଙ୍କ ନାମରେ ବିଶ୍ୱାସ କରିନାହିଁ (୩ : ୧୬-୧୮) । ଯେ ଯୀଶୁଙ୍କଠାରେ ବିଶ୍ୱାସକରେ, ସେ ଅନନ୍ତ ଜୀବନ ପ୍ରାପ୍ତ ହୋଇଅଛି, ମାତ୍ର ଯେ ପୁତ୍ରଙ୍କୁ ଅମାନ୍ୟକରେ, ସେ ଜୀବନ ଦେଖିବ ନାହିଁ, କିନ୍ତୁ

ସେ ଈଶ୍ୱରଙ୍କ କ୍ରୋଧର ପାତ୍ର ହୋଇ ରହିବ (ଯୋହନ ୩ : ୩୬) । ସେ ଆମକୁ ଯୀଶୁଙ୍କ ରକ୍ତ ଓ ମାଂସ ଭୋଜନ କରିବାକୁ କୁହନ୍ତି [ ଯୋହନ ୬ : ୫୩-୫୮ ] ବାରମ୍ବାର ବିଶ୍ୱାସର କୈଫିୟତ କରି ସେ, ଏହାହିଁ କୁହନ୍ତି ଯୀଶୁ ଆମପାଇଁ କ୍ରୁଶବିଦ୍ଧ ହେଲେ ଓ ଆମ ସ୍ଥାନରେ କଷ୍ଟ ପାଇଲେ ।

ଯଦି ଯୋହନ ସତ୍ୟ ତେବେ ଅନ୍ୟ ତିନିଜଣ ମିଥ୍ୟା । ଯଦି ଯୋହନ ଈଶ୍ୱର ପ୍ରଣୋଦିତ, ତେବେ ଅନ୍ୟ ତିନିଜଣ ଈଶ୍ୱର ପ୍ରଣୋଦିତ ନୁହନ୍ତି । ଏଥିରୁ ରକ୍ଷା ନାହିଁ । ଚାରିଜଣ ହିଁ ସତ୍ୟ ଏହା କିପରି କୁହାଯାଇ ପାରିବ ।

ଯୀଶୁଙ୍କ ଜନ୍ମ ସମ୍ପର୍କରେ ମାଥିଉ ଓ ଲୂକ ମଧ୍ୟ ଗୋଟିଏ ମତ ପୋଷଣ କରନ୍ତି ନାହିଁ । ଯଦିଓ ରୋମୀୟ ଓ ଯିହୁଦୀ ପଣ୍ଡିତ ମଧ୍ୟ ତାଙ୍କ ଜନ୍ମର ସମୟ ନିର୍ଣ୍ଣୟ କରିବାରେ ଅସମର୍ଥ ହୋଇପଡ଼ନ୍ତି ।

ମାଥିଉଙ୍କ ଅନୁସାରେ ଯୀଶୁ ହେରୋଦଙ୍କ ଶେଷ ସମୟ ଆଡ଼କୁ ଜନ୍ମ ହୋଇଥିଲେ, ଯାହା ଖ୍ରୀଷ୍ଟପୂର୍ବ ଚାରିରେ ପଡ଼େ । ଲୂକ [ ୨:୧-୨ ] କୁହନ୍ତି ସେ ସମୟରେ ସମସ୍ତ ସାମ୍ରାଜ୍ୟବାସୀଙ୍କ ନାମ ଲେଖିବା ନିମନ୍ତେ କାଇସର ଅଗଷ୍ଟଙ୍କଠାରୁ ଆଜ୍ଞା ଘୋଷଣା କରାଗଲା । ସୁରିଆର ଶାସନକର୍ତ୍ତା କ୍ୱିରିଣିୟଙ୍କ ସମୟରେ ପ୍ରଥମଥର ଏହି ନାମ ଲେଖା ହୋଇଥିଲା । ସେ ସମୟରେ ଯୀଶୁଙ୍କ ଜନ୍ମ ହେଲା । ଏହା ୬-୨ ଖ୍ରୀଷ୍ଟାବ୍ଦରେ ହିଁ ପଡ଼େ । ଯାହା ହେରୋଦଙ୍କ ମୃତ୍ୟୁ ପରର କଥା । ମାଥିଉ ଓ ଲୂକଙ୍କ କଥାକୁ ଯଦି ମିଶାଇ ଗଣନା କରାଯାଏ, ତାହେଲେ ଯୀଶୁଙ୍କ ଜନ୍ମ ଖ୍ରୀଷ୍ଟପୂର୍ବ ୭-୬ରେ ହିଁ ପଡ଼ିବ ।

ଇତିହାସ ଅନୁସାରେ ଯଦି ବିଚାର କରାଯାଏ ତା'ହେଲେ ଯୀଶୁ ତାଙ୍କ ଜନ୍ମ ପୂର୍ବରୁ ମିଶରକୁ ହେରୋଦଙ୍କ ଭୟରେ ନିଆଯାଇଥିଲେ, ଯେହେତୁ ହେରୋଦ ତାଙ୍କ ମୃତ୍ୟୁ ପରେ ଶିଶୁମାନଙ୍କୁ ବଧ କରୁଥିଲେ ବୋଲି ବୁଝିବାକୁ ହେବ ।

ବଂଶାବଳୀରେ ମଧ୍ୟ ଏ ପ୍ରକାର ସମସ୍ୟା ରହିଛି । ମାଥିଉ ଯୀଶୁଙ୍କ ବଂଶାବଳୀକୁ ସଂକ୍ଷିପ୍ତ କରିବାକୁ ଯାଇ କୁହନ୍ତି—ଏ ପ୍ରକାର ସର୍ବସୁଦ୍ଧା—

ଅବ୍ରାହମଙ୍କଠାରୁ ଦାଉଦଙ୍କ ପର୍ଯ୍ୟନ୍ତ ଚଉଦ ପୁରୁଷ,
ଆଉ ଦାଉଦଙ୍କଠାରୁ ବାବିଲୋନ ନିର୍ବାସନ ପର୍ଯ୍ୟନ୍ତ ଚଉଦ ପୁରୁଷ,
ପୁଣି ବାବିଲୋନ ନିର୍ବାସନଠାରୁ ଖ୍ରୀଷ୍ଟଙ୍କ ପର୍ଯ୍ୟନ୍ତ ଚଉଦ ପୁରୁଷ ।

[ ୧ : ୧୭ ]

ଗଣନାକରି ଦେଖନ୍ତୁ ବାବିଲୋନ ନିର୍ବାସନଠାରୁ ଖ୍ରୀଷ୍ଟଙ୍କ ପର୍ଯ୍ୟନ୍ତ ଚଉଦ ନୁହେଁ ତେର ପୁରୁଷ ହେବା ଉଚିତ ଏବଂ ଦାଉଦଙ୍କଠାରୁ ବାବିଲୋନ ନିର୍ବାସନ ପର୍ଯ୍ୟନ୍ତ ଚଉଦ ପୁରୁଷରେ ଜାଣିଶୁଣି ଗୋଟିଏ ନାମ ଛାଡ଼ି ଦିଆଯାଇଛି । ସେମାନେ ହେଲେ ଯୋରାମ ଓ ଉଜ୍ଜିୟ (ଅଜରିୟ)ଙ୍କ ମଧ୍ୟରେ ତିନୋଟି ନାମ ଅହସିୟ, ଯୋୟାଶ, ଅମତ୍ସିୟ (ଦେଖନ୍ତୁ—ପ୍ରଥମ ବଂଶାବଳୀ ୩ : ୧୧-୧୨) । ଏବଂ ଯୋଶିୟ ଓ ଯିଖନିୟଙ୍କ ମଧ୍ୟରେ ଯିହୋୟାକୀମ ନାମଟି ଛାଡ଼ି ଦିଆଯାଇଛି ( ପ୍ରଥମ ବଂଶାବଳୀ ୩:୧୫-୧୬ ) ।

ପ୍ରଥମ ବଂଶାବଳୀ ( ୩ : ୧୮-୧୯) ଅନୁସାରେ ପଦାୟଙ୍କ ପୁତ୍ର ସରୁବ୍ବାବିଲ ଯିଏ ଶଲଟୀୟେଲଙ୍କ ପୁତୁରା, ମାତ୍ର ମାଥିଉ ଓ ଲୂକ ଅନୁସାରେ ସରୁବ୍ବାବିଲ (ଜରୁବ୍ବାବେଲ) ଶଲଟୀୟେଲଙ୍କ ପୁତ୍ର

[ ମାଥିଉ ୧ : ୧୨; ଲୂକ ୩ : ୨୭ ] । ପ୍ରଥମ ବଂଶାବଳୀ ( ୩ : ୨୭ ) ଏବଂ ମାଥିଉ ( ୧ : ୧୨ ) ଶଅଲଥୀୟେଲ ଯିଖନିୟଙ୍କ ପୁତ୍ର ବୋଲି ଦର୍ଶାଯିବା ସ୍ଥଳେ ଲୂକ ( ୩ : ୨୭ ) ତାଙ୍କୁ ନେରିଙ୍କ ପୁତ୍ର ବୋଲି ଦର୍ଶାନ୍ତି ।

ମାଥିଉ (୧ : ୧୩)ଙ୍କ ଅନୁସାରେ ଜରୁବ୍ବାବେଲଙ୍କ ପୁତ୍ର ଅବୀହୁଦ ଥିଲେ ମାତ୍ର ଲୂକ (୩ : ୨୭)ରେ ରୈଷଙ୍କୁ ଜରୁବ୍ବାବେଲଙ୍କ ପୁତ୍ର ବୋଲି ଦର୍ଶାନ୍ତି । ଯେଉଁ ସ୍ଥଳେ ପ୍ରଥମ ବଂଶାବଳୀ (୩ : ୧୯-୨୦)ରେ ଉଲ୍ଲେଖ ଅଛି ଯେ ଜରୁବ୍ବାବେଲଙ୍କ ସାତପୁତ୍ର ଥିଲେ; ମାତ୍ର ସେମାନଙ୍କ ମଧ୍ୟରୁ ମାଥିଉଙ୍କ ଅବୀହୁଦ ବା ଲୂକଙ୍କ ରୈଷ ଅନ୍ତର୍ଗତ ନ ଥିଲେ ।

ଯୋସେଫଙ୍କୁ ଛାଡ଼ିଦେଲେ ଯଦିଓ ଶଅଲଥୀୟେଲ ଓ ଜରୁବ୍ବାବେଲ ନାମ ଦ୍ୱୟ ମାଥିଉ ଓ ଲୂକ ଉଲ୍ଲେଖ କରନ୍ତି, ତଥାପି ଲୂକ ଏ ନାମଦ୍ୱୟ ଅଯଥା ଉଲ୍ଲେଖ କରିଥିବା ପରି ମନେହୁଏ । ଯେହେତୁ ମାଥିଉ ଶଲମନଙ୍କୁ ଅନୁସରଣ କରିଛନ୍ତି ଓ ଲୂକ ନାଥାନଙ୍କୁ ଅନୁକରଣ କରି ବଂଶାବଳୀ ଲେଖନ୍ତି, ଯଦିଓ ଦୁହେଁ ଦାଉଦଙ୍କ ପୁତ୍ର ଥିଲେ । ମାଥିଉଙ୍କ ବଂଶାବଳୀ ଛବିଶ ପୁରୁଷ ହେଲେ ଲୂକଙ୍କ ଏକଚାଳିଶ ପୁରୁଷ ହୁଅନ୍ତି । ଦୁହିଁଙ୍କ ବଂଶାବଳୀର ତଫାତ୍ କେବଳ ଚାଳିଶ ବର୍ଷର ।

ଯଦି ଯୀଶୁ କୁମାରୀ ଜାତ ବୋଲି ଧରାଯାଏ ତା'ହେଲେ ଯୋସେଫ୍ ତାଙ୍କ ପିତା ନ ଥିଲେ । ଏଣୁ ଦାଉଦଙ୍କ ବଂଶଧର ସେ କିପରି ହେବେ । ଯିଏ ପିତାର ପୁତ୍ର ନୁହେଁ ସେ ଅଜାଙ୍କ ନାତି କିପରି ? ଏଣୁ କୁମାରୀ ଜାତ ବିଶ୍ୱାସବାଦୀ ଲେଖକଦ୍ୱୟ ଯୀଶୁଙ୍କ ବଂଶାବଳୀ ପ୍ରତି ଯଥାର୍ଥ ନ୍ୟାୟ କରିନାହାନ୍ତି ।

ମାଥିଉ ଉଲ୍ଲେଖ କରନ୍ତି ଯେ ହେରୋଦ କ୍ରୋଧାନ୍ଧ ହୋଇ ଦୁଇବର୍ଷ ଓ ସେଥିରୁ ନ୍ୟୂନ ବୟସ୍କ ଯେତେ ବାଳକ ବେଥ୍ଲେହମ ପୁଣି ସେଥିର ସମସ୍ତ ସୀମା ମଧ୍ୟରେ ଥିଲେ, ଲୋକ ପଠାଇ ସେହି ସମସ୍ତଙ୍କୁ ବଧ କରାଇଲେ । ସେ ସମୟରେ ଯୋସେଫ ଓ ମରିୟମ ଯୀଶୁଙ୍କୁ ନେଇ ମିସରକୁ ପଳାଇ ଯାଇଥିଲେ । ଏଠି ଗୋଟିଏ କଥା ସ୍ମରଣୀୟ, ସେ ସମୟରେ ଯୋହନ ମଧ୍ୟ ଦୁଇବର୍ଷରୁ ସାନ ବାଳକ ଥିଲେ । ତାଙ୍କ ପାଇଁ ତ କିଛି ବ୍ୟବସ୍ଥା କରାଗଲା ନାହିଁ । ଯୀଶୁ ପଳାଇ ଯେପରି ରହିଲେ । ଯୋହନ ନଯାଇ ସେପରି ରହିଲେ ।

ନୂତନ ନିୟମର କୌଣସି ଦୁଇ ଲେଖକ ଗୋଟିଏ କଥା କହନ୍ତି ନାହିଁ । ଯୀଶୁଙ୍କ କ୍ରୁଶବିଦ୍ଧ ସମୟ ବିଷୟରେ ମାର୍କ [୧୫ : ୨୫]ଦିନ ୯ ଘଣ୍ଟା କହିଲେ ଯୋହନ [୧୯ : ୧୪] ସକାଳ ପ୍ରାୟ ଛଅ ଘଣ୍ଟା ବୋଲି କହନ୍ତି, ଯାହା ଦ୍ୱିପହର ବାରଟା ସମୟ ହେବ ।

କ୍ରୁଶବିଦ୍ଧ ପରେ ଯେଉଁ ଅଭିଯୋଗ ପତ୍ରଟି ଯୀଶୁଙ୍କ ମସ୍ତକର ଊର୍ଦ୍ଧ୍ୱରେ ଲଗାଯାଇଥିଲା, ତାହା ମଧ୍ୟ ଚାରିଜଣ ସୁସମାଚାରକ ଠିକ୍ ଭାବରେ ଲେଖିପାରି ନାହାନ୍ତି ।

ମାଥିଉ ପଢ଼ିଲେ—
ଏ ଯିହୁଦୀମାନଙ୍କର ରାଜା ଯୀଶୁ
[ ୨୭ : ୩୭ ]
ମାର୍କ ପଢ଼ିଲେ—
ଯିହୁଦୀମାନଙ୍କର ରାଜା [ ୧୫ : ୨୬ ]
ଲୂକ ପଢ଼ିଲେ—
ଏ ଯିହୁଦୀମାନଙ୍କର ରାଜା [ ୨୩ : ୩୮ ]
ଯୋହନ ପଢ଼ିଲେ—
ନାଜରିତୀୟ ଯୀଶୁ, ଯିହୁଦୀମାନଙ୍କ ରାଜା [ ୧୯ : ୧୯ ]

ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ ମୃତ୍ୟୁ ପୂର୍ବରୁ ଗୀତସଂହିତା [ ୨୨ : ୧ ]ର ପ୍ରାର୍ଥନା— ହେ ମୋହର ପରମେଶ୍ୱର, ହେ ମୋହର ପରମେଶ୍ୱର, ତୁମ୍ଭେ କାହିଁକି ମୋତେ ପରିତ୍ୟାଗ କରିଅଛ ? ବୋଲି କହି ପ୍ରାଣତ୍ୟାଗ କଲେ ବୋଲି ମାଥିଉ ଓ ମାର୍କ କହନ୍ତି । ମାତ୍ର ଲୂକ [ ୨୩ : ୪୬ ]ଙ୍କ ଅନୁସାରେ ଯୀଶୁ କହିଥିଲେ—ହେ ପିତା, ତୁମ୍ଭ ହସ୍ତରେ ମୁଁ ଆପଣାର ଆତ୍ମା ସମର୍ପଣ କରୁଅଛି । ଯୋହନ [ ୧୯ : ୩୦ ] କୁହନ୍ତି ଯୀଶୁ କେବଳ "ସମାପ୍ତ ହେଲା" କହି ପ୍ରାଣତ୍ୟାଗ କଲେ ।

ଏହାର ପରବର୍ତ୍ତୀ ଘଟଣାଟି ଏଠି ଦେଖାଯାଉ । ପ୍ରଭାତରେ ଯେଉଁ ସମୟରେ ନାରୀମାନେ ସମାଧି ପାଖକୁ ଯାଇଥିଲେ ମାର୍କ [ ୧୬ : ୧ ]ଙ୍କ ଅନୁସାରେ ସେତେବେଳେ ସୂର୍ଯ୍ୟ ଉଠିଥିଲା; ମାତ୍ର ଯୋହନ [ ୨୦ : ୧ ] କହନ୍ତି ତାହା ଅନ୍ଧକାର ଥାଉଁ ଥାଉଁ ।

କିଏ ଆସିଥିଲେ—

ଯୋହନ—କେବଳ ମଗ୍‌ଦଲୀନୀ ମରିୟମ [ ୨୦ : ୧ ]

ମାଥିଉ—ମଗ୍‌ଦଲୀନୀ ମରିୟମ ଓ ଅନ୍ୟ ମରିୟମ [ ୨ : ' ]

ମାର୍କ—ମଗ୍‌ଦଲୀନୀ ମରିୟମ, ଯାକୁବଙ୍କ ମାତା ମରିୟମ ଶଲୋମୀ [ ୧୬ : ୧ ]

ଲୂକ—ମଗ୍‌ଦଲୀନୀ ମରିୟମ, ଯୋହାନା, ଯାକୁବଙ୍କ ମାତା ମରିୟମ ଓ ଏମାନଙ୍କ ସାଙ୍ଗରେ ଥିବା ଅନ୍ୟ ସ୍ତ୍ରୀ ଲୋକମାନେ [ ୨୪ : ୧୦ ]

ସେମାନେ ପହଞ୍ଚିବା ସମୟରେ ସମାଧି ବନ୍ଦ ବା ଖୋଲାଥିଲା ?

ଲୂକ—ଖୋଲାଥିଲା, ଯେହେତୁ ସମାଧିରୁ ପଥରଟା ଗଡ଼ାଇ ଦିଆଯାଇଥିଲା [ ୨୪ : ୨ ]

ମାଥିଉ—ବନ୍ଦଥିଲା, କାରଣ ଏହାପରେ ଜଣେ ଦୂତ ସ୍ୱର୍ଗରୁ ଓହ୍ଲାଇ ଆସି ସେହି ପଥର ଖଣ୍ଡିକ ଗଡ଼ାଇ ଦେଇ ତାହା ଉପରେ ବସିଲେ ( ୨ : ୨ )

ସମାଧି ପାଖରେ ସେମାନେ କାହାକୁ ଦେଖିଲେ ?

ମାଥିଉ—ଜଣେ ସ୍ୱର୍ଗ ଦୂତଙ୍କୁ ( ୨୮ : ୨ )

ମାର୍କ—ଜଣେ ଯୁବାଙ୍କୁ ( ୧୬ : ୫ )

ଲୂକ—ଦୁଇଜଣ ବ୍ୟକ୍ତିଙ୍କୁ ( ୨୪ : ୪ )

ଯୋହନ—ଦୁଇଜଣ ଦୂତଙ୍କୁ ( ୨୦ : ୧୨ )

ସେ ଲୋକମାନେ ବା ଦୂତମାନେ ସମାଧି ମଧ୍ୟରେ ଥିଲେ ନା ବାହାରେ ଥିଲେ ?

ମାଥିଉ—ସ୍ୱର୍ଗରୁ ଓହ୍ଲାଇ ଆସିଥିଲେ, ଅର୍ଥାତ୍ ବାହାରେ ଥିଲେ ( ୨୮ : ୨ )

ମାର୍କ ( ୧୬ : ୫ ) ମଧ୍ୟରେ ଥିଲେ ।

ଲୂକ ( ୨୪ ୩-୪ ) ମଧ୍ୟରେ ଥିଲେ ।

ଯୋହନ ( ୨୦ : ୧୨ ) ମଧ୍ୟରେ ଥିଲେ ।

ସେମାନେ ଛିଡ଼ା ହୋଇଥିଲେ ନା ବସିଥିଲେ ?

ଲୂକ ( ୨୪ : ୪ ) ଛିଡ଼ା ହୋଇଥିଲେ

ମାଥିଉ ( ୨୮ : ୨ ) ବସିଥିଲେ ।
ମାର୍କ ( ୧୬ : ୫ ) ବସିଥିଲେ ।
ଯୋହନ ( ୨୦ : ୧୨ ) ବସିଥିଲେ ।
ଏ ଦୂତଙ୍କୁ କିଏ ଦେଖି ଡରିଗଲେ ?
ମାଥିଉ ( ୨୮ : ୪ ) ପ୍ରହରୀମାନେ ।
ମାର୍କ ( ୧୬ : ୫ ) ନାରୀଗଣ ।
ଲୂକ ( ୨୪ : ୫ ) ନାରୀଗଣ ।
ନାରୀଗଣ ଯୀଶୁଙ୍କୁ ଦେଖିଥିଲେ କି ?
ମାଥିଉ—ହଁ ଦେଖିଥିଲେ ( ୨୮ : ୯ )
ଲୂକ—ନା ( ୨୪ : ୬ )
ସେମାନେ ଯାହା ଦେଖିଲେ ତା ଶିଷ୍ୟମାନଙ୍କୁ କହିଲେ କି ?
ଲୂକ—କହିଲେ ( ୨୪ . ୯ )
ମାର୍କ—ନା ( ୧୬ : ୮ )
କେତେଜଣ ଶିଷ୍ୟ ସମାଧି ପାଖକୁ ଯାଇଥିଲେ ?
ଲୂକ—କେବଳ ପିତର ( ୨୪ : ୧୨ )
ଯୋହନ—ପିତର ଓ ଅନ୍ୟଶିଷ୍ୟ ( ୨୦ : ୩ )
ଯୀଶୁ କେଉଁଠି ଶିଷ୍ୟମାନଙ୍କ ପାଖରେ ଉଭା ହେଲେ ?
ମାଥିଉ—ଗାଲିଲିରେ ( ୨୮ : ୧୬ )
ଲୂକ—ଯିରୂଶାଲମରେ ( ୨୪ : ୧୩ )
ଶିଷ୍ୟଗଣ ତାଙ୍କ ପୁନରୁତ୍ଥାନରେ ବିଶ୍ୱାସ କରୁଥିଲେ ?
ଯୋହନ—ହଁ ( ୨୦ : ୨୪-୨୯ )
ମାଥିଉ—ନା, କେହି କେହି ସନ୍ଦେହ ମଧ୍ୟ କରୁଥିଲେ ( ୨୮ : ୧୭ )

ସମଧର୍ମୀ (ସିନପ୍ଟିକ୍) ସୁସମାଚାର ପୁସ୍ତକରେ ଯୀଶୁ ପୁନରୁତ୍ଥାନ ପରେ ଥରେ ମାତ୍ର, ଶିଷ୍ୟଗଣଙ୍କୁ ଦେଖାଦିଅନ୍ତି, ଯେଉଁ କ୍ଷେତ୍ରରେ ଚତୁର୍ଥ ସୁସମାଚାର ଯୋହନ ତିନିଥର ଦେଖାଦେବା ଓ ଶେଷଥର ତିବିରିଆ ସମୁଦ୍ର କୂଳରେ ଦର୍ଶନ ଦେବା କଥା କୁହନ୍ତି ।

ପାଉଲ କିନ୍ତୁ ସୁସମାଚାରକମାନଙ୍କଠାରୁ ପୁନରୁତ୍ଥାନ ସମ୍ପର୍କରେ ପୃଥକମତ ପୋଷଣ କରନ୍ତି । ନାରୀଗଣଙ୍କ ସମାଧିପାଖକୁ ଯିବାକଥା ସେ ଜାଣି ନାହାନ୍ତି । ତାଙ୍କ ମତରେ ଯୀଶୁ କେଫାଙ୍କୁ ଆଉ ତା'ପରେ ଦ୍ୱାଦଶଙ୍କୁ ଦର୍ଶନ ଦେଲେ; ଏହି ଉତ୍ତାରେ ଏକାଥରେ ପାଞ୍ଚଶହଠାରୁ ଅଧିକ ଭାଇମାନଙ୍କୁ ଦର୍ଶନ

ଦେଲେ; (ପ୍ରଥମ କରିନ୍ଥୀୟ ୧୫ : ୫) ଇସକ୍ରିୟୋଥ ଯିହୁଦା ଯେ ସେମାନଙ୍କ ମଧ୍ୟରେ ନ ଥିଲା ବା ବାହାର ଯାଇଥିଲା ତାହା ପାଉଲ ଅଜ୍ଞାତ ଥିବା'ପରି ମନେହୁଏ । ପ୍ରେରିତ (୧ : ୧୫)ଙ୍କ ଅନୁସାରେ ସେଠି ପ୍ରାୟ ଶହେକୋଡ଼ିଏ ଜଣ ଏକତ୍ର ଥିଲେ ।

ପ୍ରେରିତ ( ୨୬ : ୨୩ ) ପୁନଶ୍ଚ କୁହାଯାଇଛି । ଖ୍ରୀଷ୍ଟ ପ୍ରଥମେ ମୃତମାନଙ୍କ ମଧ୍ୟରୁ ପୁନରୁତ୍ଥିତ ହେବେ ଯେଉଁ କ୍ଷେତ୍ରରେ ଏହା ଆମେ ଜାଣୁ ଯେ ନାଇନର ବିଧବା ପୁତ୍ରକୁ ସେ ପୁନରୁତ୍ଥିତ କରିଥିଲେ (ଲୂକ ୭ : ୧୨-୧୯) ଏବଂ ଲାଜାରସକୁ ମଧ୍ୟ ସେ ପୁନରୁତ୍ଥିତ କରିଥିଲେ (ଯୋହନ ୧୧ : ୪୩-୪୪) । ଏବଂ ଦ୍ୱିତୀୟ ରାଜାବଳି ( ୪ : ୩୨-୩୫ )ରେ ଇଲିଶାୟ ଗୋଟିଏ ବାଳକକୁ ପୁନର୍ଜୀବିତ କରିପାରିଥିଲେ । ଏ କ୍ଷେତ୍ରରେ ପ୍ରେରିତଙ୍କ ଖ୍ରୀଷ୍ଟଙ୍କ ପ୍ରଥମ ପୁନରୁତ୍ଥିତ ହେବା କଥା ଠିକ୍ ନୁଆ ମନେହୁଏ ନାହିଁ ।

ସୁସମାଚାରଗୁଡ଼ିକ ଆଶ୍ଚର୍ଯ୍ୟ କର୍ମଦ୍ୱାରା ପରିପୂରିତ । ମାଥିଉ ବାଇଶଟି, ମାର୍କ ପ୍ରାୟ ଊଣେଇଶଟି, ଲୂକ ପ୍ରାୟ ଅଠରଟି ଓ ଯୋହନ ପ୍ରାୟ ସାତଟି ଆଶ୍ଚର୍ଯ୍ୟ କର୍ମର ବର୍ଣ୍ଣନା କରନ୍ତି । ସେମାନଙ୍କ ମତରେ ଯୀଶୁ ରୋଗୀଙ୍କୁ ଭଲକଲେ, ଭୂତ ଛଡ଼ାଇଲେ, ସାଗରକୁ ଶାନ୍ତକଲେ, ଅନ୍ଧକୁ ଭଲକଲେ, ପାଞ୍ଚଟି ରୁଟି ଓ ଦୁଇଟି ମାଛ ଅସଂଖ୍ୟଙ୍କୁ ଖୁଆଇଲେ, ସାଗର ଉପରେ ଚାଲିଲେ, ଡିମ୍ବିରିଗଛକୁ ଅଭିଶାପ ଦେଲେ, ଜଳକୁ ମଦରେ ପରିବର୍ତ୍ତିତ କଲେ ଓ ମୃତକୁ ଜୀବିତ କଲେ ।

ମାଥିଉ କେବଳ ଜଣେ ମାତ୍ର ଯେ ପୂର୍ବ ଦେଶର କେତେକ ପଣ୍ଡିତ ଓ ତାରକା ସମ୍ପର୍କରେ କୁହନ୍ତି ଏବଂ ଶିଶୁମାନଙ୍କୁ ବଧ କରିବା କଥା ଉଲ୍ଲେଖ କରନ୍ତି ।

ଯୋହନ ଯେ କେବଳ ଜଣେ ଯେ କୁହନ୍ତି ଲାଜାରସ୍ ପୁନରୁତ୍ଥିତ କରିବା କଥା ।

ଲୂକ ଯେ କେବଳମାତ୍ର ଜଣେ ଯେ କୁହନ୍ତି ଯୀଶୁ ନାଇନର ବିଧବା ପୁତ୍ରକୁ ପୁନରୁତ୍ଥିତ କରିଥିଲେ ।

ଏ ସମସ୍ତ ଘଟଣାକୁ କିପରି ସଂଯୋଗ କରାଯାଇ ପାରିବ ?

ଏ ସମସ୍ତ ଆଶ୍ଚର୍ଯ୍ୟକର୍ମ ଯାହା କୁହାଯାଏ, ଯିହୁଦୀମାନଙ୍କ ମେଳରେ ଦେଖାଯାଇଥିଲା, ସେମାନେ ଏହା ବିଶ୍ୱାସ କରୁନଥିଲେ । ଯେଉଁମାନଙ୍କୁ ସେ ଭଲକଲେ, ସେମାନେ ତାଙ୍କର ଅନୁଗାମୀ ହୋଇନଥିଲେ, ପୁଣି ଯାହାଙ୍କୁ ସେ ମୃତରୁ ପୁନର୍ଜୀବିତ କଲେ, ସେମାନଙ୍କ ବିଷୟରେ ଅଧିକ କିଛି ଆମେ ଜାଣିବାକୁ

ପାରୁନା । ଭୂତ ଛଡ଼ାଇବା ବିଷୟ ମଥିଓ ଯୋହନ ଜାଣି ନଥିଲେ; କିନ୍ତୁ ଅନ୍ୟମାନେ କୁହନ୍ତି ତା ବିଶ୍ୱାସ କରନ୍ତୁ ନା । କୌଣସି ବୁଦ୍ଧିମାନ ବ୍ୟକ୍ତି ଭୂତ ବିଶ୍ୱାସ କରି ପାରିବେ ନାହିଁ । ଯଦି ଶିଷ୍ୟଗଣ କହନ୍ତି ଯେ ଯୀଶୁ ଭୂତ ଛଡ଼ାଉଥିଲେ, ତା'ହେଲେ ସେମାନେ ଭୁଲ କହୁଛନ୍ତି । ଆଉ ଯଦି ଖ୍ରୀଷ୍ଟ କୁହନ୍ତି ସେ କରିଛନ୍ତି ତା'ହେଲେ ଏହା ସୁସ୍ଥ ମସ୍ତିଷ୍କରେ ଏହା କୁହାଯାଇଛି ବୋଲି ପ୍ରତିପାଦିତ କରାଯାଇ ପାରିବନାହିଁ ।

ଯଦି ଭୂତଛଡ଼ାଇବା କଥା ଭୁଲ, ତା'ହେଲେ ଲେଖକଗଣ ଅଜ୍ଞ ଏବଂ ଅସମ୍ମାନିତ । ଯଦି ସେମାନେ ଅଜ୍ଞ ତେବେ କିପରି ସେମାନେ ଈଶ୍ୱର ପ୍ରଣୋଦିତ ?

ତେଣୁ ମୁଁ ପଚାରେ—କାହିଁକି ଏକାଧିକ ସୁସମାଚାର ? ଗୋଟିଏ ସତ୍ୟ ସୁସମାଚାର ଅପେକ୍ଷା ପରସ୍ପର ବିରୋଧ କରୁଥିବା ଅନେକ ସୁସମାଚାରର ଆବଶ୍ୟକତା କ'ଣ ? ମୋର ବିଶ୍ୱାସର ଧ୍ରୁବୀକରଣ ପାଇଁ ମୁଁ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କର ଏକମାତ୍ର ନିର୍ବିବାଦ ଦିବ୍ୟ ଚରିତରେ ବିଶ୍ୱାସ କରେ ।

ମାତ୍ର ମାଥିଉ, ମାର୍କ, ଲୂକ ଓ ଯୋହନଙ୍କୁ ପଢ଼ି ସାରିବାପରେ ମୁଁ ଅନୁଭବ କରୁଛି ଯେ ଗୀର୍ଜା ମତେ ଓ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କୁ ପ୍ରବଞ୍ଚିତ କରିଛି ।



# ବାଇବଲରେ ଆଉ କ'ଣ ଲେଖା ଅଛି

ଆମ୍ଭେମାନେ ସର୍ବୋଚ୍ଚ ଧର୍ମ ପୁସ୍ତକକୁ ବିଜ୍ଞାନ ବୋଲି ବିବେଚନା କରୁ ।

···ବାଇବେଲରେ ଈଶ୍ୱର ଅଲୌକିକତା ସମ୍ବନ୍ଧରେ ଯେ ସମସ୍ତ ଦୃଢ଼ତର ଲକ୍ଷଣ ଅଛି; ଅନ୍ୟ କୌଣସି ନାଗରିକ ଇତିହାସରେ ସେପରି ନାହିଁ ।

ବୈଜ୍ଞାନିକ ଆଇନଷ୍ଟାଇନଙ୍କ ମନ୍ତବ୍ୟ ପଢ଼ିବା ପରେ ମୋର ମନେହେଲା, ସେ ବୈଜ୍ଞାନିକ ଗବେଷଣାରେ ଏତେ ବ୍ୟସ୍ତ ଥିଲେ ଯେ ବାଇବଲ ଭଲ ଭାବରେ ପଢ଼ିପାରି ନଥିବେ ।

ନିଉଟନଙ୍କ ପରି ହର୍ବର୍ଟ ଡବ୍ଲ୍ୟୁ, ଆର୍ମଷ୍ଟ୍ରଙ୍ଗ ଆଉ ଏକପ୍ରକାର ମନ୍ତବ୍ୟ ଦିଅନ୍ତି । ତାଙ୍କ ମତରେ "ହୁଏତ ସମଗ୍ର ବାଇବଲ ସତ୍ୟ କିମ୍ବା ସମସ୍ତ ମିଥ୍ୟା ।" ମାତ୍ର ସେ ତାଙ୍କର ସମଗ୍ର ଜୀବନ ମଧ୍ୟରେ ଏହାହିଁ ପ୍ରମାଣ କରି ଚାଲିଛନ୍ତି ଯେ, ସମଗ୍ର ବାଇବଲ ହିଁ ସତ୍ୟ ।

ଏ ପ୍ରବନ୍ଧଟିର ଉଦ୍ଦେଶ୍ୟ ବାଇବଲକୁ ସମ୍ପୂର୍ଣ୍ଣ ସତ୍ୟ କିମ୍ବା ସମ୍ପୂର୍ଣ୍ଣ ମିଥ୍ୟା ବୋଲି ପ୍ରମାଣ କରିବା ନୁହେଁ । ସାରା ବାଇବଲ ସତ୍ୟ ବୋଲି କହୁଥିବା ବ୍ୟକ୍ତି ନିଶ୍ଚିତ ରୂପେ ଜଣେ ଧର୍ମଯାଜକ । ପୁନଶ୍ଚ ସମଗ୍ର ବାଇବଲକୁ ମିଥ୍ୟା ବୋଲି କହୁଥିବା ବ୍ୟକ୍ତି ଜଣେ ନାସ୍ତିକ । ମୁଁ ଜଣେ ନାସ୍ତିକ କିମ୍ବା ଧର୍ମଯାଜକ ନୁହେଁ । ଜଣେ ବିଦଗ୍ଧ ପାଠକ ଭାବରେ ମୁଁ ବାଇବଲଟି ପଢ଼ିଛି । ବାଇବଲ ସହ ମୋର ସମ୍ପର୍କ ସାହିତ୍ୟ କ୍ଷେତ୍ରରେ । ଅନେକ ସମୟରେ ଲୋକେ ପଚାରନ୍ତି ବାଇବଲରେ କ'ଣ ଅଛି ? ଯାଜକ ଉତ୍ତର ଦିଅନ୍ତି ଏଥିରେ କ'ଣ ନାହିଁ ? ବାଇବଲଟିକୁ ଆମୂଳଚୂଳ ପାଠ କରନ୍ତୁ, ନିଜେ ଜାଣିପାରିବେ ଏଥିରେ କ'ଣ ଅଛି କ'ଣ ନାହିଁ ।

ବାଇବଲକୁ କେତେକ ଧର୍ମଶାସ୍ତ୍ର ବୋଲି କହନ୍ତି । ଏହା ପୂର୍ଣ୍ଣତଃ ସତ୍ୟ ନୁହେଁ । ପୁରାତନ ନିୟମ ହିବ୍ରୁମାନଙ୍କର ରାଷ୍ଟ୍ରୀୟ ସାହିତ୍ୟ ଅଟେ । ସେମାନେ ବିଶ୍ୱାସ କରୁଥିଲେ ଯେ, ପରମେଶ୍ୱରଙ୍କ ଭାଷା ଥିଲା ହିବ୍ରୁ । ଗ୍ରୀକ୍ ଭାଷାରେ ଲିଖିତ ସାହିତ୍ୟକୁ ସେମାନେ ଅସ୍ୱୀକାର କରୁଥିଲେ କାରଣ ଏହା ହିବ୍ରୁ

ନ ଥିଲା । ଧାର୍ମିକଗଣ ବାଇବଲକୁ ପରମେଶ୍ୱରଙ୍କ ବାକ୍ୟ ବୋଲି କୁହନ୍ତି । ମାତ୍ର ଏଥିର କୌଣସି ବାକ୍ୟ ତା ଶବ୍ଦ ପରମେଶ୍ୱରଙ୍କଦ୍ୱାରା ଲିଖିତ ବା କଥିତ ନୁହେଁ । କାରଣ "କେହି କେବେ ଈଶ୍ୱରଙ୍କୁ ଦେଖି ନାହିଁ ।" (ଯୋହନ ୧ : ୧୮) ସେ ଦୃଷ୍ଟିରୁ ବାଇବଲ "ପରମେଶ୍ୱରଙ୍କ ସମ୍ପର୍କରେ ଲିଖିତ ଗ୍ରନ୍ଥ" କହିଲେ ଠିକ୍ ହେବ । ଉପଦେଶକ ଗ୍ରନ୍ଥ ପଢ଼ି ମତେ ନୈରାଶ୍ୟ ଲାଗିଲା । ଏହା ଏକ ନୈରାଶ୍ୟବାଦୀ ଗ୍ରନ୍ଥ ଯେଉଁଥିରେ କେବଳ ଅସଫଳତା ଓ ନୈରାଶ୍ୟବାଦ ହିଁ ଭରପୁର ହୋଇ ରହିଛି । ଠିକ୍ ସେହିପରି ଏଷ୍ଟର ଗ୍ରନ୍ଥଟି ପରମେଶ୍ୱରଙ୍କ ନାମସୁଦ୍ଧା ଉଲ୍ଲେଖ କରି ନଥିବା ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି । ପରମ ଗୀତରେ ମଧ୍ୟ ଏ ପ୍ରକାର ହୋଇଛି । ପୁରାତନ ନିୟମର ଶତକରୁ ପନ୍ଦର ଭାଗ ସାହିତ୍ୟ ଅଧାର୍ମିକ । ସେଥିହେତୁ ଏହା ଯିହୁଦୀମାନଙ୍କ ଜାତୀୟ ସାହିତ୍ୟ । ଯିହୁଦୀମାନେ ବିଭିନ୍ନ ଜାତି ପାଖରୁ ଉଦାରତା ସହ ଅନେକ କଥା ଗ୍ରହଣ କରିଛନ୍ତି । ଗୀତ ସଂହିତାର ୧୯ରୁ ୧୦୪ ପର୍ଯ୍ୟନ୍ତ ଇଜିପ୍ସିଏନ୍‌ଙ୍କ ପାଖରୁ ନିଆଯାଇଛି । ସେହିପରି ଆୟୁବ ଗ୍ରନ୍ଥ ଆରବୀୟମାନଙ୍କଠାରୁ ନିଆଯାଇ ବାଇବଲକୁ ଏକ ଉଚ୍ଚକୋଟୀର ସାହିତ୍ୟ କରି ତୋଳି ଧରିଛି । ଯୀଶୁଙ୍କ ଉପଦେଶଗୁଡ଼ିକ ବୁଦ୍ଧ ଧର୍ମରୁ ଯାଇଛି । ଏ ପ୍ରକାର ପ୍ରଭାବ ପ୍ରାୟତଃ ବିଭିନ୍ନ ଗ୍ରନ୍ଥରେ ଦେଖିବାକୁ ମିଳିବ ।

ସମ୍ପୂର୍ଣ୍ଣ ବାଇବଲ ପଢ଼ିବାର ସୁଯୋଗ ମୁଁ ପାଇଛି । ଏଥିର ଅନେକ ବାକ୍ୟ ମୋର ହୃଦୟକୁ ସ୍ପର୍ଶ କରିଛି । ଯେପରି—

ଈଶ୍ୱରଙ୍କୁ ପ୍ରେମ କରୁଅଛି ବୋଲି କହି ଯଦି କେହି ଆପଣା ଭାଇକୁ ଘୃଣା କରେ, ତାହାହେଲେ ସେ ମିଥ୍ୟାବାଦୀ, ଯେଣୁ ଯେଉଁ ଭାଇକୁ ଦେଖିଅଛି, ଯଦି ତାହାକୁ କେହି ପ୍ରେମ ନ କରେ, ତା'ହେଲେ ଯେଉଁ ଈଶ୍ୱରଙ୍କୁ ସେ ଦେଖି ନାହିଁ, ତାହାଙ୍କୁ ପ୍ରେମ କରିପାରେ ନାହିଁ । ( ପ୍ରଥମ ଯୋହନ ୪ : ୨୦ )

ସ୍ତ୍ରୀଜାତ ମନୁଷ୍ୟ ଅଳ୍ପାୟୁ ଓ ଦୁଃଖରେ ପରିପୂର୍ଣ୍ଣ । ସେ ପୁଷ୍ପତୁଲ୍ୟ ପ୍ରସ୍ଫୁଟିତ ହୋଇ କଟାଯାଏ; ସେ ଛାୟାତୁଲ୍ୟ ବହିଯାଉଥିବାରୁ ସ୍ଥିର ନ ଥାଏ । ଆଉ ତୁମ୍ଭେ ଏପରି ଜଣକ ଉପରେ କ'ଣ ଆପଣା ଦୃଷ୍ଟି ରଖୁଅଛ ଓ ଆପଣା ନିକଟକୁ ବିଚାରାର୍ଥେ କ'ଣ ମୋତେ ଆଣୁଅଛ ? ଅଶୁଚି ବସ୍ତୁରୁ ଶୁଚି ବସ୍ତୁ କିଏ ଉତ୍ପନ୍ନ କରିପାରେ ? ଜଣେ ନାହିଁ । (ଆୟୁବ ୧୪ : ୧-୪)

ଯଦିଓ ବାଇବଲର ଭାଷା ଅତି ସରଳ ଓ ସାହିତ୍ୟିକ ଅଟେ, ତଥାପି ଅନେକ କଥା ବୁଝି ହୁଏ ନାହିଁ । ମୋଶାଙ୍କ ଲିଖିତ ପଞ୍ଚଗ୍ରନ୍ଥରେ ମୋଶାଙ୍କ

ଉଦ୍‌ବୋଧନ ଓ ତାଙ୍କ କବରର ବର୍ଣ୍ଣନା ଦେଖି ମନେହୁଏ ଯେ, ଏହା କେବେ ମଧ୍ୟ ମୋଶାଙ୍କ ରଚିତ ନୁହେଁ । ଏଥିପାଇଁ ଦ୍ୱିତୀୟ ବିବରଣ ( ୩୪ : ୫-୭ ) ଦେଖାଯାଇପାରେ । କେବଳ ସେତିକି ନୁହେଁ ଏଥିରେ ମୋଶାଙ୍କ ପରବର୍ତ୍ତୀ ଯୁଗର ବ୍ୟକ୍ତିମାନଙ୍କ ବିଷୟ ମଧ୍ୟ ବର୍ଣ୍ଣିତ ହୋଇଅଛି । ଆଦି ପୁସ୍ତକ ୩୬ ପଦର ୩୧ ଏବଂ ୩୨ ବାକ୍ୟ ଦେଖାଯାଇପାରେ । ସାରଳା ଦାସଙ୍କ ରଚନାରେ ଯଦି ଉପେନ୍ଦ୍ର ଭଞ୍ଜଙ୍କ ନାମ ଉଲ୍ଲେଖ ଥାଏ, ତା'ହେଲେ ସାରଳାଦାସ ଉକ୍ତ ପୁସ୍ତକର ରଚୟିତା ହୋଇ ନ ପାରନ୍ତି ।

ପ୍ରଥମରୁ ମୁଁ କହୁଛି ବାଇବଲ ଈଶ୍ୱରଙ୍କ ବାଣୀ ନୁହେଁ କିମ୍ବା ଈଶ୍ୱର ପ୍ରଣୋଦିତ ନୁହେଁ । ଯଦି ଏହା ଈଶ୍ୱରଙ୍କ ପ୍ରେରଣାରେ ଲିଖିତ ତେବେ ଏଥିରେ ପରସ୍ପର ବିରୋଧୀ ବାକ୍ୟ ରହିବା ଅନୁଚିତ । ମାତ୍ର ଅନ୍ୟୁନପକ୍ଷେ ଏଥିରେ ଦୁଇ ହଜାର ପରସ୍ପର ବିରୋଧୀ ବାକ୍ୟ ରହିଛି । ଉଦାହରଣ ସ୍ୱରୂପ ଯାତ୍ରା ପୁସ୍ତକରେ ( ୨୦ : ୧୫ )ରେ କୁହାଯାଇଛି ତୁମ୍ଭେ ଚୋରି କରିବ ନାହିଁ ତ ସେହି ପୁସ୍ତକରେ ପୁଣି ଆଦେଶ ଦିଆଯାଇଛି ତୁମ୍ଭେମାନେ ମିଶରୀୟ ଲୋକମାନଙ୍କ ଦ୍ରବ୍ୟ ହରଣ କରିବ । (୩ : ୨୨-୨୩) ପରମେଶ୍ୱର ଆଦମକୁ ଆଜ୍ଞା ଦିଅନ୍ତି ଯେ ଯେଉଁଦିନ ସେ ସଦ୍ ସତ୍‌ଜ୍ଞାନଦାୟକ ବୃକ୍ଷର ଫଳ ଭୋଜନ କରିବ ସେହିଦିନ ନିତାନ୍ତ ମରିବ । ଆଦି ୨ : ୧୭) ପୁନଶ୍ଚ ସେହି ଗ୍ରନ୍ଥରେ କୁହାଯାଇଛି ଆଦମ ସର୍ବସୁଦ୍ଧା ନଅଶ ତିରିଶ ବର୍ଷ ବଞ୍ଚିଥିଲେ । (୫ : ୫) ଏବ୍ରୀ (୧୧ : ୧୭)ରେ କୁହାଯାଇଛି ଅବ୍ରାହମଙ୍କ ଏକମାତ୍ର ପୁତ୍ର ନାମ ଯିସ୍‌ହାକ୍ ଥିଲା ତ ଆଦି ପୁସ୍ତକରେ କୁହାଯାଇଛି ଅବ୍ରାହମ୍‌ଙ୍କ ଅନେକ ପୁତ୍ର ଥିଲେ । ସେମାନଙ୍କ ନାମ ଥିଲା ଇଶ୍ମାୟେଲ (୧୬ : ୧୫) 'ସିମ୍ରଣ, ଯକ୍‌ଶନ୍, ମଦାନ, ମିଦୟନ, ଯିଶବକ୍ ଓ ଶୂହ । (୨୫ : ୧-୨)

ଆମେ ସନ୍ଦେହରେ ପଡ଼ିଯାଉ ମିଶରକୁ ଆଗତ ଯାକୁବଙ୍କ ପରିଜନ ସର୍ବସୁଦ୍ଧା ସତୁରି ଜଣ ଥିଲେ (ଆଦି ୪୬ : ୨୭) ନା ପଞ୍ଚସ୍ତରି ଜଣ ଥିଲେ । (ପ୍ରେରିତ ୭ : ୧୪) ଶାଉଲଙ୍କ କନ୍ୟା ମୀଖଲ ଆଜୀବନ ବନ୍ଧ୍ୟା ଥିଲେ (୨ୟ ଶାମୁଏଲ ୬ . ୨୩) ନା ତାଙ୍କର ପାଞ୍ଚପୁତ୍ର ଥିଲେ । (ହେଁହ ୨୧ : ୮) ଯିଶୀଙ୍କ ଅଷ୍ଟମ ସନ୍ତାନ ଦାଉଦ ଥିଲେ (୧ମ ଶାମୁଏଲ ୧୬ : ୧୦-୧୧) ନା ସେ ତାଙ୍କ ସପ୍ତମ ସନ୍ତାନ ଥିଲେ ।

ବାଇବଲରେ ଅନେକ ଅବିଶ୍ୱାସନୀୟ କଥା ରହିଛି । ଯାହା ଆମେ ବିଶ୍ୱାସ କରିବାକୁ ବାଧ୍ୟ । ଯେପରି ସୂର୍ଯ୍ୟଙ୍କ ପୂର୍ବରୁ ଦିନ ଓ ରାତି ଥିଲା । (ଆଦି ୧) ହାରୋଣ ମିଶରର ସମସ୍ତ ଜଳ ଉପରେ ଆପଣା ହସ୍ତେ ବିସ୍ତାର କରନ୍ତେ

ବେଙ୍ଗସମୂହ ଉଠି ମିଶର ଦେଶରେ ବ୍ୟାପିଗଲେ । (ଯାତ୍ରା ୮ : ୬) ଯୀଶୁ ଡିମ୍ବିରି ଗଛକୁ ଅଭିଶାପ ଦେଲେ କାରଣ ଏଥିରେ ଅସମୟରେ ଫଳ ଧରି ନଥିଲା । (ମାର୍କ ୧୧ : ୧୨-୧୪) ଆକାଶ ଗ୍ରହମାନେ ଛାୟା ଦର୍ପଣ ପରି ଦୃଢ଼ । (ଆୟୁବ ୩୭ : ୧୮) ଯିହୋଶୂୟ, ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ଗତିପଥ ବନ୍ଦ କରିଦେଲେ । (ଯିହୋଶୂୟ ୧୦ : ୧୨-୧୩) ସଂସାର ଛ'ଦିନରେ ସୃଷ୍ଟି ହେଲା । (ଆଦି ୧)

ସୃଷ୍ଟି ସମ୍ପର୍କରେ ବହୁ ଅମୂଳକ ଧାରଣା ଏଥିରେ ରହିଛି । ଆଦି ପୁସ୍ତକରେ ଲେଖାଅଛି ଆଦ୍ୟରେ ପରମେଶ୍ୱର ଆକାଶମଣ୍ଡଳ ଓ ପୃଥିବୀ ସୃଷ୍ଟି କଲେ । ଏଠି ଆରମ୍ଭ ଅର୍ଥ କ'ଣ ? ଏ ସୃଷ୍ଟି କ'ଣ ପ୍ରଥମ ନା ଏହା ପୂର୍ବରୁ ମଧ୍ୟ ସୃଷ୍ଟି ହୋଇଥିଲା ? ବିଶ୍ୱର ଯଦି ଆରମ୍ଭ ଅଛି ପରମେଶ୍ୱରଙ୍କ ମଧ୍ୟ ଆରମ୍ଭ ଅଛି । ସୃଷ୍ଟି ପୂର୍ବରୁ ପରମେଶ୍ୱର କ'ଣ କରୁଥିଲେ ? ହଠାତ୍ ତାଙ୍କ ମନରେ ସୃଷ୍ଟି କରିବାର ଇଚ୍ଛା କାହିଁକି ଜାଗ୍ରତ ହେଲା ? ପୃଥିବୀର ଆକାର ସମ୍ପର୍କରେ ବାଇବଲ କୁହେ ଏହା ଚାରିକୋଣିଆ । (ପ୍ରକାଶିତ ବାକ୍ୟ ୭ : ୧) ଏଣୁ ବାଇବଲରେ ପୃଥିବୀ ଅର୍ଦ୍ଧେକ ଗୋଲାକାର ବୋଲି ବର୍ଣ୍ଣନା ନାହିଁ । ସୃଷ୍ଟି କରି ମଧ୍ୟ ସ୍ରଷ୍ଟା ଏହାର ଆକାର ସମ୍ପର୍କରେ ଅଜ୍ଞାତ ଥିବାପରି ମନେ ହୁଏ । ମେଗେଲାନ୍ ସମଗ୍ର ପୃଥିବୀ ଭ୍ରମଣ କରି ଆସିଲେ । ସେ କହି ଉଠିଲେ ପୃଥିବୀ କମଳାଲେମ୍ବୁ ପରି ଗୋଲ । ୧୫୧୯ରେ ଏ ବିଶ୍ୱବିଜୟୀ ବୀର ଯାତ୍ରା ଆରମ୍ଭ କଲେ । ଯିବା ପୂର୍ବରୁ ପାଦ୍ରୀ ତାଙ୍କୁ କହିଲେ —ବନ୍ଧୁ, ପୃଥିବୀ ଚେପ୍ଟା, ଏଣୁ ଯାଅନାହିଁ, ଯଦି ଯାଅ ପୃଥିବୀ ଯେଉଁଠି ଶେଷ ହୋଇଛି ସେଠି ପଡ଼ିଯିବ । ମେଗେଲାନ୍‌ଙ୍କ ଉତ୍ତର ଥିଲା ମୁଁ ଚନ୍ଦ୍ର ଦେହରେ ପୃଥିବୀର ଛାୟା ଦେଖିଛି । ମୋ ପାଇଁ ଖ୍ରୀଷ୍ଟଧର୍ମ ଅପେକ୍ଷା ଏହି ଛାୟା ଅଧିକ ବିଶ୍ୱସନୀୟ । ତାଙ୍କ ଜାହାଜ ସମଗ୍ର ପୃଥିବୀ ପ୍ରଦକ୍ଷିଣ କରି ଫେରିଆସିଲା ।

ସୃଷ୍ଟିର ନିୟମ ଅନୁସାରେ ଆଖି ପାଇଁ ସୂର୍ଯ୍ୟର ଆବଶ୍ୟକତା ଅଛି । ସୂର୍ଯ୍ୟର ଅଭାବରେ ଆଖି କିଛି ଦେଖିପାରିବ ନାହିଁ । ସେହିପରି ବୁଦ୍ଧି ପାଇଁ ବିଦ୍ୟାର ଆବଶ୍ୟକତା ଅଛି । ବିଦ୍ୟାବିନା ବୁଦ୍ଧିର କୌଣସି ମୂଲ୍ୟ ନାହିଁ; କିନ୍ତୁ ବାଇବଲରେ ଈଶ୍ୱର ପ୍ରଥମେ ଆଖି ସୃଷ୍ଟି କରନ୍ତି ଏବଂ ପରେ ସୂର୍ଯ୍ୟଙ୍କୁ ନିର୍ମାଣ କରନ୍ତି । ଅର୍ଥାତ୍ ପ୍ରଥମେ ଈଶ୍ୱର ବୁଦ୍ଧି ଦିଅନ୍ତି, ତା'ପରେ ବିଦ୍ୟାର ବିକାଶ ଘଟାନ୍ତି । ଏହା ଆମେ କିପରି ବିଶ୍ୱାସ କରିବୁ ଯେ ଚାରି ହଜାର ବର୍ଷ ପର୍ଯ୍ୟନ୍ତ ଆଖି ସୂର୍ଯ୍ୟବିନା ଦେଖି ପାରୁଥିଲା ଏବଂ ବୁଦ୍ଧି ଈଶ୍ୱରଙ୍କ ଜ୍ଞାନବିନା କାର୍ଯ୍ୟ କରି ଚାଲିଥିଲା ।

ବାଇବଲରେ ପରମେଶ୍ୱର ଏକ ତତ୍ତ୍ୱ ନୁହନ୍ତି । ସେ ଜଣେ ବ୍ୟକ୍ତି । ଏଣୁ ସେ ତ୍ରୁଟି ରହିତ କିପରି ହେବେ ? ବିଶ୍ୱର ମହାନ୍ ମନୀଷୀଗଣ ପରମେଶ୍ୱରଙ୍କୁ ଏକ ନିତ୍ୟ, ସର୍ବଜ୍ଞ, ନିର୍ଦ୍ଦୋଷ, ପବିତ୍ର, ସର୍ବଶକ୍ତିମାନ୍, ନ୍ୟାୟକାରୀ ଦୟାଳୁ,

ଅନୁପମ, ସର୍ବବ୍ୟାପକ, ସର୍ବାନ୍ତର୍ଯ୍ୟାମୀ, ସର୍ବାଧାର ବୋଲି କୁହନ୍ତି । ମଧ୍ୟ ବାଇବଲ ପାଠକଲେ ଜଣାଯାଏ ଯେ ସେ ତୈମନରୁ ଆସିଲେ ଓ ଯେ ଧର୍ମମୟ ସେ ପାରଣ ପର୍ବତରୁ ଆସିଲେ । ତାହାଙ୍କ ପ୍ରତାପ ଆକାଶମଣ୍ଡଳକୁ ଆଚ୍ଛନ୍ନ କଲା, ଆଉ ପୃଥିବୀ ତାହାଙ୍କ ପ୍ରଶଂସାରେ ପରିପୂର୍ଣ୍ଣ ହେଲା । ପୁଣି ତାହାଙ୍କର ତେଜ ଦୀପ୍ତି ତୁଲ୍ୟ ହେଲା, ତାହାଙ୍କ ହସ୍ତରୁ କିରଣ ନିର୍ଗତ ହେଲା, ଆଉ ସେ ସ୍ଥାନ ତାହାଙ୍କ ପରାକ୍ରମର ଅନ୍ତରାଳ । ତାହାଙ୍କ ଆଗେ ଆଗେ ମହାମାରୀ ଗମନ କଲା, ଆଉ ତାହାଙ୍କ ପଦଚିହ୍ନରୁ ଅଗ୍ନିବାଣ ନିର୍ଗତ ହେଲା । ସେ ଠିଆ ହୋଇ ପୃଥିବୀର ପରିମାଣ କଲେ । ସେ ଦୃଷ୍ଟିପାତ କରି ଗୋଷ୍ଠୀଗଣଙ୍କୁ ଭିନ୍ନ ଭିନ୍ନ କରି ତଡ଼ିଦେଲେ, ଆଉ ଚିରସ୍ଥାୟୀ ପର୍ବତଗଣ ଛିନ୍ନଭିନ୍ନ ହୋଇଗଲେ, ନିତ୍ୟସ୍ଥାୟୀ ଉପପର୍ବତଗଣ ନତ ହେଲେ । (ହବକ୍‌କୂକ୍ ୩ : ୩-୬) ପୁନଶ୍ଚ ତାହାଙ୍କ ନାସିକାରୁ ଧୂମ ନିର୍ଗତ ହେଲା ଓ ତାହାଙ୍କ ମୁଖରୁ ନିର୍ଗତ ଅଗ୍ନି ଗ୍ରାସ କଲା, ତଦ୍ଦ୍ୱାରା ଅଙ୍ଗାର ପ୍ରଜ୍ୱଳିତ ହେଲା । ସେ ମଧ୍ୟ ଆକାଶମଣ୍ଡଳକୁ ନତ କରି ଓହ୍ଲାଇ ଆସିଲେ ଓ ନିବିଡ଼ ଅନ୍ଧକାର ତାହାଙ୍କ ପାଦତଳେ ଥିଲା, ପୁଣି ସେ କିରୂବ ଉପରେ ଆରୋହଣ କରି ଉଡ଼୍ଡୀୟମାନ ହେଲେ, ସେ ବାୟୁରପକ୍ଷ ଉପରେ ଦେଖାଗଲେ । (୨ୟ ଶାମୁୟେଲ ୨୨ : ୯-୧୧) ପୁରାତନ ନିୟମରୁ ଜ୍ଞାତ ହୁଏ ଯେ ତାଙ୍କ ନାମ ଯେହୋବା ଥିଲା ଏବଂ ସୃଷ୍ଟି ପୂର୍ବରୁ ତାଙ୍କ ଆତ୍ମା ଜଳ ଉପରେ ବ୍ୟାପ୍ତ ଥିଲା ।

ତାଙ୍କ ସମ୍ପର୍କରେ କୁହାଯାଇଛି ଯେ ସେ ବୀର ପରି ଲୋକଙ୍କ ଉପରକୁ ଧାଇଁ ଆସନ୍ତି । (ଆୟୁବ ୧୬ : ୧୪) ସେ ସିଂହତୁଲ୍ୟ ଗର୍ଜନ କରନ୍ତି । (ହୋଶେୟ ୧୧ : ୧୦) ସେ ପୃଥିବୀକୁ ଅଭିଶାପ ଦିଅନ୍ତି । (ଆଦି ୨ : ୨୧) ସେ ମନ ପରିବର୍ତ୍ତନ କରନ୍ତି । (ଯାତ୍ରା ୩୨ : ୧୪) ସେ ଅନିଷ୍ଟ କରନ୍ତି । (ଯିଶାଇୟ ୪୫ : ୭) ସେ ନିଜର ପୃଷ୍ଠଦେଶ ଦେଖାନ୍ତି । (ଯାତ୍ରା ୩୩ : ୨୩) ସେ ଭାବବାଦୀଙ୍କୁ ଭୁଲାନ୍ତି ଓ ଭ୍ରାନ୍ତ କରନ୍ତି । (ଯିରିମିୟ ୨୦ : ୭) ସେ ଲମ୍ପଟମାନଙ୍କ ପରି କୌଣସି ସମ୍ଭ୍ରାନ୍ତ କନ୍ୟା ଗ୍ରୀବା ଲମ୍ବାଇ, କଟାକ୍ଷପାତ କରି ବୁଲିବାର ଦେଖିଲେ ତାକୁ ଉଲଗ୍ନ କରିବାକୁ ଭଲପାନ୍ତି ଏବଂ ତାଙ୍କର ମସ୍ତକ ଖାଜୁମୟ କରିବାକୁ ଇଚ୍ଛା କରନ୍ତି । (ଯିଶାଇୟ ୩ : ୧୬-୧୭) ସେ ମିସ୍ରୀୟ ପଥ ଓ ଅର୍ଶ ଓ ଘାଉ ଓ କୁଣ୍ଡି ଆଦ୍ୱାରା ଆଘାତ କରନ୍ତି, ଯେଉଁଥିରୁ ମନୁଷ୍ୟ ସୁସ୍ଥ ହୋଇପାରେ ନାହିଁ । (୨ୟ ବିବରଣ ୨୮ : ୨୭) ସେ ସୟତାନ ସହିତ କଥୋପକଥନ କରନ୍ତି । (ଆୟୁବ ୧ : ୭) ଏବଂ ମନୁଷ୍ୟକୁ ସୟତାନ ହସ୍ତରେ ପ୍ରାଣରକ୍ଷା ପାଇଁ ଅର୍ପଣ କରନ୍ତି । (ସେହି ୨ : ୬) ସେ ଆପଣା ଦାସଗଣଙ୍କୁ ବିଶ୍ୱାସ କରନ୍ତି ନାହିଁ ଓ ତାଙ୍କ ପ୍ରତି ତ୍ରୁଟିର ଦୋଷାରୋପ କରନ୍ତି । (ସେହି ୪ : ୧୮) ସେ

ସ୍ୱାମୀ ନିକଟରୁ ଭାର୍ଯ୍ୟାଙ୍କୁ ଛଡ଼ାଇ ତାଙ୍କ ଆତ୍ମୀୟ ଲୋକଙ୍କ ସହିତ ଶୟନ କରନ୍ତି । (୨ ସାମୁୟେଲ ୧୨ : ୧୧)

ପୁନଶ୍ଚ ସେ ବନ୍ଦୀ ଓ ନିର୍ବାସିତ ଲୋକମାନଙ୍କୁ ବିବସ୍ତ୍ର ଓ ଶୂନ୍ୟପଦ ଓ ଅନାବୃତ କଟି କରି ଘେନି ଯାନ୍ତି । (ଯିଶାଇୟ ୨୦ : ୪) ତାଙ୍କ ନିଃଶ୍ୱାସରେ ହିମାନୀ ଜନ୍ମେ । (ଆୟୁବ ୩୭ : ୧୦) ସେ ଛୁଆହରା ଭଲ୍ଲୁକୀ ପରି ଲୋକଙ୍କୁ ହାବୁଡ଼ି ଯାନ୍ତି ଓ ସେମାନଙ୍କ ହୃଦୟକୋଷ ବିଦୀର୍ଣ୍ଣ କରନ୍ତି ଓ ସେମାନଙ୍କୁ ଗ୍ରାସ କରନ୍ତି । (ହୋଶେୟ ୧୩ : ୮) ସେ ପୁରୁଷଠାରୁ ସ୍ତ୍ରୀ ପର୍ଯ୍ୟନ୍ତ, ବାଳକଠାରୁ ସ୍ତନ୍ୟପାୟୀ ଶିଶୁ ପର୍ଯ୍ୟନ୍ତ, ଗୋରୁଠାରୁ ମେଷ ପର୍ଯ୍ୟନ୍ତ, ଓଟଠାରୁ ଗଧ ପର୍ଯ୍ୟନ୍ତ ସମସ୍ତଙ୍କୁ ବଧ କରିବା ପାଇଁ ଆଦେଶ ଦିଅନ୍ତି । (ପ୍ରଥମ ସାମୁୟେଲ ୧୫ : ୩୭) ଏପରିକି ସେ ଚର୍ମର ବସ୍ତ୍ର ପ୍ରସ୍ତୁତ କରନ୍ତି (ଆଦି ୪ : ୨୦) ଏବଂ ହୋମବଳିରେ ଉତ୍ସର୍ଗୀକୃତ ପଶୁ ଓ ପକ୍ଷୀଙ୍କର ସୁଗନ୍ଧ ଆଘ୍ରାଣ କରନ୍ତି । (ଆଦି ୮ : ୨୦-୨୧)

ବାଇବଲରେ ଈଶ୍ୱରଙ୍କ ସମ୍ପର୍କରେ ଏ ପ୍ରକାର ଅନେକ କ୍ରୂରତମ ବର୍ଣ୍ଣନା ରହିଛି ଯେଉଁଥିରୁ ଜଣାପଡ଼େ ଯେ, ସେ ଅତ୍ୟନ୍ତ କ୍ରୋଧୀ, ମାଂସାହାରୀ, କଳହପ୍ରିୟ, ଯୁଦ୍ଧଖୋର, ପକ୍ଷପାତୀ, ଈର୍ଷାଳୁ, ଦ୍ୱେଷୀ ଓ ଦିନ ପରିଶ୍ରମ କରି ଥକି ଯାଉଥିବା ପୁନଶ୍ଚ ରକ୍ତମାଂସ ଚର୍ବିକୁ ଅଗ୍ନିରେ ନିକ୍ଷେପ କରି ସେଥିରୁ ବାହାରୁଥିବା ସୁଗନ୍ଧ ଆଘ୍ରାଣ କରୁଥିବା ପରମେଶ୍ୱର ଅଟନ୍ତି ।

ପୁରାତନ ନିୟମରେ ଏପରି ଅନେକ ଅନୁଚିତ କଥା ଲେଖାଅଛି ଯାହା ପଢ଼ି ଲୋକେ ଉତ୍ତେଜିତ ହୋଇପଡ଼ନ୍ତି । ଯେଉଁ କଥା ପାଇଁ ସ୍ତ୍ରୀ ଓ ପୁରୁଷମାନଙ୍କୁ ଜେଲ ଭୋଗ କରିବାକୁ ପଡ଼ିଥିଲା ସେ ସମସ୍ତ କଥା ବାଇବେଲରେ ଖୁବ୍ ସୁନ୍ଦର ଭାବରେ ବର୍ଣ୍ଣନା କରାଯାଇଛି । ଲୋଟ ପୁତ୍ରୀମାନଙ୍କୁ ନିଜ ଝିଅଙ୍କୁ ବ୍ୟଭିଚାର ଉଦ୍ଦେଶ୍ୟରେ ଅର୍ପଣ କରିବା (ଆଦି ୧୯) ଲୋଟଙ୍କ ଦୁଇକନ୍ୟା ଆପଣା ପିତାଦ୍ୱାରା ଗର୍ଭବତୀ ହେବା । (ସେହି ୧୯ : ୩୭) ଭଉଣୀ ସହିତ ବ୍ୟଭିଚାର କରିବା । (୨ୟ ସାମୁୟେଲ ୧୩ : ୧-୧୪) କାରଣ ଶାସ୍ତ୍ରରେ ଏ କଥା ଲେଖାଅଛି : "ଯଦି କୌଣସି ଲୋକ ନିଜ କନ୍ୟାର ଯୌବନାବସ୍ଥା ଗତ ହୋଇଅଛି, ଆଉ ସେ ତାହା ପ୍ରତି ଅନୁଚିତ ବ୍ୟବହାର କରୁଅଛି ବୋଲି ମନେ କରେ, ତେବେ ଆବଶ୍ୟକ ବୋଧ କଲେ ସେ ଯାହା ଇଚ୍ଛା ତାହା କରୁ, ସେଥିରେ ପାପ ନାହିଁ, ସେମାନେ ବିବାହ କରନ୍ତୁ ।" (୧ କରିନ୍ଥୀୟ ୩ : ୩୭) ଏ ପ୍ରକାର ଅନେକ କଥା ରହିଛି ଯାହା ଉଲ୍ଲେଖ କରିବା-ଦ୍ୱାରା ଲଜ୍ଜା, ସଙ୍କୋଚ ଓ ଭୟ ଲାଗେ । ଗୁର୍ଲି ସ୍ମିଥଙ୍କ ଭାଷାରେ ଯଦି ଏହିସବୁ ପୁସ୍ତକ ଓ ଅଧ୍ୟାୟଗୁଡ଼ିକ ବାଇବଲରେ ନ ଥାନ୍ତା ତାହେଲେ ଖ୍ରୀଷ୍ଟିୟାନମାନେ

ଏହା'ର ନିନ୍ଦା କରିଥାନ୍ତେ । ଉପରୋକ୍ତ ଅଧ୍ୟାୟଗୁଡିକ ଯଦି ଆପଣ ଭଲ ପାଉଥାନ୍ତି, ତେବେ ଆଉ କିଛି ଅଂଶବିଶେଷ ପଢ଼ି ନେଇପାରନ୍ତି । ଯେପରି ଲେବୀୟ ପୁସ୍ତକ ୧୫ : ୧୬-୩୩ ଯିଶାଇୟ ୩୬ : ୧୨, ଯିହିଜିକଲ ୪ : ୧୨-୧୫, ବିଚାରକର୍ତ୍ତା ୧୯ ପର୍ବ, ପ୍ରଥମ ସାମୁୟେଲ ୨୫ ପର୍ବ, ଦ୍ୱିତୀୟ ସାମୁୟେଲ ୧୧ ପର୍ବ, ଗଣନା ପୁସ୍ତକ ୩୧ ପର୍ବ ଆଦିପୁସ୍ତକ ୧୬, ୨୬, ୨୯, ୩୦, ୩୪, ୩୮ ଓ ୩୯ ପର୍ବ ଏବଂ ପ୍ରଥମ ସାମୁୟେଲ ୨୫ : ୨୨ ।

ଅଶ୍ଳୀଳ ବର୍ଣ୍ଣନା ସହ ଅତ୍ୟାଚାର ଓ ଅନ୍ୟାୟପୂର୍ଣ୍ଣ ଘଟଣାରେ ପୁରାତନ ନିୟମ ଭରପୂର୍ଣ୍ଣ ହୋଇଛି । ଅବ୍ରାହମ୍ ନିଜ ଦାସୀମାନଙ୍କ ସହ ବ୍ୟଭିଚାର କରିବା, (ଆଦି ୧୬ : ୪) ସେମାନଙ୍କ ଗର୍ଭଜାତ ଶିଶୁଙ୍କୁ ବଣରେ ଛାଡ଼ିଦେବା, (ସେହି ୨୧ : ୧୪) ଯାକୋବ ନିଜର ଭାଇଙ୍କ ସହିତ ଶଠତା ଆଚରଣ କରିବା, (ସେହି ୨୭ : ୧୯) ଯେଉଁ ସ୍ତ୍ରୀ ପିଲାମାନେ ପୁରୁଷ-ସହବାସ ଜ୍ଞାତ ହୋଇ ନାହାନ୍ତି, ସେମାନଙ୍କୁ ସ୍ୱ ସ୍ୱ ନିମନ୍ତେ ଜୀବିତ ରଖିବାକୁ ମହାତ୍ମା ମୋଶା ନିଜ କର୍ମଚାରୀ ଓ ସେନାପତି-ମାନଙ୍କୁ ଆଦେଶ ଦେବା, (ଗଣନା ୩୧ : ୧୮) ଦାଉଦ ବନ୍ଦୀମାନଙ୍କୁ ଇଟାଭାଟିରେ ଜଳାଇବା, (୨ୟ ସାମୁୟେଲ ୧୨ : ୩୧) ପୁଣି ଦୁଇଶ ପାଲେଷ୍ଟିୟଙ୍କୁ ବଧ କରି ସେମାନଙ୍କ ସୁନ୍ନତ ଚର୍ମ ପରିବର୍ତ୍ତେ ଏକ ସ୍ତ୍ରୀ କିଣିବା, (ପ୍ରଥମ ଶାମୁୟେଲ ୧୮ : ୨୭) ପରି ଜଘନ୍ୟ କାର୍ଯ୍ୟମାନ ମଧ୍ୟ କରୁଥିଲେ । ଏହି ଦାଉଦ ପୁଣି ପରମେଶ୍ୱରଙ୍କ କୃପାପାତ୍ର ଥିଲେ ।

ଖ୍ରୀଷ୍ଟଧର୍ମର ପରମେଶ୍ୱରଙ୍କ ପରି କୌଣସି ଧର୍ମର ପରମେଶ୍ୱର ଏତେ ଶକ୍ତିଶାଳୀ ନୁହନ୍ତି । ସେ ଯାହା ଚାହିଁବେ ତାହା କରିପାରିବେ । ସେ ମିଶର ଦେଶସ୍ଥିତ ସମସ୍ତ ପ୍ରଥମଜାତ ସନ୍ତାନମାନଙ୍କ ଓ ପଶୁମାନଙ୍କ ପ୍ରଥମଜାତ ଶାବକ-ଗଣଙ୍କୁ ମାରି ଦେଇପାରନ୍ତି, (ଯାତ୍ରା ୧୨ : ୨୯-୩୦) ଶାନ୍ତିପ୍ରିୟ ନାଗରିକମାନଙ୍କୁ ହତ୍ୟା କରିପାରନ୍ତି । (ବିଚାରକର୍ତ୍ତା ୧୮ : ୨୭) ବାଇବଲରେ କ'ଣ ଅଛି, କ'ଣ ନାହିଁ ? ଯେବେ ଆଲୋଚନା ହେଉଥିଲା ଯାଜକ କହି ଉଠିଲେ—ଯେଉଁଠି ବାଇବଲ ନାହିଁ ସେଠି ନୈତିକତା ନାହିଁ । ମାତ୍ର ଏହା ହିଁ ଏଠାରେ ପ୍ରମାଣିତ ହୋଇଗଲା ଯେ, ଯେଉଁଠି ନୈତିକତା ଅଛି ସେଠି ବାଇବଲ ନାହିଁ ।

ଈଶ୍ୱରଙ୍କ ଆଦେଶ ଅନୁସାରେ ଜଣେ ପ୍ରକୃତ ଖ୍ରୀଷ୍ଟିୟାନ ବିବାହ କରିବା ଅନୁଚିତ । କାରଣ କୁହାଯାଇଛି ସ୍ତ୍ରୀଲୋକଙ୍କୁ ସ୍ପର୍ଶ ନ କରିବା ପୁରୁଷ ପକ୍ଷରେ ଭଲ (ପ୍ରଥମ କରିନ୍ଥୀୟ ୭ : ୧) ଯେହେତୁ ସ୍ୱର୍ଗରେ ଏକଲକ୍ଷ ଚୌରାଳିଶ ହଜାର ଏପରି ଲୋକ ଅଛନ୍ତି ଯେଉଁମାନେ ସ୍ତ୍ରୀ ସଂସର୍ଗରେ ଆପଣା ଆପଣାକୁ କଳୁଷିତ କରି ନାହାନ୍ତି, କାରଣ ସେମାନେ ଶୁଚି । (ପ୍ରକାଶିତ ବାକ୍ୟ ୧୪ : ୪) ଏଥିପାଇଁ ତ ପରମେଶ୍ୱର

ନାରୀକୁ ଅଭିଶାପ ଦେଇଥିଲେ . ଆମ୍ଭେ ତୁମ୍ଭର ଗର୍ଭବେଦନା ଅତିଶୟ ବଢ଼ାଇବୁ, ତୁମ୍ଭେ ବ୍ୟଥାରେ ସନ୍ତାନ ପ୍ରସବ କରିବ । (ଆଦି ୩ : ୧୬)

ଜର୍ଜ ଉଡ୍‌ଡ୍ରୁ ଫୁଟ ଗୋଟିଏ ସୁନ୍ଦର କଥା କହୁଛନ୍ତି : ସ୍ତ୍ରୀଲୋକମାନେ ଏ ବିଷୟରେ ଗର୍ବ କରିବା ଉଚିତ ଯେ ସେମାନେ ବାଇବଲର ଗୋଟିଏ ମଧ୍ୟ ବାକ୍ୟ ଲେଖି ନାହାନ୍ତି । କାରଣ ଏଥିରେ ଭୟଙ୍କର ବ୍ୟବସ୍ଥାମାନ ନାରୀ ସମାଜ ପାଇଁ ରହିଛି । ଯଦି କନ୍ୟାର କୌମାର୍ଯ୍ୟ ଚିହ୍ନ ଦେଖା ନଯାଏ, ତେବେ ଲୋକେ ସେହି କନ୍ୟାକୁ ବାହାର କରି ପିତୃଗୃହର ଦ୍ୱାର ନିକଟକୁ ଆଣିବେ । ଆଉ ନଗରସ୍ଥ ଲୋକମାନେ ପ୍ରସ୍ତରାଘାତ କରି ତାହାକୁ ବଧ କରିବେ । (ଦ୍ୱିତୀୟ ବିବରଣ ୨୨ : ୨୧) ସେମାନେ କ'ଣ ଲୁଟି ନାହାନ୍ତି ? ସେମାନେ କ'ଣ ଭୋଗ କରି ନାହାନ୍ତି ? ପ୍ରତ୍ୟେକ ପୁରୁଷ ପାଇଁ ଏକ କାମିନୀ, ଦୁଇ କାମିନୀ । (ବିଚାରକର୍ତ୍ତା ୫ : ୩୦) ବାଇବଲରେ ନାରୀର ସ୍ଥିତି କ'ଣ ଥିଲା ଉପରୋକ୍ତ ଦୁଇଟି ପବିତ୍ର ବାକ୍ୟରୁ ବେଶ୍ ଜଣାଯାଏ ।

ଏପରିକି ଯେଉଁ ଯେଉଁ ଦେଶରେ ଦାସ ପ୍ରଥା ପ୍ରଚଳିତ ହୋଇଛି ତାହାର ପ୍ରେରଣା ସେମାନେ ବାଇବଲରୁ ହିଁ ପାଇଛନ୍ତି । ବାଇବଲ ଅନୁସାରେ ପରମେଶ୍ୱର ଦାସପ୍ରଥା ସ୍ଥାପନ କରିଛନ୍ତି । ସେଥିପାଇଁ ଲେବୀୟ ପୁସ୍ତକ ୨୫ : ୪୪-୪୬; ଯାତ୍ରା ୨୧ : ୨-୬; ୨୧ : ୭; ୨୧ : ୬; ଦ୍ୱିତୀୟ ବିବରଣ ୨୦ : ୧୦-୧୫, ପ୍ରଥମ ତୀମଥି ୬ : ୧; ତିତସ ୨ : ୯; ଇଫିସୀୟ ୬ : ୫; ପ୍ରଥମ ପିତର ୨ . ୧୮ ପଦମାନ ଦେଖାଯାଇପାରେ ।

ପ୍ରଶ୍ନ ହେଉଛି ଯଦି ଏ ପ୍ରକାର ଜଘନ୍ୟ କଥାଗୁଡ଼ିକ ମଧ୍ୟ ବାଇବଲରେ ରହିଛି ତେବେ ଏ ପର୍ଯ୍ୟନ୍ତ ଖ୍ରୀଷ୍ଟିୟାନମାନେ ଏସବୁ ବିଷୟରେ କିଛି କହୁ ନାହାନ୍ତି କାହିଁକି ? ଏହାର ଦୁଇଟି କାରଣ ଅଛି । ପ୍ରଥମ କାରଣ ହେଲା କୌଣସି ପ୍ରଚାରକ ସମଗ୍ର ବାଇବଲ୍‌ଟିକୁ ମନ ଧ୍ୟାନ ଦେଇ ହୁଏତ ପାଠ କରୁ ନଥିବେ କିମ୍ବା ମଝିରୁ ମଝିରୁ ଗୋଟିଏ ଗୋଟିଏ ବିଶ୍ୱାସ ଉପଯୋଗୀ ପଦ ବା ବାକ୍ୟ ପାଠକରି ସାରିବା ପରେ କାର୍ଯ୍ୟ ସରିଗଲା ବୋଲି ସେମାନେ ଭାବୁଥିବେ । ଯା'ଦ୍ୱାରା ଏ ପ୍ରସଙ୍ଗଗୁଡ଼ିକୁ ସେମାନେ ଆସି ପାରିନାହାନ୍ତି । ଅନ୍ୟ କାରଣଟି ହେଲା ଯଦିଓ ସେମାନେ ଏସବୁ ପ୍ରସଙ୍ଗ ସମ୍ପର୍କରେ ଆସିଛନ୍ତି ବା ଆସିଥିବେ ତେବେ ମଧ୍ୟ ଏସବୁ ପ୍ରକାଶ କରିବା ଯୋଗ୍ୟ ବା ପ୍ରଚାର କରିବା ଯୋଗ୍ୟ ନୁହେଁ ବୋଲି ଭାବି ଏହା ଉପରେ ଗୁରୁତ୍ୱ ଦେଉ ନଥିବେ । ଏଣୁ ବାଇବଲ୍‌ରେ ଏ ପ୍ରକାର କଥା ମଧ୍ୟ ଅଛି ବୋଲି ସେମାନେ ଆମକୁ କହୁ ନାହାନ୍ତି ।

ବିନମ୍ରତା ସହ ଏଠି ମୁଁ ସ୍ୱୀକାର କରୁଛି ଯେ ସତ୍ୟ ଯେତେ ଅପ୍ରିୟ ହେଲେ ମଧ୍ୟ ତାହା ମୁଁ ପ୍ରକାଶ କରିଛି । ମୁଁ ବିଶ୍ୱାସର ପକ୍ଷପାତୀ, ଅନ୍ଧବିଶ୍ୱାସର ନୁହେଁ । ମୁଁ ଖ୍ରୀଷ୍ଟିୟାନ ବନ୍ଧୁମାନଙ୍କ ଆଗରେ ଏ ଲେଖାଟି ରଖୁଛି । ଏଥିରେ ଯଦି ସତ୍ୟତା ଥାଏ ତେବେ ଅନୁନ୍ନତ ଓ ଅଶିକ୍ଷିତ ବ୍ୟକ୍ତିଙ୍କ ପାଖରେ ସେମାନେ ପ୍ରଚାର ବନ୍ଦ କରିଦେବା ଉଚିତ । ଯଦି କୌଣସି ପାଦ୍ରୀ ଏ ଲେଖାଟି ଭୁଲବୋଲି ପ୍ରମାଣ କରିଦିଅନ୍ତି ତାହେଲେ ମୁଁ ଲେଖିବା ବନ୍ଦ କରିଦେବି । ଯାଜକଗଣ, ସଣ୍ଡେ ସ୍କୁଲ ଅଧ୍ୟାପକଗଣ, ବାଇବଲ ସମିତି ଓ ସଂସ୍ଥାଗୁଡିକ, ପ୍ରତ୍ୟେକ ଗୃହ ଅଭିଯାନର ପ୍ରଚାରକଗଣ, ଟେଲିଭିଜନ୍ ଓ ରେଡିଓ ପ୍ରଚାରକବୃନ୍ଦ ଆପଣମାନେ କି'ଣ ବାଇବଲ ପରୀକ୍ଷାର ଉତ୍ତର ଦେଇ ପାରିବେ ?

ଅନେକ ପ୍ରଚାରକଙ୍କ ସହ ମୋର ଆଲୋଚନା ହୋଇଛି; କିନ୍ତୁ ମୁଁ ଜାଣେ ସେମାନେ ପାଦ୍ରୀ, ଏଣୁ ଏକଥା ସେ କିପରି କହିବେ ? ଏକଥା ମୁଁ ଜାଣେ ସେମାନେ ଉଚ୍ଚପଦସ୍ଥ, ସେ ବା କିପରି ଏ'କଥା ମାନିବେ ? ଏକଥା ମଧ୍ୟ ମୁଁ ଜାଣେ ଯେ ସେ ଜଣେ ରାଜନୀତିକ ନେତା । ସେ ବା କିପରି ଏକଥା କହିବେ ? ଖାଲି ନିର୍ବାଚନରେ ଭୋଟର ଆଶା ଛାଡ଼ିବା କି'ଣ ଏତେ ସହଜ କଥା ? ଜଣେ ଧାର୍ମିକ ବ୍ୟକ୍ତି ମଧ୍ୟ ଏକଥା କହିବାକୁ ସାହସ କରିବ ନାହିଁ । କାରଣ ସ୍ୱର୍ଗର ସୁଖ ଓ ନରକର ଯନ୍ତ୍ରଣା କଥା କି'ଣ ସେମାନେ ପଢ଼ି ନାହାନ୍ତି ? ତେବେ ସେ ସବୁ କଥା ମୁଁ କହୁଛି, ଯେଉଁ ସବୁ କଥା ଯୁଗ ଯୁଗ ଧରି ଧର୍ମଯାଜକଗଣ ଆମକୁ ଲୁଚେଇ ଦେବାକୁ ଚାହିଁଛନ୍ତି ।



# ବାଇବଲ କ'ଣ ଆମ ସମସ୍ତ ପ୍ରଶ୍ନର ଏକମାତ୍ର ଉତ୍ତର

ଧର୍ମ ମାନବ ଜୀବନର ଏକମାତ୍ର ଆଶା ଓ ଭରସା ଅଟେ । ଏହା ବ୍ୟତୀତ ମନୁଷ୍ୟ ଏ ସଂସାରରେ ସ୍ୱଚ୍ଛନ୍ଦଭାବରେ ଚଳିପାରିବ ତାହା ବିଶ୍ୱାସ କରାଯାଇ ନ ପାରେ । ଧର୍ମର ଇତିହାସ ହିଁ ମାନବ ସମାଜର ଇତିହାସ ବୋଲି ବୁଝିବାକୁ ହେବ । ଏଣୁ ଅତି ଅନୁନ୍ନତ ଜାତିଠାରୁ ଆରମ୍ଭ କରି ସବୁଠାରୁ ସଭ୍ୟ ସମାଜ ପର୍ଯ୍ୟନ୍ତ ଏହା ହିଁ ଏକମାତ୍ର ବିଷୟ ହୋଇ ରହିଛି ।

ଏଠାରେ ନିୟମଦାତା ମନୁଙ୍କ ବର୍ଣ୍ଣିତ ଧୃତି, କ୍ଷମା, ଦମ, ଅସ୍ତେୟ, ଶୌଚ ନିଗ୍ରହ, ଧୀ, ବିଦ୍ୟା, ସତ୍ୟ ଓ ଅକ୍ରୋଧ ଧର୍ମର ଦଶଲକ୍ଷଣକୁ ଆଖି ଆଗରେ ରଖି ଧର୍ମର ବ୍ୟାଖ୍ୟା ମୁଁ କରିବାକୁ ଯାଉନାହିଁ । ରିଲିଜନ୍ ବା ମଜହବ୍‌ର ଅନୁବାଦ ହିସାବରେ ଧର୍ମ ଶବ୍ଦଟି ମୁଁ ପ୍ରୟୋଗ କରୁଛି । ଏ ଦୃଷ୍ଟିରୁ ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟିୟାନ୍ ଆଦି ଧର୍ମ ଉଦ୍ଦେଶ୍ୟରେ ଏଠି ଶବ୍ଦଟି ପ୍ରୟୋଗ ହୋଇଛି ।

ଆଜିକାଲି ଗଣତନ୍ତ୍ର ପ୍ରଭାବରେ ପ୍ରଭାବିତ ହୋଇ ଧର୍ମଗୁଡ଼ିକ ଖୁବ୍ ପ୍ରଚାର ଧର୍ମୀ ହୋଇ ପଡ଼ିଛନ୍ତି । ଯେଉଁ ଧର୍ମର ପ୍ରଚାର ଯେତେ ବେଶୀ ତାହାହିଁ ଏକମାତ୍ର ସତ୍ୟ ଧର୍ମ ବୋଲି ଆମେ ଭାବୁଥାଉଁ । ଏତଦ୍ ବ୍ୟତୀତ ଆଉ ଅନେକେ ଅଛନ୍ତି ଯେଉଁମାନେ ଧର୍ମ ନିରପେକ୍ଷତା ଦ୍ୱାରା ଏତେ ପ୍ରଭାବିତ ଯେ ବିନା ଅଧ୍ୟୟନ ଓ ବିନା ଶାସ୍ତ୍ରଗୁଡ଼ିକ ଦର୍ଶନରେ ଏ ପ୍ରକାର ମନ୍ତବ୍ୟ ଦୃଢ଼ତା ସହ ଦେଇଥାନ୍ତି ଯେ— "ବିଶ୍ୱର ସବୁ ଧର୍ମ ସମାନ ।" ଏ ପ୍ରକାର ସିକ୍ୟୁଲାରିଷ୍ଟ ମାନଙ୍କ ମଧ୍ୟରେ ହିନ୍ଦୁମାନେ ଅନ୍ତର୍ଭୁକ୍ତ । ତେବେ କୌଣସି ମୁସଲମାନ ବା ଖ୍ରୀଷ୍ଟିୟାନ ବନ୍ଧୁଙ୍କୁ ପଚାରନ୍ତୁ ସେ ଏକଥା କେବେ ମାନିପାରିବେ ନାହିଁ ଯେ ସବୁଧର୍ମ ସମାନ ଅଟେ । ମୁଁ ଏ ଦୃଷ୍ଟିରୁ ଖ୍ରୀଷ୍ଟିୟାନ ଓ ମୁସଲମାନଙ୍କ ମତକୁ ସମର୍ଥନ କରୁଛି । ଶାସ୍ତ୍ରଗୁଡ଼ିକର ଅଧ୍ୟୟନ ପରେ ମୁଁ ଜାଣିପାରିଛି ଯେ ସବୁ ଧର୍ମ କେବେ ମଧ୍ୟ ଗୋଟିଏ କଥା କହୁନାହାନ୍ତି । ଜଣେ ଗୋହତ୍ୟାକୁ ପୁଣ୍ୟ ମନେ କଲେ ଜଣେ ଗୋରକ୍ଷାକୁ ପୁଣ୍ୟ ବୋଲି କହୁଛି । ତେବେ ସବୁ ଧର୍ମ ସ୍ୱ ସ୍ୱ ଧର୍ମ ଭିତରେ ଶ୍ରେଷ୍ଠ ଓ ଏକମାତ୍ର ସତ୍ୟ ଧର୍ମ ଅଟନ୍ତି । ହିନ୍ଦୁମାନେ କହୁଛନ୍ତି ତାଙ୍କ ଧର୍ମ ସତ୍ୟ ଧର୍ମ । ମୁସଲମାନମାନେ କହୁଛନ୍ତି

ସେମାନଙ୍କ ଧର୍ମ ହିଁ ଏକମାତ୍ର ସତ୍ୟ ଧର୍ମ ଅଟେ । ସେମାନଙ୍କ ପରି ମୁଁ ବାଲ୍ୟକାଳରୁ ବହୁଳଭାବରେ ପ୍ରଚାର ହୋଇ ଆସୁଥିବା ଖ୍ରୀଷ୍ଟଧର୍ମ ସମ୍ପର୍କରେ ଶୁଣି ଆସିଛି ଯେ ଖ୍ରୀଷ୍ଟହିଁ ସତ୍ୟ, ପଥ ଓ ଜୀବନ ତାଙ୍କ ଦେଇ ନ ଗଲେ କେହି ଅନନ୍ତ ଜୀବନର ଅଧିକାରୀ ହୋଇ ନ ପାରେ । ଏ ଦୃଷ୍ଟିରୁ ଯେ ମରେ ମିଚେଲ୍‌ଙ୍କ ପ୍ରଣୀତ "ଖ୍ରୀଷ୍ଟଧର୍ମର ପ୍ରମାଣ ତତ୍ତ୍ୱ" ପୁସ୍ତକଟି ଦେଖାଯାଇପାରେ । ଉକ୍ତ ଲେଖକଙ୍କର କହିବାର ହେଲା ବିଶ୍ୱର ସବୁ ଧର୍ମ ମିଥ୍ୟା ଏବଂ ଖ୍ରୀଷ୍ଟଧର୍ମ ହିଁ ଏକମାତ୍ର ସତ୍ୟ ଓ ପ୍ରାମାଣ୍ୟ ଧର୍ମ ଅଟେ । ସେ ଯାହା କହିଛନ୍ତି ବିଶ୍ୱର ଅନ୍ୟାନ୍ୟ ଧର୍ମ ପ୍ରଚାରକମାନେ ମଧ୍ୟ ସେହିପରି କହିଛନ୍ତି ବା କହି ଆସୁଛନ୍ତି । ତେବେ କାହା କଥା ବିଶ୍ୱାସ କରିବା । କାହା କଥାରେ ସନ୍ଦେହ କରିବା ? ଜଣେ ସାଧାରଣ ମନୁଷ୍ୟ ପକ୍ଷରେ ବିବେଚନା କରିବାର କ୍ଷମତା ନଥାଏ । ଏଠି ମୁଁ କହି ରଖୁଛି ସବୁ ଧର୍ମରେ କିଛି କିଛି ସତ୍ୟତା ରହିଛି । ହିନ୍ଦୁମାନଙ୍କର ପୁରାଣଗ୍ରନ୍ଥଗୁଡ଼ିକ ପଢ଼ିଲେ ଆଶ୍ଚର୍ଯ୍ୟ ଲାଗେ, ଏତେ ଅସୁନ୍ଦର, ଅଶ୍ଳୀଳ ଓ ଅଧାର୍ମିକ କଥାରେ ଏହା ଭରପୁର ଯେ ଏଗୁଡ଼ିକୁ ସାର୍ବଜନୀନ ଭାବରେ ପଢ଼ିବା ପଢ଼ାଇବା ବନ୍ଦ କରିଦେବା ଉଚିତ୍ । ସେହିପରି ଖ୍ରୀଷ୍ଟଧର୍ମ ଦ୍ୱାରା ଗୃହୀତ ବାଇବଲ ଯଦିଓ ଏକ ଅମୂଲ୍ୟ ସାହିତ୍ୟ ତଥାପି ଏଥିରେ ଥିବା କଥାଗୁଡ଼ିକ ଓ ବିଷୟଗୁଡ଼ିକୁ ଜଣେ ମନନଶୀଳ ମନୁଷ୍ୟ କେବେ ମଧ୍ୟ ଗ୍ରହଣ କରିପାରିବ ନାହିଁ ।

ଧର୍ମ ପାଇଁ ଆମେ ବିଶ୍ୱାସୀ ହେବା ଉଚିତ୍ ମାତ୍ର ଅନ୍ଧବିଶ୍ୱାସୀ ହେବା ଅନୁଚିତ । ମାତ୍ର ଅଧିକାଂଶ ଧର୍ମ ଆମକୁ ବିଶ୍ୱାସ ମାଧ୍ୟମରେ ଅନ୍ଧବିଶ୍ୱାସ ଆଡ଼କୁ ହିଁ ଟାଣି ନେଇଥାନ୍ତି । ଆମ ମନରେ ସାଧାରଣ ସନ୍ଦେହ ଆସିଲେ ସେମାନେ ଏହାକୁ ସଇତାନର କାର୍ଯ୍ୟ ବୋଲି କହି ସନ୍ଦେହକୁ ତର୍କଦ୍ୱାରା ନୁହେଁ ବରଂ ବିଶ୍ୱାସ ଦ୍ୱାରା ଦୂର କରିବା ପାଇଁ ବିବଶ କରିପକାନ୍ତି । ଆମେ ନିରୁପାୟ ହୋଇ ସନ୍ଦେହ ମାଧ୍ୟମରେ ଜ୍ଞାନକୁ ଉନ୍ନିତ ନ ହୋଇ ବିଶ୍ୱାସ ମାଧ୍ୟମରେ ଅନ୍ଧବିଶ୍ୱାସ ଆଡ଼କୁ ଚାଲିଯାଉଁ । ଏହାର ପରିଣାମ ହୁଏ ଭୟାବହ । ଧର୍ମ ନାମରେ ଆମେ ଯା ଇଚ୍ଛା ତା କରିଯାଉଁ ଏବଂ ଆମର ବିରୋଧୀମାନଙ୍କୁ ନାସ୍ତିକ, କାଫେର ବା ଅବିଶ୍ୱାସୀ କହି ଆମେ ନିର୍ଯ୍ୟାତନା ଦେଉଁ । ଏ ପ୍ରକାର ଅତ୍ୟାଚାର ଅନ୍ୟାୟରେ ଜନ୍ତ ହୋଇ ଏ ପୃଥିବୀ ତା'ର ସରଳତା ହରାଇଛି । ସବୁ କଥାରେ ହଁ ଭରିବା ବା ମାନିନେବା ଯୁଗର ଆଜି ଅନ୍ତ ହୋଇଛି । ପୂର୍ବକାଳରେ ଅବହେଳିତ ହୋଇଥିବା ଚରିତ୍ରଗୁଡ଼ିକ ଆଜି ଆମକୁ ରାବଣ, କଂସ, ସଇତାନ ଓ ଇସ୍କାରିଓତୀ ଯିହୁଦା ଭାବରେ ଦୟା ଓ ସମ୍ମାନର ଆସନ ମାଡ଼ି ବସନ୍ତି । ଆମେ ଆମ ଶାସ୍ତ୍ରଗୁଡ଼ିକୁ ସନ୍ଦେହ ଦୃଷ୍ଟିରେ ଦେଖିବାକୁ ବାଧ୍ୟ ହୋଇପଡ଼ୁଁ ।

ଏ ପ୍ରବନ୍ଧଟିରେ ମୁଁ ବିଶ୍ୱରେ ବହୁଳ ଭାବରେ ପ୍ରଚାରିତ ଓ ଲୋକପ୍ରିୟ ଇହୁଦୀ ଓ ଖ୍ରୀଷ୍ଟଧର୍ମ ଉପରେ କିଛି ଶଙ୍କା ରଖିବାକୁ ଚାହେଁ । ପୁରାଣ ଓ କୋରାନ୍

ବିଷୟ ଅନ୍ୟ ଏକ ପ୍ରବନ୍ଧର ବିଷୟବସ୍ତୁ ହୋଇପାରିବ ଏଣୁ ମୁଁ ତାହା ଏଠି ସନ୍ନିବିଷ୍ଟ କରୁନାହିଁ । ଯେପରି କୁହାଗଲା ଯେ ବାଇବଲ୍ ପ୍ରଚାର ସଂସ୍ଥା ପକ୍ଷରୁ ଏହା ବାରମ୍ବାର ପ୍ରଚାର କରିଯାଉଛନ୍ତି ଯେ ଖ୍ରୀଷ୍ଟଧର୍ମ ହିଁ ସମସ୍ତ ପ୍ରଶ୍ନର ଏକମାତ୍ର ଉତ୍ତର । ଏଠି ମୁଁ ସେହି ପ୍ରକାର କିଛି ପ୍ରଶ୍ନର ଅବତାରଣା କରିବି ଯାହା ବାଇବଲର ପାଠକ ହିସାବରେ ମୋର ମନକୁ ବାରମ୍ବାର ବିଷାଦଗ୍ରସ୍ତ କରି ଦେଉଛି ।

ଉଏସ ଅଫ୍ ପ୍ରଫେସୀ, ପୁନା, ସୁନ୍‌ଷ୍ଟଞ୍ଜର୍, ଇଂଲଣ୍ଡ, ଇଣ୍ଡିଆ ଏଣ୍ଡ ହୋମ୍ କ୍ରୁସେଡ୍, ସିକନ୍ଦ୍ରାବାଦ, ହାଡଗଡ଼ ବାଇବଲ ପତ୍ର ବ୍ୟବହାର ଶିକ୍ଷାଳୟର ଛାତ୍ର ହିସାବରେ ମୁଁ ସନ୍ତୋଷଜନକ ଉତ୍ତର ଦେଇ ମାନପତ୍ର ଲାଭ କରିଥିଲେ ମଧ୍ୟ ସମ୍ପୂର୍ଣ୍ଣ ବାଇବଲ୍ ପଢ଼ି ସାରିବା ପରେ ମୋ ମନରେ ଆଜି ଯେଉଁ ପ୍ରଶ୍ନଗୁଡ଼ିକ ଉତ୍ଥାପିତ ହେଉଛି । ତାହା ମୋର ବିଶ୍ୱାସକୁ ଦୁର୍ବଳ କରିଦେଲା ଭଳି ଅନୁଭବ ହେଉଛି । ଜ୍ଞାନ ଯଦି ବିଶ୍ୱାସକୁ ସୁଦୃଢ଼ କରୁଥିବା ଏକମାତ୍ର ପନ୍ଥା ତେବେ ଅଜ୍ଞାନ ଦ୍ୱାରା ମୁଁ ବିଶ୍ୱାସକୁ ଆୟତ୍ତ କରିବାକୁ ଚାହେଁ ନାହିଁ । କାରଣ ଜ୍ଞାନଦ୍ୱାରା ମୁଁ ପରମେଶ୍ୱରଙ୍କୁ ଉପାସନା କରିବାକୁ ଚାହେଁ । ଏ ଦୃଷ୍ଟିରୁ ଏ ପ୍ରବନ୍ଧଟିକୁ "ପ୍ରଶ୍ନ ପାଇଁ ପ୍ରଶ୍ନ" ମୁଁ ପଚାରୁଛି ନ ଭାବି" ଉତ୍ତର ପାଇଁ ପ୍ରଶ୍ନ" ପଚାରୁଛି ମନେକରି ଓଡ଼ିଶାର ବାଇବଲ ପ୍ରଚାର ସଂସ୍ଥା, ପତ୍ର ବ୍ୟବହାର ସ୍କୁଲ-ଗୁଡ଼ିକର ଆଚାର୍ଯ୍ୟଗଣ ଓ ବାଇବଲର ସୁହୃଦ ପାଠକଗଣ ଏ ବିଷୟରେ ମତେ ଏକ ସମାଧାନ ଦେବେ ଏ ଆଶା ରଖୁଛି । ଆଶା ଓ ବିଶ୍ୱାସ ଶବ୍ଦକୁ ପ୍ରେମ କରୁଥିବା ଖ୍ରୀଷ୍ଟିୟାନ୍ ବନ୍ଧୁଗଣ ମୋର ଏ ଧୃଷ୍ଟତା ମାର୍ଜନା କରି ଯେଉଁ ଯେଉଁ ପ୍ରଶ୍ନର ସମାଧାନ କରିପାରିବେ ସେଗୁଡ଼ିକ ମୋ ପାଖକୁ ପଠାଇ ମୋତେ କୃତଜ୍ଞ କରିବେ ।

ସବୁ ଦୃଷ୍ଟିରୁ ପ୍ରଶ୍ନଗୁଡ଼ିକ ପରୀକ୍ଷା କରନ୍ତୁ । [ପ୍ରଥମ ଥେସଲନୀକୀୟ ୫ : ୨୧] ଏବଂ ମନେ ରଖନ୍ତୁ ଆପଣମାନଙ୍କର ଭରସାର କାରଣ ସମ୍ବନ୍ଧରେ ଯେ କେହି ପ୍ରଶ୍ନ କରେ, ତାହାକୁ ପ୍ରତ୍ୟୁତ୍ତର ଦେବାକୁ ପ୍ରସ୍ତୁତ ହୁଅନ୍ତୁ । କିନ୍ତୁ ନମ୍ର ଭାବରେ ଓ ସଭୟରେ ଉତ୍ତମ ବିବେକ ସହ ଉତ୍ତର ଦିଅନ୍ତୁ । ଯେପରି ଆପଣ-ମାନଙ୍କର ନିନ୍ଦୁକମାନେ ଯେଉଁ ବିଷୟରେ ଆପଣମାନଙ୍କର ଖ୍ରୀଷ୍ଟିୟ ଆଚରଣରେ ଦୋଷାରୋପ କରନ୍ତି ସେଥିରେ ସେମାନେ ଲଜ୍ଜିତ ହେବେ [ପ୍ରଥମ ପିତର ୩ : ୧୫-୧୬] । ତାହାହିଁ ହେଉ । ଆସନ୍ତୁ ପ୍ରଶ୍ନଗୁଡ଼ିକ ବିଷୟରେ ବିଚାର କରିବା ।

ପରମେଶ୍ୱରଙ୍କ ସମ୍ପର୍କରେ ଆଦି ପୁସ୍ତକରେ କୁହାଯାଇଛି ଯେ ପ୍ରଥମରେ ତାଙ୍କ ଆତ୍ମା ଜଳ ଉପରେ ବ୍ୟାପ୍ତ ଥିଲା । ତା'ହେଲେ ତାଙ୍କର ଶରୀର କେଉଁଠି ଥିଲା ? ତାଙ୍କ ଆତ୍ମା ଜଳ ଉପରେ ବ୍ୟାପ୍ତ ଥିଲା କାହିଁକି ? ତାଙ୍କୁ ସୃଷ୍ଟି କଲା କିଏ ? ତାଙ୍କୁ ସ୍ୱର୍ଗରୁ ଜଳ ଉପରକୁ ଆସିବାର ଆବଶ୍ୟକତା କ'ଣ ପଡ଼ିଲା ? ସେ ଜଳ

ଉପରେ ବ୍ୟସ୍ତଥିବାରୁ ସୀମିତ ଥିଲେ ନା ଅସୀମ ଥିଲେ ? ସେ ନିରାକାର ନା ସାକାର ? ଯଦି ସାକାର ତା'ର ଉପାଦାନ କାରଣ କ'ଣ ଅଟେ ? ଯଦି ନିରାକାର ତେବେ ଜଳ ଉପରେ ଏହା କିପରି ବ୍ୟାପ୍ତ ଥିଲା ?

ଏହା ଏପରି କେଉଁ ଜ୍ଞାନ ବିଷୟକ ନିୟମ ଅଟେ ଯାହା ପ୍ରଥମରେ ସଂସାରରେ ନ ଥିଲା ଏବଂ ଯାହାକୁ ପ୍ରକାଶ କରିବା ପାଇଁ ମୋଶାଙ୍କ ପଞ୍ଚଗ୍ରନ୍ଥର ଆବଶ୍ୟକ ହେଲା ? ଈଶ୍ୱର ପଞ୍ଚଗ୍ରନ୍ଥରେ କେଉଁ କଥା ଲେଖିବାକୁ ଭୁଲି ଯାଇଥିଲେ ଯାହାକୁ ମନେ ପକାଇବା ପାଇଁ ଯିହିଦ୍ୱିତୀୟ ଇତ୍ୟାଦି ଗ୍ରନ୍ଥ ରଚନା କଲେ ? ଏଥିରେ କ'ଣ ତ୍ରୁଟି ରହିଯାଇଥିଲା ଯା ଫଳରେ ନୂତନ ନିୟମ ଲେଖାଗଲା ?

ସୃଷ୍ଟିତତ୍ତ୍ୱ ଉପରେ ମୋଶା କୁହନ୍ତି—ଆଦ୍ୟରେ ପରମେଶ୍ୱର ଆକାଶମଣ୍ଡଳ ଓ ପୃଥିବୀ ସୃଷ୍ଟି କଲେ । ଆଦ୍ୟର ତାତ୍ପର୍ଯ୍ୟ କ'ଣ ? ବର୍ତ୍ତମାନ ସୃଷ୍ଟି କ'ଣ ଆଦି ସୃଷ୍ଟି ? ଏହା ଯଦି ଆଦି ସୃଷ୍ଟି ତା'ହେଲେ ସୃଷ୍ଟିର ବୟସ କେତେ ? ଈଶ୍ୱର କେଉଁ ନିୟମ ଅନୁସାରେ ଏହା ସର୍ଜନା କଲେ ? ଯେବେ ଆଦ୍ୟରେ ଈଶ୍ୱରଙ୍କର ଅତିରିକ୍ତ ଏଠାରେ କିଛି ନଥିଲା, ତେବେ ପୃଥିବୀକୁ ଈଶ୍ୱର କେଉଁ ପଦାର୍ଥରେ ନିର୍ମାଣ କଲେ ? କ'ଣ ଅଭାବରୁ ଭାବର ଉତ୍ପତ୍ତି କୌଣସି ପ୍ରକାରେ ସମ୍ଭବ ହୋଇପାରେ ? ଈଶ୍ୱର ସୃଷ୍ଟିକୁ କାହିଁକି କେଉଁଥିପାଇଁ ନିର୍ମାଣ କଲେ ? ବର୍ତ୍ତମାନ ସୃଷ୍ଟି କରିବା ପୂର୍ବରୁ ଈଶ୍ୱର କ'ଣ କରୁଥିଲେ ? ସୃଷ୍ଟି ଉତ୍ପତ୍ତି ନିମନ୍ତେ ସେ ଏ ସମୟକୁ କାହିଁକି ଉପଯୁକ୍ତ ମନେ କଲେ ?

ଈଶ୍ୱର ଏବଂ ତାଙ୍କ ବାକ୍ୟ ଗୋଟିଏ କଥା ନା ଦୁଇଟି କଥା ? ଏହା ଯଦି ଦୁଇଟି କଥା ତେବେ ଆଦ୍ୟରୁ ଦୁଇଟି କଥା ବିଦ୍ୟମାନ ରହୁଛି । ପ୍ରଥମଟି ହେଲେ ଈଶ୍ୱର ଏବଂ ଅନ୍ୟଟି ତାଙ୍କର ବାକ୍ୟ । ଯଦି ଗୋଟିଏ କଥା ତେବେ ଈଶ୍ୱର ଏକ ବସ୍ତୁ ଅଟନ୍ତି । ଯେଉଁ ବସ୍ତୁରୁ ବିଶ୍ୱ ସୃଷ୍ଟି ହୋଇଛି ।

ପରମେଶ୍ୱର ଦୀପ୍ତିକୁ ଦେଖିଲେ ଯେ ତାହା ଉତ୍ତମ । ଏହା ପୂର୍ବରୁ କ'ଣ ସେ ଆଲୋକ ଦେଖି ନଥିଲେ ? ଅନନ୍ତକାଳ ପର୍ଯ୍ୟନ୍ତ କ'ଣ ସେ ଅନ୍ଧକାର ମଧ୍ୟରେ ହିଁ ଥିଲେ ?

ବାଇବଲ ଅନୁସାରେ ଈଶ୍ୱର ଅନାଦି ଏବଂ ଅସୀମ । ପ୍ରକୃତି ଓ ଆତ୍ମା-ଗଣର ସେ ସୃଷ୍ଟି କରିଛନ୍ତି । ତେବେ ସେ ପୂର୍ଣ୍ଣ ନା ଅପୂର୍ଣ୍ଣ ? ଯଦି ପୂର୍ଣ୍ଣ ତେବେ ତାଙ୍କ ମଧ୍ୟରେ ସୃଷ୍ଟି କରିବାର ଇଚ୍ଛା କିପରି ଓ କାହିଁକି ଉତ୍ପନ୍ନ ହେଲା ?

ସେ ଜଗତର କେଉଁ ଅଞ୍ଚଳକୁ ପୂର୍ଣ୍ଣ କରିବାକୁ ସୃଷ୍ଟି ରଚନା କଲେ ? ଆଉ ଯଦି କୁହାଯାଏ ଯେ ସେ ସସୀମ ତେବେ ସେ ସର୍ବବ୍ୟାପକ ଓ ସର୍ବଶକ୍ତିମାନ ହେବେ କିପରି ? ଯଦି ସେ ଅସୀମ ତେବେ ତାଙ୍କ ଡାହାଣ ଓ ବାମପକ୍ଷ କିପରି ବୁଝାଯାଇପାରିବ ? ଯଦି ତାଙ୍କର ଡାହାଣ ଓ ବାମ ବୋଲି କିଛି ନାହିଁ, ତେବେ ତାଙ୍କ ଡାହାଣ ହାତ ପାର୍ଶ୍ୱରେ ଯୀଶୁଙ୍କ ବସିବା କଥା କ'ଣ ମିଥ୍ୟା ?

ଈଶ୍ୱର ଆଦମଙ୍କୁ ଧୂଳିରୁ ନିର୍ମାଣ କଲେ । ତେବେ କ'ଣ ଈଶ୍ୱର ଧୂଳିରୁ ନିର୍ମିତ ? ଯଦି ଆଦମଙ୍କୁ ଧୂଳିରେ ନିର୍ମାଣ କଲେ ହବ୍ବାଙ୍କୁ ସେପରି କାହିଁକି କଲେ ନାହିଁ ଏବଂ ଆଦମର ପଞ୍ଜରାରୁ ତାହାଙ୍କୁ କାହିଁକି ନିର୍ମାଣ କଲେ ? ଯଦି ଆଦମଙ୍କୁ ଧୂଳିରୁ ଏବଂ ହବ୍ବାଙ୍କୁ ଆଦମର ପଞ୍ଜରାରୁ ଈଶ୍ୱର ନିର୍ମାଣ କଲେ, ଏ ଈଶ୍ୱରଙ୍କୁ ସେହି ପ୍ରକାର କେଉଁ ତତ୍ତ୍ୱରୁ ନିର୍ମାଣ କଲେ ? ଏହା ଈଶ୍ୱରଙ୍କ ବାକ୍ୟ ଦ୍ୱାରା ହିଁ ଯଦି ସୃଷ୍ଟି ହେଲା ବୋଲି କୁହାଯିବ, ତେବେ ମନୁଷ୍ୟଙ୍କୁ ଈଶ୍ୱର ସେହି ପ୍ରକାରେ କାହିଁକି ସୃଷ୍ଟି କଲେ ନାହିଁ ? ଯଦି ଆଦମ ଈଶ୍ୱରଙ୍କ ସ୍ୱରୂପରେ ସୃଷ୍ଟିହେଲା, ତା'ହେଲେ ଈଶ୍ୱରଙ୍କର ସଦୃଶ୍ୟଗୁଣ ତାହା ପାଖରେ କାହିଁକି ଉତ୍ପନ୍ନ ହେଲାନାହିଁ ? ଯଦି ସେ ଈଶ୍ୱରଙ୍କ ସ୍ୱରୂପରେ ନିର୍ମିତ ହେଲା, ତା'ହେଲେ ସ୍ୱ ସ୍ତ୍ରୀ ଓ ସଇତାନର କଥାରେ ସେ କିପରି ପତିତ ହେଲା ।

ଈଶ୍ୱର ଆଦମ ଓ ତାଙ୍କ ସ୍ତ୍ରୀଙ୍କୁ ଯେଉଁ ବଗିଚାରେ ରଖିଥିଲେ ସେଠି ଜୀବନ ତଥା ଜ୍ଞାନର ଫଳଗଛ କାହିଁକି ଲଗାଇଲେ ? ଯାହାକୁ ଖାଇବାକୁ ସେ ଆଦେଶ ଦେବାକୁ ଚାହୁଁ ନଥିଲେ ? ଈଶ୍ୱର ଏହା ପୂର୍ବରୁ କ'ଣ ଜାଣି ନଥିଲେ ଯେ, ସେ ବଗିଚାରୁ ତାଙ୍କୁ ବାହାର କରିବାକୁ ହେବ ? ଯଦି ଜାଣି ନଥିଲେ ସେ ତ୍ରିକାଳଦର୍ଶୀ କିପରି ? ସର୍ବଙ୍କ ସଦାପ୍ରଭୁ ପରମେଶ୍ୱର ଜାଣିବା ଉଦ୍ଦେଶ୍ୟରେ ଆଦମଙ୍କୁ ଡାକ ଦେଲେ—ତୁମ୍ଭେ କେଉଁଠାରେ ? ଏହି ଅନୁପସ୍ଥିତିରେ ସେ ସଇତାନ ସୁଯୋଗ ନେଇ ଉଦ୍ୟାନରେ ପ୍ରବେଶ କରି ପାରିଥିଲା ଏବଂ ଆଦମ ଓ ହବ୍ବାଙ୍କୁ ବିପଥଗାମୀ କରି ପାରିଥିଲା, ଯାହା ଫଳରେ ସେମାନେ ଅଭିଶପ୍ତ ହେଲେ । ଏହିପରି ଏକ ଅଶୁଭ ମୂହୂର୍ତ୍ତରେ ସର୍ବଜ୍ଞ ଈଶ୍ୱରଙ୍କ ଅନୁପସ୍ଥିତି କ'ଣ ବାଞ୍ଛନୀୟ ? ଯଦ୍ୱାରା ଶୟତାନ ଈଶ୍ୱରଙ୍କ ସମସ୍ତ ଆଗାମୀ କାର୍ଯ୍ୟକ୍ରମକୁ ନଷ୍ଟ କରିଦେଲା । ଏଥିପାଇଁ ମଣିଷ ଦୋଷୀ ନାଁ ଈଶ୍ୱର ଦୋଷୀ ।

ଯଦି ଆଦମ ଓ ହବ୍ବା ପାପୀ ଥିଲେ, ତେବେ କେବଳ ଜନ୍ମ ହେବା କାରଣରୁ ଆମେ କିପରି ପାପୀ ହେଲୁ ? ଯଦି ପିତା ଡକାୟତ ହୁଏ, ପୁଅ ସେ ଡକାୟତ ହେବ ଏହାର କ'ଣ କିଛି ମାନେ ଅଛି । ପାପ ତ କେବଳ ଗୋଟିଏ କାର୍ଯ୍ୟର ପରିଣାମ । ଏଣୁ କୌଣସି ବ୍ୟକ୍ତି ଜନ୍ମରୁ ପାପୀ ନୁହେଁ । ମୁଁ ଜଣେ ପାପୀ

ନୁହେଁ । ଯଦି କୌଣସି ପାପ କାର୍ଯ୍ୟ କରେ ତେବେ ମୁଁ ଜଣେ ପାପୀ ହେବି । ଏ ଦୃଷ୍ଟିରୁ ସମସ୍ତ ମାନବ ସମାଜକୁ ଆମେ ପାପୀ ବୋଲି କିପରି କହିପାରିବା ? ପୁନଶ୍ଚ ଜ୍ଞାନଦାୟକ ଫଳ ଖାଇବା ପାପ କି ? ଏହା ଯେତେହେତୁ ପ୍ରଥମରେ ପାପବୋଲି ଧରାଯାଇଥିଲା । ଆଜି ମଧ୍ୟ ଏହାକୁ ପାପବୋଲି ଧରାଯିବା ଉଚିତ । ଯଦି ଆଦମ ଜ୍ଞାନଦାୟକ ଫଳ ଖାଇବାରୁ ତା'ର ପତନ ହେଲା, ତା'ହେଲେ ସ୍କୁଲ, କଲେଜ ଓ ବିଶ୍ୱବିଦ୍ୟାଳୟରେ ପଢ଼ିବା, ପଢ଼େଇବା, ଗୀର୍ଜା ଗୃହରେ ଧର୍ମଶାସ୍ତ୍ର ପଢ଼ିବା ଓ ଭାଷଣ ଦେବା ତଥା ଫଳ ଆହାର କରିବା ମଧ୍ୟ ପାପ ବୋଲି ଧରିନେବା ଉଚିତ । କାରଣ ସେ ସବୁ ପାପର ସହାୟକ । ଘଣ୍ଟା ପରି ଆମେ ପାପ କରି ଚାଲିଥିବୁ ଏକଥା କହିବା ସମୟରେ ଏହାର ପ୍ରତିଦାତା କଥା ମଧ୍ୟ ଭାବିବା ଉଚିତ ।

ଈଶ୍ୱର ତାଙ୍କ ବଡ଼ ଶତ୍ରୁ ଶୟତାନକୁ କାହିଁକି ଉତ୍ପନ୍ନ କଲେ ? କ'ଣ ତାଙ୍କୁ ଉତ୍ପନ୍ନ କରିବା ପୂର୍ବରୁ ତାଙ୍କୁ ଏହା ଜଣା ନଥିଲା ଯେ ସେ ତାଙ୍କ ଇଚ୍ଛା ବିରୁଦ୍ଧରେ ଯିବ ଓ ଆଦମ ହବାଙ୍କୁ ଭୁଲାଇବ ? ଯଦି ମାନି ନିଆଯାଏକି ତାଙ୍କୁ ସେ ଭୁଲ୍‌ରେ ତିଆରି କରିଦେଲେ ତେବେ ସେ କ'ଣ ଏତେ ଦୁର୍ବଳ ଯେ ନିଜ ଭୁଲ୍‌କୁ ସଂଶୋଧନ କରିପାରିଲେ ନାହିଁ । ଶୟତାନ ପାପ କରିବାର ବା ଅନ୍ୟ ମଧ୍ୟରେ ପାପ କରାଇବାର ପ୍ରବୃତ୍ତି ଉତ୍ପନ୍ନ କରିବାର ଅଭ୍ୟାସ କେଉଁଠାରୁ ପାଇଥିଲା ? ଏଠାରେ ଈଶ୍ୱରଙ୍କର ବ୍ୟତୀତ ଆଉ କିଏ ଏହା କରାଇ ପାରିଥିବେ ବୋଲି କୁହାଯାଇ ପାରିବ ? ଏ କ୍ଷେତ୍ରରେ ଈଶ୍ୱର ହିଁ ଶୟତାନକୁ ଓ ଶୟତାନ ମାଧ୍ୟମରେ ମଣିଷକୁ ପାପରେ ନିୟୋଜିତ କରିଛନ୍ତି । ସେ ଆମକୁ ପାପରୁ ରକ୍ଷା କରିବେ କିପରି ? ଶୟତାନ ପରମେଶ୍ୱରଙ୍କ ସୃଷ୍ଟିକୁ ଧ୍ୱଂସ କରିଦେଲା ଅଥଚ ପରମେଶ୍ୱର ତାଙ୍କୁ ଦଣ୍ଡ ଦେଲେ ନାହିଁ ବା ତାଙ୍କୁ ବଧ କରି ମଣିଷ ସମାଜକୁ ପାପରୁ ରକ୍ଷା କଲେନାହିଁ । ଏଥିରୁ ଏହା କ'ଣ ପ୍ରମାଣିତ ହୋଇଯାଉନାହିଁ ଯେ ସେ ଶକ୍ତିହୀନ ଏବଂ ଏହି କାରଣରୁ ନ୍ୟାୟ ପ୍ରତିଷ୍ଠା କରିବାରେ ଅସମର୍ଥ । ଶୟତାନର ଦୋଷକୁ ଆଦମ ସ୍ତ୍ରୀର ମୁଣ୍ଡରେ ପକାଇବା କ'ଣ ନ୍ୟାୟସଙ୍ଗତ । ଯଦି ସ୍ତ୍ରୀର ଏହା ଦୋଷ ବୋଲି ମାନି ନିଆଯାଏ, ତାହା ହେଲେ ଏହା କି ପ୍ରକାର ନ୍ୟାୟ ଯେ ଆଦମ ସ୍ତ୍ରୀ ଦଣ୍ଡ ତାଙ୍କ ନିରପରାଧୀ ସମସ୍ତ ସ୍ତ୍ରୀ ଜାତିକୁ ଭୋଗିବାକୁ ପଡ଼ିଲା ? କ'ଣ ସନ୍ତାନ ଉତ୍ପତ୍ତିର ସ୍ୱାଭାବିକ କଷ୍ଟକୁ ଏ ପ୍ରକାର ବର୍ଣ୍ଣନା କରିବା ବୁଦ୍ଧିସଙ୍ଗତ ? ସୃଷ୍ଟି ରଚନା କରିବାର ପଶ୍ଚାତରେ ଈଶ୍ୱର କାହିଁକି ଅନୁତାପ କଲେ ? ସେ ପ୍ରଥମରୁ ହିଁ ଏପରି ସୃଷ୍ଟି ରଚନା କାହିଁକି କଲେ ନାହିଁ ଯଦ୍ୱାରା ପରେ ଅନୁତାପ କରିବାକୁ ପଡ଼ିଲା ଏବଂ ଏହାକୁ ସଂଶୋଧନ କରିବାପାଇଁ ତାଙ୍କ ପୁତ୍ରଙ୍କୁ ଏଠାକୁ ପଠାଇବାକୁ ପଡ଼ିଲା ? ଏହାଦ୍ୱାରା ଈଶ୍ୱର ଅଦୂରଦର୍ଶୀ, ତ୍ରୁଟିପୂର୍ଣ୍ଣ ଓ ଅଜ୍ଞାନୀ ବୋଲି ପ୍ରମାଣିତ ହୋଇଥାଆନ୍ତି ନାହିଁ କି ?

ବାଇବଲରେ ଈଶ୍ୱର ପବିତ୍ର ଆତ୍ମା ଓ ଈଶ୍ୱର ପୁତ୍ର ତିନ ଅଲଗା ଅଲଗା ସତ୍ତାର ବର୍ଣ୍ଣନା ଅଛି । ଯଦି ଏ ତିନ ହସ୍ତୀ ଏକ ହିଁ ଈଶ୍ୱରଙ୍କର ବିଭିନ୍ନ ଅଙ୍ଗ ତେବେ ଏମାନଙ୍କୁ ଅଲଗା ଅଲଗା ଭାବରେ ବର୍ଣ୍ଣନା କରିବାରେ ଈଶ୍ୱରଙ୍କର କି ଆବଶ୍ୟକତା ଅନୁଭବ ହେଲା । ଯଦି ଈଶ୍ୱର, ଈଶ୍ୱରପୁତ୍ର ଓ ପବିତ୍ର ଆତ୍ମା ଅଲଗା ଅଲଗା ସତ୍ତା ଅଟନ୍ତି ବାଇବଲରେ ଯେପରି ସିଦ୍ଧ ହୁଏ, ତେବେ କ'ଣ ତିନି ସତ୍ତା ସମାନ ରୂପରେ ଅନାଦି ଓ ଅନନ୍ତ ନୁହନ୍ତି ? ଯଦି ହିଁ କୁହାଯାଏ ତା'ହେଲେ ଏ ତିନିଙ୍କ ଶକ୍ତି, କାର୍ଯ୍ୟ ବା ଅଧିକାର କ'ଣ ଅଟେ ? ଯଦି ଏ ତିନ ସତ୍ତା ଅନାଦି ତେବେ ଏକଥା କିପରି ସିଦ୍ଧ ହେବ କି ସୃଷ୍ଟି ପୂର୍ବରୁ ଈଶ୍ୱରଙ୍କ ଅତିରିକ୍ତ କିଛି ନଥିଲା । ଯଦି ଈଶ୍ୱର ଅନାଦି ତେବେ ଖ୍ରୀଷ୍ଟ, ପବିତ୍ର ଆତ୍ମାଙ୍କୁ କେବେ, କିପରି ଓ କାହିଁକି ଉତ୍ପନ୍ନ କଲେ ? ସୃଷ୍ଟି ପୂର୍ବରୁ ପିତା, ପୁତ୍ର ଓ ପବିତ୍ର ଆତ୍ମା କେଉଁ କାର୍ଯ୍ୟରେ ବ୍ୟସ୍ତ ଥିଲେ ନା କେବଳ ବସି ରହିଥିଲେ ? ଯେତେବେଳେ ପରମେଶ୍ୱର କହିଲେ ଦୀପ୍ତି ହେଉ—ତହିଁରେ ଦୀପ୍ତି ହେଲା । ତାହା କିଏ ଶୁଣିଲା ? କିଏ ସେ ଆଦେଶ ପାଳନ କଲା ? କାରଣ ଈଶ୍ୱରଙ୍କ ବ୍ୟତୀତ ସେଠି କେହି ଉପସ୍ଥିତ ନଥିଲେ ?

ଯୀଶୁଙ୍କ ବଂଶାବଳୀରୁ ଏହା ସିଦ୍ଧ ହୁଏ ଯେ ଯୋସେଫ, ଇବ୍ରାହିମଙ୍କର ଏକଚାଳିଶତମ ବଂଶ ପରେ ବୟାଳିଶତମ ପିଢ଼ୀରେ ଜନ୍ମ ହୋଇଛନ୍ତି । ଯଦି ଯୀଶୁ ଯୋସେଫଙ୍କର ଔରସରୁ ଜାତ ନୁହଁନ୍ତି, ତେବେ ସେ ଇବ୍ରାହିମଙ୍କ ବଂଶଧର ହେଲେ କିପରି ? ଯେ ପିତାର ପୁତ୍ର ନୁହେଁ ସେ ଆଜାଙ୍କ ନାତି କିପରି ? ଯୀଶୁ କେବେଠାରୁ ଈଶ୍ୱରଙ୍କର ପୁତ୍ର ଅଟନ୍ତି ? ପ୍ରଥମରୁ ବା' ମରିୟମଙ୍କ ଗର୍ଭରୁ ଜନ୍ମହେବା ପରେ ? ସେ ଶରୀର ସମ୍ବନ୍ଧରେ ଈଶ୍ୱରଙ୍କର ପୁତ୍ର ବା ଆତ୍ମା ସମ୍ବନ୍ଧରେ । କୁହାଯାଇଛି ଯେ ଆମ୍ଭମାନଙ୍କର ପାପ ପାଇଁ ସେ କ୍ରୁଶବିଦ୍ଧ ହେଲେ । 'କ' କିପରି 'ଖ' ପାଇଁ ଦୁଃଖ ପାଇବ । ଯଦି 'କ' ଜଣେ ପାପୀ ତେବେ 'ଖ' କିପରି 'କ'ର ପାପ ପାଇଁ ଦଣ୍ଡିତ ହେବ ? ଯଦି କୁହାଯାଏ ଯେ ଈଶ୍ୱରଙ୍କର ଏକମାତ୍ର ପୁତ୍ର ଆମ ପାପ ପାଇଁ କ୍ରୁଶବିଦ୍ଧ ହେଲେ ତା'ହେଲେ ଲୋକେ ପାପ କରିବାକୁ ଡରିବା ଅନୁଚିତ । ପୁନଶ୍ଚ କୁହାଯାଇଛି ଯେ—ପ୍ରଳୟର ଏକ ନିର୍ଦ୍ଦିଷ୍ଟ ଦିନ ସମସ୍ତଙ୍କ କର୍ମର ବିଚାର ଈଶ୍ୱର ଖ୍ରୀଷ୍ଟଙ୍କ ପରାମର୍ଶରେ କରିବେ । ଯଦି ପ୍ରଳୟ ଦିନରେ ହିଁ ବିଚାର ହେବ ତେବେ ବର୍ତ୍ତମାନ ଆମ ସୁଖ ଦୁଃଖର କାରଣ କ'ଣ ? ତାହା କ'ଣ ବିନା ବିଚାରରେ ଆମକୁ ଭୋଗିବାକୁ ହେଉଛି ? କ'ଣ ଭଲ ଖରାପକୁ ଧ୍ୟାନରେ ନ ରଖି ଖ୍ରୀଷ୍ଟଙ୍କ ପରାମର୍ଶ ଉପରେ ନ୍ୟାୟ ଦେଉଥିବା ଈଶ୍ୱର କେବେ ଭଲ କୁହାଯାଇପାରିବେ । ଈଶ୍ୱର କେଉଁ କାରଣରୁ ଜଣେ ପାପୀକୁ ଯିଏ କେବଳ ଖ୍ରୀଷ୍ଟଙ୍କୁ ବିଶ୍ୱାସ କରନ୍ତିଏ ତାକୁ ସ୍ୱର୍ଗକୁ ପଠାଇ ଦିଅନ୍ତି ଏବଂ

ଜଣେ ସଦାଚାରୀ ଉତ୍ତମ ବ୍ୟକ୍ତିକୁ କେବଳ ଖ୍ରୀଷ୍ଟଙ୍କୁ ବିଶ୍ୱାସ କରୁ ନଥିବାରୁ ନର୍କରେ ପକାନ୍ତି । କ'ଣ ନ୍ୟାୟର ଏ ଅଶୁଦ୍ଧ ପ୍ରଣାଳୀ ପାପୀଙ୍କୁ ପ୍ରୋତ୍ସାହିତ କରି ତାଙ୍କ ସଂଖ୍ୟା ବୃଦ୍ଧି କରିବ ନାହିଁକି । ଯଦି ଖ୍ରୀଷ୍ଟଙ୍କ ପରାମର୍ଶରେ ହିଁ ଈଶ୍ୱର ହେବ ତେବେ ତାଙ୍କୁ ସୃଷ୍ଟି ପୂର୍ବରୁ ନ ପଠାଇ ପରେ ପଠାଇବା କ'ଣ ଉଚିତ ହେଲା । କୋଟି କୋଟି ନରନାରୀ ଯେଉଁମାନେ ଖ୍ରୀଷ୍ଟଙ୍କ ପୂର୍ବରୁ ଜନ୍ମ ହେବା ଦ୍ୱାରା ଖ୍ରୀଷ୍ଟଙ୍କ ଶରଣରେ ଆସିବାର ସୁଯୋଗ ପାଇଲେ ନାହିଁ ସେମାନେ ସ୍ୱର୍ଗକୁ ଯିବେ ନା ନର୍କକୁ ? ଯଦି ଖ୍ରୀଷ୍ଟଙ୍କ ଉପଦେଶ ଅଭାବରେ ଖ୍ରୀଷ୍ଟ ଜନ୍ମ ପୂର୍ବ ଲୋକଙ୍କ କୌଣସି ଭୁଲ ହୋଇଗଲା ତେବେ ଦୋଷ ତାଙ୍କ ଉପରେ ନା ଈଶ୍ୱରଙ୍କ ଉପରେ ? ଏ ସ୍ଥିତିରେ ନ୍ୟାୟ କିପରି ହୋଇପାରିବ ।

ଏ ସମସ୍ତ ପ୍ରଶ୍ନ ଗୋଟିକ ପରେ ଗୋଟିଏ ଆମ ମନ ଓ ହୃଦୟକୁ ଘେରିଯାଏ । "ଏସବୁ କିଛି ନୁହେଁ" କହି ମୁଁ ନିଜକୁ ଫାଙ୍କି ଦେଇପାରେ ନା । କାରଣ ଆଜି ନହେଲେ କାଲି ହୁଏତ ଏ ପ୍ରଶ୍ନଗୁଡ଼ିକର ଉତ୍ତର ଆମକୁ ଦେବାକୁ ହେବ । କେବଳ ବିଶ୍ୱାସର ଦୁହାଇ ଦେଇ କ'ଣ ବାରମ୍ବାର ମନରେ ଉଠୁଥିବା ବୌଦ୍ଧିକ ଚିନ୍ତାଗୁଡ଼ିକୁ ଆମେ ଚାପିଦେଇ ପାରିବୁ । ମୁଣ୍ଡବ୍ୟଥା ପାଇଁ ହୁଏତ ଔଷଧ ଥିବ ଯାହା ମୁଁ ଜାଣି ନାହିଁ । ତା' ଅର୍ଥ ମୁଣ୍ଡକାଟି ମୁଣ୍ଡବ୍ୟଥା ଭଲ କରିବାର ସହଜ ବିଶ୍ୱାସର ପନ୍ଥା ମୁଁ ବା ଆଉ କେହି କେବେ ମଧ୍ୟ ପସନ୍ଦ କରି ନ ପାରନ୍ତି । ଏଣୁ ଖ୍ରୀଷ୍ଟ ବିଶ୍ୱାସୀ ବନ୍ଧୁମାନଙ୍କୁ ମୁଁ ପୁନର୍ବାର ଅନୁରୋଧ କରୁଛି ଏଥିର କୌଣସି ପ୍ରଶ୍ନର ଉତ୍ତର ମୋ ପାଇଁ ଯଥେଷ୍ଟ ଉପକାର ସିଦ୍ଧ ହେବ । ଏଣୁ ଏ ଦିଗରେ ମତେ ସହଯୋଗ କରିବେ । ଆମେନ୍ ।



## ॥ ହେ ପ୍ରଭୁ !
## ମୁଁ ବିଶ୍ୱାସ କରିପାରୁ ନାହିଁ
## ମୋର ଅବିଶ୍ୱାସକୁ ସାହାଯ୍ୟ କର ॥

ସମୟ ଥିଲା, ବାପା ମୋ ଉପରେ ଚିଡ଼ିକି ହୋଇ କହୁଥିଲେ :—ସବୁ କଥାରେ ତର୍କ କରିବା ଗ୍ରୁଡ଼୍ । ସବୁ କଥାରେ ସନ୍ଦେହ କାହିଁକି ? ବିଶ୍ୱାସ କର, ସବୁ ପାଇବୁ । ଧର୍ମ ବିଶ୍ୱାସ, ତର୍କ ଓ ସନ୍ଦେହର ବହୁ ଊର୍ଦ୍ଧ୍ୱରେ । ସେଦିନ ବି ମୁଁ ଆଜି ଭୁଲିପାରୁ ନାହିଁ । ଯେବେ ଆଈ ମା ଭୂତପ୍ରେତ ଡାହାଣୀ ଅସୁର ଅସୁରୁଣୀର ଅନେକ କାହାଣୀ କହୁଥିଲେ । ନିଶା ଗରଜୁ ଥିଲା । ମୁଁ ଡରିଯାଇ ଆଖି ବୁଜି ପକାଉଥିଲି । ସେ ଦିନଗୁଡ଼ିକ ଥିଲା ବିଶ୍ୱାସର ଦିନ । ସମୁଦ୍ର ସାତ ଖଣ୍ଡରେ ବିଭକ୍ତ ହୋଇଥିଲା । ସେଠି ପକ୍ଷୀ ଓ ବରୁଣ ଦେବତାଙ୍କ ନଅର ଥିଲା । ଜଗତ ଭୂତପ୍ରେତ ଅସୁର ଅସୁରୁଣୀଙ୍କ ଦ୍ୱାରା ପରିଚାଳିତ ହେଉଥିଲା । କାହାର ଶିଶୁ ପୁଅ ମରିଗଲେ କୌଣସି ବୃକ୍ଷରୁ ଝୁଲାଇ ଦିଆଯାଉଥିଲା । ଶୀତ ରାତିରେ ଦୂରରେ କୌଣସି ସ୍ଥାନରେ ନିଆଁ ଜଳୁଥିବା ଦେଖିଲେ ଡାହାଣୀ କଥା ମନକୁ ଭୟଭୀତ କରି ଦେଉଥିଲା । ଜଣେ ମରିବାର ଦଶାହ ଦିନ ଲୋକେ ରାତିରେ ରାସ୍ତାରେ ପାଟି କରି ପ୍ରେତ ଘଉଡ଼ାଉ ଥିଲେ । ଶ୍ରାଦ୍ଧରେ ଚାଉଳଗୁଣ୍ଡ ଉପରେ ହାତୀ, ଓଟ, ବିରାଡ଼ି ଜନ୍ମ ଗାଈ ଖୁରା ପଡ଼ି ପାରୁଥିଲା । ଏବଂ ପୁରୋହିତ ସେହି ଜନ୍ମ ନେଇଛି ବୋଲି କହିପାରୁଥିଲା । ନଗ୍ରଟିଆ ବାଲିବାଡ଼ିରେ ପ୍ରେତ ଦେଖି ତା' ସହ କଥାବାର୍ତ୍ତା କରି ହେଉଥିଲା । ଦେବଦେବୀଙ୍କୁ ସନ୍ତୁଷ୍ଟ କରିବା ପାଇଁ ବହୁ ପ୍ରକାର ପୂଜା ପ୍ରଚଳନ ହେଉଥିଲା ଏବଂ ଦୂର ଦିଗନ୍ତରେ ସ୍ଥିତ ଗ୍ରହଙ୍କୁ ଶାନ୍ତ କରିବା ପାଇଁ ଭଣ୍ଡାଗୁରୁ ମଣିଷ ପାଞ୍ଚ ଆଙ୍ଗୁଠିରେ ପାଞ୍ଚ ପ୍ରକାରର ଟିମା ପଥରର ମୁଦି ଲଗାଇ ଖଡ଼ିପାଞ୍ଜି ଦେଖାଇ ସମସ୍ତ ବ୍ୟଥିତ କରୁଥିଲା । ସମଗ୍ର ପୃଥିବୀ ଭୟରେ ତ୍ରସ୍ତ ଥିଲା । ଲୋକେ ବିନାକାରଣରେ ସବୁ କଥାକୁ ମାନିବାକୁ ନିଜ ନାମ ପଛରେ ନିଜକୁ ଦାସ, ଗୋଲାମ ବୋଲି କହି ଆନନ୍ଦିତ ହେଉଥିଲେ ।

ବିଶେଷ ଅଧ୍ୟୟନ କାରଣରୁ କୌଣସି ବ୍ୟକ୍ତି ଯଦି କିଛି ନୂଆ କଥା କହି ପକାଉଥିଲା ତାକୁ ସମାଜରେ ଅବିଶ୍ୱାସୀ ବା ନାସ୍ତିକ ବୋଲି କୁହାଯାଉଥିଲା । ବିନା ପରୀକ୍ଷା ନିରୀକ୍ଷା କରି ଏ ପ୍ରକାର ଅବିଶ୍ୱାସୀ ଓ ନାସ୍ତିକଗଣ ସମସ୍ତ ସମୟରେ

ଗାଥା କଥିତ ଆଶ୍ଚର୍ଯ୍ୟ କର୍ମ ଦେଖି କାଠ ପଥର ବା ଜୀବନ୍ତ ଅବତାରଙ୍କ ପାଖରେ ନଇଁ ପଡ଼ୁଥିଲେ । ବିଶ୍ୱାସୀଗଣ ସେହିମାନଙ୍କ ଉଦାହରଣ ଦେଇ କହିପାରୁଥିଲେ ସାଉଲ କପଟ ପାଗଳ ହେଲେ ବୋଲି । ଲୋକଙ୍କୁ ଭୟଭୀତ କରେଇ ଅବତାରୀ, ସାଧୁ ମହନ୍ତଗଣ ସବୁ କଥା ମନେଇ ନେଇ ପାରୁଥିଲେ । ସ୍ୱପ୍ନ କାରଣରୁ ହେଉ କିମ୍ବା ମାନସିକ ଅସୁସ୍ଥତା କାରଣରୁ ହେଉ ଲୋକେ ନିଜକୁ ଅନ୍ୟ ପାଖରେ ବଳି ଦେଉଥିଲେ । ଅହଂଭୃ, ଯା ମଣିଷକୁ ଆଶାରେ ଝୁଲାଇ ରଖେ ସେହି ଅହଂଭୃକୁ ସାଧୁମାନେ ଜନସାଧାରଣଙ୍କ ପାଖରୁ ଛଡ଼ାଇ ନେବା ଫଳରେ ଲୋକେ ନିଜକୁ ତୁଚ୍ଛ ମନେକରି ନିଜର ତନମନ ଧନ ସାଧୁଙ୍କ ସେବାରେ ବ୍ୟୟିତ କରି ସ୍ୱର୍ଗର ସୁଖକୁ ମୁଖ୍ୟ ମନେ କରିପାରୁଥିଲେ ।

ନିଜର ଓ ନିଜ ପରିବାରର ମଙ୍ଗଳ ପାଇଁ ପ୍ରତ୍ୟେକଙ୍କ ପାଖରେ ଗୋଟିଏ ଗୋଟିଏ ଇଷ୍ଟଦେବୀ ଥିଲେ ଏବଂ ଲୋକେ ଘଣ୍ଟା ଘଣ୍ଟା ଧରି ଗୋଟିଏ ନାମକୁ ବାରମ୍ବାର ଜପ କରିବା ଦ୍ୱାରା ଅସାଧ୍ୟ ସାଧନ ମଧ୍ୟ ହୋଇପାରିବ ବୋଲି ବିଶ୍ୱାସ କରୁଥିଲେ । ଜଳ ଦ୍ୱାରା ମହାମାରୀ ମଧ୍ୟ ନିର୍ମୂଳ ହୋଇପାରୁଥିଲା । ରୋଗୀ ହୋଇଗଲେ ଲୋକଙ୍କୁ ଘର ଧରି ଘାଟରେ ବୁଡ଼ାଇବାକୁ କୁହାଯାଉଥିଲା । ଯିଏ ଅନେକ ସମୟ ପାଣିରେ ବୁଡ଼ି ରହିପାରୁ ନଥିଲା ସେ ରୋଗ ବୋଲି ଦେବୀଙ୍କ ଦ୍ୱାରା ବର୍ଣ୍ଣିତ ହେଉଥିଲା । ନଖ ଦର୍ପଣ ଦ୍ୱାରା ମଧ୍ୟ ରୋଗ ଦେଖାଯାଇ ପାରୁଥିଲା । ଖଟ କିମ୍ବା କୁଲା ମଧ୍ୟ ରୋଗ ଧରିବାରେ ସାହାଯ୍ୟ କରୁଥିଲା । ମୂର୍ତ୍ତି, ପ୍ରାର୍ଥନା, ଜଳ ତଥା ବିଭୂତି ଦ୍ୱାରା ଅସାଧ୍ୟ ରୋଗ ଭଲ ହୋଇପାରୁଥିଲା । ଝଙ୍କଡ଼ର ପଟ୍ଟ ପାଦୁକା, ସାଧୁଙ୍କ ବିଭୂତି, ଠାକୁରଙ୍କ ଫୁଲ ବା ପ୍ରସାଦ ଦ୍ୱାରା ଲୋକେ କୁଷ୍ଠରୋଗରୁ ମଧ୍ୟ ମୁକ୍ତ ହୋଇ ପାରୁଥିଲେ । ମରୁଡ଼ିରେ ଲୋକେ ନାମଯଜ୍ଞ କିମ୍ବା ଜଳ ମଧ୍ୟରେ ରହି ଜପ କରିବା ଦ୍ୱାରା ବର୍ଷା କରାଇ ପାରୁଥିଲେ । ଫୁଲ ଚନ୍ଦନ ଓ ବସ୍ତ୍ର ପ୍ରଦାନ କରି ଲୋକେ ବଢ଼ିକୁ ମଧ୍ୟ ଦମେଇ ଦେଇ ପାରୁଥିଲେ । ବ୍ରାହ୍ମଣ ପ୍ରଭାତରେ ସ୍ନାନ କରି ସୂର୍ଯ୍ୟଙ୍କୁ ଜଳ ନ ଦେଲେ ସୂର୍ଯ୍ୟ ଉଦୟ ହୋଇପାରୁ ନଥିଲେ । ଜଗତର ନାଥ ଓଡ଼ିଶାର ରାଜାଙ୍କ କାଞ୍ଚି ବିଜୟ ପାଇଁ କଳାଧଳା ଘୋଡ଼ାରେ ଚଢ଼ି ଯୁଦ୍ଧକ୍ଷେତ୍ରକୁ ଯାଇପାରୁଥିଲେ । ଦାସିଆ ବାଉରୀର ଶ୍ରୀଫଳ ଜଗନ୍ନାଥ ହାତ ବଢ଼ାଇ ନେଇ ପାରୁଥିଲେ । ହାତରୁ ବାସନ ଖସିବା ଦ୍ୱାରା କୌଣସି ଅନୁପସ୍ଥିତ ବ୍ୟକ୍ତି ମନରେ ଇଚ୍ଛା ଜାଗ୍ରତ ହେଉଥିଲା ଯେ ସେ ବର୍ତ୍ତମାନ ଯାତ୍ରା କରିବା ଉଚିତ କାରଣ କା' ହାତରୁ ବାସନ ଖସିଛି । ଜେମସ୍ ପ୍ରଥମ ଶାସନ କାଳରେ ଜଣେ ବ୍ୟକ୍ତିକୁ ମୃତ୍ୟୁଦଣ୍ଡ ଦିଆଗଲା । କାରଣ ରାଜ ପରିବାରର ଜଣେ ଲୋକ ସମୁଦ୍ରରେ ଝଡ଼ ହେବା କାରଣରୁ ବୁଡ଼ି ମଲା । କୁହାଯାଉଥିଲା ଯେ ବ୍ୟକ୍ତି ସମୁଦ୍ରରେ ଝଡ଼ ସୃଷ୍ଟି କରୁଥିଲା । କପଟ ବା ସେ ପ୍ରମାଣ

ଜଣପାରଥାନ୍ତା ଯେ ସେ ସମୁଦ୍ରରେ ଝଡ଼ ସୃଷ୍ଟି କରନାହିଁ ? ଯେ ହେତୁ ସେ ଏକ.ଦା ସମୁଦ୍ର ପାଖରେ ବୁଲୁଥିଲା ।

ଏଗୁଡ଼ିକ ବାର୍ଯ୍ୟକୁ ପାପ ଓ ଆଜ୍ଞାକାଙ୍କ୍ଷୀ ହୋଇ ରହିବାକୁ ପୁଣ୍ୟ ବୋଲି ମନା ଯାଉଥିଲା । ଆଦମାନବ ଏଗୁଡ଼ିକ ଫଳ ଖାଇବା ଦ୍ୱାରା ନନ୍ଦନକାନନରୁ ବିତାଡ଼ିତ ହୋଇଥିଲା । ସୋମବାର ଓ ଗୁରୁବାରକୁ ଛାଡ଼ି ଆଉ ସବୁଦିନେ ଆମିଷ ଖାଇଲେ ପାପ ହେଉ ନଥିଲା । ମନ୍ଦିରକୁ ଛାଡ଼ି ଆଉ ସବୁଠାରେ ମିଥ୍ୟା କୁହାଯାଇ ପାରୁଥିଲା । ସେତେବେଳେ ଖବରପତ୍ର ସମସ୍ତ ଚାହିଁ ନଥିଲା । ରାଜାମାନେ ଶାସନ କରୁଥିଲେ । ରାଜାନୁରୂପ ଧର୍ମ ଥିଲା । କିନ୍ତୁ ନୂଆ ଚିନ୍ତା କରିବାକୁ ଦାର୍ଶନିକଗଣ ଉତ୍ସାହିତ ହୋଇ ଯାଉଥିଲେ । ଚୁପ୍ ରହୁଯାଉଥିଲେ । ଯେଉଁ ଦେଶରେ ଧର୍ମ ଶାସନ, ପ୍ରଜାଙ୍କୁ ନିୟନ୍ତ୍ରଣ କରେ ସେଠି ଦୁରାଗ୍ରହୀମାନେ ପୁରସ୍କୃତ ହୁଅନ୍ତି ଏବଂ କିଛିଟା ଅଲଗା ପ୍ରକାର ଚିନ୍ତା କରୁଥିବା ଲୋକେ ନୀରବ ରହି ଜୀବନ ବ୍ୟତୀତ କରିଥାନ୍ତି ।

ଆଉ ସେ ସମୟ ନାହିଁ । ଯିଏ ଯାହା କହିଲା ସେ ସବୁ ଆମେ ବିଶ୍ୱାସ କରିଯିବୁ ? ଆଶ୍ଚର୍ଯ୍ୟ ହେବାର ଦିନ ଅନ୍ତ ହୋଇଛି । ବୁଝିବାର ଦିନ ପ୍ରାରମ୍ଭ ହୋଇଛି । ଆମ ପାଇଁ ଚନ୍ଦ୍ର ଲୋକ ଗମନ, ଟେଲିଭିଜନ ଏବଂ ହାଇଡ୍ରୋଜେନ୍ ବମ୍ ଆଶ୍ଚର୍ଯ୍ୟର ବିଷୟ ନୁହେଁ କିନ୍ତୁ ଯଦି ଜଣେ ବାବାଜୀ କିଛି ବିଭୂତି ଶୂନ୍ୟରୁ ଆଣିଦିଏ, ହାତକୁ ମୁଠା କରି ପାଣି ବୁହାଇ ଦିଏ କିମ୍ବା କିଛି ପରକଥା ଅନୁମାନ କରି କହିଦିଏ ତାହା ଆଶ୍ଚର୍ଯ୍ୟର କଥା । ଥରେ ପରମେଶ୍ୱର କହିଲେ ଆଲୋକ ହୁଅ ! ଆଲୋକ ହେଲା । ଧାର୍ମିକମାନଙ୍କୁ ଏହା ସପ୍ତାଶ୍ଚର୍ଯ୍ୟ ଠାରୁ ମଧ୍ୟ ଆହୁରି ଆଶ୍ଚର୍ଯ୍ୟ ଲାଗେ । ଆମେ ସୁଇଚ୍ ଚିପିଲୁ ସମଗ୍ର ପୃଥିବୀ ଆଲୋକିତ ହୋଇଗଲା । ଏଥିରେ କେହି ଆଶ୍ଚର୍ଯ୍ୟ ହେଲେ ନାହିଁ । କାରଣ ଏହା ବିଜୁଳି ଆଲୁଅ ଥିଲା । ବିଜୁଳି ଆଲୁଅ ଯେହେତୁ ଈଶ୍ୱରଙ୍କ ସୃଷ୍ଟି ନୁହଁ ତେଣୁ ଏଥିରେ ଆମେ ଆଶ୍ଚର୍ଯ୍ୟ ହୋଇପାରିବୁ ନାହିଁ ।

ଧର୍ମ ରାଜ୍ୟରେ ଆଶ୍ଚର୍ଯ୍ୟ କର୍ମ ହିଁ ଏକମାତ୍ର ପ୍ରମାଣ । ଏଣୁ ଯୀଶୁ ଆମ ପାଇଁ ତାଙ୍କ ପର୍ବତ ଉପରୁ ଉପଦେଶ ପାଇଁ ପୂଜ୍ୟ ନୁହନ୍ତି ସେ ଜଳକୁ ମଦିରା କରିଦେବା, ଅନ୍ଧ ଲୋକଟାଙ୍କୁ ଭଲ କରିବା, ମୃତକୁ ଜୀବିତ କରିବା ଏବଂ ନିଜେ ମୃତ ହୋଇ ପୁଣି ଜିଇଁ ଉଠିବା ଏବଂ ସ୍ୱଦେହରେ ସ୍ୱର୍ଗାରୋହଣ କରିବା ପାଇଁ ହିଁ ଖ୍ରୀଷ୍ଟିୟାନ ଜଗତରେ ପୂଜିତ । ଅଜ୍ଞାନ ଯୁଗରେ ଏସବୁ ହୋଇପାରୁଥିଲା । କାରଣ ଅସଭ୍ୟ ମନୁଷ୍ୟ ଅସୀମ ବିଶ୍ୱାସୀ ଥିଲା । ବିଜ୍ଞାନ ଯୁଗରେ ଆଶ୍ଚର୍ଯ୍ୟ କିଛି ନାହିଁ । ସମସ୍ତ ଆଶ୍ଚର୍ଯ୍ୟ କର୍ମ ନିୟମାଧୀନ । ବୁଝାଇ ଦିଅନ୍ତୁ ବୁଝି ହୋଇଯିବ ଏବଂ ଲୋକେ ଆଶ୍ଚର୍ଯ୍ୟ ନହୋଇ ଜାଣିଯିବେ ।

ମୋ ପାଇଁ ତାହା ହିଁ ଆଶ୍ଚର୍ଯ୍ୟର ବିଷୟ ହେବ ଯଦି କେହି ପ୍ରମାଣ କରିଦିଏ ଦୁଇ ଦୁଇ ମିଶିଲେ ଚାରି ନ ହୋଇ ପାଞ୍ଚ ହୁଏ । ଗଣିତ ଶାସ୍ତ୍ର ପାଇଁ ଏହା କ'ଣ ଆଶ୍ଚର୍ଯ୍ୟର ବିଷୟ ହେବ ନାହିଁ କି ? ସେହିପରି ଯଦି କେହି ଉଦ୍‌ଜାନ୍ ଓ ଅମ୍ଳଜାନକୁ ମିଳାଇ ସୁନା ତିଆରି କରିଦେବ ତାହା ଭୌତିକ ବିଜ୍ଞାନ ପାଇଁ ଆଶ୍ଚର୍ଯ୍ୟର ବିଷୟ ହେବ । ସୃଗେଟି ରେଖାରେ ଯଦି କେହି ଗୋଟିଏ ତ୍ରିକୋଣଭୂମି ଅଙ୍କନ କରିପାରିବ ତା'ହେଲେ ତାହା ଜ୍ୟାମିତି କ୍ଷେତ୍ରରେ ଆଶ୍ଚର୍ଯ୍ୟର ବିଷୟ ହେବ । ଠିକ୍ ସେହିପରି ଯଦି ଜଣେ ଯାଜକ ତା'ର ଧର୍ମଶାସ୍ତ୍ର ହିଁ ସତ୍ୟ ଆଉ ସବୁ ମିଥ୍ୟା ବୋଲି ପ୍ରମାଣ କରିଦିଅନ୍ତି ତାହା ହିଁ ଧର୍ମ କ୍ଷେତ୍ରରେ ସବୁଠାରୁ ବଡ଼ ଆଶ୍ଚର୍ଯ୍ୟର ବିଷୟ ହେବ । ଏଣୁ କିଏ ଶୂନ୍ୟରୁ ବିଭୂତି ବାହାର କରିଦେବାରେ ମୁଁ ଆଶ୍ଚର୍ଯ୍ୟ ହୁଏନା । ମୋର ପ୍ରଶ୍ନ ହେଲା ସେ କିପରି ଶୂନ୍ୟରୁ ବିଭୂତି ବାହାର କରୁଛନ୍ତି ତାହା ଜାଣିବା ଦରକାର । ଏ ଜଗତ ହେଲା କାର୍ଯ୍ୟ କାରଣର ଜଗତ । ଲୋକେ ମୂଳ ପ୍ରଶ୍ନକୁ ନ ଯାଇ କାରଣ ନ ଖୋଜି କିପରି ପଞ୍ଚଇନ୍ଦ୍ରିୟଙ୍କ ମଧ୍ୟରେ ଆଖିକୁ ହିଁ ଏତେ ଗୁରୁତ୍ୱ ଦେଉଛନ୍ତି ତାହା ହିଁ ମୋ ପାଇଁ ଆଶ୍ଚର୍ଯ୍ୟର ବିଷୟ ହୋଇ ରହିଥାଏ ।

ଆଶ୍ଚର୍ଯ୍ୟ କର୍ମ ବିଶ୍ୱାସକୁ ଦୃଢ଼ କରେ ଏବଂ ଦୃଢ଼ ବିଶ୍ୱାସ ମନୁଷ୍ୟକୁ ମୂଢ଼ କରିଦିଏ । ଏଣୁ ଭକ୍ତି ମାର୍ଗୀଗଣ ବିଶ୍ୱାସକୁ ପ୍ରଥମ ସ୍ଥାନ ଦେଇ ତର୍କକୁ ବିଶ୍ୱାସ ଉପଯୋଗୀ କରିଥାନ୍ତି । ପୃଥିବୀରେ ଯେତେ ଧର୍ମ ଅଛି ଖ୍ରୀଷ୍ଟଧର୍ମ ଓ ମୁସଲମାନ ଧର୍ମ ସେମାନଙ୍କ ମଧ୍ୟରୁ ସବୁଠାରୁ ବେଶୀ ବିଶ୍ୱାସପ୍ରଧାନ । ବିଶ୍ୱାସକୁ ମୁକ୍ତିର ଚାବିକାଠି ବୋଲି ଖ୍ରୀଷ୍ଟିୟାନମାନେ କହନ୍ତି । ସେମାନଙ୍କ ଦୃଢ଼ ବିଶ୍ୱାସ ପାଖରେ ମୁଁ ହାରି ମାନୁଛି । ସେମାନେ ବିଶ୍ୱାସ ସହିତ ଏହା ପ୍ରଚାର କରନ୍ତି ଯେ ଆମେ ଜନ୍ମରୁ ପାପୀ । କାରଣ ଆଦମ ପାପ କରିଥିଲା । ଆମେ ବିଶ୍ୱାସ କରିବାକୁ ବାଧ୍ୟ ଯେ ଦୟାମୟ ପରମେଶ୍ୱର ମଣିଷ ପ୍ରତି ଦୟାକରି ତାଙ୍କର ଅଦ୍ୱିତୀୟ ପୁତ୍ରଙ୍କୁ ଆମ ପାଖକୁ ପଠାଇଥିଲେ । ସେହି ଅଦ୍ୱିତୀୟ ପୁତ୍ର ଆମ ପାପ ପାଇଁ କ୍ରୁଶବିଦ୍ଧ ହେଲେ । ଏଣୁ ଯୀଶୁଙ୍କୁ ଆମେ ବିଶ୍ୱାସ କରିବାକୁ ବାଧ୍ୟ । ଆପଣ ଯଦି କୁହନ୍ତି ମୁଁ ଈଶ୍ୱରଙ୍କୁ ବିଶ୍ୱାସ କରେ, ସଦାଚାରରେ ବିଶ୍ୱାସ କରେ, ଦୟା ଓ ଦାନରେ ବିଶ୍ୱାସ କରେ, ସେତିକି ଯଥେଷ୍ଟ ନୁହେଁ । ଆପଣଙ୍କୁ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କୁ ବିଶ୍ୱାସ କରିବାକୁ ହିଁ ହେବ । ଅନ୍ୟ ପନ୍ଥା ନାହିଁ । ଯଦି ବିଶ୍ୱାସ ନ କରନ୍ତି ବିଚାର ଦିନ ଅନନ୍ତ ଯନ୍ତ୍ରଣା ଭୋଗ କରିବେ ।

ମୁଁ ଅନନ୍ତ ଯନ୍ତ୍ରଣା ସିଦ୍ଧାନ୍ତକୁ ଅସ୍ୱୀକାର କରୁଛି । ପରମେଶ୍ୱରଙ୍କ ମାନବସମାଜ ପ୍ରତି ତୀବ୍ରଘୃଣା ଓ ନିଷ୍ଠୁରତାର ପରିଚୟ ହିଁ ଏହି ସିଦ୍ଧାନ୍ତରୁ

ଜଣାପଡ଼େ । ମଣିଷକୁ ଏହି ସିଦ୍ଧାନ୍ତ ହିଁ ଦୁର୍ବଳ କରିଦେଇଛି । ଏହି ମିଥ୍ୟା ବିଶ୍ୱାସ ପଛରେ ଅଜ୍ଞାନତା ଲୁଚି ରହିଛି । ଯାଜକ ଏହି ବିଚାର ବଳ ତଥା ମନେ ପକାଇ ଦରିଦ୍ର ଜନତାଙ୍କୁ ଶୋଷଣ କରି ଚାଲିଛନ୍ତି । ମିଥ୍ୟା ବିଶ୍ୱାସ ରୁଢ଼ିବାଦର ଜନନୀ । ରୁଢ଼ିବାଦ ଗୋଟିଏ ଜାତିକୁ ନଷ୍ଟ କରିଦିଏ । କୌଣସି ବ୍ୟକ୍ତିକୁ ବିଶ୍ୱାସ କରିବାଦ୍ୱାରା ଯଦି ଆମେ ସ୍ୱର୍ଗରେ ପୁରସ୍କୃତ ହେବୁ ସେ ପ୍ରକାର ପୁରସ୍କାରକୁ ଆମେ ଅସ୍ୱୀକାର କରୁଁ । କାରଣ ପରମେଶ୍ୱର ଆମକୁ ଲାଞ୍ଚ ଦେବା ପାଇଁ ପ୍ରବର୍ତ୍ତାଇଛନ୍ତି । ଲାଞ୍ଚ ଏକ ପ୍ରମାଣ ନୁହେଁ । ଏହାଦ୍ୱାରା ଆତ୍ମା କଳୁଷିତ ହୁଏ । ଜ୍ଞାନୀ ମନୁଷ୍ୟ ପାଇଁ ଲାଞ୍ଚ ନୁହେଁ, ପ୍ରମାଣ ଦରକାର । ଭକ୍ତବୃନ୍ଦଙ୍କୁ ପ୍ରମାଣ ନୁହେଁ ଲାଞ୍ଚ ଦରକାର । ଯୀଶୁ ନୂତନ ନିୟମରେ ଏ ପ୍ରକାର ପ୍ରଲୋଭନ ଦେଖାଇ ମଣିଷ ସମାଜକୁ ବିଭ୍ରାନ୍ତ କରିଛନ୍ତି । ବାଇବଲରେ ବାପା, ମା, ଭାଇ, ଭଉଣୀ, ସ୍ତ୍ରୀ ସମସ୍ତଙ୍କୁ ତ୍ୟାଗ କରି ତାଙ୍କ ପଛରେ ଚାଲିବାକୁ କୁହାଯାଇଛି । ମାତ୍ର ମୁଁ ବିନା ବିଚାରରେ କାହାରି ପଛରେ ଚାଲିବାକୁ ବାଧ୍ୟ ନୁହେଁ । ମଣିଷ ପ୍ରାଣୀଜଗତର ଶ୍ରେଷ୍ଠ ପ୍ରାଣୀ । ମନନଶୀଳତା ପାଇଁ ସେ ମନୁଷ୍ୟ ଉପାଧି ପାଇଛି । ସେ ମେଣ୍ଢା ନୁହେଁ । ଯେଉଁମାନେ ଅନୁଧାବନ କରିବାକୁ କୁହନ୍ତି, ମଣିଷକୁ ପୋଷା ମନାଇବାକୁ ଚାହାନ୍ତି ସେମାନଙ୍କୁ ମୁଁ ଗୋଟିଏ କଥା କହିବି । ସେମାନେ କୁକୁର ପୋଷନ୍ତୁ । କୁକୁର କଥା ମାନିବ । ମଣିଷର ନିଜର ବୁଦ୍ଧି ଓ ବିଚାର ରହିଛି । ମୁଁ ଯୀଶୁଙ୍କୁ ବିଶ୍ୱାସ କରିବାକୁ ପ୍ରସ୍ତୁତ ମାତ୍ର ବାଇବଲ ମତେ ସେ ସୁଯୋଗ ଦିଏ ନାହିଁ । ମୁଁ ଅବିଶ୍ୱାସ କରୁଛି ଏଣୁ ନର୍କର ଅଧିକାରୀ ହେବି ଏକଥା ଭାବି ଯାଜକ ଖୁସି । ବାଇବଲ ମତେ ନର୍କକୁ ନିଆଯିବ । ସ୍ୱର୍ଗରେ ରହି ପାଦ୍ରୀଗଣ ଉଲ୍ଲସିତ ହେବେ । ମୁଁ ଅବିଶ୍ୱାସ କରିବା କ'ଣ ଅନୁଚିତ ? ମୁଁ ବିଶ୍ୱାସ କରିପାରିବି ନାହିଁ । କେବଳ ଈଶ୍ୱରଙ୍କୁ ବା କେବଳ ଯୀଶୁଙ୍କୁ ବା କେବଳ ପବିତ୍ର ଆତ୍ମାଙ୍କୁ ବିଶ୍ୱାସ କରିଦେଲେ ଚଳିବ ନାହିଁ । ତିନିକୁ ତିନି ଓ ତିନିକୁ ଜଣେ ବୋଲି ବିଶ୍ୱାସ କରିବାକୁ ହେବ । ଅରେ ଏକକୁ ତିନି ମାନିନେଇ ପୁଣି ଏକର ତିନି ଗୁଣକୁ ଏକ ମାନିବା କିପରି ସମ୍ଭବ ? ଏ ଦୈତ୍ୱ ଗଣିତକୁ ଯଦି ମୁଁ ଅସ୍ୱୀକାର କରେ ତେବେ ମଧ୍ୟ ଅନନ୍ତ ଯନ୍ତ୍ରଣା ମତେ ଭୋଗିବାକୁ ହେବ । ବାଇବଲର ସବୁ କିଛି ବିଶ୍ୱାସାଧୀନ । ପୁଣି ଅରେ ଏଠି ମୁଁ ବିନମ୍ର ସତ କହିବାକୁ ପସନ୍ଦ କରିବି ଯେ ମୁଁ ଏ ପ୍ରକାର ସିଦ୍ଧାନ୍ତକୁ ଗ୍ରହଣ କରିପାରୁ ନାହିଁ । ଏହାର ପରିଣାମ ହୋଇପାରେ ଅନନ୍ତ ଯନ୍ତ୍ରଣା ବିଶ୍ୱାସ ନ କରି ବିଶ୍ୱାସୀମାନଙ୍କ ପରି କିପରି ମୁଁ ଆତ୍ମ ପ୍ରତାରଣା କରିବି ?

ଅନେକ ସହୃଦ ପାଠକ ମତେ ପତ୍ର ଲେଖନ୍ତି । ସେମାନଙ୍କ ବିଶ୍ୱାସରେ କୁଆଡ଼େ ମୁଁ କୁଠାରାଘାତ କରୁଛି । ସେ ପ୍ରକାର କାର୍ଯ୍ୟ ମୁଁ କେବେ ମଧ୍ୟ କରୁନାହିଁ ।

ମୁଁ ବିଶ୍ୱାସର ପକ୍ଷପାତୀ ମାତ୍ର ଅନ୍ଧବିଶ୍ୱାସର ନୁହେଁ । ମୋର ଗୋଟିଏ କଥା ମନେ ପଡ଼ୁଛି । ଶୀତ ଦିନ ହୋଇଥାଏ । ଜଣେ ବନ୍ଧୁ ତାର ସମସ୍ତ ପୋଷାକ ବାହାରେ ରଖି ଚୁଲି ପାଖରେ ନିଆଁ ପୋଉଁଥାଏ । ମତେ ମଧ୍ୟ ଶୀତ ହେଉଥାଏ । ମୁଁ ଚୁଲି ପାଖରେ ଆସି ବସିଲି । ଚୁଲିରେ ନିଆଁ ନଥିଲା । ମୁଁ ବିରକ୍ତ ହୋଇ କହିଲି ଟିକେ ମଧ୍ୟ ନିଆଁ ତ ନାହିଁ, ଅଯଥା କାହିଁକି ବସିଛ । ବନ୍ଧୁ ଜଣକ ରାଗିଯାଇ କହିଲେ— “ବଦମାସ ! ଏକଥା ତୁ ମତେ କାହିଁକି କହିଲୁ ? ମତେ ତ ବେଶ ଗରମ ଲାଗୁଥିଲା” । ଏଥିରୁ ଆପଣମାନେ ବୁଝିବେ ଆମେ ମିଥ୍ୟା ବିଶ୍ୱାସ ଦ୍ୱାରା କିପରି କାଳ୍ପନିକ ଅଗ୍ନିରେ ହାତ ସେକିବାକୁ ଚାହୁଁ ।

ବିଶ୍ୱାସ ଏକ ରହସ୍ୟବାଦ ନୁହେଁ । ଏହା ବୁଝିବା ଉଚିତ । ସମସ୍ତେ ବିଶ୍ୱାସ କରନ୍ତି ଯେ ପ୍ରତିଦିନ ସୂର୍ଯ୍ୟ ଉଦୟ ଓ ଅସ୍ତ ହୁଅନ୍ତି । ମାତ୍ର ସୂର୍ଯ୍ୟ ଥାଏ ସ୍ଥିର । ପୃଥିବୀ ଘୂରି ବୁଲୁଥାଏ ସୂର୍ଯ୍ୟ ଚାରି ପାଖରେ । ଆମେ ଆଖିରେ ବିଶ୍ୱାସ କରୁ ମାତ୍ର ବୁଦ୍ଧି ଓ ଜ୍ଞାନରେ ନୁହେଁ । ଏ ପ୍ରକାର ସମସ୍ୟା ଏଇଥି ପାଇଁ ଉପସ୍ଥିତ ହୋଇଛି । ମିଥ୍ୟା ବିଶ୍ୱାସ ଏତେ ଶୀଘ୍ର ମରେ ନାହିଁ । ଏହା ମଣିଷ ମନର ବିକାର । ପ୍ରତ୍ୟେକ ମନୁଷ୍ୟ ସ୍ୱତନ୍ତ୍ର ଭାବରେ ଭାବିବାର ଅଧିକାର ଅଛି । ଆମେ ମନେ ରଖିବା ଉଚିତ ଯେ ପରମେଶ୍ୱର ସେହି ବ୍ୟକ୍ତିକୁ କେବେ ମଧ୍ୟ ନର୍କରେ ପକାଇ ନ ପାରନ୍ତି ଯେ ଏ ଜଗତରେ ଗୋଟିଏ ଛୋଟିଆ ସ୍ୱର୍ଗ ନିର୍ମାଣ କରିପାରିଛି । ଈଶ୍ୱର ସେହି ମନୁଷ୍ୟକୁ କେବେ ମଧ୍ୟ ଦୁଃଖି କରିପାରିବେ ନାହିଁ ଯେ ଅନ୍ୟକୁ ସୁଖୀ କରିବାକୁ ସର୍ବଦା ପ୍ରସ୍ତୁତ ।

ତର୍କ ହିଁ ଜୀବନର ଈଶ୍ୱର, ବିଶ୍ୱାସ ଅମା ଅନ୍ଧକାର । କେଥଲିକ୍ ସାଧୁଗଣ ତର୍କର ନିନ୍ଦା କରି ଆସିଛନ୍ତି । ସଂସ୍କାରବାଦୀ ଲୁଥର୍ ତର୍କ ସହ ଶତ୍ରୁତା ଆଚରଣ କରିଛନ୍ତି । ଆମେରିକାର ବରେଣ୍ୟ ବକ୍ତା ଇନ୍‌ଗରସଲ୍‌ଙ୍କ ଭାଷାରେ, ଏହା କଳ୍ପନା ନ କରାଯିବା ଉଚିତ ଯେ ଏପରି ଜଣେ ଈଶ୍ୱର ଅଛନ୍ତି, ଯେ ନିଜ ସନ୍ତାନମାନଙ୍କ ହାତରେ ତର୍କରୂପୀ ମଶାଲ ଦେଇ ସେମାନେ ଏହାର ପ୍ରକାଶରେ ଆଗକୁ ବଢ଼ିବା ସମୟରେ ତାଙ୍କୁ ନର୍କକୁ ପଠାଇ ଦିଅନ୍ତି ।

ଏଣୁ ଆସନ୍ତୁ ନିର୍ଭିକ ହେବା । ଭୟ ମସ୍ତିଷ୍କକୁ ଜଡ଼ କରିଦିଏ, ବିଶ୍ୱାସକୁ ଡାକି ଆଣେ । ସାହସ ସନ୍ଦେହ ସୃଷ୍ଟି କରେ । ଭୟଗ୍ରସ୍ତ ବ୍ୟକ୍ତି ଆଣ୍ଠୁ ମାଡ଼ି ପ୍ରାର୍ଥନା କରି ବସେ । ସାହସୀ ସିଧା ଛିଡ଼ା ହୋଇ ବିଚାର କରେ । ଭୟ ପଛକୁ ଘୁଞ୍ଚିଯାଏ । ସାହସ ଆଗକୁ ବଢ଼ି ଚାଲେ । ଭୟର ମାନସ ସନ୍ତାନ ଧର୍ମ ହେଲେ ସାହାସର ମାନସପୁତ୍ର ହେଉଛି ବିଜ୍ଞାନ । ସତ୍ୟକୁ ଗ୍ରହଣ କରିବା ଓ ଅସତ୍ୟକୁ ତ୍ୟାଗ କରିବା ପ୍ରତ୍ୟେକ ମଣିଷର ଜନ୍ମସିଦ୍ଧ ଅଧିକାର ଅଟେ ।